# ମହାଭାରତର ପଛଭୂମି

## ବ୍ୟାସଦେବ ଓ ସାରଳାଦାସ


ସମ୍ପାଦନା ଓ ସଙ୍କଳନ

ସାରଳା ସାହିତ୍ୟ ସଂସଦ, କଟକ



ନାଳନ୍ଦା

ବିନୋଦବିହାରୀ, କଟକ-୭୫୩୦୦୨

ମହାଭାରତର ପୃଷ୍ଠଭୂମି
ବ୍ୟାସଦେବ ଓ ସାରଳା ଦାସ

ପ୍ରକାଶକ :
ନାଲନ୍ଦା
ବିନୋଦବିହାରୀ, କଟକ-୨

ପ୍ରଥମ ସଂସ୍କରଣ-୧୯୮୫

ମୁଦ୍ରଣ :
ସୁରେଖା ପ୍ରିଣ୍ଟର୍ସ
ଅଲିଶାବଜାର, କଟକ-୨

ମୂଲ୍ୟ : [redacted] ମାତ୍ର
60/-

Mahabharatar Prusthabhumi
Byasadev & Saraladas

Published by
Nalanda
Binodabehari, Cuttack-2

1st Edition-1985

Printed by
Surekha Printers
Alishabazar
Cuttack-2

Price : ~~Rupees Thirty~~ only

# ମୁଖବନ୍ଧ

'ମହାଭାରତ' ଭାରତୀୟ ସାହିତ୍ୟ ଓ ସଂସ୍କୃତିର ଆଦିଗ୍ରନ୍ଥ । ସେଥିପାଇଁ କଥାରେ ଅଛି "ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ" । ମହାମନୀଷୀ ମହାକବି ବ୍ୟାସଦେବ ସଂସ୍କୃତ ଭାଷାରେ ମହାଭାରତ ଯୁଦ୍ଧର କାହାଣୀ ବର୍ଣ୍ଣନା କରି ସମଗ୍ର ମାନବ ଜାତିର ଚିରନମସ୍ୟ ହୋଇପାରିଛନ୍ତି । ସେହିପରି ଓଡ଼ିଆ ଭାଷାର ସର୍ବ ପ୍ରଥମ ଓ ସର୍ବ ପ୍ରଧାନ ସାହିତ୍ୟଶିଳ୍ପୀ ଆଦିକବି ସାରଳା ଦାସ ବ୍ୟାସଦେବଙ୍କ କାହାଣୀକୁ କଙ୍କାଳ ଭିତ୍ତିକ କରି ନିଜସ୍ୱ ଅଗାଧ ପାଣ୍ଡିତ୍ୟ ବଳରେ ସ୍ୱକୀୟ ମୌଳିକ ଓଡ଼ିଆ ମହାଭାରତ ସୃଷ୍ଟି କରି ପାରିଛନ୍ତି ।

ଅତଏବ ସାରଳା ଦାସ ହେଉଛନ୍ତି ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରାଣ-ପ୍ରତିଷ୍ଠାତା । ଏହି ମହାକବିଙ୍କର ସ୍ମୃତି ଉଦ୍ଦେଶ୍ୟରେ ଆମେ 'ସାରଳା ସାହିତ୍ୟ ସଂସଦ' ଅନୁଷ୍ଠାନ ଗଠନ କରି ନିଜକୁ ସୌଭାଗ୍ୟବାନ୍ ମନେକରୁଅଛୁ ।

ଗତ ସ୍ୱଳ୍ପବର୍ଷଧରି ଆମ୍ଭ ସଂସଦ ପକ୍ଷରୁ ଆଦିକବି ସାରଳା ଦାସଙ୍କ ସ୍ମୃତି-ଦିବସ ମାଘ ଅଷ୍ଟମୀ ଦିନ କଟକଠାରେ ପାଳିତ ହୋଇ ଆସୁଅଛି । ଆମ୍ଭ ଅନୁଷ୍ଠାନ ପକ୍ଷରୁ ମଧ୍ୟ ସାରଳା ସାହିତ୍ୟ ଶୀର୍ଷକ ବିଭିନ୍ନ ଆଲୋଚନା ଚକ୍ରମାନ ଅନୁଷ୍ଠିତ ହୋଇଯାଇଅଛି । ପୂର୍ବରୁ ଆମ୍ଭ ସଂସଦ ପକ୍ଷରୁ ସାରଳା ସାହିତ୍ୟ ସମୀକ୍ଷା, ଓ ସାରଳା ମହାଭାରତ ଚରିତ୍ର ଚିତ୍ରଶାଳା' ନାମକ ଦୁଇଖଣ୍ଡ ସାରଳା ସାହିତ୍ୟ ଉପରେ ଆଲୋଚନା ମୂଳକ ପୁସ୍ତକ ପ୍ରକାଶିତ ହୋଇଅଛି । ଚଳିତ ବର୍ଷ ମଧ୍ୟ ମୂଳ ମହାଭାରତର ବିଭିନ୍ନ ପର୍ବ ସହିତ ସାରଳା ମହାଭାରତର ବିଭିନ୍ନ ପର୍ବର ଏକ ତୁଳନାତ୍ମକ ଆଲୋଚନା ମୂଳକ ପୁସ୍ତକ "ମହାଭାରତର ପୃଷ୍ଠଭୂମି : ବ୍ୟାସଦେବ ଓ ସାରଳା ଦାସ" ପ୍ରକାଶନ ପାଇଁ ଯେଉଁ ଉଦ୍ୟମ ଆମ୍ଭ ଅନୁଷ୍ଠାନ କରିଛି ସେଥିପାଇଁ ଆମକୁ ଯେଉଁମାନେ ସାହାଯ୍ୟ କରିଛନ୍ତି—ସେମାନଙ୍କୁ ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଅଛି । ବିଶେଷତଃ ଏ ପୁସ୍ତକର ନିବନ୍ଧର ଲେଖକ ମାନଙ୍କୁ ମୁଁ ମୋର ଅନ୍ତରର ସ୍ନେହଶ୍ରଦ୍ଧା ନିବେଦନ କରୁଅଛି । ଏଥିପାଇଁ ଆମ ସଂସଦର ସମ୍ପାଦକ ଶ୍ରୀ ପ୍ରଭାକର ସ୍ୱାଇଁଙ୍କ ଉଦ୍ୟମ ଅତୀବ ପ୍ରଶଂସନୀୟ । ଏହି ପୁସ୍ତକ ସଂପାଦନା କରିବା ପାଇଁ ଅଧ୍ୟାପକ ଶ୍ରୀ ପଠାଣି ପଟ୍ଟନାୟକ ଅଧ୍ୟାପକ ଡଃ. ହେମନ୍ତ କୁମାର ଦାସ ବହୁ ପରିଶ୍ରମ କରିଛନ୍ତି । ସେଥିପାଇଁ ମୁଁ ତାଙ୍କୁ ଅଶେଷ ଧନ୍ୟବାଦ ଜଣାଉଛି । ବିଶିଷ୍ଟ ପୁସ୍ତକ ପ୍ରକାଶନ ସଂସ୍ଥା 'ନାଳନ୍ଦା' ଏହି ପୁସ୍ତକର ପ୍ରକାଶନ ଦାୟିତ୍ୱ ନେଇଥିବାରୁ ଅନୁଷ୍ଠାନ ପକ୍ଷରୁ ମୁଁ ତାଙ୍କ ପ୍ରତି ବଡ଼ କୃତଜ୍ଞ ।

ସାରଳା ସାହିତ୍ୟ ସଂସଦର ବିଭିନ୍ନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବାରେ ଡକ୍ଟର ପ୍ରଫୁଲ୍ଲ କୁମାର ପତି, ଶ୍ରୀ ଅଭୟାନନ୍ଦ ରଥ, ଶ୍ରୀ ଗିରିଶ ଚନ୍ଦ୍ର ପାଣି, ଶ୍ରୀ ଅଶୋକ କୁମାର ମହାପାତ୍ର, ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ, ଶ୍ରୀ ଦୁର୍ଗାପ୍ରସାଦ ସିଂହ ଓ ଶ୍ରୀ ଅନାଦି ସାହୁଙ୍କ ସାହାଯ୍ୟ ଓ ସହାନୁଭୂତି ଏହି ଅବକାଶରେ ସ୍ମରଣୀୟ । ସର୍ବୋପରି ସଂସଦର ଅନ୍ୟତମ ଉପଦେଷ୍ଟା ମାନ୍ୟବର ବିଗ୍ଭରପତି ଶ୍ରୀ ରାଧାଚରଣ ପଟ୍ଟନାୟକଙ୍କ ଏହି ଅନୁଷ୍ଠାନକୁ ଏକ ଆଦର୍ଶ ସାହିତ୍ୟାନୁଷ୍ଠାନରେ ପରିଣତ କରିବା ପାଇଁ ପ୍ରଚେଷ୍ଟା ସଂସଦ ପକ୍ଷେ ଅବିସ୍ମରଣୀୟ ।

ଶେଷରେ ମୁଁ ଆଶାକରୁଛି ସମସ୍ତଙ୍କ ସାହାଯ୍ୟ ଓ ସହଯୋଗରେ ସାରଳା ସାହିତ୍ୟ ସଂସଦ ସାରଳା ଦାସଙ୍କ ସ୍ମୃତିରକ୍ଷା କରି ପାରିବ ଓ ସାରଳା ସାହିତ୍ୟ ମାଧ୍ୟମରେ ଓଡ଼ିଶା ବାସୀଙ୍କୁ ଉନ୍ନତ ଜୀବନ ଦେଇ ପାରିବ ।

ଶ୍ୟାମସୁନ୍ଦର ପାଢ଼ୀ
ଉପଦେଷ୍ଟା

# ● ସୂଚୀ

# ଆଦିପର୍ବ

## ଡକ୍ଟର ଦୋଳଗୋବିନ୍ଦ ଶାସ୍ତ୍ରୀ

---

କୋଣାର୍କ ଓ ପିରାମିଡ଼ର ତୁଳନାମୂଳକ ଅଧ୍ୟୟନ ବା ତୁଳନାମୂଳକ ସମୀକ୍ଷା ଓ ରସାସ୍ୱାଦରେ ଆଗ୍ରହ ଯେପରି ଏକ ପ୍ରକାର ଉଦ୍‌ଭଟ ଓ ଅବାସ୍ତବ ପ୍ରଚେଷ୍ଟା, ବ୍ୟାସଦେବକୃତ ମହାଭାରତ ଓ ସାରଳା ଦାସ କୃତ ମହାଭାରତର ତୁଳନାମୂଳକ ଅଧ୍ୟୟନ ସେହିପରି ଏକ ନିଷ୍ଫଳ ପ୍ରୟାସ । ଉଭୟ ମହାଭାରତୀୟ ଚରିତ୍ର ଗୁଡ଼ିକର ଚିତ୍ରଣର ଦୃଷ୍ଟିକୋଣ ମଧ୍ୟ ସମ୍ପୂର୍ଣ୍ଣ- ବା ଆଂଶିକ ପୃଥକ୍ ।

ଇତିହାସର ବାସ୍ତବ ଘଟଣା ଓ କଥାବସ୍ତୁର କଙ୍କାଳକୁ ଉପଜୀବ୍ୟ କରି ପରବର୍ତ୍ତୀ କବିସ୍ରଷ୍ଟା ବହୁକାବ୍ୟ ଉପନ୍ୟାସ-ପ୍ରବନ୍ଧ ସୃଷ୍ଟି କରିଛନ୍ତି । ସେହି ସମସ୍ତ କବି-ପ୍ରବନ୍ଧରେ ଐତିହାସିକ ସତ୍ୟ ଓ ଚୂରିତ୍ରିକ ବୈଶିଷ୍ଟ୍ୟ ସମୟ ବିଶେଷରେ ବହୁଳାଂଶରେ ବା ଆଂଶିକଭାବେ ପରିବର୍ତ୍ତିତ ଓ ବିକୃତ ହୋଇ ଚର୍ଚ୍ଚିତ ହୋଇଥାଏ । କିନ୍ତୁ ଯେଉଁ କବିସ୍ରଷ୍ଟା ଦିବ୍ୟଦୃଷ୍ଟିସମ୍ପନ୍ନ, ସେମାନଙ୍କ ଚିତ୍ରଣରେ ସାଧାରଣତଃ ମୂଳଚରିତ୍ରଗୁଡ଼ିକ ବିକୃତ ହୁଏ ନାହିଁ, ସେମାନେ ନିଜ କଳ୍ପନାପ୍ରସୂତ ଘଟଣାବଳୀ ସନ୍ନିବେଶ କଲେ ମଧ୍ୟ ତାହା ମୂଳ କାବ୍ୟର ସିଦ୍ଧାନ୍ତ ଓ ଘଟଣାବଳୀରେ ବିରୋଧ ବା ରସାଭାସ ସୃଷ୍ଟି କରେ ନାହିଁ । ଉଦାହରଣ ସ୍ୱରୂପ 'ନୀଳଶୈଳ' ପରି ଅନବଦ୍ୟ ସୃଷ୍ଟିରେ "ସରଦେଇ" ଚରିତ୍ର ସ୍ରଷ୍ଟା ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କର କଳ୍ପନାପ୍ରସୂତ ହେଲେ ମଧ୍ୟ, ଇତିହାସର କଙ୍କାଳରେ "ସରଦେଇ" କୁ ଖୋଜିବା ଏକାନ୍ତ ଅବାସ୍ତବ ହେଲେ ମଧ୍ୟ "ସରଦେଇ" ନୀଳଶୈଳ ବିହାରୀ ଜଗନ୍ନାଥଙ୍କ ମହିମାକୁ ଅଧିକ ମନୋଜ୍ଞ କରିଛି । ମହାକବି ଭାସଙ୍କ "ପ୍ରତିମା ନାଟକମ୍" ରେ ପ୍ରତିମା ଗୃହରେ ରଘୁବଂଶର ପୂର୍ବପୁରୁଷ ମାନଙ୍କର ପ୍ରତିମାସ୍ଥାପନ କିମ୍ବା କାଳିଦାସଙ୍କ "ଅଭିଜ୍ଞାନ ଶାକୁନ୍ତଳମ୍‌ରେ" ଦୁର୍ବାସାଙ୍କ ଅଭିଶାପ କୌଣସି କ୍ଷେତ୍ରରେ ମୂଳଚରିତ୍ରକୁ ବିକୃତ ନ କରି ନାଟକୀୟ ପରିବେଶକୁ ଅଧିକ ରସଗ୍ରାହୀ କରିପାରିଛି । ଏହି ସମସ୍ତ କଳ୍ପନା ସଂଯୋଜନକୁ ଲକ୍ଷ୍ୟକରି ସାହିତ୍ୟଦର୍ପଣକାର ବିଶ୍ୱନାଥ ରାମାୟଣ- ମହାଭାରତୀୟ ଚରିତ୍ରଗୁଡ଼ିକ ଯୁଗଯୁଗ ଧରି ପାଠକ ଓ ଆଲୋଚକ ମାନଙ୍କ ପ୍ରତି ଗୋଟିଏ ଗୋଟିଏ ଆଦର୍ଶ ଚରିତ୍ର ଏବଂ ଅନୁସରଣୀୟ ବୋଲି ଉକ୍ତି କରି କହିଛନ୍ତି -

"ରମାଦିବନ୍ତ ପ୍ରବର୍ତ୍ତିତବ୍ୟଂ, ନ ତୁ ରାବଣାଦିବତ୍ ।।" ଅର୍ଥାତ୍ ବାଲ୍ମୀକିକୃତ ରାମାୟଣ ଓ ବ୍ୟାସଦେବକୃତ ମହାଭାରତର ଚରିତ୍ରଗୁଡ଼ିକ ସର୍ବଯୁଗର ମାନବ ସମାଜ ନିମିତ୍ତ ଆଦର୍ଶ ଓ ଅନୁସରଣୀୟ ହୋଇ ରହିବ । କବିକଳ୍ପନାର ସଂଯୋଜନାର ଉଦ୍ଦେଶ୍ୟ ଯାହାହିଁ ହେଉନା କାହିଁକି ମୂଳଚରିତ୍ରର ପ୍ରକୃତ କୌଣସି କାରଣରୁ ବିକୃତ ହେବାର ନୁହେଁ—ସେ କାବ୍ୟ କାବ୍ୟକୃତ ହିସାବରେ ଯେତେ ଉନ୍ନତ ହେଉ ନା କାହିଁକି । କାରଣ ସେ ପ୍ରକାର ବିକୃତିଦ୍ୱାରା ବାଲ୍ମୀକି-ବ୍ୟାସ ପ୍ରଭୃତି ମୌଳିକ ସ୍ରଷ୍ଟା ମାନଙ୍କର ଉଦ୍ଦେଶ୍ୟ ବ୍ୟର୍ଥ ହୋଇଯିବାର ସମ୍ଭାବନା ଏବଂ ସେ ବ୍ୟର୍ଥତା ଆଦୌ ସ୍ପୃହଣୀୟ ନୁହେଁ ।

ଉଦାହରଣ ସ୍ୱରୂପ ବଙ୍ଗଳା କାବ୍ୟସ୍ରଷ୍ଟା ମାଇକେଲ ମଧୁସୂଦନଙ୍କର 'ମେଘନାଦବଧ' କାବ୍ୟ ଉଲ୍ଲେଖଯୋଗ୍ୟ । କାବ୍ୟ ହିସାବରେ ଏହା ଅତି ଉତ୍କୃଷ୍ଟ, କିନ୍ତୁ ଏହି କାବ୍ୟରେ ରାମ-ଲକ୍ଷ୍ମଣାଦି ମହନୀୟ ଚରିତ୍ରକୁ ଅତ୍ୟନ୍ତ ହେୟ ରୌଣରୂପେ ଚିତ୍ରଣ କରାଯାଇଛି ଏବଂ ରାବଣ-ମେଘନାଦ ପ୍ରଭୃତି ଚରିତ୍ରକୁ ଅତ୍ୟନ୍ତ ଉନ୍ନତ ଓ ମହନୀୟରୂପେ ଦର୍ଶାଯାଇଛି । ଏହି କାବ୍ୟରେ ପାଠକ ନିଶ୍ଚୟ ବିଭ୍ରାନ୍ତ ହେବାର ସମ୍ଭାବନା । ରାବଣ ଚରିତ୍ରରେ ଉତ୍ତମ ଗୁଣାବଳୀ କଠୋର ତପସ୍ୟା ଲବ୍ଧ ବିଭୂତି ଓ ଐଶ୍ୱର୍ଯ୍ୟ, ବେଦାନ୍ତ ତତ୍ତ୍ୱଜ୍ଞାନ ସତ୍ତ୍ୱେ ରାବଣର ଅତ୍ୟଧିକ ଅହମିକା ଓ ନାରୀ ପ୍ରଲୋଭନହିଁ ତାର ପତନର କାରଣ— ଏଇ ଦୁଇଟି ଦୁର୍ଗୁଣ ଯେ ମହାନ୍ ଗୁଣଶାଳୀ ବ୍ୟକ୍ତିତ୍ୱର ପତନ ଓ ବିନାଶର କାରଣ ହୋଇଥାଏ, ଏହାହିଁ ମୂଳକାବ୍ୟ ସ୍ରଷ୍ଟା ବାଲ୍ମୀକିଙ୍କର ଉଦ୍ଦେଶ୍ୟ; କିନ୍ତୁ ମେଘନାଦବଧ କାବ୍ୟରେ ସେ ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ ବ୍ୟର୍ଥ ହୋଇଛି ।

ଏ ସମସ୍ତ ଦୃଷ୍ଟିକୋଣରୁ ବିଚାର କଲେ ସାରଳାଙ୍କ ମହାଭାରତରେ ମଧ୍ୟ ସ୍ଥଳବିଶେଷରେ ମୂଳ ମହାଭାରତୀୟ ଚରିତ୍ରଗୁଡ଼ିକ ଆଂଶିକ ବିକୃତିରୁ ମୁକ୍ତ ହୋଇନାହିଁ ବୋଲି ପ୍ରତୀୟମାନ ହୁଏ ।

ପ୍ରଥମତ ମୂଳ ମହାଭାରତ ଆଦିପର୍ବ ସହିତ ସାରଳା ମହାଭାରତର ଆଦିପର୍ବ ବିଷୟବସ୍ତୁ ସଂଯୋଜନା ଓ ବ୍ୟତିକ୍ରମ ବିଶେଷ ଦୃଷ୍ଟି ଆକର୍ଷଣ କରେ । ନିମ୍ନରେ ପ୍ରଦତ୍ତ ଉଭୟ ମହାଭାରତରେ ଆଖ୍ୟାନଗତ ତାରତମ୍ୟର ବିଷୟକ୍ରମିକ ସାରଣୀ ଲକ୍ଷଣୀୟ ।

| ମୂଳ ମହାଭାରତ | ସାରଳା ମହାଭାରତ |
|---|---|
| ଗ୍ରନ୍ଥ ଅନୁକ୍ରମଣିକା | ଗଣେଶଙ୍କ ବନ୍ଦନା |
| ପର୍ବର ସଂକ୍ଷିପ୍ତ ବିବରଣୀ | ସାରଳା ଦେବୀଙ୍କ ବନ୍ଦନା |

| ମୂଳ ମହାଭାରତ | ଆଦିପର୍ବ | ସାରଳା ମହାଭାରତ |
|---|---|---|
| ସର୍ପଯଜ୍ଞ ପାଇଁ ଜନ୍ମେଜୟଙ୍କ | | ମହାଭାରତର ପ୍ରଶସ୍ତି |
| ପ୍ରୋତ୍ସାହନ | | — |
| କଥାପ୍ରବେଶ | | — |
| ପୁଲମା ଅଗ୍ନିଶାପ | | — |
| ଅଗ୍ନିଶାପ ମୋଚନ | | — |
| ପ୍ରମଦ୍ୱରା ସର୍ପଦଂଶନ ଓ | | — |
| ଜୀବନ ପ୍ରାପ୍ତି | | — |
| ରୁରୁମୁନି ଡୁଣ୍ଡୁଭ ସମ୍ବାଦ | | — |
| ଡୁଣ୍ଡୁଭ ଶାପ ମୋଚନ | | — |
| ସର୍ପ ଯଜ୍ଞ ଆୟୋଜନ | | — |
| ଜରତ୍କାରୁଙ୍କ ପିତୃପରିଚୟ | | — |
| ଓ ବିବାହ | | — |
| ଆସ୍ତୀକଙ୍କ ଜନ୍ମ | | — |
| କଦ୍ରୁ ଓ ବିନତାଙ୍କ ପୁତ୍ରପ୍ରାପ୍ତି | | — |
| ସମୁଦ୍ରମନ୍ଥନ | | — |
| ରତ୍ନ ଓ ଅମୃତ ଉତ୍ପତ୍ତି | | — |
| ଦେବାସୁର ସଂଗ୍ରାମ | | — |
| କଦ୍ରୁଙ୍କ ପୁତ୍ରଙ୍କ ପ୍ରତି ଶାପ | | — |
| ସମୁଦ୍ର ବର୍ଣ୍ଣନ ଦର୍ଶନ | | — |
| ଗରୁଡ଼ ଉତ୍ପତ୍ତି | | — |
| ସୂର୍ଯ୍ୟରଥରେ ଅରୁଣଙ୍କ ସ୍ଥିତି | | — |
| କଦ୍ରୁଙ୍କ ଦ୍ୱାରା ଇନ୍ଦ୍ର ସ୍ତୁତି | | — |
| ସର୍ପଙ୍କ ପ୍ରସନ୍ନତା | | — |
| ରମଣକ ଦ୍ୱୀପ ବର୍ଣ୍ଣନା | | — |
| ଗରୁଡ଼ଙ୍କ ଦ୍ୱାରା | | — |
| ନିଷାଦ ଭକ୍ଷଣ | | — |
| ଗଜ ଓ କଚ୍ଛପର | | — |
| ପୂର୍ବଜନ୍ମ ବୃତ୍ତାନ୍ତ | | — |
| ବାଲଖିଲ୍ୟ ତପସ୍ୟା | | — |
| ଅରୁଣ-ଗରୁଡ଼ ଉତ୍ପତ୍ତି | | — |

| | |
|---|---|
| ପୁରୁରବା ନହୁଷ ଓ ଯଯାତିଙ୍କ ଚରିତ ବର୍ଣ୍ଣନା | ଯଯାତି ଉପାଖ୍ୟାନ + (ଆଦିପର୍ବ ଆରମ୍ଭ) ଶମ୍ଭୁ ଗଣ ଉପଖ୍ୟାନ । |
| କଚ, ଦେବଯାନୀ, ଶର୍ମିଷ୍ଠା ସଂବାଦ, ଯଯାତି | |
| ଅଷ୍ଟକ ସମ୍ବାଦ | — |
| ପୁରୁଙ୍କ ଅଭିଷେକ | |
| ପୁରୁ, ଭରତ ଓ ପାଣ୍ଡୁବଂଶର ବର୍ଣ୍ଣନା | — |
| ଶାନ୍ତନୁଙ୍କ ଜନ୍ମ | ଶାନ୍ତନୁ ଉପଖ୍ୟାନ |
| ଭୀଷ୍ମଙ୍କ ଜନ୍ମ, ବସୁଶାପ | ଶାନ୍ତନୁଙ୍କ ବିବାହ |
| ଭୀଷ୍ମଙ୍କ ପ୍ରତିଜ୍ଞା | ଭୀଷ୍ମଙ୍କ ପ୍ରତିଜ୍ଞା |

ଉଭୟ ମହାଭାରତର ଏହି ନମିକ ବିଷୟ ସୂଚୀରୁ ପ୍ରତିପାଦିତ ହୁଏ ଯେ ମୂଳ ମହାଭାରତର ଆଦିପର୍ବର ପ୍ରଥମାର୍ଦ୍ଧର ଶେଷାଂଶ ଯଯାତି ଉପାଖ୍ୟାନରୁ ହିଁ ସାରଳାମହାଭାରତର ଆଦିପର୍ବ ଆରମ୍ଭ ହୋଇଛି ଏବଂ କଚ-ଦେବଯାନୀ ସଂବାଦକୁ ବାଦଦେଇ ସାରଳା ଦାସ ଶାନ୍ତନୁ ଉପାଖ୍ୟାନ ଆରମ୍ଭ କରିଛନ୍ତି । ମୋଟ ଉପରେ କହିବାକୁ ଗଲେ ମୂଳମହାଭାରତର ଆଦିପର୍ବର ପ୍ରଥମାର୍ଦ୍ଧର ବିଷୟବସ୍ତୁକୁ ପ୍ରାୟ ସଂପୂର୍ଣ୍ଣ ବାଦଦେଇ ସାରଳାଦାସ ଯଯାତି ଉପାଖ୍ୟାନ ଠାରୁ ହିଁ ତାଙ୍କର ଆଦିପର୍ବ ଆରମ୍ଭ କରିଛନ୍ତି ।

ସାରଳା ମହାଭାରତର ଆଦିପର୍ବ ଜତୁଗୃହ ଦାହ, ଭୀମଙ୍କ ଜଳ ପ୍ରବେଶ, ଶବରୁଣୀର ପଞ୍ଚପୁତ୍ର ପୁନର୍ଜନ୍ମ ବୃତ୍ତାନ୍ତ, ଅଷ୍ଟବସୁଙ୍କ ପ୍ରତି ଅଭିଶାପ, ପାଣ୍ଡବମାନଙ୍କର ଜତୁଗୃହରେ ଦଗ୍‌ଧ ହେବା ସଂବାଦ ପାଇ ଧୃତରାଷ୍ଟ୍ରଙ୍କ ଶୋକ ଏବଂ ପ୍ରେତକ୍ରିୟାଶେଷ ଆଖ୍ୟାନରେ ପରିସମାପ୍ତି ଘଟିଛି । କିନ୍ତୁ ମୂଳ ମହାଭାରତର ଆଦିପର୍ବ ଖାଣ୍ଡବବନ ଦାହ ଏବଂ କୃଷ୍ଣାର୍ଜ୍ଜୁନଙ୍କୁ ଇନ୍ଦ୍ରଙ୍କ ବରଦାନ ପ୍ରସଙ୍ଗରେ ଶେଷ ହୋଇଛି । ଜତୁଗୃହ ଦାହ ଠାରୁ ହିଡ଼ମ୍ବାଙ୍କ ସହିତ ଭୀମଙ୍କ ବିବାହ, ଘଟୋତ୍କଚର ଜନ୍ମ ହିଡ଼ମ୍ବବଧ, ଏକଚକ୍ରା ନଗରୀରେ ବକାସୁରର ବଧ, ସଂବରଣ ଓ ତପତୀ ଆଖ୍ୟାନ, ବଶିଷ୍ଠ-ବିଶ୍ୱାମିତ୍ର କଳହ, ସୌଦାସ ଔର୍ବଉପାଖ୍ୟାନ, ବିରାଟ ନଗରୀରେ ଦ୍ରୌପଦୀ ସ୍ୱୟମ୍ବରରେ ଅର୍ଜ୍ଜୁନଙ୍କ ଲକ୍ଷ୍ୟ ଭେଦ ଓ ଦ୍ରୌପଦୀଙ୍କ ସହ ପଞ୍ଚପାଣ୍ଡବଙ୍କ ବିବାହ, ତିଲୋତ୍ତମାର ଜନ୍ମ, ଅର୍ଜ୍ଜୁନଙ୍କ ତୀର୍ଥଯାତ୍ରା କାଳରେ ଉଲୁପୀ ଓ ଚିତ୍ରାଙ୍ଗଦା ସହ ବିବାହ,, ଦ୍ୱାରକାରେ ସୁଭଦ୍ରାଙ୍କ ସହ ବିବାହ, ଅଗ୍ନି ବ୍ରାହ୍ମଣ ବେଶରେ ଅର୍ଜ୍ଜୁନଙ୍କୁ ଗାଣ୍ଡିବ ଧନୁ ପ୍ରଦାନ, ଖାଣ୍ଡବବନ ଦାହ, ଶାର୍ଙ୍ଗକ ଓ ଜରିତା ଉପାଖ୍ୟାନ ଏବଂ ଶେଷରେ କୃଷ୍ଣାର୍ଜ୍ଜୁନଙ୍କୁ ଇନ୍ଦ୍ରଙ୍କ ବରଦାନ ପ୍ରସଙ୍ଗ ପ୍ରଭୃତି ବିଷୟ ସାରଳାଙ୍କ ଆଦିପର୍ବରେ ଅନ୍ତର୍ଭୁକ୍ତ ହୋଇ ପାରି ନାହିଁ ।

**ଧୃତରାଷ୍ଟ୍ରଙ୍କ ଶତପୁତ୍ର :**

ମୂଳ ମହାଭାରତରେ ଧୃତରାଷ୍ଟ୍ରଙ୍କ ଶତପୁତ୍ରଙ୍କ ନାମ ଦୁର୍ଯୋଧନ (୧) ଯୁଯୁତ୍ସୁ (୨) ଦୁଃଶାସନ (୩) ଦୁଃସହ (୪)

ବର୍ତ୍ତମାନ ସାରଳାମହାଭାରତର ଆଦିପର୍ବର ବିଷୟବସ୍ତୁରେ କଳ୍ପନାପ୍ରସୂତ ବିଷୟବସ୍ତୁ ମଧ୍ୟରୁ କେତୋଟି ମୁଖ୍ୟ ଆଖ୍ୟାନର ସମୀକ୍ଷା ପ୍ରୟୋଜନ ।

**ଶମ୍ବୁସଣ ଉପାଖ୍ୟାନ :**

ବକ୍ରୁରକ୍ଷଙ୍କ ପୁତ୍ର ଶମ୍ବୁସଣ ପ୍ରବଳ ପ୍ରତାପୀ ରାଜା ରୂପେ ପ୍ରତିଷ୍ଠା ଲାଭକଲେ । ସୂର୍ଯ୍ୟକନ୍ୟା ତପତୀଙ୍କ ସ୍ୱୟମ୍ବର ସଭାରେ ବ୍ରହ୍ମା, ଶିବ, ଇନ୍ଦ୍ର, କୁବେର ପ୍ରଭୃତି ଦେବତା-ଗଣ ତପତୀଙ୍କର ତେଜ ସହ୍ୟ କରି ନପାରି ପଳାୟନ କଲେ । ଶେଷରେ ଶମ୍ବୁସଣ ନୃପତି ତପତୀଙ୍କ ତେଜ ସହ୍ୟକରି ତାଙ୍କୁ ବିବାହ କଲେ । ଶମ୍ବୁସଣ ଓ ତପତୀଙ୍କର ପୁତ୍ରରୂପେ କୁରୁ ଜାତହେଲେ । ତାଙ୍କଠାରୁ କୁରୁ ବଂଶର ଉତ୍ପତ୍ତି ହେଲା ।

**ସଂବରଣ-ତପତୀ ଉପାଖ୍ୟାନ :**

ମୂଳ ମହାଭାରତରେ ଅର୍ଜ୍ଜୁନଙ୍କ ତୀର୍ଥଯାତ୍ରା କାଳରେ ଗନ୍ଧର୍ବ ତାଙ୍କୁ ତାପତ୍ୟ ବୋଲି ସମ୍ବୋଧନ କରିବାରୁ ତାହାର ଉତ୍ତରରେ କୁରୁବଂଶ ପ୍ରଦୀପ ସଂବରଣ ଓ ତପତୀଙ୍କର ବିବାହବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । କିନ୍ତୁ ଏହି ପ୍ରସଙ୍ଗ ସାରଳାମହାଭାରତର ପ୍ରଥମରୁ ହିଁ ଶମ୍ବୁସଣ ଉପାଖ୍ୟାନ ରୂପେ ବର୍ଣ୍ଣିତ ହୋଇଛି ।

ମୂଳ ମହାଭାରତର ବିଷୟବସ୍ତୁ ମଧ୍ୟ ସାରଳା ମହାଭାରତରେ ପରିବର୍ତ୍ତିତ ହୋଇଛି । ରାଜା ସମ୍ବରଣ ତପତୀଙ୍କ ରୂପରେ ଆକୃଷ୍ଟ ହେଲେ । କିନ୍ତୁ ତପତୀ ସହସା ତାଙ୍କୁ ବିବାହ କରିବାକୁ ସମ୍ମତ ହେଲେ ନାହିଁ । ଶେଷରେ ବଶିଷ୍ଠଙ୍କ ମଧ୍ୟସ୍ଥତାରେ ଉଭୟଙ୍କର ବିବାହ ସମ୍ପନ୍ନ ହେଲା ।

କିନ୍ତୁ ସାରଳାଦାସ ତପତୀଙ୍କ ସ୍ୱୟମ୍ବର ସଭା ଆହ୍ୱାନ ଏବଂ ସେହି ସଭାରେ ଶିବ, ବ୍ରହ୍ମା, ଇନ୍ଦ୍ର, କୁବେର ପ୍ରଭୃତି ଦେବତାମାନଙ୍କ ସହିତ ଅନ୍ୟାନ୍ୟ ରାଜାମାନେ ମଧ୍ୟ ତପତୀଙ୍କ ତେଜ ସହି ନପାରି ବିଦାୟ ନେଇଥିବା ପ୍ରସଙ୍ଗ ବର୍ଣ୍ଣିତ ଅଛି ।

ଏହିପରି ବହୁସ୍ଥଳରେ ସାରଳାଦାସ ମୂଳ ମହାଭାରତକୁ କଳ୍ପିତ ଆଖ୍ୟାନ ସଂଯୋଗ କରି ପରିବର୍ତ୍ତିତ କରିଛନ୍ତି ।

**ଧୃତରାଷ୍ଟ୍ରଙ୍କ ଶତପୁତ୍ରଙ୍କ ନାମ :**

ମୂଳ ମହାଭାରତରେ ଧୃତରାଷ୍ଟ୍ରଙ୍କ ଶତପୁତ୍ରଙ୍କ ନାମ ପ୍ରଦତ୍ତ ହୋଇଛି । କିନ୍ତୁ ସମସ୍ତ ନାମ ଦୁଃ ଉପସର୍ଗ ଯୋଗେ ହୋଇନାହିଁ । କିନ୍ତୁ ସାରଳାଦାସ ନିଜ ମହା-

ଭାରତରେ ଧୃତରାଷ୍ଟ୍ରଙ୍କ ଏକଶତ ପୁତ୍ର ଏବଂ କନ୍ୟାଙ୍କ ନାମ ଦୁଃ ଉପସର୍ଗ ଯୋଗ କରି ନିଜର ପାଣ୍ଡିତ୍ୟର ପରିଚୟ ଦେଇଛନ୍ତି । ସାରଳାଦାସ ନିଜକୁ ଅଜ୍ଞ, ମୂର୍ଖ ଇତ୍ୟାଦି କହି ବହୁ ସ୍ଥଳରେ ଦୈନ୍ୟୋକ୍ତି ପ୍ରକାଶ କରିଥିବାରୁ ଏବଂ କୁନ୍ତୀଙ୍କୁ କୋଇନ୍ତା, ଭାରତଖଣ୍ଡକୁ ଭୁଅଖଣ୍ଡ ପ୍ରଭୃତି ଶବ୍ଦର ବ୍ୟବହାର ଦେଖି ସାଧାରଣ ପାଠକର ଧାରଣା ହୁଏ, ସତେ ଯେପରି ସାରଳାଦାସ ଏକାନ୍ତ ନିପଟ ମୂର୍ଖ ଥିଲେ । ଏହା ଯେ ସର୍ବଥା ଅବାସ୍ତବ, ତାହା 'ଦୁଃ' ଉପସର୍ଗ ଯୋଗ କରି ଏକଶତ ଏକ ଗୋଟି ନାମ ସୃଷ୍ଟି କରିବାରେଦକ୍ଷ ବ୍ୟକ୍ତି ଅନ୍ତତଃ ସେକାଳର ସାଧାରଣ ସଂସ୍କୃତ ଭାଷାଜ୍ଞାନରେ ଅଭିଜ୍ଞ ଥିଲେ, ଯଦିଓ ତାଙ୍କର ଧାରାବାହିକ ବ୍ୟାକରଣ ପାଠପଢ଼ା ନ ହୋଇ ଥିବାର ମନେହୁଏ । କାରଣ ବ୍ୟାକରଣ ଜ୍ଞାନରେ ପାରଦର୍ଶୀ ବ୍ୟକ୍ତି କୁନ୍ତୀଙ୍କୁ କୋଇନ୍ତା, ଭାରତକୁ ଭୁଅ ଲେଖିବା ସମ୍ଭାବ୍ୟ ନୁହେଁ । ନିମ୍ନରେ ଧୃତରାଷ୍ଟ୍ରଙ୍କ ଶତପୁତ୍ର ଓ ଏକ କନ୍ୟାଙ୍କନାମ ପ୍ରଦତ୍ତ ହେଲା । ସାରଳା ମହାଭାରତରେ ମୂଳ ମହାଭାରତର ନାମୋଲ୍ଲେଖର କ୍ରମ ଅନୁସୃତ ହୋଇନାହିଁ ।

**ମୂଳ ମହାଭାରତରେ ଧୃତରାଷ୍ଟ୍ରଙ୍କ ପୁତ୍ରକନ୍ୟାଙ୍କ ନାମ :—**

ଦୁର୍ଯ୍ୟୋଧନ, ଯୁଯୁତ୍ସୁ, ଦୁଃଶାସନ, ଦୁଃସହ, ଦୁଃଶଳ, ଜଳସନ୍ଧ, ସମ, ସହ, ସବନ୍ଦ, ଅନୁବନ୍ଦ, ଦୁର୍ଦ୍ଧର୍ଷ, ସୁବାହୁ, ଦୁଷ୍ପ୍ରଧର୍ଷଣ, ଦୁର୍ମର୍ଷଣ, ଦୁର୍ମୁଖ, ଦୁଷ୍କର୍ଣ୍ଣ, କର୍ଣ୍ଣ ବିବିଂଶତ,ବିକର୍ଣ୍ଣ, ଶଳ,ସତ୍ତ୍ୱ,ସୁଲୋଚନ, ଚିତ୍ର, ଉପଚିତ୍ର, ଚିତ୍ରାକ୍ଷ, ଚାରୁଚିତ୍ର, ଶରାସନ, ଦୁର୍ମଦ, ଦୁର୍ବିଗାହ, ବିବିତ୍ସୁ,ବିକଟାନନ,ଉର୍ଣ୍ଣନାଭ, ସୁନାଭ, ନନ୍ଦ, ଉପନନ୍ଦ,ଚିତ୍ରବାଣ ଚିତ୍ରବର୍ମା ସୁବର୍ମା, ଦୁର୍ବିମୋଚନ, ଅୟୋବାହୁ, ମହାବାହୁ, ଚିତ୍ରାଙ୍ଗ, ଚିତ୍ରକୁଣ୍ଡଳ, ଭୀମବେଗ, ଭୀମବଳ,ବଳାକୀ, ବଳବର୍ଦ୍ଧନ, ଉଗ୍ରାୟୁଧ, ଭୀମକର୍ମା,କନକାୟୁ, କଢ଼ହସ୍ତ ସୁଧ ଦୃଢ଼ବର୍ମା, ଦୃଢ଼କ୍ଷେତ୍ର, ସୋମକୀର୍ତ୍ତି, ଅନୁଦର, ଦୃଢ଼ସନ୍ଧ, ଜରାସନ୍ଧ, ସତ୍ୟସନ୍ଧ, ସଦଃ-ସୁବାକ୍, ଉଗ୍ରଶ୍ରବା, ଉଗ୍ରସେନ, ସେନାନୀ, ଦୁଷ୍ପରାଜୟ, ଅପରାଜିତ, କୁଣ୍ଡଶାୟୀ ବିଶାଳାକ୍ଷ, ଦୁରାଧର, ଦୃଢ଼ହସ୍ତ, ସୁହସ୍ତ, ବାତବେଗ, ସୁବର୍ଚ୍ଚା, ଆଦିତ୍ୟକେତୁ, ବହ୍ୱାଶୀ, ନାଗଦତ୍ତ, ଅଗ୍ରଯାୟୀ, କବଚୀ, ନିଃସଙ୍ଗୀ, କୁଣ୍ଡୀ, କୁଣ୍ଡଧାର,, ଧନୁର୍ଦ୍ଧର ଉଗ୍ର, ଭୀମରଥ, ବୀରବାହୁ, ଅଲୋଲୁପ, ଅଭୟ, ରୌଦ୍ରକର୍ମା, ଦୃଢ଼ରଥ, ଅନାଧୃଷ୍ୟ, କୁଣ୍ଡଭେଦୀ, ବିରାବୀ, ଦୀର୍ଘଲୋଚନ, ପ୍ରମଥ, ପ୍ରମାଥୀ, ଦୀର୍ଘରୋମ, ଦୀର୍ଘବାହୁ, ମହାବାହୁ, ବ୍ୟୂଢ଼ୋରୁ, କନକଧ୍ୱଜ, କୁଣ୍ଡାଶୀ, ବିରଜାକନ୍ୟା ଦୁଃଶାଳା ।

ଏଠାରେ ଲକ୍ଷଣୀୟ ଯେ, ଏହି ନାମକରଣରେ ସର୍ବତ୍ର ଦୁଃ ଉପସର୍ଗ ବ୍ୟବହାର କରାଯାଇ ନାହିଁ । ସାରଳାଦାସ 'ଦୁଃ' ଉପସର୍ଗ ବା 'ଦୁ'ଯୋଗ କରି ଏହି ଏକଶତ ଏକ ନାମ ନିର୍ବାଚନ କରିଛନ୍ତି । 'ମହାଭାରତ' ବୋଲି କାବ୍ୟର ଶିରୋନାମା ଦେବାପରେ ଚରିତ୍ର ଗୁଡ଼ିକର ନାମ ପରିବର୍ତ୍ତନ ଏକାନ୍ତ ଅସଙ୍ଗତ । ଏହି ଅସଙ୍ଗତକୁ କାବ୍ୟସ୍ୱରୂପ କହିବା ମଧ୍ୟ ଅଯୌକ୍ତିକ ।

## କୁନ୍ତୀ ଓ କର୍ଣ୍ଣ :-

କର୍ଣ୍ଣର ଜନ୍ମବୃତ୍ତାନ୍ତ ଉଭୟ ମହାଭାରତରେ ପ୍ରାୟ ଏକପ୍ରକାର । କିନ୍ତୁ ସାରଳା ମହାଭାରତରେ କୁନ୍ତୀଙ୍କ ଶତଶିଂଗପର୍ବତରୁ ହସ୍ତିନା ଆଗମନକାଳରେ ଯମୁନା ତଟରେ ସୂତପତ୍ନୀ ରାଧାଙ୍କ ନିକଟରେ ନିଜପୁତ୍ରକର୍ଣ୍ଣଙ୍କୁ ଦେଖିବା ଏବଂ ଅତି ପ୍ରକାଶ୍ୟରେ କର୍ଣ୍ଣଙ୍କୁ ନିଜପୁତ୍ର ବୋଲି କହିବା, ଯୁଧିଷ୍ଠିର ପ୍ରଭୃତି ଭ୍ରାତାଙ୍କ ସହିତ କର୍ଣ୍ଣଙ୍କୁ ଜ୍ୟେଷ୍ଠ ଭ୍ରାତା ବୋଲି ପରିଚୟ କରାଇବା ପ୍ରସଙ୍ଗ ମୂଳ ମହାଭାରତରେ ନାହିଁ । ଏହା ସାରଳାଙ୍କର ଅନ୍ୟ ଏକ ଅସଙ୍ଗତ ବ୍ୟତିକ୍ରମ । କାରଣ କର୍ଣ୍ଣଙ୍କୁ ନିଜର ଜ୍ୟେଷ୍ଠଭ୍ରାତା ବୋଲି ନ ଜାଣିବାରେ ଯେଉଁ ନାଟକୀୟ ଉତ୍କଣ୍ଠା ରହିବା କଥା, କାବ୍ୟ-ନାଟକ ପକ୍ଷରେ ବିଶେଷତ ମହାଭାରତରେ କାବ୍ୟିକ ଉତ୍କଣ୍ଠାକୁ ଏତେ ଚଞ୍ଚଳ ଅପସାରଣ କରାଇବାରେ କାବ୍ୟିକ ଚମତ୍କାରିତା ବ୍ୟାହତ ହୋଇଛି । ସାରଳାଦାସଙ୍କର ଅଳଙ୍କାର ଶାସ୍ତ୍ରରେ ଗଭୀର ପାଣ୍ଡିତ୍ୟ ଥିବାପରି ମନେହୁଏ ନାହିଁ । ମୂଳ ମହାଭାରତରେ କର୍ଣ୍ଣର ପ୍ରକୃତ ପରିଚୟ ଯୁଧିଷ୍ଠିରାଦି ପାଣ୍ଡବ ଭ୍ରାତାମାନଙ୍କ ନିକଟରେ ବାଲ୍ୟକାଳରୁ ପ୍ରକାଶ କରିବାର କୌଣସି ପ୍ରସଙ୍ଗ ନାହିଁ ।

## ଖନିକାର ବୃତ୍ତାନ୍ତ :

ଜତୁଗୃହରୁ କୁନ୍ତୀ ଓ ପଞ୍ଚପାଣ୍ଡବଙ୍କ ଗୋପନରେ ରାତ୍ରି କାଳରେ ପଳାୟନ କରିବା ନିମିତ୍ତ ବିଦୁର ଏକ ସୁଡ଼ଙ୍ଗ ଖୋଳିବା ନିମିତ୍ତ ଖନିକାରକୁ ନିଯୁକ୍ତ କରିଥିଲେ । ମୂଳ ମହାଭାରତର ୧୪୭ ଅଧ୍ୟାୟରେ ବିଦୁରଙ୍କ ସୁହୃତ୍ ଓ ଭୂମିଖନନ କାର୍ଯ୍ୟରେ ଦକ୍ଷ ଜଣେ ବ୍ୟକ୍ତି ଆସି ପାଣ୍ଡବମାନଙ୍କୁ ସୁଡ଼ଙ୍ଗ ନିର୍ମାଣ କରିବାର ପ୍ରସ୍ତାବ ଜଣାଇଲେ ଏବଂ ପାଣ୍ଡବମାନଙ୍କର ଅନୁମତି ନେଇ ଗୋପନରେ ପୁରୋଚନର ଅଜ୍ଞାତ ସାରରେ ସୁଡ଼ଙ୍ଗ ନିର୍ମାଣ କଲେ । ଏତିକ ମାତ୍ର ବୃତ୍ତାନ୍ତକୁ ସାରଳାଦାସ ଖନିକାର ଜନ୍ମ ବିବରଣାଦି କଳ୍ପନା କରି କୃଷ୍ଣଙ୍କ ସହିତ ଶ୍ରୀରାଧାଙ୍କ ଦୂତୀ ଏକ ବୃଦ୍ଧା ସହିତ ସୁନ୍ଦରୀର ବିଭତ୍ସ ରତିକ୍ରୀଡ଼ାର ବର୍ଣ୍ଣନା କରିଛନ୍ତି । ଏହା ସାରଳାଦାସଙ୍କର ଏକ ପ୍ରଚଣ୍ଡ ବ୍ୟତିକ୍ରମ । ଅନ୍ୟତ୍ର କୃଷ୍ଣଙ୍କୁ ସ୍ୱୟଂ ଭଗବାନ୍ ବୋଲି ବହୁସ୍ଥଳରେ ସ୍ତୁତି କରି ଖନିକାର ବୃତ୍ତାନ୍ତରେ ତାଙ୍କର ଏପରି ଏକ ଜୁଗୁପ୍ସିତ ବ୍ୟଞ୍ଜନ କାମକ୍ରୀଡ଼ାର ଆରୋପଣ ଅତ୍ୟନ୍ତ ଅନ୍ୟାୟ ଏବଂ ଅମାର୍ଜିତ ରୁଚିର ପରିଚାୟକ । ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି ଏହି ରୁଚି ବିଗର୍ହିତ କଳ୍ପନାର ବିଭତ୍ସତାକୁ କ୍ଷାଳନ କରିବାକୁ ଯାଇ ସେକାଳର ସହଜିଆ ସମ୍ପ୍ରଦାୟର ଯୌନ ବ୍ୟଭିଚାର ପ୍ରତି ସାରଳା ଦାସଙ୍କର ପ୍ରକାଶ୍ୟ ବିଦ୍ରୂପ ବୋଲି ମନ୍ତବ୍ୟ କରିଛନ୍ତି ଏବଂ ସେ ମନ୍ତବ୍ୟ ଯଥାର୍ଥ । ଖନିକାର ଜନ୍ମ ବୃତ୍ତାନ୍ତ ପ୍ରକୃତ ପକ୍ଷରେ ସାରଳାଦାସଙ୍କ କଳ୍ପନା କିମ୍ବା ପରବର୍ତ୍ତୀ ବୈଷ୍ଣବ ଧର୍ମ ଓ କୃଷ୍ଣ ବିଦ୍ୱେଷୀ ତାନ୍ତ୍ରିକ କବିର ପ୍ରକ୍ଷେପଣ, ତାହା ବୁଝିବାର ଉପାୟ ନାହିଁ । ପ୍ରଶ୍ନ ହେଉଛି, ଅନ୍ୟତ୍ର ସାରଳାଦାସ କୃଷ୍ଣଙ୍କୁ ଏତେ ସ୍ତୁତି କରି ଏଠାରେ ଏତେ ଗର୍ହିତ ଆଚରଣ କୃଷ୍ଣ ଚରିତ୍ରରେ ଆରୋପ କରିବାରେ ତାଙ୍କ ଲେଖନୀ ଅଗ୍ରସର ହେଲା କିପରି ?

ପରବର୍ତ୍ତୀ ପର୍ବମାନଙ୍କରେ ଅନ୍ୟାନ୍ୟ ଚରିତ୍ରରେ ମଧ୍ୟ ଏହିପରି ସାମଞ୍ଜସ୍ୟହୀନ ପ୍ରକ୍ଷେପ ଦେଖିବାକୁ ମିଳେ । ମୂଳ ମହାଭାରତର ଆଦର୍ଶ ସତ୍ୟନିଷ୍ଠ ମହାନ୍ ଯୁଧିଷ୍ଠିର ରାଜ୍ୟ, ଭୋଗ, ସଂସାର ପାରିବାରିକ ଜାଗତିକ ସଂପର୍କ ତ୍ୟାଗକରି ସ୍ୱର୍ଗାରୋହଣ ଯାତ୍ରା ପଥରେ ସାରଳା ମହାଭାରତରେ ଯାଯପୁରର ବୈଶ୍ୟକନ୍ୟା ସୁହାଣୀକୁ ବିବାହ କରିବା କିମ୍ବା ମୂଳ ମହାଭାରତର ମହୀୟସୀ ନାରୀ ଦ୍ରୌପଦୀ ସାରଳା ମହାଭାରତରେ କର୍ଣ୍ଣଙ୍କ ପ୍ରତି ଆସକ୍ତ ଓ ହିଡ଼ିମ୍ବା ସହିତ ଓଡ଼ିଆ ଗାଉଁଲି ସ୍ତ୍ରୀଲୋକ ପରି ସଉତୁଣୀ କଳିହରେ ଲିପ୍ତ ଥିବା କଳ୍ପନାକୁ କେତେକ ସମାଲୋଚକ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ ବୋଲି ସଫେଇ ଦେଇ ପାରନ୍ତି । କିନ୍ତୁ ମୂଳ ମହାଭାରତୀୟ ଚରିତ୍ର ଗୁଡ଼ିକୁ ଏତେ ବିକୃତ କରି ମାନବିକତା ଆରୋପ କରିବାରେ କୌଣସି ଯୁକ୍ତି ନାହିଁ । କଳ୍ପନା ବିଳାସୀ କବି ପକ୍ଷରେ ବାସ୍ତବବାଦୀ ମାନବିକ ଦୃଷ୍ଟିକୋଣର ପ୍ରକାଶ ନିମିତ୍ତ ଅନ୍ୟ ଯେ କୌଣସି କାଳ୍ପନିକ ଚରିତ୍ର ସୃଷ୍ଟି କରିବାରେ ବାଧା ନାହିଁ । ବ୍ୟାସ-ବାଲ୍ମୀକିଙ୍କ ସୃଷ୍ଟି ଚରିତ୍ର ଗୁଡ଼ିକ ବିକୃତ ନକରି ମଧ୍ୟ ଆଧୁନିକ କବି-ସ୍ରଷ୍ଟା ନିଜ କଳ୍ପନାବିଳାସ ଚରିତାର୍ଥ କରିପାରିବେ ।

ସେ ଯାହା ହେଉ, ସାରଳାଙ୍କ ମହାଭାରତ ଭାରତର ମହାଭାରତ ନ ହୋଇ ତାର ଆଙ୍ଗିକ ଓ ଆତ୍ମିକ ବୈଭବରେ ଏକାନ୍ତଭାବେ ଓଡ଼ିଆର, ଓଡ଼ିଶାର, ତାତ୍କାଳିକ ଓଡ଼ିଆର ସାମାଜିକ, ଆଧ୍ୟାତ୍ମିକ ଓ ସାଂସ୍କୃତିକ ଚିତ୍ରଶାଳାରୂପୀ ମହାଭାରତରୂପେ ସେ କାଳର ଓଡ଼ିଶା ଓ ଓଡ଼ିଆର ସାମଗ୍ରିକ ସାର୍ଥକ ପରିଚୟର ଯାଦୁଘର ହୋଇ ରହିଛି । ଯେଉଁ ସମୟରେ ସାରା ଭାରତ ତ ଦୂରର କଥା, ସାରା ଓଡ଼ିଶାର ପୁରପଲ୍ଲୀ ଓ ନଦୀ, ବନ ପାହାଡ଼ଭରା ଅଞ୍ଚଳକୁ ଯାତାୟତର କୌଣସି ସହଜ ରାସ୍ତା ବା ଯାନବାହନର ସୁଯୋଗ ନଥିଲା, ସେହି ସମୟରେ ସମଗ୍ର ଓଡ଼ିଆ ଜାତିର ଭୌଗଳିକ, ସାମାଜିକ ଓ ସାଂସ୍କୃତିକ ଚିତ୍ର ଲେଖନୀ ମୁନରେ ଫୁଟାଇବାରେ ସାରଳା-ଦାସ କିପରି ଏତେ ଜ୍ଞାନ, ଅଭିଜ୍ଞତାର ଅଧିକାରୀ ହେଲେ, ତାହା ଚିନ୍ତାକଲେ ବିସ୍ମିତ ହେବାକୁ ହୁଏ । ସେ ଯୁଗର ଓଡ଼ିଆ ଭାଷା ଓ ସାହିତ୍ୟର ଏପରି ଏକ ସାମଗ୍ରିକ, ନିଖୁଣ ଓ ସ୍ପଷ୍ଟ ପ୍ରତିଫଳକ ବିଶିଷ୍ଟ ସମସାମୟିକ କୌଣସି କାବ୍ୟର ସନ୍ଧାନ ମିଳି ନଥିଲେ ମଧ୍ୟ ସାରଳାଦାସଙ୍କ ମହାଭାରତ ସେ ସମୟର ଏକ ଆକାଶଚୁମ୍ବୀ ସୌଧରୂପେ ଦଣ୍ଡାୟମାନ ହୋଇ ପାରିଛି । ଏହା ମଧ୍ୟ ଅନ୍ୟତମ ବିସ୍ମୟକର ବ୍ୟାପାର । ଧାରାବାହିକ ସଂସ୍କୃତ ବ୍ୟାକରଣ ଓ ଅଳଙ୍କାର ଜ୍ଞାନ ନ ଥାଇ ମଧ୍ୟ ନିଜ କଳ୍ପନା ବଳରେ ସାରଳାଦାସ ପଞ୍ଚଦଶ ଶତାବ୍ଦୀର ସାହିତ୍ୟ ମଞ୍ଜୁଷାରେ ଯେଉଁ ରତ୍ନରାଜି ସଞ୍ଚୟ କରିଗଲେ । ସେଥିପାଇଁ ସେ ଚିରକାଳ ସାହିତ୍ୟସେବୀ ମାନଙ୍କର ସ୍ମରଣୀୟ ହୋଇ ରହିବେ ।

—*—

# ମଧ୍ୟପର୍ବ

## ଡକ୍ଟର କୃଷ୍ଣଚନ୍ଦ୍ର ସାହୁ

ସାରଳା ଦାସ ଓଡ଼ିଆ ସାହିତ୍ୟର କେବଳ ଆଦିକବି ନୁହନ୍ତି, ସେ ଏକ ମହାନ କବି । ତାଙ୍କ ମହାନତାକୁ ବହୁଦୃଷ୍ଟିରୁ ପରୀକ୍ଷା କରାଯାଇପାରେ । ଆଲୋଚକମାନେ ତାଙ୍କର ମହିମାମୟ ପୁରାଣକୁ ବିଭିନ୍ନ ଭାବେ ବିଚାର କରି ତାଙ୍କର ମହାନ ପ୍ରତିଭାକୁ ନିଖାର ଦେଖାଇବା ପାଇଁ ଚେଷ୍ଟା କରିଛନ୍ତି । ଆଲୋଚନାର ପରିସର ଦିନକୁ ଦିନ ବିସ୍ତୃତ ହେବା ସଙ୍ଗେ ସଙ୍ଗେ ସାରଳା ଦାସଙ୍କର ଜୀବନ ପ୍ରତି ଦୃଷ୍ଟିକୋଣ ଆହୁରି ସ୍ପଷ୍ଟ ଓ ଆହୁରି ନିର୍ମଳ ହୋଇ ଯାଇଛି । ନିମ୍ନରେ ଓଡ଼ିଶାର ସଂସ୍କୃତିକୁ ଆଖିରେ ରଖି ସାରଳା ଦାସଙ୍କ ମଧ୍ୟ ପର୍ବକୁ ପରୀକ୍ଷା କରିବା ପାଇଁ ପ୍ରଚେଷ୍ଟା କରାଯାଇଛି ।

ସଂସ୍କୃତ ମହାଭାରତର କିଛି ଅଂଶକୁ ନେଇ ଓ କଳ୍ପନାର କିଛି ନୂଆ କଥା ମିଶାଇ ମଧ୍ୟ ପର୍ବର ପରିକଳ୍ପନା । ସଂସ୍କୃତରୁ ଗ୍ରହଣ କରିଥିବା ଅଂଶ ବି ଅନୁବାଦ ନୁହେଁ, ଅନୁସରଣ ବି ନୁହେଁ । କଥାର ମୂଳସୂତ୍ରକୁ ରଖି ଏହା ସ୍ୱତନ୍ତ୍ର ଭାବେ ପଲ୍ଲବିତ ହୋଇଛି । ସାରଳା ଦାସ ଯେତେବେଳେ ସଂସ୍କୃତ ମହାଭାରତର ରୂପରେଖାକୁ ସମ୍ପୂର୍ଣ୍ଣଭାବେ ଭୁଲି ଯାଇଛନ୍ତି । କଥା ପରେ କଥାକୁ ପରୀକ୍ଷା ନ କଲେ ସାରଳା ଦାସଙ୍କୁ ଚିହ୍ନିବା ସହଜ ହୁଏ ନାହିଁ । ସେଥିପାଇଁ ଦ୍ରୌପଦୀଙ୍କ ବିବାହ ପରେ ପାଣ୍ଡବମାନଙ୍କ ଶପଥ କଥାକୁ ପ୍ରଥମେ ନିଆଯାଇ ପାରେ ।

ଏକ ସୁନ୍ଦରୀ ଭାର୍ଯ୍ୟାକୁ ନେଇ ପାଞ୍ଚ ଭାଇ, ଯେତେ ଅଭିନ୍ନ ହୃଦୟ ହୋଇଥିଲେ ବି, ସବୁଦିନେ ଘରକରି ପୁଣି ସୁଖରେ ରହିବା ସହଜ କଥା ନୁହେଁ । ଦ୍ରୌପଦୀଙ୍କୁ ପଞ୍ଚପାଣ୍ଡବ ବିବାହ ହେବା ପରେ ବ୍ୟାସ ମୁନିଙ୍କ ମନରେ ଏହି ପ୍ରଶ୍ନହିଁ ଆସିଥିଲା । ସେଥିପାଇଁ ତାଙ୍କ କଥାରେ ନାରଦ ମୁନି ଆସି ଯୁଧିଷ୍ଠିରଙ୍କ ସମ୍ମୁଖରେ ସୁନ୍ଦ ଓ ଉପସୁନ୍ଦଙ୍କ କଥା କହିବାକୁ ଲାଗିଲେ ।

ସଂକ୍ଷେପରେ କଥା ହେଲା, ଦୈତ୍ୟରାଜ ନିକୁମ୍ଭଙ୍କର ଦୁଇ ପୁତ୍ର ଥିଲେ । ସେମାନେ ହେଲେ ସୁନ୍ଦ ଓ ଉପସୁନ୍ଦ । 'ସେ ଦୁଇଭାଇଙ୍କ ପ୍ରକୃତି ଏକ, ଦୁହିଙ୍କର ଆଚରଣ ସମାନ । ତାଙ୍କର କାର୍ଯ୍ୟ ଓ ଆଚରଣରୁ ବୋଧହୁଏ ଯେ ଜଣେ ବ୍ୟକ୍ତି ଦ୍ୱିବିଧ ହୋଇଅଛନ୍ତି । ସର୍ବକାର୍ଯ୍ୟରେ ଏକ ବୁଦ୍ଧି ହୋଇ ସେହି ମହାବୀର୍ଯ୍ୟ ଅସୁର ଦ୍ୱୟ ଅତିଶୟ

ବୃଦ୍ଧି ଲାଭ କଲେ ।" ସେମାନେ ତ୍ରୈଲୋକ୍ୟ ବିଜୟ ନିମିତ୍ତ ବିନ୍ଧ୍ୟ ପର୍ବତ ନିକଟରେ ବହୁକାଳ ତପସ୍ୟାରେ ନିମଗ୍ନ ହେଲେ । ସେମାନଙ୍କ ତପସ୍ୟା ଦେଖି ଦେବତାମାନେ ଭୀତ ହୋଇ ବହୁ ପ୍ରକାର ବିଘ୍ନ ସୃଷ୍ଟି କରିବାକୁ ଲାଗିଲେ । ସେଥିରେ କିଛି ଫଳ ହେଲା ନାହିଁ । ଶେଷରେ ବ୍ରହ୍ମା ଆସି ସେମାନଙ୍କୁ ବର ଦେଇ କହିଲେ ଯେ ସେମାନେ ତ୍ରୈଲୋକ୍ୟ ବିଜୟ କରିବେ କିନ୍ତୁ ଅମରତ୍ୱ ଲାଭ କରିବେ ନାହିଁ । ବରଂ ସେମାନେହିଁ ସେମାନଙ୍କ ମୃତ୍ୟୁର କାରଣ ହେବେ ।

ବ୍ରହ୍ମାଙ୍କ ଦ୍ୱାରା ବର ପ୍ରାପ୍ତ ହୋଇ ବୀର ଦ୍ୱୟ ତ୍ରୈଲୋକ୍ୟ ବିଜୟ କଲେ । ସେମାନଙ୍କ ଅତ୍ୟାଚାରରେ ସବୁଲୋକ ପ୍ରପୀଡ଼ିତ ହେଲେ । ଶେଷରେ ସେମାନେ ବ୍ରହ୍ମାଙ୍କ ପାଖରେ ପହଞ୍ଚିଲେ । ବ୍ରହ୍ମା ତିଲୋତ୍ତମା ନାମ୍ନୀ ଅତି ସୁନ୍ଦରୀ କନ୍ୟା ନିର୍ମାଣ କଲେ । ବ୍ରହ୍ମାଙ୍କ ଦ୍ୱାରା ଆଦିଷ୍ଟ ହୋଇ ସେହି କନ୍ୟା ଖଣ୍ଡିଏ ମାତ୍ର ସୂକ୍ଷ୍ମ ତଥା ରକ୍ତବର୍ଣ୍ଣ ବସନ ପରିଧାନ କରି ସେହି ଦୈତ୍ୟ ଦ୍ୱୟଙ୍କ ନିକଟରେ ଉପନୀତ ହେଲେ । ଅପରିମିତ ମଦ୍ୟପାନ ଦ୍ୱାରା ସେମାନେ ସେତେବେଳେ ବିହ୍ୱଳଚିତ୍ତ ହୋଇ ସାରିଥିଲେ । ସେହି ବରାରୋହାକୁ ଦର୍ଶନ କରି ସେମାନଙ୍କ ହିତାହିତ ଜ୍ଞାନ ଲୋପ ପାଇଗଲା । ସେମାନେ ନିଜ ନିଜ ମଧ୍ୟରେ ବାଦାନୁବାଦ ଆରମ୍ଭ କଲେ । ଗଦାଦ୍ୱାରା ପରସ୍ପରକୁ ଆଘାତ କରିବାରୁ ଦୁହିଙ୍କର ମୃତ୍ୟୁ ହେଲା ।

ନାରଦ ଏହି କଥା କହି ଦ୍ରୌପଦୀଙ୍କ ହେତୁ ଭାଇମାନଙ୍କ ମଧ୍ୟରେ ଯେପରି କଳହ ନ ହୁଏ, ତାହାର ବ୍ୟବସ୍ଥା କଲେ । ଅମିତତେଜା ଦେବର୍ଷିଙ୍କ ସମକ୍ଷରେ ସେମାନେ ପ୍ରତିଜ୍ଞା କଲେ ଯେ "ସେମାନଙ୍କ ମଧ୍ୟରୁ ଏକଭ୍ରାତା ଦ୍ରୌପଦୀ ସହ ବସିଥିବା ବେଳେ, ଅନ୍ୟ ଯେଉଁ ଭ୍ରାତା ତାହାଙ୍କୁ ଦର୍ଶନ କରିବେ, ସେ ଦ୍ୱାଦଶ ବର୍ଷ ବ୍ରହ୍ମଚାରୀ ହୋଇ ବନରେ ବାସ କରିବେ ।"

ସାରଳା ଦାସଙ୍କ ମଧ୍ୟ ପର୍ବ ଏହି କଥାରୁ ଆରମ୍ଭ ହୁଏ । ବିବାହ ପରେ ଦ୍ରୌପଦୀ ପାଣ୍ଡବମାନଙ୍କ ଗୃହରେ ରଜୋବତୀ ହେଲେ । ପୁଷ୍ପବତୀ ଉତ୍ସବ ବହୁ ଆଡ଼ମ୍ବରରେ ପାଳିତ ହେଲା । ସେ ଦିନ ଥିଲା, ମକର ମାସ ଶୁକ୍ଳପକ୍ଷ ଦଶମୀର ତିଥି ଓ ବୃହସ୍ପତି ବାର । ଧୌମ୍ୟ ପୁରୋହିତ ଆସି ପହଞ୍ଚିଲେ । ଏହି ସୁଯୋଗରେ ସାରଳା ଦାସ ବର୍ଣ୍ଣନା କଲେ, ବାର, ତିଥି ଓ ନକ୍ଷତ୍ର କ୍ରମେ ରଜୋବତୀ ହେବାର ଶୁଭାଶୁଭ କଥା । ଏସବୁ ସଂସ୍କୃତ ମହାଭାରତରେ ନଥିଲେ ମଧ୍ୟ ଓଡ଼ିଆ ସଂସ୍କୃତିର ଏହା ଏକ ବିଶିଷ୍ଟ ଉପାଦାନ । ଓଡ଼ିଆମାନେ ପ୍ରତିଦିନର ଶୁଭାଶୁଭ ଜାଣିବା ପାଇଁ ପ୍ରାୟ ପାଞ୍ଜି ଉପରେ ନିର୍ଭର କରିଥାନ୍ତି । ସେଥିରେ ରଜଶୁଦ୍ଧର ଗଣନା ଏକ ନିର୍ଦ୍ଦିଷ୍ଟ କଥା । ୧୯୮୪ ଖ୍ରୀଷ୍ଟାବ୍ଦର ତୁଳା ମାସ ଅର୍ଥାତ୍ କାର୍ତ୍ତିକ ଦଶମୀ ଶନିବାର ଦିନ ଶତଭିଷା ନକ୍ଷତ୍ରରେ

କୁମାରୀ ରଜୋବତୀ ହେଲେ ପାଞ୍ଜି ଅନୁଯାୟୀ ରଜସ୍ବଳ ସଂସମ୍ପନ୍ନା ପ୍ରଥମ ରଜୋ-ଦର୍ଶନେ ଅପରାହ୍ନ ଘ ୫।୨୯ ଗତେ ସାତମାସ ଗଣ୍ଡଦୋଷ ଫଳଂ "ସ୍ତ୍ରୀବନ୍ଧ୍ୟା" ଦୋ କାଞ୍ଚନ ପ୍ରବାଳ ରକ୍ତବସ୍ତ୍ର ଦାନ । କେବଳ ଏହି ଗୋଟିଏ ଦିନ ନୁହେଁ, ସବୁଦିନେ ଏହିପରି ରଜସ୍ବଳର ଗଣନା ଦିଆ ଯାଇଥାଏ । ତିଥି, ବାର ଓ ନକ୍ଷତ୍ର ଅନୁଯାୟୀ ଏଥିରେ କିଛି କିଛି ପାର୍ଥକ୍ୟ ହେଉଥିଲେହେଁ, ଏହାର ଏକ ସାଧାରଣ ନିୟମ ରହିଛି । ସଂସାରରେ ଘର କରି ରହିବାକୁ ହେଲେ, ଏ ସବୁ ଜାଣିବା ଆବଶ୍ୟକ । ସାରଳା ଦାସ ଏଥିପାଇଁ ଏସବୁର ସାଧାରଣ ନିୟମ ସମସ୍ତଙ୍କ ଜାଣିବା ପାଇଁ ତାଙ୍କ ପୁରାଣରେ ଲିପିବଦ୍ଧ କଲେ ।

ଦ୍ରୌପଦୀ ଶୁଦ୍ଧସ୍ନାନ କରିବା ପରେ ପାଣ୍ଡବମାନେ ଅର୍ଥାତ୍ ପ୍ରଥମ ଦିନ ଯୁଧିଷ୍ଠିର, ଦ୍ୱିତୀୟ ଦିନ ଭୀମ, ତୃତୀୟ ଦିନ ଅର୍ଜୁନ, ଚତୁର୍ଥ ଦିନ ନକୁଳ ଓ ପଞ୍ଚମ ଦିନ ସହଦେବ ଏହି କ୍ରମରେ ଦ୍ରୌପଦୀଙ୍କ ପୁରକୁ ଗମନ କଲେ । ସାରଳା ଦାସ କୌଣସି କଥା ଛାଡ଼ିଦେବାର କବି ନୁହନ୍ତି । ପଞ୍ଚପାଣ୍ଡବ ହେଲେହେଁ ଏଥିରେ ସାନଭାଇ ବଡ଼ଭାଇ ଅଛନ୍ତି । ସାନ ଭାଇ ଭୋଗ କରୁଥିବା ସ୍ତ୍ରୀକୁ ବଡ଼ଭାଇ ଭୋଗ କରିବା ସମାଜରେ ମନା । ସାରଳା ଦାସ ଏହାର ସମାଧାନ କରି କହିଲେ ।

"ସେ କାୟା ଅଗ୍ନିରେ ଦହ୍ୟ କରି ଯିଗ୍ନସେନୀ
ପୁଣି ଅଗ୍ନିରୁ ବାହାର ଆନ କାୟା ଘେନି ।
ତେବେ ସେ ଯୁଧିଷ୍ଠିରଙ୍କି ଦିଅଇ ଅଙ୍ଗଭୋଗ
ନୋହିଲେ ସେ ନ ଛୁଅଇଁ ଧର୍ମରାଜ ଅଙ୍ଗ । ପୃ-୧୩

ଏତିକରେ ସମସ୍ୟାର ସମାଧାନ ହେଲା ନାହିଁ । ପାଞ୍ଚ ଭାଇଙ୍କର ପ୍ରକୃତି ସମାନ ନୁହେଁ । ଏଥିରେ ପୁଣି ଭୀମ କଥା ଅଲଗା ।

"ଭୀମସେନର ଅଟଇ ବୃଷ୍ଟି ଯେ ପ୍ରକୃତି
ଆହାରେ ସାଂଗ୍ରାମେ ଶୃଙ୍ଗାରେ ଅଟଇ ଅତିପୃତି ।

(ମ.ପ.ପୃ ୧୫)

ତା ପାଇଁ ବେଳ କାଳ ଯୋଗର ବିଚାର ନାହିଁ । ସେ ସବୁଦିନେ ପାଞ୍ଚାଳୀ ପୁରରେ ପ୍ରବେଶ କରି "ଗାଢ଼େ ଧରି ଶୃଙ୍ଗାର ଯେ ବଳାତ୍କାରେ କରଇ' । ଦ୍ରୌପଦୀ ତାକୁ କେତେବେଳେ ମିଠକଥା କହି ନିବୃତ୍ତ କରନ୍ତି, ତ କେତେବେଳେ ବହୁ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି ।

ପାଞ୍ଚ ପତି ଥିବାବେଳେ ଜଣଙ୍କ ପାଇଁ ଅଧିକ ସୁବିଧା ଦେବା ତ ଠିକ୍ ନୁହେଁ । ପୁଣି ଲୋକଲଜ୍ଜା ତ ଅଛି । ଏସବୁ ବିଚାର କରି ଦ୍ରୌପଦୀ ନିରୁପାୟ ହୋଇ ଅଗ୍ନିରେ ପ୍ରବେଶ କଲେ ।

ପାଣ୍ଡବଙ୍କ ଗ୍ରନ୍ଥଳେଣି ପଢ଼ନ୍ତି । ସମସ୍ତେ ମିଶି ଅଗ୍ନିଙ୍କୁ ସ୍ତୁତି କଲେ । ଶେଷରେ 'ଅଗ୍ନିରୁ ବାହାରିଲେ ଦେବୀଙ୍କର କାୟେ' । ଦ୍ରୌପଦୀ ସେତେବେଳେ ଗୃହସ୍ଥାଶ୍ରମରେ ସଂଯତ ଜୀବନ ଯାପନର ଆବଶ୍ୟକତା ସମ୍ପର୍କରେ ପାଣ୍ଡବମାନଙ୍କୁ ପୁଣି ଓଡ଼ିଶାର ସାଧାରଣ ଜନତାଙ୍କୁ ଉଦ୍ଦେଶ୍ୟ କରି କହିଲେ,

"ସ୍ତ୍ରୀଙ୍କର ରତି ସୁଖ ଶୁଦ୍ଧ ସ୍ନାନ ଅନ୍ତେ
ପୁରୁଷ ବଳେ କରିବ ଋତୁଦାନ ପରିଯନ୍ତେ ।
ମାସକେ ଋତୁଦେଲେ ଯେ ହୋଇବ ଶୃଙ୍ଗାର
ତେବେ ସେ ବଳ ବଢ଼ୁଥାଇ ନା ଶରୀର ।
ଅନର୍ଥାପ ଶୃଙ୍ଗାରରେ ଆୟୁଷ ହୋୟେ ହାନ ।
ଯତନେ ନାଶ ଯାନ୍ତି ଯେ ନ ଜାଣି ଅଗ୍ୟାନୀ ॥

(ମ.ପ.ପୃ ୧୬)

ଦ୍ରୌପଦୀଙ୍କ କଥାମାନ ପାଣ୍ଡବମାନେ ଦ୍ରୌପଦୀଙ୍କୁ ସାକ୍ଷୀ ରଖି ନିୟମ କଲେ । ପାଣ୍ଡବଙ୍କ ନିୟମକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ ।

(୧) ଯୁଧିଷ୍ଠିର ବୋଇଲେ ସେବେ ପାଞ୍ଚଙ୍କର ନିୟମ ଆମ୍ଭର
ପାଞ୍ଚହେଁ ପାଞ୍ଚବେଳ ଯିବା ମାସକେ ନିକର ।

(୨) ଯାହାର ପାଳି ପଡ଼ିବ ସେବଣ ଦିନର
ଦ୍ୱାରରେ ସନ୍ତକ ଥୋଇ ପଶିବ ଭିତର ।
ଯେ ଅବା ଜାଣ ଭ୍ରଷ୍ଟେ ଭିତରେ ପଶିବ
ସନ୍ତକ ଦେଖିଲେ ସେ ବାହୁଡ଼ି ଆସିବ ।

(ମ.ପ.ପୃ.୧୬)

ପାଞ୍ଚ ପ୍ରକାର ସନ୍ତକ ନିର୍ଦ୍ଦିଷ୍ଟ ହେଲା । ଯୁଧିଷ୍ଠିରଙ୍କର ପାଣ୍ଡୋଇ ଭୀମସେନଙ୍କର ଗଦା, ଅର୍ଜୁନଙ୍କର ଗାଣ୍ଡିବ ଧନୁ, ନକୁଳଙ୍କର କୋନ୍ତ ଓ ସହଦେବଙ୍କର ଖଡ୍‌ଗ ଏହିପରି ଭାବେ ସନ୍ତକ ଥୋଇ ଦ୍ରୌପଦୀଙ୍କ ପୁରକୁ ବଳେ କରିବାର ନିୟମ କରି 'ପାଞ୍ଚହେଁ ହାଥ ଭରିଲେ ଜଳର ଭିତରେ' ।

ସଂସ୍କୃତ ଓ ଓଡ଼ିଆ ମହାଭାରତରେ ପାଣ୍ଡବଙ୍କ ନିୟମର ମୂଳ କଥା ସମାନ ଥିଲେ ବି ପରିବେଶ ସମ୍ପୂର୍ଣ୍ଣ ଅଲଗା । ସାରଳା ମହାଭାରତରେ ନାରଦ ନାହାନ୍ତି, ଭାର୍ଯ୍ୟା ପାଇଁ ଭାଇଙ୍କ ମଧ୍ୟରେ ଅପଡ଼ ହେବା କଥା ନାହିଁ ପୁଣି, ସୁନ୍ଦ, ଉପସୁନ୍ଦ ଓ ତିଲୋତ୍ତମା ଉପାଖ୍ୟାନ ବି ନାହିଁ । ସଂସ୍କୃତ ମହାଭାରତ ଭବିଷ୍ୟତରେ କଳହ ହେବାର ସମ୍ଭାବନା ରହି ଅତୀତର ଏକ ଉପାଖ୍ୟାନକୁ ଦୃଷ୍ଟାନ୍ତ ରୂପେ ଉପସ୍ଥାପିତ କରିଥିବା ବେଳେ

ସାରଳା ଦାସ ଓଡ଼ିଆର ସାମାଜିକ ଜୀବନକୁ ଅନୁସରଣ କରି କଥା କହିଛନ୍ତି । ଓଡ଼ିଆ ସଂସ୍କୃତିର ଆଦର୍ଶକୁ ପ୍ରଚାର କରିବା ହୋଇଛି ଏଥିରେ ମୁଖ୍ୟ ଲକ୍ଷ୍ୟ । ପୁଣି ମଣିଷର ସ୍ୱାଭାବିକ ପ୍ରବୃତ୍ତିକୁ ଆଖିରେ ରଖି କାମ ବାସନାର ତାଡ଼ନାରୁ ସାଧାରଣ ଲୋକଙ୍କୁ ରକ୍ଷା କରି ଆଦର୍ଶ ଗୃହସ୍ଥ ଜୀବନ ଯାପନ କରିବା ପାଇଁ ସେ ଏ ଉପାଖ୍ୟାନର ଅବତାରଣା କରିଛନ୍ତି ।

ସଂସ୍କୃତ ଓ ସାରଳା ମହାଭାରତରେ ଥିବା ଆଉ ଗୋଟିଏ ବିଶିଷ୍ଟ ଉପାଖ୍ୟାନ ହେଲା,—ଅର୍ଜୁନଙ୍କ ବନବାସ ଗମନ ।

ସଂସ୍କୃତ ମହାଭାରତ ଅନୁଯାୟୀ ତସ୍କରମାନେ କୌଣସି ବ୍ରାହ୍ମଣର ଗୋମାତା ଅପହରଣ କରି ନେବାରୁ ସେ ପାଣ୍ଡବମାନଙ୍କ ନିକଟରେ ପହଞ୍ଚିଲେ ଏବଂ କହିଲେ, "ଚୋରମାନେ ବ୍ରହ୍ମସ୍ୱ ହରଣ କରୁଅଛନ୍ତି, ଧର୍ମାର୍ଥ ବିଲୁପ୍ତ ହେଉଅଛି, ଆମ୍ଭେ ଅତଏବ ରୋଦନ କରୁଅଛୁ, ଆମ୍ଭକୁ ଉଦ୍ଧାର କର ।" ବ୍ରାହ୍ମଣମାନଙ୍କର ଚିତ୍କାର ଶୁଣି ଅର୍ଜୁନ ଅସ୍ତ୍ର ଆଣିବା ପାଇଁ ଅସ୍ତ୍ର ଗୃହକୁ ଗଲେ । ସେତେବେଳେ ସେଠାରେ ଯୁଧିଷ୍ଠିର ଦ୍ରୌପଦୀଙ୍କ ସହ ଥିଲେ । ସେଥିପାଇଁ ପୂର୍ବ ନିୟମାନୁଯାୟୀ ଅର୍ଜୁନଙ୍କୁ ଦ୍ୱାଦଶ ବର୍ଷ ବନବାସ ଯିବାକୁ ହୋଇଥିଲା ।

ସାରଳା ଦାସ ବ୍ରାହ୍ମଣର ଅନୁରୋଧ, ଯୁଧିଷ୍ଠିର ଓ ଦ୍ରୌପଦୀଙ୍କ କେଳି ଦର୍ଶନ ଓ ଅର୍ଜୁନଙ୍କ ବନବାସ ଏହି ତିନୋଟି କଥାକୁ ଗ୍ରହଣ କରି ଆଉ ସବୁକୁ ପରିବର୍ତ୍ତନ କରିଦେଲେ ।

ଏଥିରେ ବ୍ରାହ୍ମଣ ହେଲେ ଅଗ୍ନିଦେବତା । ଯୁଧିଷ୍ଠିରଙ୍କ ପାଖରେ କି କାମ ଥିଲା ଜଣା ନାହିଁ, କିନ୍ତୁ ଯୁଧିଷ୍ଠିରଙ୍କୁ କ୍ଷଣକେ ମଧ୍ୟେ ପୁଣି ତିନି ନିଶ୍ୱାସ ମଧ୍ୟେ ଡାକି ନ ଆଣିଲେ

"ଯୁଧେଷ୍ଠି ଦ୍ରୌପଦୀ ପାଣ୍ଡବ କୌରବ
ମୋହୋର ଶାପ ବଳେ ସମସ୍ତେ ନାଶ ଯିବ ।"

ମଧ୍ୟ. ପର୍ବ. ପୃ. ୧୮

ଅର୍ଜୁନ ବଡ଼ ସଙ୍କଟରେ ପଡ଼ିଲେ । ଦ୍ରୌପଦୀଙ୍କ ପୁରକୁ ପ୍ରବେଶ କଲେ ଦ୍ୱାଦଶ ବର୍ଷ ବନବାସ ନୋହିଲେ ବଂଶଧ୍ୱଂଶ । ଏଥିରୁ ଅର୍ଜୁନ ନିଜ ବନବାସ ଦଣ୍ଡକୁ ବାଛି ନେଇ ଅନ୍ତଃପୁରରେ ପ୍ରବେଶ କଲେ ।

ଅଗ୍ନିଦେବତା କେବଳ ଯେ ଅଭିଶାପର ଧମକ ଦେଇ ଅର୍ଜୁନଙ୍କୁ ଅନ୍ତଃପୁରକୁ ପଠାଇଲେ ତାହା ନୁହେଁ, ଯୁଧିଷ୍ଠିରଙ୍କ ସନ୍ତକକୁ ଶ୍ୱାନ ରୂପରେ ହରଣ କରିନେଲେ ।

ଅନ୍ତଃପୁରରେ ଅର୍ଜୁନ ପ୍ରବେଶ କରିବା ପ୍ରସଙ୍ଗ ମଧ୍ୟରେ କେତେ ଘଟଣା ଘଟିଗଲା । ମହାଭାରତର କଥା ଅପେକ୍ଷା ସାରଳା ଦାସଙ୍କ ପାଇଁ ସେ ସବୁ ଥିଲା ଅତ୍ୟନ୍ତ ମୂଲ୍ୟବାନ । ସାଧୁ, ପଣ୍ଡିତ , ପରିବାର, ଓ ପରିଜନ ଲୋକଙ୍କ କଥା କହୁଥିବା ବେଳେ ସେ ଯେ ଖାଲି ମହାଭାରତର କଥା କହିବେ ତା' ନୁହେଁ, ମଝିରେ ମଝିରେ ଉପଦେଶ ଦେବେ, ଲୋକ କଥା କହିବେ, ସାଧାରଣ ଘଟଣା ସବୁକୁ ପାଣ୍ଡବଙ୍କ କଥା ସହି ମିଶାଇ କଥା କହି ଚାଲିଥିବେ । ଏହା ଥିଲା ତାଙ୍କର ସ୍ୱାଭାବିକ ଶୈଳୀ । ଅର୍ଜୁନଙ୍କ ଅନ୍ତପୁର ଗମନ କଥାକୁ ନିମ୍ନ ଭାବେ ଭାଗ କରାଯାଇପାରେ ।

୧ । ଯୁଧିଷ୍ଠିର ଓ ଦ୍ରୌପଦୀଙ୍କ ରତି ଭଙ୍ଗର ବର୍ଣ୍ଣନା
୨ । ଯୁଧିଷ୍ଠିରଙ୍କ ପ୍ରଥମ ପ୍ରତିଜ୍ଞା
୩ । ପର ଶୃଙ୍ଗାର ଦେଖିବାର ଦୋଷ ବର୍ଣ୍ଣନା
୪ । କୁକୁର ଜାତିକି ଅଭିଶାପ
୫ । ନିୟମ ଭଙ୍ଗ କରିବାର ଦୋଷ
୬ । ଯୁଧିଷ୍ଠିର ଓ ଦ୍ରୌପଦୀଙ୍କର ନିୟମ ଲଙ୍ଘନ ପାଇଁ ଅର୍ଜୁନଙ୍କୁ ପ୍ରବର୍ତ୍ତାଇବା
୭ । ଅର୍ଜୁନଙ୍କର ରାମ-ସୀତା, ନଳ-ଦମୟନ୍ତୀ ଉପାଖ୍ୟାନ କହି ଦ୍ରୌପଦୀଙ୍କୁ ସାନ୍ତ୍ୱନା ଦେବା
୮ । କୁନ୍ତୀ, ଭୀମ, ଭୀଷ୍ମ, ଦ୍ରୋଣ, ଶକୁନି, ଶଲ୍ୟ, କୃପ କର୍ଣ୍ଣ ଆଦି ବୀରମାନେ ଅର୍ଜୁନଙ୍କୁ ବୁଝାଇବା
୯ । ଶେଷରେ ସହଦେବଠାରୁ ଅଗ୍ନିଙ୍କ ଚକାନ୍ତ କଥା ଶୁଣି ସମସ୍ତେ ନୀରବ ହେବା

କୌଣସି ପରିବାରରେ ଦୁଃଖ ପଡ଼ିଲେ ଶତ୍ରୁ, ମିତ୍ର ସମସ୍ତେ ସେତେବେଳେ ଦୁଃଖ କରିଥାନ୍ତି । ଓଡ଼ିଆ ସମାଜର ଏହି ବୈଶିଷ୍ଟ୍ୟଟିକୁ ସାରଳା ଦାସ ଭଲ ଭାବେ ଜାଣିଥିଲେ । କ'ଣ ହେଲା ? କଣ ହେଲା ? ତାଙ୍କ ଘରେ କାହିଁକି ଏ ପ୍ରକାର କାନ୍ଦ ବୋବାଳି ପଡ଼ିଛି ? ଏହା ପ୍ରାୟ ସମସ୍ତେ ପଚାରନ୍ତି । ଜଣେ ବା ବହୁଜଣ, ସମସ୍ତଙ୍କୁ ଉତ୍ତର ଦେବାକୁ ହୋଇଥାଏ । ସେହି ଗୋଟିଏ କଥାକୁ ବାରମ୍ବାର କହିବାକୁ ପଡେ । କିଏ ଦୁଃଖ କରେ, କିଏ ସାନ୍ତ୍ୱନା ଦିଏ । ଏ ସବୁ ପରୀକ୍ଷାରେ ଦୁର୍ବଳମନା ଲୋକ ଭାଙ୍ଗି ପଡ଼େ ଅଥଚ ଦୃଢ଼ମନା ଲୋକ ଏଥିରେ ବିଚଳିତ ହୁଏ ନାହିଁ । ମଣିଷକୁ ଜାଣିବାର ଏହା ହିଁ ହେଉଛି ପ୍ରକୃଷ୍ଟ ସମୟ । ଅର୍ଜୁନ ଏହି ସଙ୍କଟରୁ ଉତ୍ତୀର୍ଣ୍ଣ ହୋଇ ବନକୁ ଗମନ କଲେ । ପଛରେ ରହିଗଲେ କୁରୁ ଓ ପାଣ୍ଡବମାନେ ।

ଏହି ପ୍ରସଙ୍ଗ ମଧ୍ୟରୁ ଆଉ କେତେକ ସୂକ୍ଷ୍ମ ପ୍ରଶ୍ନର ବିଚାର କରାଯାଇପାରେ । ରତି ଭଙ୍ଗ ଦୋଷ ଉଭୟ ଗ୍ରନ୍ଥରେ ଥିଲେ ବି ଯୁକ୍ତି ଅଲଗା । ସଂସ୍କୃତ ମହାଭାରତ

ଅନୁଯାୟୀ "କନିଷ୍ଠ ହୋଇ ଯେବେ ଗୁରୁଙ୍କ ନିକଟକୁ ପ୍ରବେଶ କରେ, ତେବେ କନିଷ୍ଠର ତଳେ ହେଲେ ଦୋଷ ହୁଅଇ ନାହିଁ, କିନ୍ତୁ ଜ୍ୟେଷ୍ଠ ହୋଇ ଯେବେ କନିଷ୍ଠ ଭାର୍ଯ୍ୟା-ସଙ୍ଗ ଥିବାବେଳେ ଗମନ କରେ, ତେବେ ସେଠାରେ ନିୟମ ଲଙ୍ଘନ କରିବାର ହୁଅଇ ।"

ସାରଳା ମହାଭାରତରେ ଜ୍ୟେଷ୍ଠ ଓ କନିଷ୍ଠର ,ବିସ୍ତୃତ ପରିବର୍ତ୍ତେ ସାଧାରଣ ଭାବେ ଶୃଙ୍ଗାର ଭଗ୍ନ କଥା କୁହାଯାଇଛି ।

ବାବୁ ଅପାର ଦୋଷ ହୁଅଇ ଶୃଙ୍ଗାର ଭଗ୍ନକଲେ
ଯେତେକ ପାତକ ହୁଅଇ ପୁଣ ଲିଙ୍ଗ ଯେ ଭାଙ୍ଗିଲେ
ଲିଙ୍ଗ ଭଗ୍ନ ବ୍ରହ୍ମହତ୍ୟା କଲି ସରି ଦୋଷ
ପର ଶଙ୍ଗାର ଭାଙ୍ଗିଲେ ହୋଇ ତେତେ ଦୋଷ ।

ସଂସ୍କୃତ ମହାଭାରତ ଅନୁଯାୟୀ ଅର୍ଜୁନ ବ୍ରାହ୍ମଣ ସହ ତାଙ୍କ ଘରକୁ ଯାଇ ତସ୍କରମାନଙ୍କୁ ଦମନ କରି ଫେରି ଆସିବାପରେ ଏସବୁ ବିସ୍ତୃତ ଆରମ୍ଭ ହୁଏ । ଅଥଚ ସାରଳା ମହାଭାରତରେ ଅଗ୍ନି ଅନ୍ତର୍ହିତ ହୋଇ ଯାଇଥିଲେ । ଏପରିକି ଯୁଧିଷ୍ଠିର ମଧ୍ୟ ଦେଖି ପାରିନଥିଲେ । କେବଳ ସହଦେବଙ୍କ କଥାରୁ ସେମାନେ ଏ ସବୁର ରହସ୍ୟ ଜାଣି ପାରିଥିଲେ ।

ସଂସ୍କୃତ ଓ ଓଡ଼ିଆ ମହାଭାରତର ପ୍ରକୃତ ପାର୍ଥକ୍ୟ କଥାରେ ନାହିଁ, ପରିବେଶରେ । ଅର୍ଜୁନ ବନଗମନ କଲାବେଳେ ସେ କେବଳ ଯୁଧିଷ୍ଠିରଙ୍କ ସହ କଥାବାର୍ତ୍ତା ହୋଇଥିଲେ । ଯୁଧିଷ୍ଠିର ସ୍ନେହ ବଶତଃ ବାରଣ କରୁଥିଲେହେଁ ଅର୍ଜୁନଙ୍କ ଯୁକ୍ତି ଶ୍ରବଣ କରି ନୀରବ ହୋଇ ଯାଇଥିଲେ । କିନ୍ତୁ ସାରଳା ମହାଭାରତରେ ସବୁ ଭାଇ, ଦ୍ରୌପଦୀ ଓ କୁନ୍ତୀ, ଏପରିକି କୁରୁବଂଶର ବରିଷ୍ଠ ଗୁରୁଜନମାନେ ସେଠି ପହଞ୍ଚି ଆଲୋଚନାରେ ଭାଗ ନେଇଛନ୍ତି । କଥାଟିକୁ ସମସ୍ତେ ନିଜ ଦୃଷ୍ଟିରୁ ବିସ୍ତୃତ କରିବାରେ ଲାଗିଛନ୍ତି । ସଂସ୍କୃତ ମହାଭାରତରେ ଦ୍ରୌପଦୀଙ୍କର କୌଣସି ଭୂମିକା ନଥିଲା । ଅଥଚ ଏଥିରେ ସେ ଅର୍ଜୁନଙ୍କ ସହ ଯିବାପାଇଁ ଚାହିଁଥିଲେ । ତାଙ୍କର ଯୁକ୍ତିଥିଲା,

"ଭାରିଯା ସଙ୍ଗେ ଥିଲେ ସେ ପ୍ରାପତ ହୋଅଇ ଧର୍ମ
ନାନା ଅର୍ଥେ ପିତୃକାର୍ଯ୍ୟ ଯେତେ ଶ୍ରେଷ୍ଠକର୍ମ"

କେବଳ ଧର୍ମ ଅର୍ଜନ ନୁହେଁ, ଯେତେବେଳେ ସେ ଘୋଷଣା କଲେ ଯେ ଅର୍ଜୁନହିଁ ତାଙ୍କର ଏକମାତ୍ର ସ୍ୱାମୀ । "ମୁହିତ ଆନମାନଙ୍କୁ ନ ଜାଣଇ ଫାଲ୍‌ଗୁନ

ତୋହର ନିମନ୍ତେ ମୋତେ ଜାତକଲେ ବ୍ୟାସ ମହାମୁନ ।
କେବଳ ସେତିକି ନୁହେଁ, ସେ ପୁଣି କହିଲେ

ମୂଢ଼ଂ ବଲ୍ଲଭ୍ଭି ତୁହି ସେ ମୋର ପ୍ରାଣନାଥ
କ୍ଷଣେ ନଦେଖିଲେ ମୁହିଁ ନ ପାରଇ ସଙ୍ଗାତ ।

(ମଧ୍ୟପର୍ବ ପୃ-୬୧)

ଦ୍ରୌପଦୀ ଚରିତ୍ରର ଏହି ପକ୍ଷପାତିତାକୁ ସାରଳା ଦାସ ସ୍ୱର୍ଗାରୋହଣ ପର୍ବରେ ମହାପାପ ରୂପେ ଘୋଷଣା କରିଥିଲେହେଁ, ଅର୍ଜୁନଙ୍କ ପ୍ରତି ଦ୍ରୌପଦୀଙ୍କର ଅତ୍ୟଧିକ ମମତା ଥିବା ଥିଲା ତାଙ୍କର ଗଭୀର ବିଶ୍ୱାସ ।

ଭରତବେଳେ ପତ୍ନୀପ୍ରେମର ବର୍ଣ୍ଣନା କରି ପରି ସାରଳାଦାସ ମାତା ପ୍ରେମ ପ୍ରଦର୍ଶନ ପାଇଁ ଏହି ପ୍ରସଙ୍ଗକୁ ଗ୍ରହଣ କରିଛନ୍ତି । ଅର୍ଜୁନଙ୍କ ବନ ଗମନ ବାର୍ତ୍ତା ଶ୍ରବଣ କରି ଅର୍ଜୁନଙ୍କୁ କୋଳାଙ୍କର ଲୁବନ୍ତି କୋଇନ୍ତା । ଏହି କାନ୍ଦବା ଭିତରେ ଅର୍ଜୁନଙ୍କ ପ୍ରତି ତାଙ୍କର ସମସ୍ତ ସ୍ନେହ ହୃଦୟ ଭେଦକରି ପ୍ରକାଶିତ ହୁଏ । ସେହି କାନ୍ଦବା ଭିତରେ ଅର୍ଜୁନଙ୍କ ଚରିତ୍ରର ବହୁ ବୈଶିଷ୍ଟ୍ୟ ପ୍ରକାଶିତ ହୁଏ । କୁନ୍ତୀ କହୁଛନ୍ତି—

"ତୁହି ସେ କୁଳମଣ୍ଡଣ ହସ୍ତିନା ଭୁବନକୁ
ଶ୍ରୀଜଗନ୍ନାଥ ଦେବଙ୍କର ତୁ ଅଟୁ କଳାବୃକୁ ।

ମାସେ ବରଷେ ନୁହେଁ ବାରବର୍ଷ ନଦେଖି ଜୀବନ ଧାରଣ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ତୋ ଅପାଦ ମୋ ମୁଣ୍ଡରେ ଦେଇ ତୁ ନଗ୍ରପଦରେ ତୁହି । ଏସବୁ କଥା କହିବା ଭିତରେ ସାଧାରଣ ବିଧବାଙ୍କ ଦୁର୍ଦ୍ଦଶା କଥା ସେ କହିପକାଇଛନ୍ତି । ଓଡ଼ିଆ ସମାଜର ଚିତ୍ରପାଇଁ ସେହି ଉକ୍ତି ଅତ୍ୟନ୍ତ ମୂଲ୍ୟବାନ । କୁନ୍ତୀ କହୁଛନ୍ତି –

"ଭ୍ରଥାର ବହୁନେ ବୃତଇ ସେବଣ ନାରୀ
ଅନେକ ପାତକୀ ସେ ଯେ ହୁଅନ୍ତି ଦୋଷୀ"

ଯଶୋବନ୍ତ ଦାସ ତାଙ୍କ 'ଗୋବିନ୍ଦଚନ୍ଦ୍ର'ରେ ନିଜ ସ୍ତ୍ରୀମାନଙ୍କୁ ଅନୁରୂପ ଉପଦେଶ ପ୍ରଦାନ କରି କହିଥିଲେ,

"ମଦନ ବାଣକୁ ଯେବେ ନ ପାରିବ ସହି ।
ସ୍ୱେଚ୍ଛାରତ କରାଇବ ସପତଣୀ ଦୁଇ ।
ତହିଁକି ଅଙ୍ଗୀକ ଯେବେ ହୋଇବାକ ମନ ।
ଦେଉଳେ ଫମ୍ପଡା ତୁମ୍ଭେ ହୋଇବ ବନ୍ଧନ ।"

ବନବାସ ଯିବା କାଳରେ ଅର୍ଜୁନ ଓ ଦୁର୍ଯୋଧନଙ୍କ ଉକ୍ତ ପ୍ରଯୁକ୍ତ ମଧ୍ୟ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଅର୍ଜୁନ ଦୁର୍ଯୋଧନଙ୍କୁ 'ପଣ୍ଡିତ କୁଳଶ୍ରେଷ୍ଠ' 'ମହାଭାଗ୍ୟବନ୍ତ' 'ଯଦ୍ୟପି ଯୁଧିଷ୍ଠିର ଜ୍ୟେଷ୍ଠ ତୁହି ସମସ୍ତ ପାଳନ୍ତା' ଇତ୍ୟାଦି କହି ପ୍ରଶଂସା କରିଥିଲେହେଁ, ସାବଧାନ କରିଦେବା ପାଇଁ ଭୁଲିନାହାନ୍ତି ।

''ସ୍ୱାମୀ ମୂର୍ଦ୍ଧେ ଯେ ଯାଉଅଛୁ ଘୋର ଗହନ ବନକୁ
ଭାଇଙ୍କ କଥା ଦେବ ଲଗଇଟି ଶୁଳ୍କ ।
ସ୍ୱାମୀ ଯଦ୍ୟପି ଦୋଷ ତୁମ୍ଭଙ୍କୁ କରିବେ ଭୀମସେନ
ମୋହୋର ଆଗିବା ଯାଏ୍ତେ ତାହା ନ ଧରିବ ମନ ।
ଯଦ୍ୟପି ଭାଇଙ୍କି ମୋର କୋପ କରିବ ଅନମିତେ
ସମସ୍ତେ ନାଶ ଗିବଟି ମୋହୋର କୋପନ୍ତେ ।

ମଧ୍ୟ-ପର୍ବ ପୃ-୨୬

ଏହିପରି ବହୁ ପାରିବାରିକ ଚିତ୍ର ମଧ୍ୟଦେଇ ସାରଳାଦାସ ନିଜ ବର୍ଣ୍ଣନାକୁ ଆଗେଇ ନେଇ ଯାଇଥିଲେ ହେଁ ସଂସ୍କୃତ ମହାଭାରତ ପରି ସତ୍ୟ ରକ୍ଷା ଉପରେ ଗୁରୁତ୍ୱ ପ୍ରଦାନ କରିଥିଲେ । ସଂସ୍କୃତ ମହାଭାରତରେ ଅର୍ଜୁନ ଯୁଧିଷ୍ଠିରଙ୍କୁ କହିଥିଲେ, 'ଅତଏବ୍ ଆମ୍ଭେ ସତ୍ୟରୁ ବିଚଳିତ ହେବୁ ନାହିଁ, ସତ୍ୟ ଦ୍ୱାରା ଆମ୍ଭେ ଏହି ଆୟୁଧ ଧାରଣ କରିଅଛୁଁ । ସାରଳା ମହାଭାରତରେ ମଧ୍ୟ ସତ୍ୟର ମହିମା ପ୍ରକାଶ କରି ଅର୍ଜୁନ ଯୁଧିଷ୍ଠିରଙ୍କ ସମ୍ମୁଖରେ କହିଛନ୍ତି—

''ଅର୍ଜୁନ ବୋଲଇ ଶୁଣିବା ଦେବରାୟ
ସତ୍ୟେଣ ସଂସାର ଯେ ହୋଇଛୁ ଉଦୟେ
ସତ ଭଗ୍ନ ପ୍ରାଣୀ ନ ବ୍ରତନ୍ତି କଦାଚତେ
ଆପଣାର କଲା କୃତ ମୁହିଁ ଲଙ୍ଘିବ କେମନ୍ତେ ।

ସାରଳା ଦାସ ପାଣ୍ଡବଙ୍କ ବନ ଗମନ ଦୃଶ୍ୟ ବର୍ଣ୍ଣନା କଲାବେଳେ ରାମାୟଣର ଶ୍ରୀରାମଙ୍କ ବନବାସ ତାଙ୍କର ସ୍ମରଣ ହୋଇଥିବା ମନେ ହୁଏ । ତେବେବି ପତ୍ନୀ ପ୍ରେମ, ମାତାଙ୍କର ଅପତ୍ୟ ସ୍ନେହ, ବିଧବା ସ୍ତ୍ରୀର ଦୁଃଖ, ଭ୍ରାତାମାନଙ୍କର ସ୍ନେହ, ଗୁରୁଜନ ମାନଙ୍କର ଆଶୀର୍ବାଦ, କର୍ତ୍ତବ୍ୟ ବୋଧ, ଜୀବନାଦର୍ଶ ରକ୍ଷା ସମାଜର ନୀତି-ନିୟମ, ଆଚାର-ବ୍ୟବହାର ପ୍ରଭୃତିର ବର୍ଣ୍ଣନା କରିବା ପାଇଁ ସାରଳା ଦାସ ଯେ ଅତ୍ୟନ୍ତ ଉଦ୍‌ଗ୍ରୀବ ଥିଲେ ତାହା ଏହି ପ୍ରସଙ୍ଗରୁ ଜଣାଯାଏ ।

ସଂସ୍କୃତ ମହାଭାରତ ଅନୁଯାୟୀ ଅର୍ଜୁନ ବନ ଗମନ କଲାବେଳେ ତାଙ୍କ ସହ ବହୁ ବିଦ୍ୱାନ ବ୍ରାହ୍ମଣ ମଧ୍ୟ ବନକୁ ଗମନ କରିଥିଲେ । ସାରଳା ଦାସଙ୍କ ମହାଭାରତରେ ଅର୍ଜୁନ ଏକାକୀ ବନକୁ ଯାତ୍ରା କରିଥିଲେ ।

ବନ ପ୍ରବେଶ ପରେ ସଂସ୍କୃତ ମହାଭାରତରେ କଥାବସ୍ତୁର କ୍ରମ ହେଲା—

୧ । ଅର୍ଜୁନ-ଉଲୁପୀ ମିଳନ
୨ । ଚିତ୍ରାଙ୍ଗଦା ସହ ମିଳନ

୩ । ତୀର୍ଥଗ୍ରାହ ବିମୋଚନ
୪ । ଗୋକର୍ଣ୍ଣ ତୀର୍ଥ ପ୍ରସ୍ଥାନ
୫ । ଅର୍ଜ୍ଜୁନଙ୍କ ଦ୍ୱାରକା ଗମନ
୬ । ସୁଭଦ୍ରା ହରଣ ସଙ୍କଳ୍ପ
୭ । ବଳଦେବଙ୍କ କ୍ରୋଧ
୮ । ସୁଭଦ୍ରା ବିବାହ ଓ ଅଭିମନ୍ୟୁ ଜନ୍ମ
୯ । ବ୍ରାହ୍ମଣ ବେଶରେ ଅଗ୍ନିଙ୍କ ଆଗମନ
୧୦ । ଅଗ୍ନିଙ୍କ ପରାଭବ
୧୧ । ଅର୍ଜ୍ଜୁନ-ଅଗ୍ନି ସମ୍ବାଦ
୧୨ । ଅଗ୍ନିଙ୍କ ଗାଣ୍ଡିବାଦ ଅସ୍ତ୍ରଦାନ
୧୩ । ଇନ୍ଦ୍ରଙ୍କ କ୍ରୋଧ
୧୪ । ଦେବଙ୍କସହ କୃଷ୍ଣାର୍ଜ୍ଜୁନଙ୍କ ଯୁଦ୍ଧ
୧୫ । ମୟୂର ରକ୍ଷା
୧୬ । ଖାଣ୍ଡବ ବନ ଦାହ
୧୭ । ଶାର୍ଙ୍ଗବ ଉପାଖ୍ୟାନ
୧୮ । ଜରିତା ବିଳାପ
୧୯ । ଜରିତା ଓ ତାଙ୍କ ପୁତ୍ରାଦିଙ୍କ ସମ୍ବାଦ
୨୦ । ଶାର୍ଙ୍ଗକଙ୍କୁ ଅଗ୍ନିଦେବଙ୍କ ଅଭୟ
୨୧ । ମନ୍ଦପାଳର ସ୍ୱପୁତ୍ରଙ୍କ ସହ ମିଳନ
୨୨ । କୃଷ୍ଣାର୍ଜ୍ଜୁନଙ୍କୁ ଇନ୍ଦ୍ରଙ୍କ ବରଦାନ ।

ସାରଳା ଦାସ ଏହି କ୍ରମକୁ ପରିବର୍ତ୍ତନ କରିଦେଲେ । ତାଙ୍କର ବର୍ଣ୍ଣିତ କଥାର କ୍ରମ ହେଲା, :—

୧ । ଅର୍ଜ୍ଜୁନର ଅକ୍ଷୟ ତୂଣୀର ଓ ପାଶୁପତ ଅସ୍ତ୍ରଲାଭ
୨ । ବିଷ୍ଣୁଙ୍କର ନବଗୁଞ୍ଜର ରୂପ
୩ । ଖାଣ୍ଡବ ବନ ଦହନ
୪ । ଇନ୍ଦ୍ର-ଅର୍ଜ୍ଜୁନ-ଯୁଦ୍ଧ
୫ । ଶୋଷକ ଶରଣ
୬ । ଇନ୍ଦ୍ରଙ୍କ ପରାଜୟ
୭ । ମନ୍ଦପାଳ ଋଷି ଚରିତ
୮ । ଅର୍ଜ୍ଜୁନଙ୍କର ବର ଲାଭ
୯ । ତକ୍ଷକର ଶରଣ ଓ ବୈରାଜ ରାଜା ମିଳନ

୧୦ । ଚିତ୍ରାଙ୍ଗଦା ପରିଣୟ
୧୧ । ଶକ୍ରଧନୁ ଶରଣ
୧୨ । ରୈବତକ ଯଜ୍ଞ ଓ ଗୋସିଂହ ଦୈତ୍ୟ ବଧ
୧୩ । ସୁଭଦ୍ରା ହରଣ
୧୪ । ସୁଭଦ୍ରା ପରିଣୟ

ସାରଳା ଦାସ ଉକ୍ତ ୫ଟି ପ୍ରସଙ୍ଗକୁ ଏଠାରେ ନ ରଖି ବନ ପର୍ବରେ ରଖିଛନ୍ତି । ବ୍ରାହ୍ମଣ ବେଶରେ ଅଗ୍ନିଙ୍କ ଆଗମନକୁ ବନବାସର କାରଣ ରୂପେ ଉଲ୍ଲେଖ କରିଥିବାରୁ ପୁଣି ଥରେ ବର୍ଣ୍ଣନା କରିବା ଆବଶ୍ୟକ ମନେ କରିନାହାନ୍ତି । ପ୍ରଥମେ ଖାଣ୍ଡବ ବନ ଦହନ ଓ ପରେ ସୁଭଦ୍ରା ଚିତ୍ରାଙ୍ଗଦା ପରିଣୟ ଓ ହରଣ ରଖି କଥାବସ୍ତୁ ସଂଯୋଜନାରେ ସେ ନିଜର ମୌଳିକତା ପ୍ରଦର୍ଶନ କରିଛନ୍ତି । ତେବେ ଏସବୁ ପ୍ରସଙ୍ଗକୁ ତିନୋଟି ମୁଖ୍ୟ ବିଭାଗରେ ବିଭକ୍ତ କରି ଆଲୋଚନା କରାଯାଇପାରେ ।

(୧) ଖାଣ୍ଡବ ବନ ଦହନ

(୨) ଚିତ୍ରାଙ୍ଗଦା ପରିଣୟ

(୩) ସୁଭଦ୍ରା ହରଣ

ସଂସ୍କୃତ ମହାଭାରତ ଅନୁଯାୟୀ ପୂର୍ବକାଳରେ ଶ୍ୱେତକି ନାମକ ଜଣେ ରାଜା ଥିଲେ । ସେ ବହୁ ଦକ୍ଷିଣା ପ୍ରଦାନ କରି ଅନେକ ଯଜ୍ଞାଦିର ଅନୁଷ୍ଠାନ କରୁଥିଲେ । ବହୁକାଳ ଯଜ୍ଞ ଅନୁଷ୍ଠାନ କରିବା ଫଳରେ ଋତ୍ୱିକମାନଙ୍କର ଚକ୍ଷୁ ଧୂମ୍ର ଦ୍ୱାରା ପୂର୍ଣ୍ଣ ହେଲା । ସେମାନେ ବିକଳତା ପ୍ରାପ୍ତ ହୋଇ ରାଜାଙ୍କୁ ପରିତ୍ୟାଗ କଲେ । ଅନ୍ୟ ଉପାୟ ନ ଦେଖି ରାଜା ଶିବଙ୍କର ଶରଣାପନ୍ନ ହେଲେ । ଶିବଙ୍କ ଆଦେଶରେ ଦୁର୍ବାସା ଋଷି ଏକ ଯଜ୍ଞ କଲେ । ଅଗ୍ନି ଦେବତା ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ଘୃତ ପାନ କରି ଏତାଦୃଶ ତୃପ୍ତି ଲାଭ କଲେ ଯେ ତାଙ୍କର ଅନ୍ୟ ପ୍ରଦତ୍ତ ହବିଃ ପାନ କରିବା ପାଇଁ ଅଭିଳାଷ ହେଲା ନାହିଁ । ସେ ପାଣ୍ଡୁର ବର୍ଣ୍ଣ ଧାରଣ କଲେ ଓ ନିଷ୍ପ୍ରଭ ହୋଇଗଲେ । ସେ ବ୍ରହ୍ମାଙ୍କ ଶରଣାପନ୍ନ ହୋଇ ବ୍ରହ୍ମାଙ୍କ ଆଦେଶ କ୍ରମେ ଇନ୍ଦ୍ରଙ୍କ ରକ୍ଷିତ ଖାଣ୍ଡବ ବନ ଦହନ କରିବା ପାଇଁ ସାତ ଥର ଚେଷ୍ଟା କରି ବିଫଳ ହେଲେ । ପରିଶେଷରେ ବ୍ରହ୍ମାଙ୍କ ଉପଦେଶରେ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କର ଶରଣ ଗଲେ ।

ସାରଳା ଦାସ ତାଙ୍କ ମହାଭାରତରେ ଏହି କଥାକୁ ଅତ୍ୟନ୍ତ ସଂକ୍ଷେପ କରି ବର୍ଣ୍ଣନା କଲେ । ପୂର୍ବକାଳେ ସତ୍ୟ ଯୁଗରେ ଶ୍ୱେତ ନାମକ ଜଣେ ରାଜା ଥିଲେ । ସେ ଏକ ଦେବ ଯଜ୍ଞ କରିବାକୁ ଇଚ୍ଛା କରି ବ୍ରହ୍ମାଙ୍କ ନିକଟରେ ଜଣେ ଯାଗକ ଦେବା ପାଇଁ ପ୍ରାର୍ଥନା କଲେ । ବ୍ରହ୍ମାଙ୍କ ଆଦେଶରେ ବଶିଷ୍ଠ ହେଲେ ଯାଗକ ଗୁରୁ, ସାଗରକୁ

ସନ୍ତୁଷ୍ଟ କରି ଚଉବଂଶ ବର୍ଷ ପର୍ଯ୍ୟନ୍ତ ଘୃତ ଦାନ କରିବାକୁ ଅନୁରୋଧ କଲେ । ଶରତ ଭୂମ୍ଭ ଆକାରରେ ସ୍ଥିର ଧାର ହୋଇ ଘୃତ ବରଷିଲା । ଅତି ଲୋଭରେ ଅଗ୍ନି ଦେବତା ସେହି ଘୃତ ପାନ କରିବାରୁ ମନ୍ଦାଅଗ୍ନି ପୁଣି ଲୁଦୁବୁଦୁ ବ୍ୟାଧିରେ ପୀଡ଼ିତ ହେଲେ । ପରିଶେଷରେ ଏକ ଦରିଦ୍ର ତଥା ରୋଗୀ ବ୍ରାହ୍ମଣ ବେଶ ଧାରଣ କରି ଅର୍ଜୁନ ଓ ଶ୍ରୀକୃଷ୍ଣ ବସିଥିବା ସ୍ଥାନରେ ପହଞ୍ଚି ଖାଣ୍ଡବ ବନ ଦହନ ପାଇଁ ସେମାନଙ୍କୁ ସତ୍ୟ କରାଇନେଲେ । ସଂସ୍କୃତ ମହା ଭାରତରେ ଥିବା ବ୍ରାହ୍ମଣମାନଙ୍କର ଯଜ୍ଞ କରିବା ପାଇଁ ରାଜା ନ ହେବା, ଶିବଙ୍କର ତପସ୍ୟା ଓ ଦୁର୍ବାସାଙ୍କ ଯାଗନେକ ହେବା ପ୍ରଭୃତି କଥାକୁ ସାରଳା ଦାସ ପରିତ୍ୟାଗ କଲେ ।

ଅର୍ଜୁନଙ୍କୁ ଶକ୍ତିଶାଳୀ କରିବା ପାଇଁ ସଂସ୍କୃତ ମହାଭାରତ ଅନୁଯାୟୀ ଅଗ୍ନି ବରୁଣଙ୍କ ଠାରୁ ଅକ୍ଷୟ ତୂଣୀର, କପିଧ୍ୱଜ ରଥ ଓ ଏକ ଧନୁ ଆଣି ଅର୍ଜୁନଙ୍କୁ ପ୍ରଦାନ କଲେ ତାଙ୍କ ଗାଣ୍ଡୀବ ଧନୁକୁ ମଧ୍ୟ ଶକ୍ତିଶାଳୀ କରି ଦିଆଗଲା । କୃଷ୍ଣ ଓ ଅର୍ଜୁନ ଉଭୟେ ଅଗ୍ନିଙ୍କର ସହାୟତା କରିଥିଲେ ।

ସାରଳା ଦାସଙ୍କ ଅନୁଯାୟୀ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏକାକୀ ଛାଡ଼ି ଦ୍ୱାରକାପୁରକୁ ଫେରିଗଲେ । ଅର୍ଜୁନଙ୍କ ନିକଟରେ ତାଙ୍କର ଯୁକ୍ତି ହେଲା—

"ଜଗନ୍ନାଥେ ବୋଇଲେ ଆମ୍ଭେ ନ ଥାଉଁ ତୋର ଭୁଲେ
ଇନ୍ଦ୍ର ଅପଖ୍ୟାତି ଦେବ ନା ଆମ୍ଭନ୍ତ ଦେଖିଲେ ।
ସେ ବାସବ ଦେବତା ତୋହୋର ତାତ ତୁ ତାହାର ସୁତ
ଭୁମ୍ଭକଇଂ ସହିବ ସେ ଦେବ ପୁରୁହୂତ ।
ଆମ୍ଭଙ୍କୁ ଦେଖିଲେ ସେ କୋପ କରିବ ସୁରପତି
ତୋତେ କିଛି ନ ବୋଲି ଆମ୍ଭନ୍ତ ସେ ଦେବ ଅପଖ୍ୟାତି ।

(ମଧ୍ୟ-ପର୍ବ-ପୃ-୫୯)

ଅମରାଧିନାଥଙ୍କୁ ଜିଣିବାପାଇଁ ଅର୍ଜୁନ ଶସ୍ତ୍ର ମାଗିବାରୁ ଅଗ୍ନି ନାରାୟଣଙ୍କ ଠାରୁ ନାରାୟଣ ଶସ୍ତ୍ର, ନନ୍ଦିଘୋଷ ରଥ, ଗାଣ୍ଡିମ ଧନୁ, ଶଙ୍ଖ, ଶ୍ୱେତ, ଗୋକ୍ଷୀର ଓ କାମପାଳ ଅଶ୍ୱ, ବାସୁକୀଙ୍କ ଠାରୁ ନାଗ ଫାଶ, ଅମୃତା ଶସ୍ତ୍ର, ଅଦିତ୍ୟଙ୍କ ଠାରୁ ସୂର୍ଯ୍ୟ ବ୍ରତେଜ ଚକ୍ର; ଚନ୍ଦ୍ର ଦେବତାଙ୍କ ଠାରୁ ହେମଶର, ଚନ୍ଦ୍ରାବଳୀ ଗଦା; ବ୍ରହ୍ମାଙ୍କ ଠାରୁ ବ୍ରହ୍ମଶକ୍ତି ଓ ବ୍ରହ୍ମ ଶର, ଇନ୍ଦ୍ରଙ୍କ ଠାରୁ ବଜ୍ର ଶକତି, ଇନ୍ଦ୍ରାଶର, ମେଘାଶର, ପୁଷ୍ପକ ବିମାନ; ବିଶ୍ୱଦେବଙ୍କ ଠାରୁ ଅମୋଘ ଶକତି, ବିଦ୍ୟାଧର ପୁରୁଷଙ୍କ ଠାରୁ ନୀଳବାଣ, ଭୃଙ୍ଗବାଣ, ଯମ ଦେବତାଙ୍କ ଠାରୁ କାଳଚକ୍ର କାଳଫାଶି, ପବନ ଦେବତାଙ୍କ ଠାରୁ ପବନା ଶର, ଅଭେଦ୍ୟ ମୃଦୁଗର; ବୃହସ୍ପତିଙ୍କ ଠାରୁ ଜୀବନ୍ୟାସ ଶର; ହିରଣ୍ୟ ଦେବତାଙ୍କ ଠାରୁ ନୀଳଚକ୍ର ଗଦା ଓ ବଜ୍ରାବଳୀ;ସ୍ୱର ମେଘଙ୍କ ଠାରୁ ବଜ୍ରବାଣ ନିର୍ଘାତ

ବଜ୍ରଶର, ଓ ଅଗ୍ନିଶର; କୁବେର ଦେବତାଙ୍କ ଠାରୁ ରତ୍ନାବଳୀ ଗଦା, ଅଜାଙ୍ଗ ଧନୁ, ରତ୍ନକୁଣ୍ଡଳ ରତ୍ନ ମୁକୁଟ, ଶିର ସୀମନ୍ତିନୀ, କର୍ଣ୍ଣୋତ୍ପଳ, ରତ୍ନ ପଦକ, ବାହୁଟି, ତୋଡର, ଜଗଢଳା, ଦେ, ମୁଦ କଙ୍କଣ, ରତ୍ନମାଳା, ରତ୍ନ ମେଖଳା, ରତ୍ନ ନୂପୁର, ଓ ରତ୍ନ ଯୋଗାଡ, ଈଶ୍ୱର ଦେବତାଙ୍କ ଠାରୁ ଶୂଳ ଶକ୍ତି ଶର, ପଶୁପତ, ଅନଙ୍ଗ ଶର, ଖଟ୍ବାଙ୍ଗ ପ୍ରଶୁଧର, ପିନାକ ଓ ଶାରଙ୍ଗ ଧନୁ; ବରୁଣ ଦେବତାଙ୍କଠାରୁ ଶ୍ୱେତ ଅଶ୍ୱ, ଜଳଧର ଚନ୍ଦ, ଜଳ ଫାଶି, ହେମଚନ୍ଦ୍ର ରାଜାଙ୍କ ଠାରୁ ପଟତା ଶନ୍ଦସ; ଦୁର୍ଗାଙ୍କ ଠାରୁ ଅଭେଦ କବଚ, ଆର୍ଦ୍ରାବଳୀ ଧନୁ, କୁଣ୍ଡଳୀ ଚନ୍ଦ୍ରଶର, ଓ ସମ୍ମୋହନ ମୋହନ ବିଦ୍ୟା, ଆଣି ଅର୍ଜୁନଙ୍କୁ ସମର୍ପଣ କଲେ । ସାରଳା ଦାସ ତାଙ୍କ ଚଣ୍ଡୀ ପୁରାଣରେ ଏହିପରି ସବୁ ଦେବତାଙ୍କ ଠାରୁ ଦିବ୍ୟ ଅସ୍ତ୍ରମାନ ଆଣି ଦୁର୍ଗାଙ୍କୁ ଶକ୍ତିଶାଳିନୀ କରିଥିଲେ । ବର୍ଣ୍ଣନା କଲାବେଳେ ସାରଳା ଦାସ ସଂସ୍କୃତ ମହାଭାରତରେ ଥିବା ଅକ୍ଷୟ ତୂଣୀର ଓ କପିଧ୍ୱଜ ରଥ କଥା ଭୁଲିଗଲେ । ଶ୍ୱେତଅଶ୍ୱଙ୍କୁ ଅବରେ ନାରାୟଣଙ୍କ ଠାରୁ ପୁଣି ଅବରେ ବରୁଣ ଦେବତାଙ୍କ ଠାରୁ ମାଗିଲେ । ଅର୍ଜୁନଙ୍କ ନିକଟରେ ଆଗରୁ ଗାଣ୍ଡିବ ଧନୁ ଥିଲେହେଁ ପୁଣି ନାରାୟଣ ଦେବତା ଏହା ପ୍ରଦାନ କଲେ । ଇନ୍ଦ୍ରଙ୍କ ଦରବାରରେ ଏହି ପୁଷ୍ପ ସମ୍ମାନ ହେଉଥିବା ବେଳେ ଇନ୍ଦ୍ର ମଧ୍ୟ ତାଙ୍କର ସବୁ ଶ୍ରେଷ୍ଠ ଅସ୍ତ୍ର ଦେବା ପାଇଁ କୁଣ୍ଠିତ ହେଲେ ନାହିଁ । ଶିବଙ୍କୁ ପରାସ୍ତ କରି ପୂର୍ବରୁ ଅର୍ଜୁନ ପାଶୁପତ ଅସ୍ତ୍ର ପାଇଥିଲେ ହେଁ ଅଗ୍ନି ପୁଣି ଅବରେ ସେହି ଅସ୍ତ୍ରକୁ ଶିବଙ୍କ ଠାରୁ ଆଣି ଅର୍ଜୁନଙ୍କୁ ପ୍ରଦାନ କଲେ । ସଂସ୍କୃତ ମହାଭାରତରେ ଥିବା ଅକ୍ଷୟ ତୂଣୀର ବରୁଣଙ୍କ ପରିବର୍ତ୍ତେ ଦୁର୍ଗାଙ୍କ ଠାରୁ ଅର୍ଜୁନ ପ୍ରାପ୍ତ ହୋଇଥିଲେ । ସାରଳା ଦାସଙ୍କ ବର୍ଣ୍ଣନାରେ ଏସବୁ ଅସଙ୍ଗତ ଥିଲେହେଁ ଅର୍ଜୁନଙ୍କୁ ମହାଭାରତର ସର୍ବୋଚ୍ଚମଲ୍ଲ କରିବା ଉଦ୍ଦେଶ୍ୟରେ ସେ ତାଙ୍କ ଅଗ୍ନିଙ୍କ ସହାୟତାରେ ଦିବ୍ୟଶକ୍ତି ସମ୍ପନ୍ନ ଏକ ଯୋଦ୍ଧାରେ ପରିଣତ କଲେ ।

ଖାଣ୍ଡବ ବନକୁ ଦହନ କରି ଅଗ୍ନି ଶାନ୍ତ ହେଲେ ଏବଂ ଇନ୍ଦ୍ର ଅର୍ଜୁନ କର୍ତ୍ତୃକ ପରାସ୍ତ ହେଲେ । ଏହି ଦହନରୁ ସଂସ୍କୃତ ମହାଭାରତ ଅନୁଯାୟୀ ମୟ ଦାନବ, ଅଶ୍ୱସେନ, ମୟ ଓ ଶାର୍ଙ୍ଗକ ପକ୍ଷୀ ରକ୍ଷା ପାଇଥିଲେ ଅଥଚ ସାରଳା ମହାଭାରତ ଅନୁଯାୟୀ ଶୋଷକ ସର୍ପ, ତାରକ୍ଷୀ ପକ୍ଷୀ ଓ ସାରଙ୍ଗ ପକ୍ଷୀ ରକ୍ଷା ପାଇଥିଲେ ।

ସଂସ୍କୃତ ଓ ଓଡ଼ିଆ ମହାଭାରତରେ ଚିତ୍ରାଙ୍ଗଦା ପରିଣୟ ଦେଖିବାକୁ ମିଳେ । ସଂସ୍କୃତ ମହାଭାରତ ଅନୁଯାୟୀ ଅର୍ଜୁନ ମଣିପୁରେଶ୍ୱରର ଚିତ୍ରବାହନ ନାମ ଧାରୀ ଏକ ମହୀପତିଙ୍କ ନିକଟକୁ ଗମନ କଲେ । ତାଙ୍କର ଚିତ୍ରାଙ୍ଗଦା ନାମ୍ନୀ ଗୋଟିଏ ସୁରୁଦର୍ଶନା ଦୁହିତା ଥିଲେ । ତାଙ୍କୁ ଦେଖି ଅର୍ଜୁନ କାମାସକ୍ତ ହେଲେ ଏବଂ ରାଜାଙ୍କ ନିକଟରେ ନିଜର ପ୍ରୟୋଜନ ଅବଗତ କଲେ । ରାଜା ଏଥିରେ ସମ୍ମତି ପ୍ରଦାନ କରିବାରୁ ଉଭୟଙ୍କର ବିବାହ ସମ୍ପନ୍ନ ହେଲା । ଅର୍ଜୁନ ସେହି ରାଜ୍ୟରେ ତିନି ବର୍ଷ

ରହିଲେ । ସୁତ ଜାତ ହେବା ପରେ ସେଠାରୁ ବିଦାୟ ଗ୍ରହଣ ପୂର୍ବକ ଦେଶ ପରିଭ୍ରମଣାର୍ଥ ବହିର୍ଗତ ହେଲେ ।

ସାରଳା ମହାଭାରତର ଚିତ୍ରାଙ୍ଗଦା ପରିଣୟକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଏଥିରେ ସେ ଚିତ୍ରବାହନ ନୁହନ୍ତି ଚିତ୍ରାଙ୍କୁର । ସେ ଯଶୋବନ୍ତ ନଗରର ରାଜା । ତାଙ୍କ ପୁତ୍ର ଚିତ୍ରଧ୍ୱଜ ବୈରାଟ ଦେଶର ରାଜଦୁହିତା ବିମ୍ବମାଳୀକୁ ବଳାତ୍କାରରେ ଅପହରଣ କରିନେବା ଫଳରେ ଦୁଇଦେଶ ମଧ୍ୟରେ ଯୁଦ୍ଧ ହୁଏ । ଚିତ୍ରାଙ୍କୁର ପରାସ୍ତ ହୋଇ ଅର୍ଜୁନଙ୍କର ଶରଣ ପଶେ । ଅର୍ଜୁନ ବୈରାଟ ନୃପତିଙ୍କୁ ପରାସ୍ତ କରି ଚିତ୍ରଧ୍ୱଜ ସହ ବିମ୍ବମାଳୀଙ୍କର ବିବାହ ସମ୍ପନ୍ନ କରନ୍ତି । ଅର୍ଜୁନଙ୍କୁ ପ୍ରତିଦାନ ସ୍ୱରୂପ, ଚିତ୍ରାଙ୍କୁର ନିଜ ଦୁହିତା ଲମ୍ବିତା ବା ଚିତ୍ରାଙ୍ଗଦାଙ୍କୁ ପ୍ରଦାନ କଲେ ଓ ଅନ୍ୟ ଏକ କନ୍ୟା ଚିତ୍ରପଦାଙ୍କୁ ଯୌତୁକ ଭାବେ ଅର୍ଜୁନଙ୍କୁ ଗ୍ରହଣ କରିବାପାଇଁ ଅନୁରୋଧ କଲେ । ଅର୍ଜୁନ ଏକା ବେଦୀରେ ଦୁଇ କନ୍ୟାଙ୍କୁ ବିବାହ କରିଥିଲେ ।

"ଚିତ୍ରପଦା ନାମେ ତାର ଆରେକ ଦୁଲଣୀ ।
ଯଉତୁକ ଦିଲ୍ ବୋଲି ଶଙ୍ଖେ ଦେଲାପାଣି ।
ଶୁଣ ହୋ ମନୁରାଯ୍ୟେ ଅଗସ୍ତି କହିଲେ ।
ସେହି ବେଦୀରେ ଯେ ଚିତ୍ରପଦାଙ୍କୁ ବିଭା କରାଇଲେ ।

ମଧ୍ୟପର୍ବ-ପୃ -୧୧୦

ଏହି ଦୁଇଟି ବିବାହରୁ ଦୁଇଟି ନୂତନ ତତ୍ତ୍ୱ ଉପଲବ୍ଧ ହୁଏ । ପ୍ରଥମ ହେଲା, ବଳାତ୍କାରରେ କନ୍ୟାର ଅପହରଣ ଓ ଦ୍ୱିତୀୟ ହେଲା ଜଣକ ସହ ବିବାହ ଦେଇ ଅନ୍ୟ କନ୍ୟାକୁ ଯୌତୁକ ଭାବେ ପ୍ରଦାନ କରିବା । ପୁରାଣ ଅନୁରୋଧରେ ସାରଳା ଦାସ ଏପରି କହିଥିବା ହୁଏତ ସମ୍ଭବ । କିନ୍ତୁ ବଙ୍ଗଳା ସାହିତ୍ୟକୁ ନିରୀକ୍ଷଣ କଲେ ପରବର୍ତ୍ତୀ ଯୁଗରେ ଏପରି ପ୍ରଥା ବଙ୍ଗଳାରେ ପ୍ରଚଳିତ ଥିବା ଜଣାଯାଏ । ଗୋବିନ୍ଦଚନ୍ଦ୍ରଙ୍କ ଅଦୁନା ଓ ପଦୁନା ନାମ୍ନୀ ଦୁଇଟି ସ୍ତ୍ରୀ ଥିଲେ । ସେଥିରୁ ଜଣେ ବିବାହିତା ଅନ୍ୟ ଜଣକ ଯୌତୁକ । ବୈଷ୍ଣବ ନିତ୍ୟାନନ୍ଦ ମଧ୍ୟ ବସୁଧାଙ୍କୁ ବିବାହକରି ଜାହ୍ନବୀଙ୍କୁ ଯୌତୁକ ଭାବେ ପାଇଥିଲେ । ଏଥିରୁ ଅନୁମାନ କରାଯାଇପାରେ ଯେ ସେତେବେଳେ ଓଡ଼ିଶା ତଥା ବଙ୍ଗଳାରେ ଏପରି ପ୍ରଥା ପ୍ରଚଳିତ ଥିଲା । କନ୍ୟା ରୂପରେ ମୁଗ୍ଧ ହୋଇ ଅପହରଣ କରିନେବା ପୁରାଣ ଓ କାବ୍ୟର ଏକ ସାଧାରଣ କଥା ।

ଉଭୟ ମହାଭାରତରେ ଥିବା ଅନ୍ୟ ଏକ ବିଶିଷ୍ଟ ଉପାଖ୍ୟାନ ହେଉଛି, ସୁଭଦ୍ରା ହରଣ । ସଂସ୍କୃତ ମହାଭାରତ ଅନୁଯାୟୀ ଅର୍ଜୁନ ସୁଭଦ୍ରାଙ୍କୁ ଦେଖି ମୋହିତ ହେଲେ ଏବଂ ତାଙ୍କୁ ବିବାହ କରିବା ପାଇଁ ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ନିଜ ଇଚ୍ଛା ପ୍ରକାଶ

କଲେ । ଅର୍ଜୁନଙ୍କ ଅନୁରୋଧରେ ଶ୍ରୀକୃଷ୍ଣ ରାଜି ହୋଇ ସ୍ୱୟମ୍ବରକୁ ଅପେକ୍ଷା ନକରି ବଳତ୍କାରରେ ଅପହରଣ କରିବା ପାଇଁ ପ୍ରବର୍ତ୍ତାଇଲେ । ତଦନୁଯାୟୀ ରୈବତକ ପର୍ବତରୁ ଦେବତାମାନଙ୍କର ପୂଜାକରି ସୁଭଦ୍ରା ଦ୍ୱାରକାକୁ ଫେରୁଥିବା ବେଳେ ଅର୍ଜୁନ କାଞ୍ଚନାଙ୍ଗ ରଥରେ ତାଙ୍କୁ ହରଣ କରି ସ୍ୱନଗରକୁ ପ୍ରସ୍ଥାନ କଲେ । ଏହା ଶୁଣି ବଳଦେବ କ୍ରୁଦ୍ଧ ହେଲେ । ପରେ ଶ୍ରୀକୃଷ୍ଣଙ୍କ କଥାରେ ରାଜି ହୋଇ ଅର୍ଜୁନଙ୍କ ସହ ସୁଭଦ୍ରାଙ୍କୁ ବିବାହ କରି ଦେଲେ ।

ସାରଳା ଦାସ ଏ କଥାକୁ ଆମୂଳଚୂଳ ପରିବର୍ତ୍ତନ କରିଦେଲେ ଏବଂ ନୂଆ କଥା ଏଥିରେ ସଂଯୋଜିତ କରି ଏହାକୁ ଅଭିନବ ରୂପରେ ପ୍ରକାଶ କଲେ ।

ସତ୍ୟଭାମାଙ୍କୁ ଗୋସିଂହ ଦୈତ୍ୟ କବଳରୁ ରକ୍ଷା କଲା ପରେ ରୈବତ ପର୍ବତରେ ଅର୍ଜୁନଙ୍କ ପାଇଁ ଏକ ସ୍ୱତନ୍ତ୍ର ଉତ୍ସବ ଆୟୋଜିତ ହୁଏ । ନିଜେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସ୍ନାନ କରାନ୍ତି । ନିଜ କୋଳରେ ବସାଇ ଦ୍ୱାରକାପୁରୀର ନାରୀମାନଙ୍କୁ ବନ୍ଦାପନା କରିବା ପାଇଁ ଆଦେଶ ଦିଅନ୍ତି ।

କୃଷ୍ଣ ଓ ଅର୍ଜୁନ କେବଳ ଯେ ଅଭିନ୍ନାତ୍ମା ତାହା ନୁହେଁ, ସାରଳା ଦାସଙ୍କ ଅନୁଯାୟୀ ସେମାନେ ଦେଖିବାକୁ ଏକା ଭଳି ଦିଶୁ ଥିଲେ । କୃଷ୍ଣଙ୍କ କୋଳରେ ଅର୍ଜୁନ ବସିଥିଲେ ହେଁ, ଦ୍ୱାରକାପୁରର ନାରୀମାନେ କୃଷ୍ଣ ଓ ଅର୍ଜୁନଙ୍କୁ ଅଲଗା କରି ପାରିଲେ ନାହିଁ । ଏକ ସମସ୍ୟା ସୃଷ୍ଟି ହେଲା । ଦ୍ୱାର ଦେଶରେ ଶ୍ରୀକୃଷ୍ଣଙ୍କ ସମସ୍ତ ମନୋହାରୀ ଉଭା ହୋଇ ରହିଲେହେଁ ଚହ୍ନି ନ ପାରିବାରୁ ନିଜ ନିଜ ଭିତରେ ବିଚାର ଆରମ୍ଭ କଲେ ।

"କେ ମାଧବ କେ ଅଟଇ ବୀର ଫାଲଗୁନ
ନରେଣି କନ୍ୟାଏ ଯେ ନୁଆରନ୍ତି ଚହ୍ନି ।

ପ୍ରଥମେ ଜାମ୍ବବତୀ ରହସ୍ୟ ଭେଦ କରିବାକୁ ଚେଷ୍ଟା କରି କହିଲେ, "ଅର୍ଜୁନର କୋଳେ ଟୋ ବସିଛନ୍ତି ଜଗନ୍ନାଥ" । ରୁକ୍ମଣୀଙ୍କ ମନକୁ ଏକଥା ଗଲା ନାହିଁ । ସେ ଯୁକ୍ତି କରି କହିଲେ ।

"ରୁକ୍ମଣୀ ବୋଇଲେ ସଖୀ ଏହୁ ନୋହଇ ସୁଗତ
ଆମ୍ଭର ପୁରକୁ ଅର୍ଜୁନ ଅଟଇ ଅଭ୍ୟାଗତ ।
ଅଭ୍ୟାଗତ କୋଳରେ କି ବସିବେ ଗୃହବାସୀ
ଏହୁ ମୋହର ବିଚାରକୁ ଯେତୁ କଥା ନ ନୁଆସି"
(ମଧ୍ୟ ପର୍ବ—ପୃ:୨୧୦)

ଆବର ବିଶେଷ ଅର୍ଜ୍ଜୁନ ଅଟଇ କନିଷ୍ଠ
କନିଷ୍ଠର କୋଳେ କାହୁଁ ବସିବାକ ଜ୍ୟେଷ୍ଠ ।

କାଳିନ୍ଦୀ ନାମ୍ନୀ ଶ୍ରୀକୃଷ୍ଣଙ୍କ ମନୋରମା ରୁକ୍ମିଣୀଙ୍କ ଯୁକ୍ତିକୁ ଗ୍ରହଣ କରି ପାରିନଥିଲେ । ତାଙ୍କ ମତରେ ଶ୍ରୀକୃଷ୍ଣ ଭଗବାନ ଓ ଅର୍ଜ୍ଜୁନ ଜଣେ ସାଧାରଣ ମନୁଷ୍ୟ ।

"ଅର୍ଜ୍ଜୁନ ଉତପତ୍ତି ଯେ ମନୁଷ୍ୟର ଯୋନି
ଜଗନ୍ନାଥ କୋଳେ କାହିଁ ବସାଇବେ ଫାଲଗୁନି ॥

କନ୍ୟାଙ୍କର ମନ କଥା ଅନ୍ତର୍ଯ୍ୟାମୀ ନାଥ ଜଗନ୍ନାଥଙ୍କ ଅଛପା ରହିଲା ନାହିଁ । ସେ ତେଣୁ ଅର୍ଜ୍ଜୁନଙ୍କ ମସ୍ତକରେ ହାତ ଦେଇ କହିଲେ,

"ଆରେ ମୋର ପ୍ରାଣର ସଂଘାତ ସବ୍ୟସାଚୀ
ବନବାସ ଲଗୁଁ ତୋ କେତେ ଦିନ ଅଛୁ ।

ନାରୀମାନେ ଶ୍ରୀକୃଷ୍ଣଙ୍କ ଠାରୁ କୃଷ୍ଣପ୍ରାଣ ଅର୍ଜ୍ଜୁନଙ୍କୁ ବନ୍ଦାପନା କଲେ । ଏହି ନାରୀମାନଙ୍କ ସହ ସୁଭଦ୍ରା ସେଠାରେ ଉପସ୍ଥିତ ଥିଲେ । ସେ ଯେତେବେଳେ ଦେଖିଲେ—

"ଯେ ସଂସାର ସକଳ ମଧ୍ୟେ ଯାହାକୁ ସର୍ବେ ପୂଜି
ସେ ଅନାଦି ପୁରୁଷ ଜଗନ୍ନାଥ ଆଜି ତୋତେ ଭଜି"
ଯଉକେବେ ଅସଂଖ୍ୟ ବାକୁ ତୋହର ମହିମା
ପରମାନନ୍ଦ ପୁରୁଷ ରୂ ମାନବ ଉତ୍ତମା ।"

ମଧ୍ୟପର୍ବ— ପୃ: ୨୧୧

ଏହିପରି ଜଣେ ପରମାନନ୍ଦ ପୁରୁଷଙ୍କୁ ଦେଖି, କନ୍ୟାକୁମାରୀ କେବଳ ଯେ ଅନେକ ପ୍ରଶଂସା କଲେ ତାହା ନୁହେଁ, ଅର୍ଜ୍ଜୁନର ରୂପ ଦେଖି ମଦନ ଶରେ ପୀଡ଼ିତ ହେଲେ । ପ୍ରଥମ ଦର୍ଶନରେ ହିଁ ପ୍ରେମର ଉତ୍ପତ୍ତି ହେଲା । ଶ୍ରୀକୃଷ୍ଣଙ୍କ ଯୁବତୀମାନେ ବନ୍ଦାପନା ସାରି ଫେରି ଗଲେ । ସୁଭଦ୍ରା କିନ୍ତୁ ଲେଉଟି ଯାଇ ପାରିଲେ ନାହିଁ । ସୁଭଦ୍ରାଙ୍କ ଅବସ୍ଥା ବର୍ଣ୍ଣନା କରି ସାରଳା ଦାସ ଲେଖିଲେ—

"କନ୍ୟାମାନେ ସମସ୍ତେ ଗଲେ ବାହାର ହୋଇ
ପୁଣ ପୁଣ ସୁଭଦ୍ରା ଯେ ଲେଉଟି ଲେଉଟି ଚାହିଁ
ମୋହେଣ କାମିନୀ ଯେ ପଞ୍ଜଳକ ଛଳ
କୋଳ କରି ସତ୍ୟଭାମା ଧଇଲେକ ତୋଳି,
ବୋଲେ ଧରଣି ସେ ଯେ ବୋଲନ୍ତି ଶଚୀବତୀ
ଅର୍ଜ୍ଜୁନଙ୍କୁ ଦେଖି ମାଗୋ କଲୁକ ମନେ ଭ୍ରାନ୍ତି ।

'ମନେ ଭ୍ରାନ୍ତ' ନୁହେଁ ମନ ଭ୍ରାନ୍ତ । ସୁଭଦ୍ରା ଆଉ ନିଜ ଅବସ୍ଥାରରେ ରହିଲେ ନାହିଁ । ଲଜ୍ୟା ଗଲା, ଭୟ ବି ଗଲା । ସେ ଶଙ୍ଖାବତୀଙ୍କ ପାଦତଳେ ପଡ଼ି ଗୋଟିଏ କଥା କହିଲେ, ଅର୍ଜ୍ଜୁନଙ୍କୁ ମୋ ସହିତ ଭେଟାଇ ଦିଅ । ଏ ପ୍ରକାର ଘଟଣା ବେଳେ ସାଧାରଣତଃ ଲୋକେ ଲୋକଲଜ୍ୟାକୁ ଭୟ କରିଥାନ୍ତି । ସତ୍ୟଭାମାଙ୍କ ପ୍ରଥମ ପ୍ରତିକ୍ରିୟା ମଧ୍ୟ ସେହି ଭାବେ ପ୍ରକାଶ ପାଇଥିଲା ।

ସତ୍ୟଭାମାସ୍ତେ ବୋଇଲେ ନୋହିଲା କଛୁ କାର୍ଯ୍ୟ
ତୋହର ସ୍ନେମନ୍ତ ହୋଇଲେ ଉପୁଜିବ ବହୁତ ଲାଜ"
(ମଧ୍ୟପର୍ବ-ପୃ, ୨୧୨)

ପ୍ରକୃତ ପ୍ରେମର ଲକ୍ଷଣ ହେଉଛି, ଲାଜ ଓ ଭୟକୁ ପରିତ୍ୟାଗ କରିବା । ରାଧାଙ୍କ ପ୍ରେମରେ ଏହାହିଁ ଥିଲା ଆଦର୍ଶ । କୃଷ୍ଣଙ୍କ ପ୍ରେମରେ ପଡ଼ି ସେ କୁଳ, ଶୀଳ, ଲାଜ, ପତି ଓ ପରିଜନଙ୍କୁ ତ୍ୟାଗ କରିବାକୁ କୁଣ୍ଠିତା ହୋଇ ନ ଥିଲେ । ସୁଭଦ୍ରା ମଧ୍ୟ କହିଲେ । ଛାଡ଼ିଲି ଲାଜ, ଭୟ ମୁଁ ହୋଇଲି ଦିଗ୍‌ଭ୍ରାନ୍ତ । ଅର୍ଜ୍ଜୁନ ସହ ଭେଟାଇ ନପାରିଲେ ଗ୍ରହକାଳେ ପଶିବି ମୁଁ ଅର୍ଜ୍ଜୁନ ଶବ୍ଦନପୁଣି ।" ସୁଭଦ୍ରାଙ୍କ ତତ୍‌କାଳୀନ ଅବସ୍ଥାକୁ ତୁଳନା କରି ସାରଳା ଦାସ ଯେଉଁ ମନ୍ତବ୍ୟ ଦେଲେ ତାହା ଅତ୍ୟନ୍ତ ପ୍ରଣିଧାନଯୋଗ୍ୟ । ପ୍ରେମରେ ଥରେ ଚଞ୍ଚଳ ହେଲେ ହିତାହିତ ଜ୍ଞାନ ରହେନାହିଁ । ସେତେବେଳେ ସେ ତସ୍କର, ଚୋର ଭିକ୍ଷାରୀ, ମାଗନ୍ତା, ପର ଅନ୍ନ ଲାଳସୀ, ବରଯାତ୍ରୀ, ସ୍ୱାମୀ ଦୁର୍ଭାଗୀ ନାରୀ, ଧନହିନ ପୁରୁଷ, ଅବରଣ ମଦ୍ୟପାନ, ରୋଗୀ ଓ ବାତୁଳ ଜନ ପରି ଲାଜ, ସଙ୍କୋଚ ତ୍ୟାଗ କରେ । ଶେଷରେ ପୁଣି

ପରଦାରା ପ୍ରକୃତ ଯୌବନ ଜନେ ଚଳନ୍ତ
ତାହାଙ୍କର ଆଉ କ ଗୋ ଲଜ୍ଜାକଇଂ ଭୀତ ॥
(ମଧ୍ୟପର୍ବ ପୃ ୨୧୩)

ଏହିସବୁ ଉଦାହରଣରେ ସାରଳା ଦାସ କେବଳ ଲଜ୍ୟା ଉପରେ ଗୁରୁତ୍ୱ ଦେଇଥିଲେ ହେଁ, ପ୍ରେମିକା ପକ୍ଷରେ ଲଜ୍ୟା ପରିତ୍ୟାଗ କରିବା ଯଥେଷ୍ଟ ନୁହେଁ । ତସ୍କର ବା ଚୋର ପରି କୌଶଳୀ ନହେଲେ, ସାହାସ ନ ଥିଲେ ମାଗିବା ଲୋକ ପରି ବିନୟ ଭାବ ନଥିଲେ, ଭିକ୍ଷାରୀ ପରି ନିର୍ବିକାର ଚିତ୍ତ ନ ହେଲେ, ମନରେ ଦୁର୍ଭାଗୀ ନାରୀପରି ହତାଶ ଭାବ ନ ଥିଲେ, ପୁଣି ବରଯାତ୍ରୀଙ୍କ ପରି ବେପରୁଆ ଭାବ ପ୍ରକାଶ ନ ପାଇଲେ, ସେ ପ୍ରେମିକା ହୁଏ ନାହିଁ । ସାରଳା ଦାସ ଏସବୁ ଉଦାହରଣ ମଧ୍ୟରେ ଲଜ୍ୟା ସହିତ ଏହି ସବୁ ଗୁଣର ସମାବେଶ କରି ଶୁଭଦ୍ରାଙ୍କୁ ଏକ ଆଦର୍ଶ ପ୍ରେମପାତ୍ରୀରେ ପରିଣତ କରି ଦେଲେ । ସେଥିପାଇଁ ସେ ପ୍ରଥମେ ସତ୍ୟଭାମାଙ୍କୁ ବିନୟ କଲେ, ନିର୍ଲ୍ଲଜ୍ଜ ନାରୀ ପରି ଗୃହ ଅଧରେ ଅର୍ଜୁନଙ୍କୁ କାକୁତମିନତି କଲେ । ସେଥିରେ ସଫଳ ମନୋରଥ ହୋଇ ନିଜର ବଧୂପ୍ରତିମ

ମାୟାବତୀଙ୍କ ଶରଣାପନ୍ନ ହେଲେ । ଏ ସବୁଥିରେ ଶ୍ରୀକୃଷ୍ଣଙ୍କ ପରାମର୍ଶ ହିଁ କାମ କରୁଥିଲା । ଏ ପଟେ ସୁଭଦ୍ରାଙ୍କୁ ଶଶୀବତୀଙ୍କ ମାଧ୍ୟମରେ ଦକ୍ଷ ଉପାୟ ବତାଇ ତେଣେ ସେପଟେ ଅର୍ଜ୍ଜୁନଙ୍କୁ ମଧ୍ୟ ସୂଚନା ଦେଉଥିଲେ । ବଳଦେବଙ୍କୁ ପଗୃଶ ତାଙ୍କ ମତ ମଧ୍ୟ ବୁଝିଲେ । ବଳଦେବ ଏଥିରେ ନାରାଜ ହେବା ଦେଖି ଗୁପ୍ତ ଭେଟକୁ ଏକମାତ୍ର ଉପାୟ ରୂପେ ଗ୍ରହଣ କଲେ ।

ସାରଳା ଦାସ ଅର୍ଜ୍ଜୁନଙ୍କ ଚରିତ୍ରର ବଳିଷ୍ଠତା ପ୍ରମାଣ କରିବା ପାଇଁ ସବୁବେଳେ ବ୍ୟଗ୍ର ଥିବାରୁ ବିସ୍ତର ସୁଭଦ୍ରାଙ୍କୁ ବିଭିନ୍ନ ପନ୍ଥା ଅବଲମ୍ବନ କରିବାକୁ ହୋଇଥିଲା । ଶେଷକୁ ମାୟାବତୀଙ୍କ ଠାରୁ ତନ୍ତ୍ର, ମନ୍ତ୍ର, ଶିଖି ସେ ଅର୍ଜ୍ଜୁନଙ୍କୁ ବଶ କରିପାରିଥିଲେ ।

ସାରଳା ମହାଭାରତର ସୁଭଦ୍ରା ହରଣ ପ୍ରସଙ୍ଗରେ ଯନ୍ତ୍ର, ତନ୍ତ୍ର, ଓ ମନ୍ତ୍ରର ବିସ୍ତୃତ ବର୍ଣ୍ଣନା ଦେଖିଲେ ମନେ ହୁଏ, ଯେ ସେତେବେଳେ ପୁରୁଷ ବା ନାରୀକୁ ବଶ କରିବା ପାଇଁ ଏ ପ୍ରକାର ବିଦ୍ୟାର ପ୍ରଚଳନ ସମାଜରେ ଖୁବ୍ ଥିଲା । ଆଜି ମଧ୍ୟ ଏ ସବୁରେ ବିଶ୍ୱାସ କରୁଥିବା ଲୋକଙ୍କର ସଂଖ୍ୟା କେବଳ ଓଡ଼ିଶାରେ କାହିଁକି ସମସ୍ତ ଭାରତବର୍ଷରେ ଦେଖିବାକୁ ମିଳିବ । ବହୁଦିନ ଧରି ଏ ସବୁର ଚର୍ଚ୍ଚା ହେବା ଫଳରେ ଏହା ଓଡ଼ିଆ ସଂସ୍କୃତିର ଏକ ବିଶିଷ୍ଟ ଅଙ୍ଗରେ ପରିଣତ ହୋଇ ଯାଇଛି ।

କଥାକୁ ସୁଖକର ଓ ପୂର୍ଣ୍ଣାଙ୍ଗ କରିବା ପାଇଁ ସାରଳା ଦାସ ପ୍ରତିଦ୍ୱନ୍ଦୀ ଭାବେ ଦୁର୍ଯ୍ୟୋଧନ ପ୍ରସଙ୍ଗର ଅବତାରଣା କଲେ । ସଂସ୍କୃତ ମହାଭାରତରେ ଏହା ନ ଥିଲା । ଦୁର୍ଯ୍ୟୋଧନଙ୍କ ଠାରୁ ଅର୍ଜ୍ଜୁନଙ୍କୁ ପୁଣି କୌରବଙ୍କ ଠାରୁ ପାଣ୍ଡବଙ୍କ ଶ୍ରେଷ୍ଠତା ପ୍ରତିପାଦନ କରିବା ଥିଲା, ସାରଳା ଦାସଙ୍କ ଲକ୍ଷ୍ୟ । ସମସ୍ତ ମଧ୍ୟପର୍ବର ପରିକଳ୍ପନା କେବଳ ଏହି ଗୋଟିଏ ଉଦ୍ଦେଶ୍ୟ ପାଇଁ । ସେଥିପାଇଁ ବଳରାମ ସୁଭଦ୍ରାଙ୍କ ଉପଯୁକ୍ତ ବର ରୂପେ ଦୁର୍ଯ୍ୟୋଧନଙ୍କୁ ସ୍ଥିର କଲେ । ବରଣ କରିବାପାଇଁ ଦୂତ ଯାଇ ହସ୍ତିନାପୁରରେ ପହଞ୍ଚିଲେ । ଦୁର୍ଯ୍ୟୋଧନ ମଧ୍ୟ ସେନା ସାମନ୍ତ ସହ ଦ୍ୱାରକା ଅଭିମୁଖରେ ଯାତ୍ରା କଲେ ।

ଏଣେ ଶ୍ରୀକୃଷ୍ଣଙ୍କ ପରାମର୍ଶ କ୍ରମେ ଅର୍ଜ୍ଜୁନ ଓ ସୁଭଦ୍ରାଙ୍କର ମିଳନ ହେଲା । ଏକ ପକ୍ଷରେ ଅର୍ଜ୍ଜୁନ ଓ ଅନ୍ୟ ପକ୍ଷରେ ଦୁର୍ଯ୍ୟୋଧନ, ଏକ ପକ୍ଷରେ ଶ୍ରୀକୃଷ୍ଣଙ୍କ ପୁତ୍ରଗଣ ଓ ଅନ୍ୟ ପକ୍ଷରେ ଯାଦବ ସେନା, ଏକ ପକ୍ଷରେ ପାଣ୍ଡବ ଓ ଅନ୍ୟପକ୍ଷରେ କୁରୁବଳ । ମଜା ସୃଷ୍ଟି କରିବାରେ ସାରଳା ଦାସ ଏକ ଧୂରନ୍ଧର କବି । ସେ ଜାଣି ଶୁଣି ନିଜ ନିଜ ମଧ୍ୟରେ ଭାଇ ଓ ଭାଇ ଭିତରେ କଳହ ସୃଷ୍ଟି କରାଇ ଫଳାଫଳ ପାଇଁ ଅପେକ୍ଷା କଲେ । ଏ ସବୁ ସେନାକୁ ସଂହାର କରି ଅର୍ଜ୍ଜୁନ ହେଲେ ମହାଭାରତର ଅପ୍ରତିଦ୍ୱନ୍ଦୀ ଯୋଦ୍ଧା ।

ସଂସ୍କୃତ ମହାଭାରତରେ ଅଭିମନ୍ୟୁଙ୍କ ଜନ୍ମ କଥାକୁ ଏଡ଼ାଇଦେଲେ ବି ସାରଳା ଦାସ ଏକ ଅବସରର ସନ୍ଧାନରେ ଏହି ସ୍ଥାନକୁ ପରିତ୍ୟାଗ କଲେ ।

ସଂସ୍କୃତ ମହାଭାରତର ଆଦିପର୍ବର କଥାବସ୍ତୁ ଖାଣ୍ଡବ ବନ ଦହନରେ ସମାପ୍ତ ହୁଏ । ସାରଳା ଦାସ ଆଦି ପର୍ବରୁ ଚିତ୍ରାଙ୍ଗଦା ବିବାହ, ସୁଭଦ୍ରା ପରିଣୟ ଓ ଖାଣ୍ଡବ ବନ ଦହନ କଥା ଆଣି ସେ ସବୁକୁ ପରିବର୍ତ୍ତନ କରି ନିଜ ଇଚ୍ଛାନୁଯାୟୀ ସେଥିରେ ବହୁ ପ୍ରସଙ୍ଗ ଯୋଡ଼ି, ଏକ ମଧ୍ୟ ପର୍ବ ସୃଷ୍ଟି କରି, ସେତିକରେ ସନ୍ତୁଷ୍ଟ ହେଲେ ନାହିଁ । କାରଣ ବନ ପର୍ବ ଆରମ୍ଭ କରିବା ପୂର୍ବରୁ ପଞ୍ଚ ପାଣ୍ଡବଙ୍କ ଯୋଗ୍ୟତା, ଯୁଦ୍ଧ କୌଶଳ ଓ ଶ୍ରୀକୃଷ୍ଣଙ୍କ ପରିବାରର ସାମର୍ଥ୍ୟ ପ୍ରକାଶ କରିବା ତାଙ୍କ ଦୃଷ୍ଟିରୁ ଅତ୍ୟନ୍ତ ଆବଶ୍ୟକ ଥିଲା । ସେଥିପାଇଁ ମଧ୍ୟପର୍ବରେ ସେ ବହୁ ନୂଆ କଥା ସୃଷ୍ଟି କଲେ । ସେ ସବୁକୁ ନିମ୍ନୋକ୍ତ ତିନି ଭାଗରେ ବିଭକ୍ତ କରାଯାଇପାରେ ।

(୧) ବିଭିନ୍ନ ଅସୁର ବଧ
(୨) ବହୁ ପ୍ରେମ ବିବାହ
(୩) ଲୌକିକ କଥାର ସମାବେଶ

ବିଭିନ୍ନ ଅସୁର ବଧ ପର୍ଯ୍ୟାୟରେ ଗୋସିଂହ ଦୈତ୍ୟ ବଧ, କୁଣ୍ଡଳୀ ଦୈତ୍ୟ ବଧ, କୋଦାଳସେନ ବଧ, କୁଠାରାସୁର ବଧ, କଲ୍ପାସୁର ବଧ, କୁମ୍ଭକ ଦୈତ୍ୟ ବଧ, ପ୍ରୋଢ଼ାସୁର ବଧ, ମୂଢ଼ାସୁର ବଧ, ଓ ନାରକାସୁର ବଧ ପ୍ରଭୃତିକୁ ଗ୍ରହଣ କରାଯାଇପାରେ ।

ପୁରାଣର ପରମ୍ପରା ଅନୁଯାୟୀ ଶ୍ରୀକୃଷ୍ଣ ଓ ପଞ୍ଚପାଣ୍ଡବଙ୍କ ଅବତାର ଗ୍ରହଣର ମୂଳ ଲକ୍ଷ୍ୟ ହେଲା, ଅସୁର ବଧ । ସାରଳାଦାସ ଏହା ଉପରେ ବହୁ ଗୁରୁତ୍ୱ ପ୍ରଦାନ କରିଛନ୍ତି । ପୃଥିଦେବୀ ଅସୁରଙ୍କ ଭାରରେ ପ୍ରପୀଡ଼ିତ ହେବାରୁ ବିଷ୍ଣୁଙ୍କୁ ଅନୁରୋଧ କଲେ । ତାଙ୍କ ଅନୁରୋଧ ରକ୍ଷା କରି ଶ୍ରୀକୃଷ୍ଣ ନିଜ ସଖାମାନଙ୍କ ସହ ଅବତାର ଗ୍ରହଣ କଲେ । ଗୀତାରେ ମଧ୍ୟ ଏହି ମହାବାଣୀ ପ୍ରଚାରିତ । ଏହାହିଁ ହେଉଛି ସବୁ ପୁରାଣର ମୂଳକଥା । ସାରଳାଦାସ ପୁରାଣର ଏହି ଆଦର୍ଶକୁ ଗ୍ରହଣ କରିଥିଲେହେଁ ପାଣ୍ଡବମାନଙ୍କ ମହିମା ପ୍ରଚାର କରିବା ପାଇଁ ସେ ବିଶେଷ କରି ଏସବୁର ସଂଯୋଜନା କଲେ ।

ଅର୍ଜ୍ଜୁନ ତାଙ୍କ ବନ ଯାତ୍ରା କାଳରେ କିରାତ ବେଶରେ ଶିବଙ୍କୁ ପରାସ୍ତ କଲେ । ଖାଣ୍ଡବ ବନ ଦହନ କାଳରେ ଇନ୍ଦ୍ରଙ୍କୁ ପରାଜିତ କଲେ, ଶ୍ରୀକୃଷ୍ଣ ଓ ବଳରାମଙ୍କୁ ପରାସ୍ତ କରିଥିବା ଗୋସିଂହ ଦୈତ୍ୟକୁ ବଧ କରି ସତ୍ୟଭାମାଙ୍କୁ ଉଦ୍ଧାର କଲେ,

ସୁଭଦ୍ରା ହରଣ ବେଳେ ଯାଦବ ଓ କୁରୁବଂଶର ମିଳିତ ସେନାକୁ ପରାସ୍ତ କଲେ । ଏ ସବୁରେ ସାରଳା ଦାସ ସ୍ପଷ୍ଟ ଭାବରେ ପ୍ରମାଣିତ କଲେ ଯେ ମହାଭାରତର ଅପ୍ରତିଦ୍ୱନ୍ଦୀ ଯୋଦ୍ଧା ହେଲେ ଅର୍ଜ୍ଜୁନ ।

ନକୁଳଙ୍କ ପରାକ୍ରମ ବର୍ଣ୍ଣନା କରିବା ପାଇଁ ସେ କୁଣ୍ଡଳୀ ଦୈତ୍ୟ ଓ ମୁଦ୍ଗାସୁର ପ୍ରସଙ୍ଗର ଅବତାରଣା କଲେ । କୁମ୍ଭକ ଦୈତ୍ୟକୁ ବଧ କରି ଭୀମ ମଧ୍ୟ ଶିବ ଓ ଅନ୍ୟ ଦେବତାଙ୍କ ଠାରୁ ନିଜର ଶ୍ରେଷ୍ଠତ୍ୱ ପ୍ରମାଣିତ କଲେ । ସହଦେବ ମଧ୍ୟ କୋଦାଳ ସେନ ଓ କୁଠାରାସୁରକୁ ବଧ କରି ନିଜର ବୀରତ୍ୱ ପ୍ରଦର୍ଶନ କଲେ । ସାରଳାଦାସଙ୍କର କର୍ଣ୍ଣଙ୍କ ପ୍ରତି ବିଶେଷ ସହାନୁଭୂତି ଥିଲା । ସେ ମଧ୍ୟ ଥିଲେ କୁନ୍ତୀଙ୍କର ପୁତ୍ର । ଅବସ୍ଥା କ୍ରମରେ ସେ କୌରବମାନଙ୍କ ସହ ରହି ପାଣ୍ଡବମାନଙ୍କର ବିରୁଦ୍ଧାଚରଣ କରି ଥିଲେହେଁ, ସେ ଯେ ଜଣେ ଅପ୍ରତିଦ୍ୱନ୍ଦୀ ଯୋଦ୍ଧା ଥିଲେ, ଏହା ପ୍ରମାଣିତ କରିବା ପାଇଁ ସାରଳା ଦାସ କଳାସୁର ବଧ କଥାର ସଂଯୋଜନା କଲେ । ପୁରାଣ ପ୍ରସିଦ୍ଧ ନାରକାସୁର ପ୍ରସଙ୍ଗକୁ ମଧ୍ୟ ପର୍ବରେ ସଂଯୋଜିତ କରି ଶ୍ରୀକୃଷ୍ଣ ଯେ ବିଷ୍ଣୁ ଏବଂ ନର ରୂପ ଧାରଣ କରି ସେ ଦ୍ୱାରକାର ଅଧିପତି ହୋଇଥିଲେହେଁ, ଇଚ୍ଛା କରିବା ମାତ୍ରେ ସେ ଗରୁଡ଼କୁ ବାହନ ରୂପେ ବ୍ୟବହାର କରୁଥିଲେ, ଅଳ୍ପକ୍ଷଣରେ ସ୍ୱର୍ଗ ପୁରକୁ ଯାଇ ପାରୁଥିଲେ, ଦେବତାମାନେ ତାଙ୍କୁ ଦେଖିବାକ୍ଷଣି ବିଷ୍ଣୁଜ୍ଞାନରେ ସମ୍ମାନ ପ୍ରଦର୍ଶନ କରୁଥିଲେ, ଆବଶ୍ୟକ ବେଳେ ସେ ସୁଦର୍ଶନ ଚକ୍ର ଧରି ଅସୁର ବଧ କରୁଥିଲେ । ଏ ସବୁ କହି ସାରଳା ଦାସ ତାଙ୍କ ପାଠକ ବା ଶ୍ରୋତାମାନଙ୍କୁ ଶ୍ରୀକୃଷ୍ଣଙ୍କ ବିଷ୍ଣୁତ୍ୱ ସମ୍ପର୍କରେ ବାରମ୍ବାର ସଚେତନ କରୁଥିଲେ ହେଁ, ମଣିଷଙ୍କ ପରି ଦେବତାଙ୍କ ଭିତରେ ବେଳେ ବେଳେ କଜିଆ ଲାଗୁଥିଲା । ସବୁ ଜାଣିମଧ୍ୟ ଆବଶ୍ୟକ ବେଳେ ଶ୍ରୀକୃଷ୍ଣ ଇନ୍ଦ୍ର ଏପରିକି ଶିବଙ୍କ ସହ ଯୁଦ୍ଧ କରିବାକୁ ପଶ୍ଚାତପଦ ହେଉନଥିଲେ ।

ସାରଳା ଦାସ ତାଙ୍କ ଲେଖନୀ ମୁନରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳର ତାରତମ୍ୟ ଲୋପ କରି ଦେଇଥିଲେ । ଦେବତା ଓ ମଣିଷଙ୍କ ମଧ୍ୟରେ ବାରମ୍ବାର ସଂଘର୍ଷ ହେଉଥିଲା । ଦେବତାମାନେ ହିଁ ବେଶୀ ଥର ପରାଜିତ ହେଉଥିଲେ । ମନୁଷ୍ୟଙ୍କ ସହାୟତା ବିନା ଦେବତ ମାନଙ୍କର ସ୍ୱର୍ଗରେ ରହିବା ସମ୍ଭବ ହୋଇ ପାରୁ ନଥିଲେ । ଏପରିକି ଦେବ କନ୍ୟାମାନେ ସ୍ୱଦେହରେ ଆସି ମର୍ତ୍ତ୍ୟ ଲୋକର ବୀରମାନଙ୍କୁ ବର ରୂପେ ଗ୍ରହଣ କରିଥିଲେ । ସାରଳା ଦାସଙ୍କ ଏ ପ୍ରକାର କଳ୍ପନା ବଳରେ ସ୍ୱର୍ଗ ଓ ପାତାଳ ମର୍ତ୍ତ୍ୟର ଅତି ନିକଟବର୍ତ୍ତୀ ହୋଇଯାଇଥିଲା । ସାଧାରଣ ଶ୍ରୋତା ବା ପାଠକ ସାରଳା ଦାସଙ୍କ ସହ ଏ ସବୁ ବିଷୟରେ କୌଣସି ସନ୍ଦେହ ପ୍ରକାଶ କରୁନଥିଲେ । ପ୍ରକୃତରେ ଦେଖିଲେ ଦେବତାମାନଙ୍କର କୌଣସି ଶକ୍ତି ନଥିଲା, ସେମାନେ କେବଳ ବରଦାତାରେ ପରିଣତ ହୋଇ ଯାଇଥିଲେ ।

ମଣିଷକୁ ବର ବା ଆଶୀର୍ବାଦ ଦେଇ ଅଲୌକିକ ଶକ୍ତି ସମ୍ପନ୍ନ କରିବା ଥିଲା ସେମାନଙ୍କ ମୁଖ୍ୟ କାର୍ଯ୍ୟ । ଦେବତାଙ୍କ ଶକ୍ତି ଉପରେ ଅବିଶ୍ୱାସର ଭାବନା ଭାରତରେ ବୌଦ୍ଧ ଧର୍ମରୁ ହିଁ ଆରମ୍ଭ ହୋଇ ଥିଲା । କେତେକ ଆଲୋଚକଙ୍କ ମତରେ ଦେବତାଙ୍କର ବିଜୟୀ ଯୋଦ୍ଧାମାନଙ୍କ ଉପରେ ପୁଷ୍ପବୃଷ୍ଟି । ଆବଶ୍ୟକବେଳେ ମର୍ତ୍ତ୍ୟର ଅଧିପତିମାନଙ୍କ ସ୍ୱର୍ଗକୁ ନିମନ୍ତ୍ରଣ, ମର୍ତ୍ତ୍ୟ ରାଜାମାନଙ୍କ ସହ ବନ୍ଧୁତ୍ୱ ପ୍ରତିଷ୍ଠା ପ୍ରଭୃତି ଏହାର ପ୍ରମାଣ । ସାରଳା ଦାସ ଦୈବୀ ଶକ୍ତି ଉପରେ ବହୁ ଗୁରୁତ୍ୱ ଦେଇଥିଲେ ହେଁ, ମନୁଷ୍ୟର ଶକ୍ତି ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ସାରଳା ଦାସ ତାଙ୍କ ମହାଭାରତରେ ମଣିଷର ମହାନତାକୁ ହିଁ ବିଶେଷ ଭାବେ ପ୍ରସ୍ତୁତ କରିବାକୁ ଚାହିଁଥିଲେ ।

ସାରଳା ଦାସଙ୍କ ମଧ୍ୟପର୍ବ କେବଳ ଅସୁର ବଧ ପାଇଁ ପରିକଳ୍ପିତ ହୋଇ ନଥିଲା । ଅସୁର ବଧରେ ଥିଲା ବୀର ରସର ପ୍ରବାହ । ବିଭିନ୍ନ ପ୍ରକାର ଅସ୍ତ୍ର ଶସ୍ତ୍ର ରଣ କୌଶଳ, ପ୍ରଦର୍ଶନ କରିବା ପାଇଁ ଏ ସବୁ କଥା ସହାୟକ ହୋଇଥିଲା । କିନ୍ତୁ କେବଳ ବୀର ରସରେ ପୁରାଣ ସୁନ୍ଦର ହୁଏ ନାହିଁ । ଏହା ସହ ପ୍ରେମ ରସର ପରିପାକ ହେବା ଆବଶ୍ୟକ । ସାରଳା ଦାସ ସେଥିପାଇଁ ବହୁ ହରଣ ଓ ପରିଣୟର ସଂଯୋଜନା କଲେ ।

ବିଭିନ୍ନ ହରଣ ମଧ୍ୟରୁ ଉଷା ହରଣ ଅନ୍ୟତମ । ସାରଳା ଦାସ ଏହାକୁ ସଂସ୍କୃତ ମହାଭାରତରୁ ନ ଆଣି ହରିବଂଶରୁ ଆଣିଛନ୍ତି । ସଂସ୍କୃତ ହରିବଂଶରେ ପ୍ରଦ୍ୟୁମ୍ନ-ପ୍ରଭାବତୀ, ପ୍ରଦ୍ୟୁମ୍ନ-ମାୟାବତୀ ଓ ଅନିରୁଦ୍ଧ-ଉଷା ପ୍ରଭୃତି ହରଣ ଓ ପରିଣୟ କଥା ଦେଖିବାକୁ ମିଳେ । ଏହି ସବୁ ବିବାହ ସମ୍ପନ୍ନ କରିବାରେ ନାରଦ ହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି । ମଧ୍ୟ ପର୍ବରେ ସାରଳା ଦାସ ପ୍ରଣୟ, ହରଣ ଓ ପରିଣୟ ପ୍ରଭୃତି ବର୍ଣ୍ଣନା କଲାବେଳେ ପ୍ରତ୍ୟେକ ଉପାଖ୍ୟାନରେ ନାରଦ ହିଁ ମଧ୍ୟସ୍ଥତା କରିଛନ୍ତି । ଏ ସବୁ ଏକଥା ସହଜରେ ଅନୁମାନ କରାଯାଇପାରେ ଯେ ମଧ୍ୟ ପର୍ବର ପରିକଳ୍ପନାରେ ହରିବଂଶ ହିଁ ସାରଳା ଦାସଙ୍କୁ ବିଶେଷ ଭାବେ ସାହାଯ୍ୟ କରିଥିଲା ।

ହରିବଂଶରେ ଥିବା ଉଷା-ଅନିରୁଦ୍ଧ ଉପାଖ୍ୟାନ ନିମ୍ନ କେତେକ ବିଭାଗରେ ବିଭକ୍ତ କରାଯାଇପାରେ ।

(୧) ଉଷାଙ୍କ ବିରହ-କଥା
(୨) ଚିତ୍ରଲେଖାଙ୍କ ଦ୍ୱାରକା ଗମନ
(୩) ବାଣାସୁର ଓ ଅନିରୁଦ୍ଧ ଯୁଦ୍ଧ
(୪) ଶ୍ରୀକୃଷ୍ଣଙ୍କ ଶୋଣିତପୁର ଆଗମନ
(୫) କୃଷ୍ଣଙ୍କ ଅଗ୍ନି ସହ ଯୁଦ୍ଧ
(୬) କୃଷ୍ଣ ଓ ଜ୍ୱର ମଧ୍ୟରେ ଯୁଦ୍ଧ

(୭) ବୈଷ୍ଣବ-ଜ୍ୱର ଓ ଶିବ-ଜ୍ୱର ଯୁଦ୍ଧ

(୮) ଶ୍ରୀକୃଷ୍ଣ ଶିବ-ଯୁଦ୍ଧ

(୯) ହରିହରାତ୍ମକ ସ୍ତୋତ୍ର

(୧୦) ଶ୍ରୀକୃଷ୍ଣ-ବାଣାସୁର ଯୁଦ୍ଧ

(୧୧) ଉଷା-ଅନିରୁଦ୍ଧ ବିବାହ

(୧୨) ଶ୍ରୀକୃଷ୍ଣ ଓ ଅନିରୁଦ୍ଧଙ୍କ ଦ୍ୱାରକା-ଗମନ

ସାରଳା ମହାଭାରତରେ ଥିବା ଉଷା-ଅନିରୁଦ୍ଧ ଉପାଖ୍ୟାନକୁ ନିମ୍ନ ଭାବେ ବିଭକ୍ତ କରାଯାଇ ପାରେ ।

(୧) ଉଷାର ଯୌବନ ପ୍ରାପ୍ତି ଓ ବିରହ ବର୍ଣ୍ଣନା

(୨) ସ୍ୱପ୍ନରେ ନାୟକ ସହ ମିଳନ

(୩) ଚିତ୍ରରେଖା ଦ୍ୱାରା ଚିତ୍ରପଟ୍ଟ ଲେଖନ

(୪) ଚିତ୍ରରେଖାର ଦ୍ୱାରକା ଗମନ

(୫) ମନ୍ତ୍ର ସାହାଯ୍ୟରେ ଅନିରୁଦ୍ଧ ହରଣ

(୬) ଅନିରୁଦ୍ଧ-ଉଷା ମିଳନ

(୭) ଅନିରୁଦ୍ଧ-ବାଣାସୁର ଯୁଦ୍ଧ

(୮) ନାରଦଙ୍କ ଆଗମନ ଓ ଉଷାକୁ ଆଶ୍ୱାସନା ପ୍ରଦାନ

(୯) ଶ୍ରୀକୃଷ୍ଣ ଓ ବାଣାସୁର ଯୁଦ୍ଧ

(୧୦) ବାଣାସୁରର ସହସ୍ର ଭୁଜ ରୁ ଚତୁର୍ଭୁଜ ରହିବା

(୧୧) ଅନିରୁଦ୍ଧ-ଉଷା ପରିଣୟ ।

ଉପାଖ୍ୟାନର ଏହି ବିଭାଜନରୁ ଏ କଥା ସ୍ପଷ୍ଟ ହୁଏ ଯେ ସାରଳା ଦାସ ଉଷା ଅନିରୁଦ୍ଧର ପ୍ରଣୟ, ମିଳନ ଓ ବିବାହ ଉପରେ ଗୁରୁତ୍ୱ ଦେଇଛନ୍ତି । ହରିବଂଶରେ ଥିବା ଶିବ-ଜ୍ୱର ଓ ବୈଷ୍ଣବ-ଜ୍ୱର, ଶ୍ରୀକୃଷ୍ଣ ଓ ଶିବଙ୍କ ଯୁଦ୍ଧ ଇତ୍ୟାଦି କଥାକୁ ପରିତ୍ୟାଗ କରିଛନ୍ତି । ଶିବ ବରଂ ଅତି ବିନମ୍ର ଭାବେ ଶ୍ରୀକୃଷ୍ଣଙ୍କ ନିକଟରେ ବାଣାସୁରର ରକ୍ଷା ପାଇଁ ନିବେଦନ କରିଛନ୍ତି ।

ଯେତେବୋଲ୍ ଶଙ୍କର ଶ୍ରୀକୃଷ୍ଣ ଆଗେ ମିଳି
କହନ୍ତି ପୁରହର ଶୁଣ ହୋ ବନମାଳୀ
ମୋହୋର ବରେ ଯେ ତ ଅଟଇ ଅମର
ତୁମ୍ଭେ ଯେବେ ଯୁଦ୍ଧେ ଶେନ ଧଇଲ ନିଜ କର
ତୋହୋର ମାରନ୍ତେ ଯେବେ ଅସୁର ମରିବ
ଆମ୍ଭନ୍ତ କେମନ୍ତେ ଈଶ୍ୱର କଲୁ ହୋ ବାସୁଦେବ ।

ମଧ୍ୟ-ପର୍ବ-ପୃ-୬୭୧

ଈଶ୍ୱରଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ଶ୍ରୀକୃଷ୍ଣ ବାଣାସୁରକୁ ନିଧନ କଲେ ନାହିଁ । ଅନିରୁଦ୍ଧ ଓ ଉଷାଙ୍କର ବିବାହ ବହୁ ଆଡମ୍ବରରେ ସମାପ୍ତ ହୁଏ ।

ହରିବଂଶର ଏ ଉପାଖ୍ୟାନକୁ ସାରଳାଦାସ ସିଧାସଳଖ ଗ୍ରହଣ କରିଥିବାରୁ ତାଙ୍କର ମୌଳିକତା ପରିଦୃଷ୍ଟ ହୁଏ ନାହିଁ । ସୁରେଖା, ଶୋଭାବତୀ, ଚନ୍ଦ୍ରାବତୀ ଓ ଜାଲେନ୍ଦ୍ର ହରଣ ହୋଇଛି, ଶ୍ରୀକୃଷ୍ଣଙ୍କ ପୁତ୍ର ଓ ନାତିଙ୍କର କଥା । ଏମାନେ ସମସ୍ତେ ନାରଦଙ୍କ ପରାମର୍ଶରେ ସୁନ୍ଦରୀ କନ୍ୟାଙ୍କୁ ହରଣ କରିଛନ୍ତି । କନ୍ୟାଙ୍କ ପିତାଙ୍କ ସହ ଯୁଦ୍ଧ କରି ପରାସ୍ତ ହୋଇଛନ୍ତି । ପରିଶେଷରେ ଶ୍ରୀକୃଷ୍ଣ ସେମାନଙ୍କୁ ଉଦ୍ଧାର କରିଛନ୍ତି । ପ୍ରାୟ ଏହିପ୍ରକାର ଗୀତିରେ କଥା ସବୁ ଗଢ଼ କରିଥିଲେହେଁ ଜାଲେନ୍ଦ୍ର ହରଣ ଓ ଚନ୍ଦ୍ରାବତୀ ହରଣରେ ସାରଳାଦାସ ସମାଜର ଦୁଇଟି ପ୍ରତିଷ୍ଠିତ ପରମ୍ପରାକୁ ଆଲୋଚନା କରିଥିବା ଜଣାଯାଏ ।

ଜାଲେନ୍ଦ୍ରି ହରଣରେ ସମସ୍ୟା ହୋଇଛି, ଯେ ସେତେବେଳେ ଲୋକେ କନ୍ୟା ବା ପୁତ୍ର ଜାତ ହେବା ପରେ ନିଜ ନିଜର ବନ୍ଧୁତ୍ୱ ରକ୍ଷା କରିବା ପାଇଁ ପୁତ୍ର ଓ କନ୍ୟାର ବିବାହକୁ ବାଲ୍ୟକାଳରୁ ସ୍ଥିର କରିଥାନ୍ତି । ପିତା ଓ ମାତାଙ୍କ ଶପଥ ବା ସର୍ତ୍ତୀରୁ ପୁତ୍ର ଓ କନ୍ୟା ନିଜର ଇଚ୍ଛା ବିରୁଦ୍ଧରେ ବିବାହ କରିବା ପାଇଁ ବାଧ୍ୟ ହୋଇଥାନ୍ତି । ସାରଳା ଦାସ କନ୍ୟାର ଇଚ୍ଛା ଉପରେ ଗୁରୁତ୍ୱ ଦେଇଥିଲେ । ଜାଲେନ୍ଦ୍ରି ପାଇଁ ତାର ମାତା ପାଙ୍ଗତୀଙ୍କ ପୁତ୍ରକୁ ବର ରୂପେ ବରଣ କରିଥିଲେ । କିନ୍ତୁ ଜାଲେନ୍ଦ୍ରି ଯୌବନ ପ୍ରାପ୍ତି ପରେ ନାରଦଙ୍କ ମନ୍ତ୍ରଣାରେ ଆନନ୍ଦକନ୍ଦ ସହ ପ୍ରଣୟ ଲିପ୍ତ ହୁଏ । ସେଥିପାଇଁ ଶିବ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଯୁଦ୍ଧ ହୁଏ କିନ୍ତୁ ଏ ସବୁ ସତ୍ତ୍ୱେ କନ୍ୟାର ମତକୁ ଗୁରୁତ୍ୱ ଦେଇ ଶେଷରେ ଜାଲେନ୍ଦ୍ର ଓ ଆନନ୍ଦକନ୍ଦର ବିବାହ ସମ୍ପନ୍ନ ହୁଏ ।

ଚନ୍ଦ୍ରାବତୀ ହରଣରେ ଆଉ ଏକ ସମସ୍ୟା ଆସେ । ସାଧାରଣତଃ କନ୍ୟା ଓ ବର ମଧ୍ୟରେ ବର ବୟସରେ ବଡ ହେବା ଉଚିତ । ସ୍ମୃତିରେ ମଧ୍ୟ ଏହି ବିଧାନ ଦିଆଯାଇଛି । ସାରଳା ଦାସ ଏ ପ୍ରକାର ବ୍ୟବସ୍ଥାକୁ ସବୁବେଳେ ମାନି ନେବା ପାଇଁ ପ୍ରସ୍ତୁତ ନଥିଲେ । ଶାମ୍ବକୁ ଯେତେବେଳେ ନାରଦ ଚନ୍ଦ୍ରାବତୀକୁ ବିବାହ କରିବା ପାଇଁ ପ୍ରସ୍ତାବ ଦେଲେ, ସେତେବେଳେ ଶାମ୍ବର ପ୍ରଥମ ଯୁକ୍ତି ହେଲା ଯେ ସେ କନ୍ୟାଠାରୁ ବୟସରେ ସାନ ।

ଶାମ୍ବ କୁମର ବୋଲଇ କନ୍ୟା କେତେ ବୟସ
ନାରଦେ ବୋଲନ୍ତି କନ୍ୟା ଷୋଳ ଯେ ବରଷ ।
କୁମର ବୋଲଇ ମୋହଠାରୁ ବଡ ବରଷେକ
ସେହା ତୁମ୍ଭେ କିଆଇଛ ନାରଦ ଅବିବେକ ।''

ମଧ୍ୟପର୍ବ—ପୃ ୫୬୫

ନାରଦ ଏହି ଆପତ୍ତିର ଉତ୍ତର ଦେଲେ ଶାସ୍ତ୍ରରୁ ବହୁ ଦୃଷ୍ଟାନ୍ତ ଉଦ୍ଧାର କରି । ସେ କହିଲେ, ବଳରାମଙ୍କ ଠାରୁ ରେବତୀ ବଡ, ଇନ୍ଦ୍ରଙ୍କ ଠାରୁ ଶଚୀ ବଡ, ବ୍ରହ୍ମାଠାରୁ ସାବିତ୍ରୀ ବଡ, ରୁଦ୍ର ଠାରୁ ପାର୍ବତୀ ବଡ଼ କୃଷ୍ଣଙ୍କ ଠାରୁ ଲକ୍ଷ୍ମୀ ବଡ଼ । ନାରଦଙ୍କ କଥାରେ ସତ୍ୟତା ଥିବା ଜାଣି ଶାମ୍ବ ଏ ପ୍ରସ୍ତାବରେ ରାଜି ହୋଇଥିଲେ ।

ଶାମ୍ବର ଦ୍ୱିତୀୟ ଆପତ୍ତି ହେଲା ପିତା ହେଉଛନ୍ତି ପିଣ୍ଡର ଅଧିକାରୀ । ସେ ନ ଜାଣିଲେ ବିବାହ ହେବ କପରି ? ଏହାର ଉତ୍ତର ଦେଇ ନାରଦ କହିଲେ, ପୁରୁଷ ପାଇଁ ନ ସୀ ହେଉଛି ସବୁ । ପିତା ମାତା ଏ ସବୁ ଅବାନ୍ତର । କେବଳ ବାଇ ଓ ବାଉଳମାନେ ପିତା, ମାତା, ବନ୍ଧୁ ଓ କୁଳର ବିଚାର କରିଥାନ୍ତି ।

ନାରଦେ ବୋଇଲେ ଆରେ ବାଇ କି ବାଉଳ
ପୁରୁଷର ସ୍ତ୍ରିୟ ପିନା ଅଟଇ ସେ ମୂଳ ।

ପିତା ନଜାଣି ବହୁ ବିବାହ ହୁଏ ଏବଂ ଏଥିରେ ଦୋଷ ନାହିଁ । ନାରଦ କହିବାକୁ ଆରମ୍ଭ କଲେ,

ପିତା ନ ଜାଣିଣ ବିଭା ଯେ ପଦ୍ମନ
ପିତା ନ ଜାଣିଣ ବିଭା ଚନ୍ଦ୍ରସେନ
ପିତା ନ ଜାଣିଣ ବିଭା ଉଷା କନ୍ୟା
ପିତା ନ ଜାଣି ଯେ ବିଭା ସୁଲୋଚନା ॥

ସାରଳା ଦାସ ସମାଜରେ ଯେଉଁ ପରିବର୍ତ୍ତନ ଚାହିଁ ଥିଲେ, ତାହା ଥିଲା, ପିତାମ ତାଙ୍କ କଥା ଅପେକ୍ଷା କନ୍ୟା ଓ ବରର କଥାକୁ ଗୁରୁତ୍ୱ ଦେବା । ସ୍ୱୟମ୍ବରରେ ଆଉ ନଥିଲା । କିନ୍ତୁ ସେଥିରେ ଥିବା ଇଚ୍ଛାବର ପ୍ରଥାକୁ ସେ ପରିତ୍ୟାଗ କରିବାକୁ ଚାହୁଁ ନଥିଲେ । ସେ ବାରମ୍ବାର କହୁଥିଲେ ଯେ କନ୍ୟା ପିତା ଘରେ ରଜୋବତୀ ହେବା ଅନୁଚିତ । ଅର୍ଥାତ୍ ବାଲ୍ୟକାଳରୁ କନ୍ୟାକୁ ବିବାହ କରିଦେବା ଉଚିତ । କିନ୍ତୁ ଅନ୍ୟ ପକ୍ଷରେ ତାଙ୍କ ପୁରାଣର ସମସ୍ତ ନାୟିକା ଯୌବନ ପ୍ରାପ୍ତି ପରେ, ଗୁପ୍ତ ପ୍ରଣୟରେ ଲିପ୍ତ ହେବା ପରେ ବିବାହ କରିଛନ୍ତି ।

ସାରଳା ଦାସଙ୍କ ମଧ୍ୟ ପର୍ବର ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା—ଲୋକ କଥାର ସମାବେଶ । କେବଳ ମଧ୍ୟ ପର୍ବ ନୁହେଁ, ସବୁ ପର୍ବରେ ପୁରାଣର କଥା କହିବା ବେଳେ, ମଝିରେ ମଝିରେ ସେ ଲୋକ କଥାର ସମାବେଶ କରୁଥିଲେ । ମଧ୍ୟ ପର୍ବରେ ଥିବା କଥା ସବୁ ହେଲା—(୧) ମାଉଁସିଆ ମହାଦେବ । (ଏହି ଉପାଖ୍ୟାନରେ କବି ସାରଳା ଦାସ କୃଷିକାର୍ଯ୍ୟ ବ୍ରାହ୍ମଣ ଅର୍ଥାତ୍ ମାସ୍ତାନ ବା ବଳଭଦ୍ର ଗୋଷ୍ଠୀ ବ୍ରାହ୍ମଣମାନଙ୍କୁ ଶିବଙ୍କ ବରଦାନର ପ୍ରଭାବ ରୂପେ ଗ୍ରହଣ କରିଛନ୍ତି)

(୨) ଅର୍ଜୁନଙ୍କ ଦ୍ୱାରା ରଙ୍ଗା ଆନୟନ । ଏହି କଥାରେ ସାକ୍ଷୀ ଗୋପାଳର ନୂପୁର ଶବ୍ଦ ଶୁଣି ଆସିବା କଥା ସହ ସମାନତା ପରିଦୃଷ୍ଟ ହୁଏ)

ମଧ୍ୟପର୍ବର ପୃ ୪୯

(୩) ଜଳ ଭରଙ୍ଗ ରାଜା ଉପାଖ୍ୟାନ

(୪) ଶୁକ ପକ୍ଷୀ ଲୋଭ କଥା

(୫) ବାଲୀ-ସୁଗ୍ରୀବ ଓ ହନୁମାନ ଜନ୍ମ କଥା । ଏହି କଥା କେବଳ ସାରଳା ମହାଭାରତରେ ଓ ଇଣ୍ଡୋନେସିଆର ରାମାୟଣରେ ମିଳେ । ଓଡ଼ିଶା ଓ ଇଣ୍ଡୋନେସିଆର ଅଜ୍ଞାତ ସମ୍ପର୍କ ଏହା ଦ୍ୱାରା ପ୍ରମାଣିତ ହୋଇଥାଏ ।

(୬) ପାର୍ବତୀ ଓ ଲକ୍ଷ୍ମୀଙ୍କର କଳହ

(୭) କଉନ୍ତ ଉତ୍ସବ ବର୍ଣ୍ଣନା—

ସାରଳା ଦାସ ଓଡ଼ିଶାର କୌଣସି ଏକ ଗାଁରେ ବସି ପୁରାଣ ରଚନା କରୁଥିଲେ । ସେ ନିଜକୁ ମୂର୍ଖ, ଅପଣ୍ଡିତ କହୁଥିଲେ ହେଁ, ସେ ଥିଲେ ପ୍ରକୃତରେ ଜଣେ ଜ୍ଞାନୀ ଓ ବିଚକ୍ଷଣ କଥାକାର । କେତେବେଳେ କେଉଁ କଥା ଯୋଡ଼ିଲେ ଓ କେଉଁ କଥାକୁ ଗୁଡ଼ାଇଲେ କଥା ସୁନ୍ଦର ହୁଏ, ସେ କଥା ସେ ଭଲ ଭାବେ ଜାଣିଥିଲେ । ସମାଜର ଚଳଣିକୁ ରୂପ ଦେବା, ଲୋକଙ୍କୁ ସୁନ୍ଦର ସୁନ୍ଦର ଅର୍ଥାତ ମନ ମତାଣିଆ କଥା କହି ସେଥିରେ ଉପଦେଶ ଦେବାପାଇଁ ସେ ସବୁବେଳେ ସଜାଗ ଥିଲେ । କେବଳ ସେତିକି ନୁହେଁ, ସେ ଆଦୌ ରକ୍ଷଣଶୀଳ ନ ଥିଲେ । ଆବଶ୍ୟକ ଅନୁସାରୀ ସମାଜରେ ପରିବର୍ତ୍ତନର ସେ ବିଶେଷ ପକ୍ଷପାତୀ ଥିଲେ । ଉକ୍ତି-ପ୍ରତ୍ୟୁକ୍ତି ମାଧ୍ୟମରେ କୌତୂହଳ ସୃଷ୍ଟି କରି ପୁଣି ପରିହାସର ପରିବେଶ ପ୍ରସ୍ତୁତ କରି ସେ ତାଙ୍କ ଶ୍ରୋତାମାନଙ୍କ ମନୋରଞ୍ଜନ କରୁଥିଲେ । ଗ୍ରାମ୍ୟ କବି ଥିବା ହେତୁ ଗ୍ରାମରେ ପ୍ରଚଳିତ କଥା, ଉପମା, ଉଦାହରଣ, ନୀତିବଚନ ସବୁକୁ ସେ ଯେପରି, ଯେତେ ପରିମାଣରେ ତାଙ୍କ ପୁରାଣରେ ଲିପିବଦ୍ଧ କରିଛନ୍ତି, ସେ ସବୁ ଅନ୍ୟତ୍ର କ୍ୱଚିତ ଦେଖିବାକୁ ମିଳେ । ଏହି ସବୁ ଦୃଷ୍ଟିରୁ ବିଗ୍ଭର କଲେ ଜଣାଯାଏ, ସାରଳା ଦାସ କେବଳ ଆଦି କବି ନଥିଲେ ସେ ଥିଲେ ମହାକବି । ସାରଳା ଦେବୀଙ୍କ ପୁତ୍ର ହେବାର ସେ ଥିଲେ ଉପଯୁକ୍ତ କବି । ସାରଳା ଦାସଙ୍କ ନାମ ସହ ସାରଳା ଦେବୀଙ୍କ ନାମ ସ୍ମରଣ କରି ଓଡ଼ିଆ ପାଠକ ଚିରଦିନ ଧନ୍ୟ ହେଉ ଏତିକି କାମନା –



# ସଭାପର୍ବ

ଡଃ ପ୍ରଭାସ ଶତ୍ରୁ ।

---

ବ୍ୟାସଦେବକୃତ ମହାଭାରତର ମୁଖ୍ୟ ଘଟଣାବଳୀ ଭିତରେ ଅସଂଖ୍ୟ ନୂତନ ଆଖ୍ୟାୟିକା ଗ୍ରନ୍ଥିତ କରି ଆଦିକବି ସାରଳାଦାସ ନିଜ ଅଲୌକିକ କବି ପ୍ରତିଭାର ପରିଚୟ ଦେବା ସଙ୍ଗେ ସଙ୍ଗେ ନିଜସ୍ୱ ମୌଳିକ ମହାଭାରତଟିଏ ସୃଷ୍ଟି କରି ଯାଇଛନ୍ତି ।

ସଂସ୍କୃତ ମୂଳ ମହାଭାରତରେ ସଭାପର୍ବ ଏବଂ ସାରଳା କୃତ ମହାଭାରତର ସଭାପର୍ବ ଆଲୋଚନା ପ୍ରସଙ୍ଗରେ ଯେ କୌଣସି ସୁଧୀ ପାଠକ ଏହା ହୃଦୟଙ୍ଗମ କରିପାରେ ।

ସଂସ୍କୃତ ମହାଭାରତରେ ଧୃତରାଷ୍ଟ୍ରଙ୍କ ନିମନ୍ତ୍ରଣ ପାଇ ଯୁଧିଷ୍ଠିର, ଚାରିଭାଇ, ମାତା କୁନ୍ତୀ ଏବଂ ପତ୍ନୀ ଦ୍ରୌପଦୀଙ୍କ ସହ ହସ୍ତିନାପୁରକୁ ଗମନ କରିଛନ୍ତି । ମାତ୍ର ସାରଳାଙ୍କ ରଚନାରେ କୁନ୍ତୀ ଏବଂ ଦ୍ରୌପଦୀ ହସ୍ତିନାପୁର ନ ଆସି ବାରୁଣାବନ୍ତ (ଇନ୍ଦ୍ରପ୍ରସ୍ଥ ପ୍ରାସାଦରେ) ପଶାଖେଳର ଫଳାଫଳ ଜାଣିବା ପାଇଁ ଅପେକ୍ଷା କରି ରହିଛନ୍ତି । ଯୁଧିଷ୍ଠିର ସମସ୍ତ ହାରିସାରିବା ପରେ ନିଜର ଭାଇମାନଙ୍କୁ ଓ ନିଜକୁ ମଧ୍ୟ ପଣରଖି ପଶାଖେଳରେ ପରାଜିତ ହେବାପରେ ଦ୍ରୌପଦୀଙ୍କୁ ମଧ୍ୟ ପଶାଖେଳରେ ପଣରଖି ହାରିଛନ୍ତି । ଦୁର୍ଯ୍ୟୋଧନର ଆଦେଶ କ୍ରମେ ଦ୍ରୌପଦୀଙ୍କୁ ସଭାସ୍ଥଳକୁ ଆଣି ଲାଞ୍ଛିତା କରିବାର କଥା । ବେଦବ୍ୟାସଙ୍କ ଅନୁସାରେ ଦ୍ରୌପଦୀଙ୍କୁ ସଭାସ୍ଥଳକୁ ଆଣିବା ପାଇଁ ପ୍ରଥମେ ବିଦୁରଙ୍କୁ ନିର୍ଦ୍ଦେଶ ଦେଲେ ଦୁର୍ଯ୍ୟୋଧନ । ମାତ୍ର ବିଦୁର ଏଥିରେ ସମ୍ମତ ନ ହେବାରୁ ଦ୍ୱାରରକ୍ଷୀ "ପ୍ରାତିକାମୀ"କୁ ପ୍ରେରଣ କରି ଦ୍ରୌପଦୀଙ୍କୁ ସଭାକୁ ଆସିବା ପାଇଁ ନିର୍ଦ୍ଦେଶ ଦେଲେ । ମାତ୍ର ଦ୍ରୌପଦୀ ପ୍ରାତିକାମୀ ସହ ସଭାସ୍ଥଳକୁ ନଆସି ସାହସର ସହ କହିଛନ୍ତି— "ଯାଅ ପ୍ରାତିକାମୀ, ବୁଝି ଆସ ପ୍ରଥମେ ଯୁଧିଷ୍ଠିର ନିଜକୁ ହାରିଛନ୍ତି ନାଁ ମତେ ହାରିଛନ୍ତି । ଏ ପ୍ରଶ୍ନର ଉତ୍ତର ନ ପାଇଲେ ମୁଁ ଏଠାରୁ ତିଳମାତ୍ର ଘୁଞ୍ଚିବି ନାହିଁ ।" ପ୍ରାତିକାମୀ ଫେରିଯାଇ ଯୁଧିଷ୍ଠିରଙ୍କୁ ପ୍ରଶ୍ନ କରିଛି— "ମହାଶୟ ଦେବୀ ଦ୍ରୌପଦୀଙ୍କର ପ୍ରଶ୍ନ, ପ୍ରଥମେ ଆପଣ ନିଜକୁ ହାରିଛନ୍ତି ନା, ତାଙ୍କୁ ହାରିଛନ୍ତି ?" ଯୁଧିଷ୍ଠିର ଲଜ୍ଜା ଓ ଦୁଃଖରେ ତଳକୁ ମୁହଁପୋତି ନୀରବ ରହିଛନ୍ତି ।

ଦୁର୍ଯ୍ୟୋଧନ କହୁଛନ୍ତି—ଯାଅ, ଦ୍ରୌପଦୀକୁ ଏଠାକୁ ନେଇଆସ । ତାଙ୍କର ଯାହା ପଚାରିବାର କଥା ଏହି ସଭା ମଧ୍ୟରେ ସ୍ୱାମୀଙ୍କୁ ପଚାରନ୍ତୁ । ସ୍ୱାମୀ ସ୍ତ୍ରୀଙ୍କର ପ୍ରଶ୍ନୋତ୍ତର ଶୁଣି ଆମେ ଆନନ୍ଦିତ ହେବୁ ।

ପ୍ରାତିକାମୀକୁ ତେବେ ମଧ୍ୟ ଫେରାଇ ଦେଉଛନ୍ତି ଦ୍ରୌପଦୀ ଏବଂ ତାପରେ ଦୁର୍ଯ୍ୟୋଧନର ନିର୍ଦ୍ଦେଶରେ ଦୁଃଶାସନ ହସ୍ତିନାପୁରର ରାଜପ୍ରାସାଦରେ ପ୍ରବେଶ କରି ରଜସ୍ୱଳା, ଏକବସ୍ତ୍ର ପରିହିତା ଦ୍ରୌପଦୀଙ୍କୁ ସଭାସ୍ଥଳକୁ କେଶ ଆକର୍ଷଣ କରି ନେଇ ଯାଇଛି ।

ମାତ୍ର ସାରଳାଙ୍କ ମହାଭାରତ ଅନୁସାରେ ଦୁଃଶାସନହିଁ ପ୍ରଥମରୁ ଇନ୍ଦ୍ରପ୍ରସ୍ଥ ଯାଇଛି ଦ୍ରୌପଦୀଙ୍କୁ ଆଣିବା ପାଇଁ । କୁନ୍ତୀ ତାକୁ ବାଧା ଦେଉଛନ୍ତି । ଦ୍ୱାରରକ୍ଷୀମାନେ ପ୍ରତିରୋଧ କରୁଛନ୍ତି । ଦୁଃଶାସନ ଦ୍ୱାରରକ୍ଷୀମାନଙ୍କୁ ଭର୍ତ୍ସନା କରାଇ ଭିତରକୁ ପାଦ ବଢ଼ାଇଛନ୍ତି । କୁନ୍ତୀଙ୍କ ଅନୁରୋଧ ଏବଂ ଅନୁନୟପୂର୍ଣ୍ଣ ବାକ୍ୟକୁ ଅବଜ୍ଞା କରି ତାଙ୍କୁ ଧକ୍କା ଦେଇ ପକାଇ ଦେଇଛନ୍ତି ଓ ଅନ୍ତପୁରକୁ ପ୍ରବେଶ କରିଛନ୍ତି ।

"ସୁଭଦ୍ରାଙ୍କୁ ନେଇ ଦ୍ରୌପଦୀ ଅନ୍ତଃପୁରରେ ଆତ୍ମଗୋପନ କରନ୍ତୁ ବୋଲି" କୁନ୍ତୀ ନିର୍ଦ୍ଦେଶ ଦେଇଛନ୍ତି ଓ ଦୁଃଶାସନର ଆଗମନ ସମ୍ବାଦ ଦ୍ରୌପଦୀଙ୍କୁ ଜଣାଇ ଦେଇଛନ୍ତି । ଦୁଃଶାସନ ଅନ୍ତପୁରର, ଶୟନ କକ୍ଷରେ ମଧ୍ୟ ପ୍ରବେଶ କରି ଦ୍ରୌପଦୀଙ୍କୁ ଖୋଜିଛି ଏବଂ ପାକଶାଳାରେ ପ୍ରବେଶ କରି ସେଠାରେ ଦ୍ରୌପଦୀଙ୍କୁ ଆତ୍ମଗୋପନ କରିଥିବାର ଅବିଷ୍କାର କରିଛି । ଦ୍ରୌପଦୀଙ୍କୁ ବଳାତ୍କାର କରି ନେଇ ଯିବାକୁ ଅଗ୍ରସର ହୁଅନ୍ତେ ଦ୍ରୌପଦୀ ତାଙ୍କୁ ସ୍ପର୍ଶକରିବା ପାଇଁ ଦୁଃଶାସନକୁ ବାରଣ କରିଛନ୍ତି । ସେ ସେତେବେଳେ ରଜସ୍ୱଳା ଥିବାରୁ ତାଙ୍କୁ ସ୍ପର୍ଶକଲେ ପାପହେବ ବୋଲି ଦୁଃଶାସନକୁ ବୁଝାଇଛନ୍ତି । ନାରୀ ରଜସ୍ୱଳା ହେବାର କେଉଁ ଅବସରରେ ପୁରୁଷ ତାକୁ ସ୍ପର୍ଶକଲେ କ ପାପରେ ଭାଗୀ ହୁଏ ତାହା ସେ ଗୋଟି ଗୋଟିକରି ଦୁଃଶାସନକୁ କହିଛନ୍ତି । ତା ସତ୍ତ୍ୱେ ଦୁଃଶାସନ ତାଙ୍କର ବାରଣ ନମାନି ଦ୍ରୌପଦୀଙ୍କର କେଶ ଧରି ନେଇଯାଇଛି । କୁନ୍ତୀ ଏବଂ ଦ୍ରୌପଦୀ ଉଭୟ ବିଧାତା କୃଷ୍ଣଙ୍କୁ ଏ ବିପଦରେ ସହାୟ ହେବାପାଇଁ ଆକୁଳ ପ୍ରାର୍ଥନା କରୁଥିବା ସତ୍ତ୍ୱେ ଦୁଃଶାସନ ତାଙ୍କୁ ପଞ୍ଚଯୋଜନ ରାସ୍ତା କେଶଧରି ଘୋଷାରି ଘୋଷାରି ହସ୍ତିନାପୁରର ସଭା ନିକଟରେ ପହଞ୍ଚିଛି ।

ଏଠାରେ ବେଦବ୍ୟାସ ଯେଉଁ ପରିସ୍ଥିତି ସୃଷ୍ଟି କରିଛନ୍ତି, ସାରଳା ଦାସ ତାଠାରୁ ଦୂରେଇ ଯାଇଛନ୍ତି । କିନ୍ତୁ ଗୋଟିଏ କଥା ବିଚାର କଲେ ସାରଳାଙ୍କ ଘଟଣା ପ୍ରବାହରେ ସାମାନ୍ୟ ଅସଙ୍ଗତି ପରିଲକ୍ଷିତ ହୁଏ । ପ୍ରଥମ କଥା ପାଣ୍ଡବମାନେ ଅପେକ୍ଷା କରି ବସିଥିବା ଅବସ୍ଥାରେ ଇନ୍ଦ୍ରପ୍ରସ୍ଥ ଯାଇ ସେଠାରେ ଦ୍ୱାରପାଳଙ୍କ ସଙ୍ଗେ

ଯୁକ୍ତ କରି, କୁନ୍ତୀଙ୍କ ସମ୍ମୁଖରେ ଯୁଧିଷ୍ଠିର କାହାପରେ କାହାକୁ ହାରିଲେ ଦୁଃଶାସନ ବର୍ଣ୍ଣନା କରିଛନ୍ତି । କୁନ୍ତୀ ତାଙ୍କୁ ନାନାଦି ଭାବରେ ବୁଝାଇଛନ୍ତି ପୁଣି ଦ୍ରୌପଦୀ ରଜସ୍ୱଳା ନାରୀକୁ ସ୍ପର୍ଶକରିବା କିଭଳି ଅପରାଧ ତାହା ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଏସବୁ ପରେ ପଞ୍ଚଯୋଜନ ଅରଣ୍ୟ ପଥରେ ଦ୍ରୌପଦୀଙ୍କ କେଶଧରି ଘୋଷାରି ଘୋଷାରି ଆଣି ହସ୍ତିନା ପୁରରେ ପହଞ୍ଚିବାର ସମସ୍ତ ବ୍ୟବଧାନ ଅତ୍ୟନ୍ତ ଦୀର୍ଘ ହୋଇଥିବ । ସେ ଦୃଷ୍ଟିରୁ ଦ୍ରୌପଦୀ ପୂର୍ବରୁ ଆସି ହସ୍ତିନାପୁରର ଅନ୍ତଃପୁରରେ ଥିବା ଦେଖି ସମୀଚୀନ ମନେହୁଏ । ଦ୍ରୌପଦୀ ରଜସ୍ୱଳା ଥିଲେ ଏବଂ ରଜସ୍ୱଳା ନାରୀ ପାକଶାଳାରେ ପ୍ରବେଶ କରିବା ନିଷେଧ । ରଜସ୍ୱଳା ନାରୀର ଆଚାର ବିଚାର ଦ୍ରୌପଦୀଙ୍କୁ ଜଣାଥିଲା ଏବଂ ତାହା ସେ କଠୋର ଭାବରେ ପାଳନ କରୁଥିବେ । ସେପରି ସ୍ଥଳେ ଇନ୍ଦ୍ରପ୍ରସ୍ଥ ରାଜପ୍ରାସାଦରେ ଏତେ ସ୍ଥାନ ଥାଉ ଥାଉ ଆମ୍ଭେ ପନ ନିମନ୍ତେ ସେ ରଜସ୍ୱଳା ଅବସ୍ଥାରେ ପାକଶାଳା ପ୍ରବେଶ କରିବା ସଙ୍ଗତ ମନେ ହୁଏନାହିଁ ।

ସାରଳା ଏବଂ ବ୍ୟାସଦେବ, ଉଭୟଙ୍କ ବର୍ଣ୍ଣନାରେ ସଭାସ୍ଥଳରେ ଦ୍ରୌପଦୀ ତେଜସ୍ୱିନୀ ନିର୍ଭୀକା ଏବଂ ଶକ୍ତିମତୀ । ବ୍ୟାସଙ୍କ ଦ୍ରୌପଦୀ ସଭାସ୍ଥଳରେ ପହଞ୍ଚି ଗୁରୁଜନ ଏବଂ ଆର୍ଯ୍ୟାବର୍ତ୍ତର ଅନେକ ବିଦ୍ୱାନ, ପଣ୍ଡିତ ଏବଂ ରାଜା ମହାରାଜାଙ୍କ ସମକ୍ଷରେ ନିଜର ବିଜ୍ଞତା, ଶାସ୍ତ୍ରଜ୍ଞାନ ଏବଂ ନିର୍ଭୀକତା ପ୍ରଦର୍ଶନ କରି ନ୍ୟାୟ ମାଗିଛନ୍ତି । ଧୃତରାଷ୍ଟ୍ରଙ୍କୁ ନିଜର ଅବସ୍ଥା କାନ୍ଦି କାନ୍ଦି ଜଣାଇ ମୁକ୍ତି ଦେବା ପାଇଁ ଯୁଧିଷ୍ଠିର ଦ୍ରୌପଦୀଙ୍କୁ ଇଙ୍ଗିତ ଦେଇଛନ୍ତି । ମାତ୍ର ଦ୍ରୌପଦୀ ସେପରି କରିନାହାନ୍ତି ବରଂ ଅଶ୍ରୁ ସମ୍ବରଣ କରି ପ୍ରଶ୍ନ କରିଛନ୍ତି – ଏହା କଣ ପୁରୁବଂଶର ଧର୍ମ ? ଏହା କଣ ନ୍ୟାୟ ? ହେ-ବିଦ୍ୱାନ ସଜ୍ଜନ ମଣ୍ଡଳୀ, ମୁଁ, ଯୁଧିଷ୍ଠିରଙ୍କର ପତ୍ନୀ,— ପୁରୁବଂଶର କୁଳବଧୂ ଆଜି କୌରବ ମାନଙ୍କର କ୍ରୀତଦାସୀ! ଏଥିରେ ଆପଣମାନେ କଣ ଏକମତ ? ଆପଣମାନେ ବିଜ୍ଞ । ଆପଣଙ୍କ ମତ ମୁଁ ମୁଣ୍ଡପାତି ଗ୍ରହଣ କରିବି" ସମସ୍ତେ ନୀରବ ରହିଛନ୍ତି । ଦ୍ରୌପଦୀଙ୍କ ପ୍ରଶ୍ନର ଉତ୍ତର ମିଳିନାହିଁ । ଭୀଷ୍ମଦେବ ସର୍ବଶେଷରେ କହିଛନ୍ତି—ଦ୍ରୌପଦୀ, ଧର୍ମର ଗତି ବଡ଼ ସୂକ୍ଷ୍ମ । ବେଳେବେଳେ ବିଜ୍ଞ ଲୋକ ମ ଧର୍ମର ଗତି ବୁଝିପାରେ ନାହିଁ । ଯୁଧିଷ୍ଠିର ତମର ସ୍ୱାମୀ ହୋଇ ତମକୁ ପଣ ରଖି ହାରିବା ସ୍ଥଳେ ମୁଁ ଧର୍ମ ସମ୍ବନ୍ଧରେ କିଛି ମତ ଦେବା ପାଇଁ ଇଚ୍ଛା କରୁନାହିଁ । ତୁମେ ନିଜେ ଯୁଧିଷ୍ଠିରଙ୍କୁ ପଚାରି ସନ୍ଦେହ ମୋଚନ କର । କିନ୍ତୁ ଦ୍ରୌପଦୀ ଏଠାରେ ଅଭିମାନରେ କମ୍ପା ସ୍ୱାମୀଙ୍କ ଦୟନୀୟ ଅବସ୍ଥା ହୃଦୟଙ୍ଗମ କରି ଯୁଧିଷ୍ଠିରଙ୍କୁ କିଛି ପଚାରି ନାହାନ୍ତି । ସ୍ୱାମୀଙ୍କର ଏଭଳି ବିଚାରହୀନ କାର୍ଯ୍ୟରେ ସେ ବ୍ୟଗ୍ର ହୋଇଛନ୍ତି ପଛକେ ସଭାସ୍ଥଳରେ ଏତେ ଲୋକଙ୍କ ସମକ୍ଷରେ ସ୍ୱାମୀଙ୍କୁ ନିନ୍ଦା କରିନାହାନ୍ତି । ବରଂ କହିଛନ୍ତି—"ଯୁଧିଷ୍ଠିରଙ୍କ ସରଳତାର ସୁଯୋଗ ନେଇ ତାଙ୍କସହ ଶଠତା ଆଚରଣ କରି ତାଙ୍କୁ ଅନ୍ୟାୟ ଭାବରେ ପରାଜିତ କରାଯାଇଛି । "ପୁଣି ମଧ୍ୟ ସ୍ୱାମୀମାନଙ୍କ ସମ୍ପର୍କରେ ସେ ଦୁଃଶାସନକୁ କହିଛନ୍ତି" ତୋର ସାରସାର

ସହାୟ ଥିଲେ ମଧ୍ୟ ପାଣ୍ଡବମାନେ ଉଦ୍ଧ ବିମନା ହେବେ ତେବେ କେହି ରକ୍ଷା କରି ପାରିବେ ନାହିଁ । ଯୁଧିଷ୍ଠିର ଅତ୍ୟନ୍ତ ଧର୍ମପରାୟଣ । ତାଙ୍କୁ ନିନ୍ଦାକରିବା ମୋ'ପକ୍ଷେ ଯୁକ୍ତିସଙ୍ଗତ ନୁହେଁ ।" ବରଂ ସେ ଦ୍ରୋଣ, ଭୀଷ୍ମ ଏବଂ ଧୃତରାଷ୍ଟ୍ରଙ୍କ ସମେତ ଭରତ ବଂଶର ରାଜାମାନଙ୍କୁ ଧିକ୍କାର କରିଛନ୍ତି । ଦୁଃଶାସନ ତାଙ୍କୁ ବିବସନା କରିବା ବେଳେ ସେ ସ୍ୱାମୀମାନଙ୍କୁ କଟାକ୍ଷରେ କେବଳ ଚାହିଁଛନ୍ତି ମାତ୍ର କିଛି କହି ନାହାନ୍ତି । ବରଂ ପରେ ପାଣ୍ଡବଙ୍କ ବନବାସ ଖବର ପାଇ ଶ୍ରୀକୃଷ୍ଣ···ପାଣ୍ଡବଙ୍କୁ ଭେଟିବା ଆସିବାପରେ ଦ୍ରୌପଦୀ ଦରଦୀବନ୍ଧୁଙ୍କୁ ଦେଖି ହୃଦୟର ସମସ୍ତ ଅଭିମାନ ପ୍ରକାଶକରି ଅଶ୍ରୁମୋଚନ କରି କହିଛନ୍ତି—ହେ କୃଷ୍ଣ ମୋର ପଞ୍ଚସ୍ୱାମୀ ଥାଇ ମଧ୍ୟ ମୁଁ ସ୍ୱାମୀହରା ଅନାଥିନୀଭଳି କୁରୁସଭାରେ ନିର୍ଯ୍ୟାତିତା ହେଲି । ମୋର ବୀର ସ୍ୱାମୀମାନଙ୍କୁ ଧିକ୍ । ମୁଁ ଧୃଷ୍ଟଦ୍ୟୁମ୍ନର ଭଉଣୀ, ପାଣ୍ଡବଙ୍କର ପତ୍ନୀ, ଶ୍ରୀକୃଷ୍ଣଙ୍କର ସଖୀ ହୋଇମଧ୍ୟ ଏପରି ନିର୍ଯ୍ୟାତିତା ହେବା ଦ୍ୱାରା ଜାଣୁଛି ମୋର ଏ ସଂସାରରେ ସ୍ୱାମୀ, ଭାଇ, ସଖା କେହି ନାହାନ୍ତି····ଇତ୍ୟାଦି ଇତ୍ୟାଦି । ନାରୀ ହୃଦୟର ଅଭିମାନର ଏହା ଅତ୍ୟନ୍ତ ସୁଶୀଳ ପରିପ୍ରକାଶ ।

କିନ୍ତୁ ସାରଳାଙ୍କ କୃଷ୍ଣାସେନୀ ବ୍ୟାସଙ୍କ ଯାଜ୍ଞସେନୀଠାରୁ ଏ କ୍ଷେତ୍ରରେ ଅଧିକ ଜ୍ୱାଳାମୁଖୀ ଏବଂ କୋପାନ୍ୱିତା ହୋଇଛନ୍ତି । ଦୁଃଶାସନ ଦ୍ରୌପଦୀଙ୍କର ଅଙ୍ଗବସନ ଆକର୍ଷଣ କରିବାକୁ ଉଦ୍ୟତ ହୁଅନ୍ତେ ଦ୍ରୌପଦୀ କହିଛନ୍ତି—

ଦ୍ରୌପଦୀ ବୋଇଲେ ରହ ହେ ଦୁଃଶାସନ
ମୋର ପଞ୍ଚପତି ବସିଛନ୍ତି ସନ୍ନିଧାନ । ୬୫ ।
ଯେତେବେଳେ ପଦେ ପଦେ ରହ ମୁଁ କହଇ
ରଖିବେକ ନରଖିବେ ଏ ବେପଦୁ ସେହି । ୬୬ ।
ଯୁଧିଷ୍ଠିରଙ୍କୁ ଚାହିଁ ଦେବୀ ଛନ୍ନ ଛନ୍ନ ହୋଇ
କହନ୍ତି କୋବେଦ ତୁମ୍ଭେ‌ପରା ପଢୁଥାଇ···୬୭ ।

(ସୃ— ୪୯୨ ସ:ପ)

ସଭାସ୍ଥଳରେ ଏହିପରି ଗୋଟି ଗୋଟି କରି ସବୁ ସ୍ୱାମୀଙ୍କୁ ନିଜକୁ ରକ୍ଷାକରିବା ପାଇଁ ସେ ଆହ୍ୱାନ କରିଛନ୍ତି ଏବଂ ସେମାନଙ୍କର ଶୌର୍ଯ୍ୟ ଓ ବୀରତ୍ୱ ଧିକ୍କାର କରିଛନ୍ତି । ସେମାନଙ୍କୁ ସଙ୍ଗ ସମକ୍ଷରେ ନାନା ଜିଜ୍ଞାସା ବଚନ କହିଛନ୍ତି । ଦ୍ରୌପଦୀଙ୍କର ବଚନରେ ଯୁଧିଷ୍ଠିର କିଛି ଉତ୍ତର ନଦେଇ ନୀରବ ରହିଛନ୍ତି । ମାତ୍ର ଅନ୍ୟମାନେ ନିଜର ବୀରତ୍ୱ ବଖାଣି ଯୁଧିଷ୍ଠିରଙ୍କୁ ଦୋଷ ଦେଇଛନ୍ତି । ଯୁଧିଷ୍ଠିରଙ୍କ ଆଜ୍ଞା ପାଇଲେ ଦୁଃଶାସନଙ୍କୁ ବିନାଶ କରି ହସ୍ତିନାପୁରକୁ ମଧ୍ୟ ଧ୍ୱଂସ କରିଦିଅନ୍ତେ ବୋଲି ସମସ୍ତେ ଦ୍ରୌପଦୀଙ୍କୁ ଶୁଣାଇଛନ୍ତି । ଏପରିକି ଅର୍ଜୁନ କପଟ ଅଜ୍ଞାତରେ ସିଂହ ଦୈତ୍ୟ କବଳରୁ କୃଷ୍ଣଙ୍କ ପତ୍ନୀ ସତ୍ୟଭାମାଙ୍କୁ ଉଦ୍ଧାର କରିଥିଲେ ତାହା ବର୍ଣ୍ଣନା କରିଛନ୍ତି ।

ଭୀମସେନ କହୁଛନ୍ତି –

ଭୀମବୋଲେ ସଖି ଶୁଣନାହିଁ ମୋର ଦୋଷ
ମୋ ପ୍ରତିଜ୍ଞାଂ ହାଣି ଯୁଧିଷ୍ଠି କଲେ ନାଶ । (୧ ୦୬)
ବାରେ ଗୃହି ଠାରି ଦିଅନ୍ତେ ଯେବେ ସେ ଚକ୍ଷୁ
ବିପତ୍ତି ନା ଦୂର କରନ୍ତୁ ତୋ ଦେଖୁଂ ଦେଖୁଂ । (୧୦୭)
(ଫୁ-୪୯ମ ସ: ପ.)

ସମସ୍ତେ ଯୁଧିଷ୍ଠିରଙ୍କୁ ଦୋଷଦେଇ ନୀରବ ରହିବା ପରେ ଦ୍ରୌପଦୀ ଅତ୍ୟନ୍ତ କ୍ରୋଧାନ୍ୱିତା ହୋଇ କହୁଛନ୍ତି – "ଧିକ ତୁମ୍ଭମାନଙ୍କର ପ୍ରାଣ । ଏତେ ଜଣ ଥାଉ ଥାଉ ଯଦି ଜଣେ କେହି ସ୍ତ୍ରୀକୁ ରକ୍ଷା କରି ପାରିଲ ନାହିଁ ତେବେ ପାଞ୍ଚଜଣ ନିର୍ଲଜ ମୁହଁ ନଇ ରହିଛ କାହିଁକି ? ଯଦି ବଞ୍ଚି ଥାଉ ଥାଉ ସ୍ତ୍ରୀ ଅନାଥିନୀ ହୁଏ ତେବେ ଲକ୍ଷେ ରଜାଙ୍କ ଭିତରୁ ମତେ ବରି ଆଣିଥିଲ କାହିଁକି ? ଦ୍ରୌପଦୀଙ୍କର ଏପରି ବଚନରେ ଭୀମସେନ ପ୍ରଚଣ୍ଡ ମୂର୍ତ୍ତି ଧାରଣ କରି ହୁଙ୍କାର କରିଛନ୍ତି ଓ ଯୁଧିଷ୍ଠିର ଅନୁମତି ଦେଲେ ସମସ୍ତଙ୍କୁ ମାରି ଶେଷ କରିଦେବେ ବୋଲି କୁହାଟ ଛାଡ଼ିଛନ୍ତି । ଭୀମସେନଙ୍କ ଘନ ହୁଂକାର ଶୁଣି ଦୁଃଶାସନ କ୍ରୋଧରେ କହୁଛନ୍ତି – ବର୍ତ୍ତମାନର ପରିସ୍ଥିତି ଭିନ୍ନ । ତେଣୁ ରେ ଭୀମ ତୋର ଏପରି ଗର୍ବ କରିବା ନିର୍ଲଜ୍ଜତା ବ୍ୟତୀତ ଅନ୍ୟ କିଛି ନୁହେଁ । ତୁମେମାନେ ବର୍ତ୍ତମାନ ଆମର ସେବକ । ଯୁଧିଷ୍ଠିର ରଥ ଦଉଡ଼ି ବଳିବେ । ଅର୍ଜ୍ଜୁନ ରୋଷଘରେ ସୂପକାର ହେବେ, ତୁ, ଅନ୍ତଃପୁରରେ ପାଣି ଯୋଗାଇବୁ । ନକୁଳ ସିଂହଦ୍ୱାର ଜଗିବସିବ । ତୁମେ ସ୍ୱୟଂ ପାଣ୍ଡୁଙ୍କ ପୁତ୍ର ହୋଇନଥିବାରୁ ତୁମ୍ଭେମାନେ ଜାରଜ । ତେଣୁ ଆମ୍ଭ ଭାଇ ହେବାର ଯୋଗ୍ୟ ନୁହଁ । ସହଦେବ ପାଣ୍ଡୁପୁତ୍ର ହୋଇଥିବାରୁ ସେ ଆମର ଭାଇ ଏବଂ ସେ କେବଳ ଅର୍ଦ୍ଧେକ ରାଜ୍ୟ ଲାଭ କରିବ ।"

ଏ ଭଳି ଲଜ୍ଜ୍ୟାଜନକ କଥାରେ ଭୀମସେନ ଉତ୍ତ୍ୟକ୍ତ ହୋଇ ଗଦାବୁଲାଇ ଯୁଦ୍ଧ ହୁଙ୍କାର ଦେଇଛନ୍ତି ଏବଂ ଦୁର୍ଯ୍ୟୋଧନ ପ୍ରମାଦ ଗଣି ପଛକୁ ଅନାଇ ଏଭଳି କାର୍ଯ୍ୟରୁ ନିବୃତ୍ତ କରିବା ପାଇଁ ଯୁଧିଷ୍ଠିରଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

ଏପର୍ଯ୍ୟନ୍ତ ଧୀରଲୀଙ୍କ ଯୁଧିଷ୍ଠିର ନୀରବରେ ମୁଣ୍ଡପୋତି ବସିଥିଲେ । ମାତ୍ର ସଭାସ୍ଥଳରେ ଭାଇ ଭାଇ ଭିତରେ ଯୁଦ୍ଧ ହୋଇଯିବାର ଆଶଙ୍କାକରି ସେ ଭୀମଙ୍କୁ ଭର୍ତ୍ସନା କରି ଯୁଦ୍ଧରୁ ନିବୃତ୍ତ କରିଛନ୍ତି । ସେ କହୁଛନ୍ତି – "ରେ ଭୀମ, ଆମେମାନେ ନିଜକୁ ହାରି ସାରିବା ପରେ ଏ ଅବସ୍ଥାରେ ଯୁଦ୍ଧ କରିବା ସଙ୍ଗତ ନୁହେଁ ! ଆମ କର୍ମରେ ବିଧାତା ଯାହା ଲେଖିଛି ତା ଭୋଗ କରିବା ପାଇଁ ହେବ । ତୋର ମୂର୍ଖପଣ ଏଯାବତ୍ ଗଲାନାହିଁ ଏବଂ ସେଥିଯୋଗୁଁ ତୁ ଘରବୁଡ଼ାକାର୍ଯ୍ୟ କରିବାକୁ ଯାଉଛୁ । ଦୁଃଶାସନ ଆମର ଭାଇ ।

ତାକୁ ବନାଶ କଲେ ତା ପର ସ୍ତ୍ରୀଟିଏ ଆଉ ମିଳବ ନାହିଁ । ବରଂ ଭାଇ ଥିଲେ ଦ୍ରୌପଦୀ ପର ଶହେ ସ୍ତ୍ରୀ ମିଳବେ ।

"ଦ୍ରୌପଦୀ ପର ସ୍ତ୍ରୀ ଶତେ ମିଳିବେ ଥିଲେ ଭାଇ
ନଜ ଭାଇ ମଲେ ଆଉ ପାଇବାଟି ନାହିଁ । ୧୦୦ ।

ପୃ:-୪୧୬-ସ. ପ.

ଠିକ୍ ଏହିଠାରେ ବ୍ୟାସଙ୍କ ଯୁଧିଷ୍ଠିର ଏବଂ ସାରଳାଙ୍କ ଯୁଧିଷ୍ଠିରଙ୍କ ମଧ୍ୟରେ ବ୍ୟକ୍ତିତ୍ୱର ବୈଷମ୍ୟ ପରିଲକ୍ଷିତ ହେବା ସଙ୍ଗେ ସଙ୍ଗେ ଯୁଧିଷ୍ଠିରଙ୍କ ଆଖିରେ ଦ୍ରୌପଦୀ ଏକ ମାମୁଲ୍ ସ୍ତ୍ରୀ ରେ ପରିଣତ ହୁଅନ୍ତି । ଶତ ଶତ ସ୍ତ୍ରୀଙ୍କ ମଧ୍ୟରୁ ସେ ଜଣେ । ତାଙ୍କର ଯେପରି କିଛି ବିଶେଷତ୍ୱ ନାହିଁ ଏବଂ ତାଙ୍କର ମୃତ୍ୟୁ ବା ଅପମାନରେ ଯେପରି ପାଣ୍ଡବ ମାନଙ୍କର ବିଶେଷ କିଛି କ୍ଷତି ହେବାର କଥା ନୁହେଁ ।" ଦ୍ରୌପଦୀ ପର ସ୍ତ୍ରୀ ଶତେ ମିଳିବେ" ଏହି ଉକ୍ତି ଦ୍ୱାରା ଦ୍ରୌପଦୀଙ୍କର ସ୍ଥାନ ·ପାଣ୍ଡବମାନଙ୍କ ନିକଟରେ ଅତ୍ୟନ୍ତ ଗୌଣ ହୋଇ ଯାଇଛି ଏବଂ ଦ୍ରୌପଦୀଙ୍କ ଅସାଧାରଣ ପ୍ରତିଭା ଓ ବିରନାରୀର ମର୍ଯ୍ୟାଦା ରସାତଳଗାମୀ ହୋଇଛି । ରାଜ ଅନ୍ତଃପୁରର ଶହ ଶହ ରାଣୀଙ୍କ ଭିତରେ ଦ୍ରୌପଦୀ ଜଣେ ସାଧାରଣ ନାରୀଛଡା ତାଙ୍କର କିଛି ବିଶେଷ ବ୍ୟକ୍ତିତ୍ୱ ଏଠାରେ ପ୍ରତିପାଦିତ ହୁଏ ନାହିଁ । ପ୍ରଥମେ ଯୁଧିଷ୍ଠିର ପଶାଖେଳରେ ପଞ୍ଚାଳୀ ତାଙ୍କର ପତ୍ନୀଙ୍କୁ ପଣରଖି ଖେଳିବା ଦ୍ୱାରା ନିଜ ବିଶ୍ୱସ୍ତହୀନତାର ପରିଚୟ ଦେଇଛନ୍ତି ଏବଂ ପରେ ସ୍ତ୍ରୀଙ୍କ ପ୍ରତି ଏଭଳି ଉକ୍ତି ପ୍ରକଟ କରି ନାରୀପ୍ରତି ତାଙ୍କର ହୀନମନୋଭାବର ପରିଚୟ ଦେଇଛନ୍ତି । ଦୁଃଶାସନକୁ ନିଜର ଭାଇ କହି ତା ପ୍ରତି ସମ୍ବେଦନଶୀଳତା ପ୍ରକାଶ କରି ସେ କ୍ଷମାଶୀଳ ହୃଦୟ ଓ ଉଦାରତାର ପରିଚୟ ଦେଲେ ହେଁ ଏଠାରେ ସାରଳାଙ୍କ ଯୁଧିଷ୍ଠିରଙ୍କ ଠାରୁ ବ୍ୟାସଙ୍କ ଯୁଧିଷ୍ଠିର ଅଧିକ ମର୍ଯ୍ୟାଦା ଦାବୀ କରନ୍ତି । ଅବଶ୍ୟ ସାରଳା ଦାସଙ୍କ ସମୟକୁ ନାରୀର ମର୍ଯ୍ୟାଦା ସମାଜରେ ନିମ୍ନଗାମୀ ହୋଇଥିବାରୁ ତାହା ଯୁଧିଷ୍ଠିରଙ୍କ ଉକ୍ତିରେ ପ୍ରତିଫଳିତ ହୋଇଥିବା ପରି ମନେହୁଏ । ସ୍ୱାମୀମାନଙ୍କୁ ସଭାସ୍ଥଳରେ କଟୂବଚନ କହି ଅପମାନିତ କରିବା ଏପରି ପରିସ୍ଥିତିରେ ସ୍ୱାଭାବିକ ହେଲେ ମଧ୍ୟ ମୂଳ ମହାଭାରତରେ ଦ୍ରୌପଦୀ ସ୍ୱାମୀ ମାନଙ୍କ ପ୍ରଶଂସା କରି ତାଙ୍କ ପ୍ରତି ଅଭିମାନଭରା କଟାକ୍ଷଟିଏ ମାତ୍ର ନିକ୍ଷେପ କରି କୃଷ୍ଣଙ୍କ ସାହାଯ୍ୟ ପାଇଁ ଡାକିବା ଦ୍ୱାରା ବ୍ୟାସଙ୍କ ଦ୍ରୌପଦୀ ସାରଳାଙ୍କ ଦ୍ରୌପଦୀଙ୍କଠାରୁ ଅଧିକ ଜ୍ଞାନବତୀ, ସୁଶୀଳା, ତଥା ଧୈର୍ଯ୍ୟଶୀଳା ତଥା ସମ୍ଭ୍ରାନ୍ତ ମନେ ହୁଅନ୍ତି ।

ବ୍ୟାସଙ୍କ ବର୍ଣ୍ଣନା ଅନୁସାରେ ଶ୍ରୀକୃଷ୍ଣ ଦୂରରେ ଥାଇ ଦ୍ରୌପଦୀଙ୍କର ପ୍ରାର୍ଥନା ଶୁଣିଛନ୍ତି । ଯେତେବେଳେ ପର୍ଯ୍ୟନ୍ତ ଦ୍ରୌପଦୀ ନିଜ ଶକ୍ତି ଉପରେ ଭରସା ରଖି ଗୋଟିଏ ହାତରେ ଲଜ୍ଜା ନିବାରଣ ନିମନ୍ତେ ବସ୍ତ୍ରକୁ ଧରି ରଖି ଅନ୍ୟ ହାତଟି ଶ୍ରୀକୃଷ୍ଣଙ୍କ ଉଦ୍ଦେଶ୍ୟରେ ଉତ୍ତୋଳନ କରି ସାହାଯ୍ୟ ମାଗିଛନ୍ତି ସେ ପର୍ଯ୍ୟନ୍ତ ସାହାଯ୍ୟ ଆସିନାହିଁ ।

କିନ୍ତୁ ଯେତେବେଳେ ଦ୍ରୌପଦୀ ନିଜର ଭୁଲ୍ ବୁଝିପାରି ଭଗବାନଙ୍କ ପାଖରେ ସମ୍ପୂର୍ଣ୍ଣ ଆତ୍ମ ସମର୍ପଣ କରି ଦୁଇହାତ ଉତ୍ତୋଳନ କରି ସାହାଯ୍ୟ ମାଗିଛନ୍ତି ସେତେବେଳେ ବସ୍ତ୍ର ସାହାଯ୍ୟ ଆସିଛି । ଈଶ୍ୱରଙ୍କ ନିକଟରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣର ଏହା ଏକ ଉତ୍ତମ କାର୍ଯ୍ୟକ ଚିତ୍ର ।

ସାରଳାଙ୍କ ସଭାପର୍ବରେ ଦ୍ରୌପଦୀଙ୍କ ଲାଂଛନା କାଳରେ ଶ୍ରୀକୃଷ୍ଣ ଦ୍ୱାରକାପୁରୀରେ ସତ୍ୟଭାମାଙ୍କ ସହ ପଶାଖେଳରେ ରତ ଅଛନ୍ତି । ଦ୍ରୌପଦୀଙ୍କର କାତର ପ୍ରାର୍ଥନା ହସ୍ତିନାରୁ ଦ୍ୱାରକା ଲକ୍ଷେ ଯୋଜନରୁ ଶୁଣି ସତ୍ୟଭାମାଙ୍କ ସହ ସେ ଶୂନ୍ୟମାର୍ଗରେ ଦ୍ରୌପଦୀଙ୍କ ସାମ୍ନାରେ ଉଭା ହୋଇଛନ୍ତି ଓ ଧର୍ମ ଦେବତାଙ୍କୁ ପ୍ରାର୍ଥନା କରିବା ପାଇଁ ଦ୍ରୌପଦୀଙ୍କୁ ପରାମର୍ଶ ଦେଇଛନ୍ତି । ଦ୍ରୌପଦୀଙ୍କର ଧର୍ମ ଦେବତାଙ୍କୁ ପ୍ରାର୍ଥନା ଅତ୍ୟନ୍ତ ଦୀର୍ଘ ଓ ସାରଗର୍ଭକ । ସୂର୍ଯ୍ୟ ଦେବଙ୍କ ଅପାର ମହିମା ଏଥିରେ ପ୍ରକଟ ହୋଇଛି । ଏଠାରେ ସତ୍ୟଭାମା ଦ୍ରୌପଦୀଙ୍କୁ ସାହାଯ୍ୟ କରିବା ପାଇଁ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କରି ନାରୀ ହୃଦୟର ସହଜାତ କରୁଣା ଭାବ ପ୍ରକାଶ କରିଛନ୍ତି । ଭୀଷ୍ମଙ୍କ ସଭା ପର୍ବରେ କର୍ଣ୍ଣ ପାଣ୍ଡବଙ୍କ ପ୍ରତି ଅତ୍ୟନ୍ତ ବିଦ୍ୱେଷ ଭାବାପନ୍ନ ଏବଂ ଦ୍ରୌପଦୀଙ୍କୁ "ବାରନାରୀ ଷଟପଦର ନାୟିକା ଇତ୍ୟାଦି ଭାଷା ପ୍ରୟୋଗ କରି ରୁଚିହୀନତାର ପରିଚୟ ଦେଇଛନ୍ତି ।

ଏହି ପ୍ରସଙ୍ଗରେ ଦ୍ରୌପଦୀଙ୍କର ସ୍ୱୈର ଅବତାରର ବର୍ଣ୍ଣନ ସାରଳା କରିଛନ୍ତି । ସାରଳାଙ୍କ ବର୍ଣ୍ଣନା ଅନୁସାରେ ଶକୁନି କେବଳ କୂଟ ବୁଦ୍ଧି ସମ୍ପନ୍ନ ନୁହନ୍ତି ଅତ୍ୟନ୍ତ ଅଶାଳୀନ ଏବଂ ରୁଚିହୀନ । ଦ୍ରୌପଦୀଙ୍କୁ ସଭାରେ ଦେଖି ସେ କହୁଛନ୍ତି —

ସେ ମୃତ୍ତୀକ ଗୁମ୍ଫଠାକୁ ଆଣ ସ୍ନେହ ଘଡ଼ି<br>
ତା ପିନ୍ଧିଲା ପାଟ ବସନକୁ ପକାଇବା ଫେଡ଼ି ।୨୧ ।

ସତୀ କି ଅସତୀ ସେହି ଜାଣିବା ସାକ୍ଷାତେ<br>
ହସି ଦୁର୍ଯ୍ୟୋଧନ ବୋଲେ ଆଣ ଯା ତୁରିତେ ।। ୨' ।।

ପୃଃ ୮୭

ଦ୍ରୌପଦୀଙ୍କ କୋପାନଳରେ ହସ୍ତିନାପୁରୀ ଧ୍ୱଂସ ହୋଇଯିବା ସାରଳାଙ୍କ ମୌଳିକ କଳ୍ପନା ଏବଂ ଅତୀବ ଚମତ୍କାର । ଅନେକ ବସ୍ତ୍ର ଫେଡ଼ିବା ପରେ ଦ୍ରୌପଦୀଙ୍କୁ ବିବସନା କରି ନପାରି କ୍ଳାନ୍ତ ହୋଇ ପଡ଼ିଥିଲେ ମଧ୍ୟ ଦୁର୍ଯ୍ୟୋଧନର ଚେତନା ଜାଗ୍ରତ ହୋଇନାହିଁ । ଏଥିରେ କୋପିତା ହୋଇ ଦ୍ରୌପଦୀ ହସ୍ତିନା ରାଜ୍ୟକୁ ଦୃଷ୍ଟି ଦିଅନ୍ତେ ସ୍ତନଆଡ଼େ ଧୂ ଧୂ ଅଗ୍ନି ଜଳିଉଠିଲା । ଅନ୍ତଃପୁରରେ ଅଗ୍ନିର ଲେଲିହାନ ଶିଖା କରାଳ ଜିହ୍ୱା ବିସ୍ତାରି ସବୁ ଧ୍ୱଂସ କରିବାର ଦେଖି ଅନ୍ତଃପୁରର ନାରୀମାନେ ଭୟଭୀତା ହୋଇ ସଭାସ୍ଥଳରେ ପହଞ୍ଚିଥିଲେ । ଦୁର୍ଯ୍ୟୋଧନ ପତ୍ନୀ ଭାନୁମତୀ ମଧ୍ୟ ଭୟଭୀତା ହୋଇ

ବିପର୍ଯ୍ୟସ୍ତ କେଶପାଶରେ ସଭାସ୍ଥଳରେ ପହଞ୍ଚିଲେ ଏବଂ ସଭା ସ୍ଥଳରେ ପହଞ୍ଚି ଦ୍ରୌପଦୀଙ୍କ ପାଦ ତଳେ ପଡ଼ି ଆକୁଳ ପ୍ରାର୍ଥନା କରିଛନ୍ତି । ଜନନୀଙ୍କର ଆକୁଳ ପ୍ରାର୍ଥନା ଭିତରେ ଦ୍ରୌପଦୀଙ୍କର ମହନୀୟତା ଓ ଅଗାଧ ଜ୍ଞାନ ଭକ୍ତିର ପରିଚୟ ମିଳେ ।

× × × ×

ସ୍ୱର୍ଗ ଭୂମି ଭୁବନେ ଯାର ଅଶେଷ ମହିମା
ଦଶ ଦୋଷ ଅପରାଧ ମୋହର କରିବାକୁ କ୍ଷମା

ଏପରିକି ଗାନ୍ଧାରୀ, ଧୃତରାଷ୍ଟ୍ର ମଧ୍ୟ ସଭାସ୍ଥଳରେ ଦ୍ରୌପଦୀଙ୍କର ମହିମା ବର୍ଣ୍ଣନ କରି ଅଗ୍ନିକୁ ଶାନ୍ତ କରିବା ପାଇଁ ପ୍ରାର୍ଥନା କରିଛନ୍ତି । ଗୁରୁଜନଙ୍କ ପ୍ରାର୍ଥନା ଦେବୀ ଦ୍ରୌପଦୀଙ୍କୁ ଶାନ୍ତ କରିଛି ଓ ସେ ଅମୃତ ନୟନରେ ହସ୍ତିନାପୁରୀ ନଗରରେ ଚାହିଁବା ମାତ୍ରେ ଅଗ୍ନି ଶାନ୍ତ ହୋଇଛି । ପରସ୍ତ୍ରୀକୁ ସଭାସ୍ଥଳରେ ଅପମାନିତା କରିବା ଫଳସ୍ୱରୂପ ନିଜ ସ୍ତ୍ରୀ ବିପର୍ଯ୍ୟସ୍ତ ବେଶରେ ସଭାସ୍ଥଳରେ ପହଞ୍ଚି ଦ୍ରୌପଦୀଙ୍କର ପଦବନ୍ଦନା କରିବା ସମାଜ ପାଇଁ ଏକ ଚମତ୍କାର ଚେତାବନୀ । ଅବଶ୍ୟ ଦେବୀ ଦ୍ରୌପଦୀ କୋପାନଳରେ ଦୁଃଶାସନ, ଶକୁନି, ଇତ୍ୟାଦିଙ୍କୁ ପୋଡ଼ିଦେଇଥିଲେ ତାଙ୍କର ବିପଦ କଟିଯାଇ ଥାନ୍ତା । ପୃଥିବୀ ଇତିହାସରେ ନାରୀନିର୍ଯ୍ୟାତନାର ଏତେବଡ଼ କଳାଦାଗ ରହି ନଥାନ୍ତା । ଏ ପ୍ରସଙ୍ଗରେ ଭୀଷ୍ମ କହିଛନ୍ତି—

ସେ ମହାସତୀ ଯେବେ ଚାହାନ୍ତେ ସଭାକୁ
ସମସ୍ତେ ହେବେ ଦହନ ହୋନ୍ତେ ଦେଖନ୍ତେ କାହାକୁ

ନିଜ କୋପ ଦୃଷ୍ଟିରେ ଦ୍ରୌପଦୀ ସଭାସ୍ଥଳ ସମେତ ପାପୀମାନଙ୍କୁ ଜାଳିପୋଡ଼ି ଧ୍ୱଂସ କରିଦେବା ସ୍ୱାଭାବିକ ହୋଇଥାନ୍ତା । ମାତ୍ର ତାଙ୍କର ପତିସ୍ୱାମୀ ସେଠାରେ ଉପସ୍ଥିତ ଥିବାରୁ ହୁଏତ ସେ ବଞ୍ଚିତାର ସହ ହସ୍ତିନାପୁରୀ ଅନ୍ତଃପୁର ନଗରରେ ନିଜର ଦୃଷ୍ଟିପାତ କରିଛନ୍ତି ।

ଧୃତରାଷ୍ଟ୍ର ଦ୍ରୌପଦୀଙ୍କର ଅଲୌକିକ ଭକ୍ତିର ମହିମାରେ ଚମତ୍କୃତ ହୋଇ ତାଙ୍କୁ ସଭାସ୍ଥଳରେ ବରଦାନ କରିବା ପାଇଁ ଇଚ୍ଛା ପ୍ରକାଶ କରିଛନ୍ତି । ଉଭୟ ମହାଭାରତରେ ଏହା ବର୍ଣ୍ଣିତ । ମାତ୍ର ଦ୍ରୌପଦୀଙ୍କ ବର ଯାଚନାର ସ୍ୱରୂପରେ ଉଭୟ ମହାଭାରତରେ ଭିନ୍ନତା ପରିଲକ୍ଷିତ ହୁଏ ।

ମୂଳ ମହାଭାରତରେ ଧୃତରାଷ୍ଟ୍ରଙ୍କ ଅନୁରୋଧରେ ଦ୍ରୌପଦୀ ବର ମାଗିଛନ୍ତି – "ମୋର ସ୍ୱାମୀ ଯୁଧିଷ୍ଠିରଙ୍କୁ ମୁକ୍ତ କରି ଦିଅନ୍ତୁ । ମୋର ଜ୍ୟେଷ୍ଠ ପୁତ୍ର ପ୍ରାତିବିନ୍ଧ୍ୟ କେହି କ୍ରୀତଦାସର ପୁତ୍ରବୋଲି ଜଗତ ଅନ୍ତତଃ ନକହୁ ।" ଧୃତରାଷ୍ଟ୍ର 'ତଥାସ୍ତୁ' କହି ଅନ୍ୟ ଏକ ବର ମାଗିବା ପାଇଁ ଅନୁରୋଧ କରିଛନ୍ତି । ଦ୍ରୌପଦୀ କହିଛନ୍ତି – ମୋର

ଅନ୍ୟ ସ୍ୱାମୀମାନଙ୍କୁ ମୁକ୍ତ କରିଦିଅନ୍ତୁ ଏବଂ ସେମାନଙ୍କର ଅସ୍ତ୍ର ଶସ୍ତ୍ର ରଥ, ଫେରାଇ ଦିଅନ୍ତୁ । ''

'ତଥାସ୍ତୁ' କହି ଧୃତରାଷ୍ଟ୍ର ତୃତୀୟ ବର ଯାଚିଛନ୍ତି । ଦ୍ରୌପଦୀ ସଂଭ୍ରମ ସହକାରେ କହିଛନ୍ତି – "ତୃତୀୟ ବର ମାଗିବାର ଯୋଗ୍ୟା ମୁଁ ନୁହେଁ । ଶାସ୍ତ୍ର ଅନୁସାରେ ବୈଶ୍ୟ ଗୋଟିଏ ବର ମାଗିପାରେ, କ୍ଷତ୍ରୀୟ ନାରୀ ଦୁଇଟି ବର ମାଗିପାରେ କ୍ଷତ୍ରୀୟ ଯୋଦ୍ଧା ତିନଟି ବର ମାଗିପାରେ ଏବଂ ବ୍ରାହ୍ମଣ ଏକଶତ ବର ମାଗିପାରେ । ବର୍ତ୍ତମାନ ମୋର ଏହି ସ୍ୱାମୀମାନେ ମୁକ୍ତ । ସେମାନଙ୍କ ହାତରେ ଅସ୍ତ୍ରଶସ୍ତ୍ର ମଧ୍ୟ ଅଛି । ମୋର ବିନା ସାହାଯ୍ୟରେ ସେମାନେ ବର୍ତ୍ତମାନ ପୃଥିବୀ ଜୟ କରିପାରନ୍ତି । ତେଣୁ ଅନ୍ୟ ଏକ ବରର ପ୍ରୟୋଜନ ନାହିଁ '' ।

ଉପରୋକ୍ତ କଥାରୁ ଦ୍ରୌପଦୀଙ୍କର ଶାସ୍ତ୍ରଜ୍ଞାନ, ମର୍ଯ୍ୟାଦା, ସ୍ୱାଭିମାନ ଆତ୍ମସମ୍ମାନ, ନିଃସ୍ୱାର୍ଥପରତା, ଏବଂ ରାଜ୍ୟ ଧନ ପ୍ରତି ଅନାସକ୍ତି ସ୍ୱାମୀମାନଙ୍କ ପ୍ରତି ଗଭୀର ଅନୁରକ୍ତି ଓ ସମ୍ମାନର ପରିଚୟ ମିଳେ ।

ସାରଳାଙ୍କ ଯାଜ୍ଞସେନୀ ପ୍ରଥମ ବରରେ ସ୍ୱାମୀମାନେ ହରାଇଥିବା ରାଜ୍ୟ ମାଗିଛନ୍ତି—ଦ୍ୱିତୀୟ ବରରେ ରଥ, ଗଜ, ଅଶ୍ୱ ସୈନ୍ୟ ମାଗିଛନ୍ତି । ତୃତୀୟ ବରରେ ପଞ୍ଚପତି, ଏବଂ ନିଜକୁ ମାଗିଛନ୍ତି । ଧୃତରାଷ୍ଟ୍ର ଅନ୍ୟ ବର ମାଗିବାକୁ କହନ୍ତେ ଦ୍ରୌପଦୀ କହିଛନ୍ତି—"ସ୍ତ୍ରୀମାନେ ତିନିବର ଏବଂ ପୁରୁଷମାନେ ଦଶବର ମାଗିବା ଶାସ୍ତ୍ର ସମ୍ମତ, ତେଣୁ ମୋର ଆଉ ବର ମାଗିବା ଅନୁଚିତ ।" ଅବଶ୍ୟ ରାଜ୍ୟ, ସ୍ୱାମୀ, ନିଜକୁ ଏବଂ ରଥ, ଗଜ ଅଶ୍ୱ ଇତ୍ୟାଦି ମାଗିବା ପରେ ଯାଜ୍ଞସେନୀଙ୍କର ଆଉ କୌଣସି ବର ମାଗିବାର ଆବଶ୍ୟକତା ନଥିଲା ।

ଏଠାରେ ଲକ୍ଷ୍ୟ କରାଯାଇ ପାରେ ବ୍ୟାସଙ୍କ ଦ୍ରୌପଦୀ ନିଜପାଇଁ କିଛି ବର ମାଗିନାହାନ୍ତି । ପ୍ରଥମେ ସ୍ୱାମୀମାନଙ୍କର ମୁକ୍ତି ଓ ପରେ ସେମାନଙ୍କର ଅସ୍ତ୍ରଶସ୍ତ୍ର ମାଗିଛନ୍ତି । ଏହା ତାଙ୍କର ସ୍ୱାଭିମାନର ପରିଚୟ ଦିଏ ଏବଂ ତାଙ୍କର ବିଚକ୍ଷଣ ବୁଦ୍ଧିର ପରିଚୟ ମଧ୍ୟ ମିଳେ । ରାଜ୍ୟ ଧନ ଇତ୍ୟାଦି ମାଗି ନିଜକୁ ଅନ୍ୟମାନଙ୍କ ଆଗରେ ଶ୍ରେଷ୍ଠ କରି ଦିଅନ୍ତେ କାହିଁକି ? ସେ ଜାଣିଥିଲେ ତାଙ୍କର ସ୍ୱାମୀମାନେ ଅସ୍ତ୍ର ଶସ୍ତ୍ର ସହ ମୁକ୍ତ ହୋଇଯିବା ପରେ ରାଜ୍ୟ ଧନ ଐଶ୍ୱର୍ଯ୍ୟ ଆପେ ଆପେ ଆସିବ । ସ୍ୱାମୀମାନଙ୍କ ବାହୁବଳ ଉପରେ ତାଙ୍କର ସେତିକି ଭରସା ଥିଲା କିମ୍ବା ରାଜ୍ୟ ଧନ ଅପେକ୍ଷା ସ୍ୱାମୀମାନଙ୍କର ମୁକ୍ତି ତାଙ୍କ ପାଖରେ ବଡ଼ ଥିଲା । ସ୍ୱାମୀମାନଙ୍କର ମୁକ୍ତି ବିନା ରାଜ୍ୟ ଧନର ଅର୍ଥ ବା କଣ ? ପ୍ରଥମ ବର ପରେ ଧୃତରାଷ୍ଟ୍ର ଯଦି ଅନ୍ୟବର ମାଗି ନଥାନ୍ତେ, ତେବେ ଯାଜ୍ଞସେନୀ ରାଜ୍ୟ, ସମ୍ପଦ ଫେରିପାଇ ସ୍ୱାମୀମାନଙ୍କ ବିନା କି ସୁଖ ଭୋଗ କରିଥାନ୍ତେ ? ଏହାହିଁ

ବ୍ୟାସଦେବଙ୍କ ଯାଜ୍ଞସେନୀ ଏବଂ ସାରଳାଙ୍କ ଯାଜ୍ଞସେନୀଙ୍କ ଭିତରେ ଜ୍ଞାନଗତ, ଚରିତ୍ରଗତ ପାର୍ଥକ୍ୟ ।

ଦ୍ୱାପର ଯୁଗରେ ବ୍ୟାସଦେବଙ୍କର ରଚିତ ମୂଳ ମହାଭାରତର ଯାଜ୍ଞସେନୀ ଏବଂ କଳିଯୁଗର ଅର୍ଥକାମ ଦୁନିଆରେ ଜନ୍ମଲାଭ କରିଥିବା ସାରଳାଙ୍କ ମହାଭାରତର ଯାଜ୍ଞସେନୀଙ୍କ ଭିତରେ ଏବଂ ବିଭିନ୍ନ ଘଟଣାବଳୀ ଭିତରେ ଏପରି ପାର୍ଥକ୍ୟ ହୁଏତ ଯୁଗର ପ୍ରଭାବ ଏବଂ ଅତ୍ୟନ୍ତ ସ୍ୱାଭାବିକ ।



ଅଧ୍ୟାପିକା
ରାଧାନାଥ ଟ୍ରେନିଂ କଲେଜ
କଟକ-୨

# ବନପର୍ବ

ଡକ୍ଟର ହେମନ୍ତ କୁମାର ଦାସ

---

କବି ସାରଳା ଦାସ ସଂସ୍କୃତ ମହାଭାରତରେ ଅନୁବାଦ କରିନଥିବା ଏକ ପ୍ରମାଣିତ ସତ୍ୟ । ନିଜର ଅଗଣିତ ଗ୍ରାମୀଣ ପାଠକମାନଙ୍କ ନିମନ୍ତେ ସେ ଯେଉଁ ଉପଦେଶାତ୍ମକ କାବ୍ୟର ପରିକଳ୍ପନା କରିଥିଲେ । ତାହାର ମାଧ୍ୟମ ଥିଲା ରସାଳ କାହାଣୀ । ମୁଖ୍ୟତଃ ବୀର ଏବଂ ଶୃଙ୍ଗାର ରସ ମୂଳକ କାହାଣୀମାନ କଳ୍ପନା କରି ସେ ସାମାଜିକମାନଙ୍କୁ ନୀତିମତ୍ତାର ଉପଦେଶ ଦେଇଥିଲେ । ଉପଦେଶର ମାଧ୍ୟମ ରୂପରେ କାହାଣୀର ତୁଳନା ନଥିବାରୁ, ସେ ଯଥା ସମ୍ଭବ ଏଗୁଡ଼ିକୁ ତଥ୍ୟ ଏବଂ ତତ୍ତ୍ୱର ନିଗୂଢ଼ ବ୍ୟାଖ୍ୟାଠାରୁ ଦୂରରେ ରଖିଥିଲେ । କାହାଣୀର କାହାଣୀଧର୍ମିତା ହିଁ ଥିଲା ତାଙ୍କ ନିକଟରେ ବଡ଼ । ଶ୍ରୋତା ଏବଂ ପାଠକମାନଙ୍କ ମନଉପରେ ଏହାର ପ୍ରଭାବ ସମ୍ପର୍କରେ କବି ଭଲଭାବେ ଅବହିତ ଥିଲେ ବୋଲି କୁହାଯାଇପାରେ । କବି ସାରଳା ଜଣେ ପଣ୍ଡିତ ଥିଲେ କିମ୍ବା ନଥିଲେ, ଧର୍ମ, ରାଜନୀତି, ସମାଜନୀତି, ଇତିହାସ, ଭୂଗୋଳ ସମ୍ପର୍କୀୟ ଜଟିଳ ତତ୍ତ୍ୱ ବିଷୟରେ ତାଙ୍କର ଧାରଣା ଥିଲା କିମ୍ବା ନାହିଁ, ଏ ସବୁ ଜଟିଳ ପ୍ରଶ୍ନ ଏଠାରେ ଅବାନ୍ତର । ତେବେ ଶାସ୍ତ୍ରକୁ ପଣ୍ଡିତ ମଣ୍ଡଳୀର ଏକଚାଟିଆ ଅଧିକାର ମଧ୍ୟରୁ ମୁକ୍ତ କରିଆଣି, ତାହାକୁ ଜନତାର ଦରବାରରେ ଏକ ସମ୍ମାନିତ ଆସନରେ ପ୍ରତିଷ୍ଠା କରିବାର ସମସ୍ତ ଶ୍ରେୟ ଏହି ଆଦିକବିଙ୍କର ପ୍ରାପ୍ୟ ଏଥିରେ ସନ୍ଦେହ କରିବାର କିଛି ନାହିଁ ।

ଇଂରେଜୀ ସାହିତ୍ୟର ସୁବିଖ୍ୟାତ ସମାଲୋଚକ ସିରିଲ କନୋଲି ଲେଖିଛନ୍ତି, "The more books we read, the clearer it becomes that, the true functions of a writer is to produce a masterpiece and that no other task as of any consequence. ରସାଳ ରଚନା ମାତ୍ରେହିଁ ସାହିତ୍ୟ । ମାତ୍ର ତନ୍ମଧ୍ୟରୁ କିଛି ପ୍ରୟୋଜନର ଏବଂ ଆଉ କିଛି ପ୍ରୀତିର । ପ୍ରୟୋଜନର ରଚନାର ଏକ ତତ୍କାଳୀନ ମୂଲ୍ୟ ଥାଏ । ମାତ୍ର ସାହିତ୍ୟ ହିସାବରେ ଏହାର କୌଣସି ସ୍ଥାୟୀ ଆବେଦନ ନଥାଏ । ଏହା ବ୍ୟତୀତ ଯେଉଁ ରଚନାଗୁଡ଼ିକ ଚିରନ୍ତନ ଆବେଦନ ନେଇ ପ୍ରୀତିର ଫସଲରୂପେ ପାଠକମାନଙ୍କ ନିକଟରେ ପହଞ୍ଚନ୍ତି, ସେଗୁଡ଼ିକୁ କାଳଜୟୀ ସାହିତ୍ୟର ଆଖ୍ୟା

ହୋଇଯାଇଥାଏ । ଏଭଳି ସାହିତ୍ୟର ସ୍ରଷ୍ଟାଙ୍କୁ କେବଳ ଭକ୍ତ ଏବଂ ପରମାତ୍ମା ନୁହେଁ, ଆନ୍ତରିକ ଭକ୍ତି ଓ ନିଷ୍ଠା ମଧ୍ୟ ସାରସ୍ୱତ ପଙ୍କ ଦେହାରେ ଅର୍ପଣ କରିବାକୁ ହୋଇଥାଏ । ଆଲୋଚକ କନୋଲି ଏହିଭଳି ଲେଖାକୁ masterpiece ବୋଲି କହିଛନ୍ତି, ଯାହା ଲେଖକର ଉଭୟ ଇହ ଏବଂ ପର ଜୀବନକୁ ସମୁଜ୍ଜ୍ୱଳ କରିଥାଏ । କବି ସାରଳା ଥିଲେ ଏହି ଶ୍ରେଣୀର ଲେଖକ, ଯେକି ଆନ୍ତରିକ ପ୍ରେରଣାର ଗୁରୁତ୍ୱପରେ, ପ୍ରୀତିର ନିର୍ଦ୍ଦେଶରେ ଭକ୍ତି ଏବଂ ନିଷ୍ଠାକୁ ସମ୍ବଳ କରି, ନିଜର ପାଠକମାନଙ୍କ ହୃଦୟର ଅତି ନିକଟରେ ପହଞ୍ଚିବାକୁ ଉଦ୍ୟମ କରିଥିଲେ । ତଥ୍ୟ ଏବଂ ତତ୍ତ୍ୱର ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ଅପେକ୍ଷା ପାଠକର ହୃଦୟ ଜୟ କରିବା ଥିଲା ତାଙ୍କ ନିକଟରେ ବଡ଼ କଥା । ତାହା ସେ ବେଶ୍ ଭଲଭାବରେ କରିପାରିଥିଲେ ।

ସାରଳାଦାସ ମୂଳ ମହାଭାରତ ଅଧ୍ୟୟନ କରି ସ୍ଥୂଳ ଘଟଣାମାନଙ୍କୁ ନିଜ ସ୍ମୃତିରେ ରଖି ତହିଁରେ ନିଜର ଅସାଧାରଣ କଳ୍ପନାଶକ୍ତିର ପ୍ରୟୋଗ କରି ସ୍ୱକୀୟ ବଜନ ଶୈଳୀରେ ନିଜର ବିରାଟ କାବ୍ୟ ରଚନା କରିଥିଲେ । ମୂଳ ମହାଭାରତର ପର୍ବ ସଂଖ୍ୟାକୁ ସମାନ ରଖି ସେ ସେଗୁଡ଼ିକର ନାମ ପରିବର୍ତ୍ତିତ କରି ଦେଇଥିଲେ । ଏହି କ୍ରମରେ ସେ ଆଦିପର୍ବକୁ ଦୁଇ ଭାଗରେ ବିଭକ୍ତ କରି ଦ୍ୱିତୀୟ ପର୍ବଟିକୁ 'ମଧ୍ୟପର୍ବ' ନାମରେ ନାମିତ କରିଥିଲେ । ପରିଣାମରେ ମୂଳ ମହାଭାରତର ତୃତୀୟ ପର୍ବଟି 'ବନପର୍ବ' ହୋଇଥିବାସ୍ଥଳେ ସାରଳା ମହାଭାରତରେ ଏହା 'ଚତୁର୍ଥ ପର୍ବ'ର ସ୍ଥାନଲାଭ କରିଛି । ଦ୍ୟୂତକ୍ରୀଡ଼ା ପରଠାରୁ ପାଣ୍ଡବମାନଙ୍କର ବନଗମନ ଏବଂ ସେଠାରେ ସନ୍ଧିଧାନ କାଳଯାପନ ପ୍ରଭୃତି ବିଷୟ ହିଁ ବ୍ୟାସଙ୍କ ମହାଭାରତର ବର୍ଣ୍ଣନୀୟ ବିଷୟ । ଏହି ବିଷୟକୁ ବର୍ଣ୍ଣନା କରିବା ନିମନ୍ତେ ବ୍ୟାସ ତିନିଶହ ପନ୍ଦରଟି ଅଧ୍ୟାୟର ପରିକଳ୍ପନା କରିଛନ୍ତି । କୃଷ୍ଣସିଂହ ଏହାକୁ ସୀମାବଦ୍ଧ ରଖିଛନ୍ତି ବୟାଅଶୀ ଗୋଟି ଅଧ୍ୟାୟ ମଧ୍ୟରେ ଏବଂ ତଦନୁପାତରେ ତାଙ୍କ ଗ୍ରନ୍ଥର କଳେବର ମଧ୍ୟ ଅର୍ଦ୍ଧେକ ହ୍ରାସ ପାଇଛି । ସାରଳାଦାସ ଏହି ପର୍ବ ନିମନ୍ତେ ପ୍ରାୟ ସତଚାଳିଶ ଗୋଟି ଅଧ୍ୟାୟର ପରିକଳ୍ପନା କରିଥିଲେ ମଧ୍ୟ ଆୟତନ ଦୃଷ୍ଟିରୁ ତାହାଙ୍କ ଗ୍ରନ୍ଥ ମୂଳ ମହାଭାରତର ପ୍ରାୟ ସମକକ୍ଷ ହୋଇଛି କହିଲେ ଚଳେ । ଏଥିନିମନ୍ତେ ସେ ମୂଳମହାଭାରତରୁ କିଛି ଗ୍ରହଣ କରିଛନ୍ତି, ଅନେକ ତ୍ୟାଗ କରିଛନ୍ତି ଏବଂ ଶେଷ ଅଂଶ ସଂଯୋଗ କରିଛନ୍ତି ନିଜର କଳ୍ପନାରୁ । ଏ ପ୍ରସଙ୍ଗରେ ଗୋଟିଏ ଉଦାହରଣ ଦେଲେ ପାଠକମାନେ ବିଷୟଟିକୁ ଭଲଭାବରେ ବୁଝିପାରିବେ । ସାରଳାଦାସ ବନବାସ କ୍ଲିଷ୍ଟ ପାଣ୍ଡବମାନଙ୍କ ନିକଟକୁ ଦୁର୍ଯ୍ୟୋଧନଙ୍କର ଗମନ, ସ୍ୱୈଶ୍ୱର୍ଯ୍ୟ ପ୍ରଦର୍ଶନରେ ସେମାନଙ୍କର ଅପମାନ ଏବଂ ଅବଶେଷରେ ଚିତ୍ରସେନ ଗନ୍ଧର୍ବ ଦ୍ୱାରା କୌରବ ସେନାଙ୍କର ଉଦ୍‌ବନ୍ଧନ ପ୍ରଭୃତି ବିଷୟ 'ବନପର୍ବ'ର ଦ୍ୱିତୀୟ ଅଧ୍ୟାୟରେ ସଂକ୍ଷେପରେ ବର୍ଣ୍ଣନା କରିଛନ୍ତି । ମାତ୍ର ଏହି ବିଷୟ ବ୍ୟାସ ବର୍ଣ୍ଣନା କରିଛନ୍ତି, 'ବନପର୍ବ'ର ଶେଷ ଆଡ଼କୁ ଏବଂ ଏଥିପାଇଁ ସେ ବାରଟି ଅଧ୍ୟାୟର ପରିକଳ୍ପନା

କରିଛନ୍ତି । ଘଟଣାଟି ପାଣ୍ଡବ ବନବାସର ପ୍ରାରମ୍ଭ କାଳରେ ଘଟିଥିବାର ବର୍ଣ୍ଣନା ସାରଳା କରିଥିବାସ୍ଥଳେ ବ୍ୟାସ ଏହା ବନବାସ ସମାପ୍ତିର ଆସନ୍ନ କାଳରେ ଅର୍ଥାତ୍ ବନବାସର ପ୍ରାୟ ଏକାଦଶ ବର୍ଷରେ ଘଟିଥିବାର ବର୍ଣ୍ଣନା କରିଛନ୍ତି । ଆଲୋଚକ ଗୋପୀନାଥ ନନ୍ଦ ସାରଳାଦାସଙ୍କର ଏହି କାର୍ଯ୍ୟକୁ 'ଅଯଥାସ୍ଥାନ ସନ୍ନିବେଶ ଦୋଷ' ଏବଂ 'ଆକାଳିକ ପ୍ରଖ୍ୟାପନାପବାଦ' ବୋଲି କହିଛନ୍ତି । ଏହା ଏକ ବ୍ୟକ୍ତିଗତ ମତ ମାତ୍ର । କାରଣ ଉଭୟ ବ୍ୟାପାରର ସପକ୍ଷ ଓ ବିପକ୍ଷରେ ବହୁକଥା କୁହାଯାଇ ପାରିବ । ସେହିଭଳି 'ନଳଦମୟନ୍ତୀ ପ୍ରସଙ୍ଗ' । ସାରଳା ମାତ୍ର ଗୋଟିଏ ଅଧ୍ୟାୟରେ ଏହାକୁ ବର୍ଣ୍ଣନା କରିଥିବା ସ୍ଥଳେ ବ୍ୟାସ ଏଥି ନିମନ୍ତେ ସତେଇଶଟି ଅଧ୍ୟାୟ ବ୍ୟୟ କରିଛନ୍ତି । ବ୍ୟାସ ଏହି ଘଟଣାକୁ ବନପର୍ବର ପ୍ରଥମାର୍ଦ୍ଧରେ ସ୍ଥାନ ଦେଇଥିବାସ୍ଥଳେ ସାରଳାଦାସ ଏହାକୁ ଶେଷ ଆଡ଼କୁ ନେଇ ଯାଇଛନ୍ତି । ମୂଳ ଗ୍ରନ୍ଥରେ ମହର୍ଷି ବୃହଦଶ୍ୱ କାହାଣୀଟିକୁ ପାଣ୍ଡବମାନଙ୍କ ନିକଟରେ ବର୍ଣ୍ଣନା କରିଥିବାସ୍ଥଳେ, ସାରଳାଦାସ ସ୍ୱୟଂ ବ୍ୟାସଙ୍କ ଦ୍ୱାରା କାହାଣୀଟିର ଅବତାରଣା କରାଇଛନ୍ତି । ଉଭୟ କ୍ଷେତ୍ରରେ କାହାଣୀର ମୂଳ ଲକ୍ଷ୍ୟ ହେଉଛି ଦୁଃଖର ବର୍ଣ୍ଣନା ସାହାଯ୍ୟରେ ଦୁଃଖର ସାମୟିକ ବିଲୋପ ସାଧନ, ଯାହାକୁ ନାଟ୍ୟ ସମାଲୋଚକ ବୃନ୍ଦ 'କାଥାରସିସ୍' (Catharsis) ବୋଲି କହନ୍ତି । ସାରଳା 'ଦୁଃଖ ସହିଲେ ସେ ହୋଇ ପରମ ମହାତମେ' ଇତ୍ୟାଦି ବ୍ୟାସଙ୍କର ଉପଦେଶାତ୍ମକ ବାକ୍ୟରେ କାହାଣୀଟିକୁ ମାନବିକତାର ରୂପ ଦେଇ ଆରମ୍ଭ କରିଛନ୍ତି । ମୂଳ-ମହାଭାରତରେ କିନ୍ତୁ ଏହା ସାଧାରଣ ରୂପରେହିଁ ଆରମ୍ଭ ହୋଇଛି । ପ୍ରସଙ୍ଗ କ୍ରମେ ଏଠାରେ ସୂଚିତ ହେବା ଉଚିତ ଯେ, ମୂଳମହାଭାରତରେ ପାଣ୍ଡିତ୍ୟ ପୂର୍ଣ୍ଣ ଆଲୋଚନା ହୋଇଛି ଦାର୍ଶନିକତାର ବିଶ୍ଳେଷଣରେ ଏହା ଏକ ଉଚ୍ଚ ସ୍ତରୀୟ ଶାସ୍ତ୍ରର ମର୍ଯ୍ୟାଦା ପାଇଛି । ମାତ୍ର ମାନବିକତାର ପରିବେଷଣ କ୍ଷେତ୍ରରେ, ଜନସାଧାରଣଙ୍କ ପାଖରେ ଠିଆ ହୋଇ ସେମାନଙ୍କ କାନ୍ଧରେ ହାତପକାଇ ସେମାନଙ୍କ ସୁଖ ଦୁଃଖରେ ସମଭାଗୀ ହେବା ବ୍ୟାପାରରେ ସାରଳା ସର୍ବଦା ବ୍ୟାସଦେବଙ୍କୁ ଅତିକ୍ରମ କରିଯାଇଛନ୍ତି ।

ସଂସ୍କୃତ 'ବନପର୍ବ'ର ଯେଉଁ ବିଷୟ ଗୁଡ଼ିକୁ ସାରଳା ନିଜ କାବ୍ୟରେ ସ୍ଥାନଦେଇଛନ୍ତି । ସେଗୁଡ଼ିକ ହେଉଛି, ପର୍ଶୁରାମଜନ୍ମ ପ୍ରସଙ୍ଗ, ନିବାତ କବଚ ବଧ ବୃତ୍ତାନ୍ତ, ନହୁଷ ଉପାଖ୍ୟାନ, ଧର୍ମ ବକ ପ୍ରସଙ୍ଗ, ଜୟଦ୍ରଥର ଅପମାନ ବ୍ୟାପାର, ଗଙ୍ଗାବତରଣ, ନଳରାଜା ଉପାଖ୍ୟାନ ତଥା ଦୁର୍ବାସାଙ୍କ ଆତିଥ୍ୟ ପ୍ରଭୃତି । ଏହା ବ୍ୟତୀତ କବି ତାଙ୍କର ସ୍ୱାଭାବିକ ଗତିରେ କିଛି ହରଣ ମାରଣ କାହାଣୀର ଅବତାରଣା କରିବା ସଙ୍ଗେ ସଙ୍ଗେ ଏଥିରେ କିର୍ମ୍ମୀର ବଧ, ସତ୍ୟ ଆମ୍ର କଥା, ଦେଲ୍ହବଲ୍ଲୀ ଉପାଖ୍ୟାନ, ଦାତାକର୍ଣ୍ଣ କଥା, ହରିଶ୍ଚନ୍ଦ୍ର ଉପାଖ୍ୟାନ, କ୍ଷୀରିଦାସ ଦୈତ୍ୟ କଥା, ଗଜକଚ୍ଛପ ଯୁଦ୍ଧ ପ୍ରଭୃତି କେତେକ ନୂତନ କାହାଣୀର ଅବତାରଣା କରିଛନ୍ତି । ମୂଳ ମହାଭାରତରେ ଥିବା ରାମ କାହାଣୀ, ସାବିତ୍ରୀ ଉପାଖ୍ୟାନ, ପ୍ରଭୃତି କେତେକ ପ୍ରଧାନ ବିଷୟକୁ ସାରଳାଦାସ

ତ୍ୟାଗ କରିଛନ୍ତି । ତୀର୍ଥସ୍ଥାନ ବର୍ଣ୍ଣନା, ରାକ୍ଷସ ବଧ ଇତ୍ୟାଦି ବିଷୟ ସାଧାରଣ ଭାବରେ ଉଭୟ ଗ୍ରନ୍ଥରେ ସ୍ଥାନ ପାଇଛି ।

ଆଲୋଚକ ଗୋପୀନାଥ ନନ୍ଦ ସାରଳା ଦାସଙ୍କର ବିଷୟ ସନ୍ନିକରଣ ରୀତି ଏବଂ ତାଙ୍କର ସଂସ୍କୃତ ଜ୍ଞାନ ପ୍ରତି ସର୍ବଦା କଟାକ୍ଷ କରିଥିବାର ପରିଲକ୍ଷିତ ହୁଏ । ମୂଳ ମହାଭାରତର ବନପର୍ବରେ କର୍ମୀର ଏବଂ ଶାଲ୍ୱ ନାମକ ଦୁଇଦୈତ୍ୟବଧ ପ୍ରସଙ୍ଗ ସ୍ଥାନ ପାଇଛି । ମାତ୍ର ସାରଳା ଏହାକୁ ପୂର୍ଣ୍ଣରୂପେ ତ୍ୟାଗ କରିଛନ୍ତି । ଏହାର କାରଣ ନିର୍ଦ୍ଦେଶ କରି ଆଲୋଚକ ନନ୍ଦ କହିଛନ୍ତି ଯେ 'ଆଦିପର୍ବ'ରେ କର୍ମୀର ନାମଟିକୁ ଭ୍ରାନ୍ତ ସ୍ମୃତି ମୂଳକ ପରିଣାମରେ ପକାଇ 'କୁମ୍ଭୀର'ରେ ପରିଣତ କରି ପକାଇ ଥିବାରୁ ହିଁ ଏଠାରେ ତାହା ପରିତ୍ୟକ୍ତ ହୋଇଛି । କବି ସାରଳା ଅନ୍ୟ ଅନେକ ଦୈତ୍ୟ ଭଳି କୁମ୍ଭୀର ଦୈତ୍ୟ ପ୍ରସଙ୍ଗ ମଧ୍ୟ ଅବତାରଣା କରିଛନ୍ତି । 'କୁମ୍ଭୀର' ଶବ୍ଦ ସହିତ ତାଙ୍କ ପାଠକମାନେ ଉତ୍ତମରୂପେ ପରିଚିତ ଥିବାରୁ ହିଁ ସେ ଏଇ ନାମଟିକୁ ଗ୍ରହଣ କରିଥିବା ଭଳି ମନେହୁଏ । ଅନ୍ୟଥା ବିଷୟ ପରିକଳ୍ପନାରେ ସାରଳା ବ୍ୟାସଙ୍କର 'କମକର' ପ୍ରସଙ୍ଗକୁ ଆଦୌ ଗ୍ରହଣ କରି ନାହାନ୍ତି । ଏହାବ୍ୟତୀତ ସାରଳା 'ବନପର୍ବ'ରେ କାର୍ତ୍ତିବାସ ଦୈତ୍ୟ ଏବଂ ନିକୁମ୍ଭ ଦୈତ୍ୟ ବଧ ନାମରେ ଦୁଇଟି ନୂତନ ପ୍ରସଙ୍ଗ ଅବତାରଣା କରିଛନ୍ତି । ବନବାସ କାଳରେ ପାଣ୍ଡବ ଜନନୀ 'କୁନ୍ତୀ' ସେମାନଙ୍କ ସହିତ ରହିଥିଲେ ବୋଲି ସାରଳା ଦାସ ଲେଖିଥିବା ସ୍ଥଳେ ବ୍ୟାସ କୁନ୍ତୀ ଦେବୀ ଏହି ସମୟରେ ବିଦୁରଙ୍କ ସହିତ ଅବସ୍ଥାନ କରୁଥିଲେ ବୋଲି ବର୍ଣ୍ଣନା କରିଛନ୍ତି । ଆଲୋଚକ ନନ୍ଦ ଏହାକୁ 'ଏକାନ୍ତ ଅମୂଳକ' ବୋଲି କହିଛନ୍ତି । ପାଣ୍ଡବମାନେ ଗୟା କ୍ଷେତ୍ରରେ ଅବସ୍ଥାନ କରିବା ପୂର୍ବରୁ କିଛିକାଳ କାମ୍ୟକ ପର୍ବତରେ ରହିଥିବା ସମୟରେ ପର୍ଶୁରାମଙ୍କର ପବିତ୍ର ଚରିତ୍ର ଶ୍ରବଣ କରିଥିଲେ । ଏହାପରେ ସେମାନେ ପ୍ରୟାଗବଟତୀର୍ଥରେ ପ୍ରବେଶ କରିଥିଲେ ଏବଂ ସେଠାରେ ଯୁଧିଷ୍ଠିରଙ୍କ ପ୍ରଦତ୍ତ ବାଲି ପିଣ୍ଡକୁ ସ୍ୱୟଂ ପଣ୍ଡୁ ଗ୍ରହଣ କରିଥିଲେ । ଏହି ତୀର୍ଥର ମହିମା ପ୍ରଖ୍ୟାପନ କାଳରେ ସାରଳାଦାସ ରାମ କାହାଣୀର ଅବତାରଣା କରି, ଏହା ରାମଚନ୍ଦ୍ରଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ବୋଲି ସୂଚାଇଛନ୍ତି । ଧୌମ୍ୟ ସ୍ପଷ୍ଟଭାବରେ ଯୁଧିଷ୍ଠିରଙ୍କୁ କହିଛନ୍ତି ।

ବାବୁ ବାଲିପିଣ୍ଡ ମୋଛଟି ଅଟଇ ଯେହୁ ତୀର୍ଥେ, ପିତୃଲୋକମାନେ ହୁଣ ହୁଅନ୍ତି ନିସ୍ତେ "ଏହାପରେ ଯୁଧିଷ୍ଠିର, କୁନ୍ତୀ ଏବଂ ଦ୍ରୌପଦୀ ସେଇତୀର୍ଥରେ ପିଣ୍ଡଦାନ କରିଛନ୍ତି । ବ୍ୟାସଦେବ 'ବନପର୍ବ'ରେ ଗୟାତୀର୍ଥ ପ୍ରସଙ୍ଗରେ ଶ୍ଳୋକ ଅଧ୍ୟାୟ (ପଞ୍ଚାନବେ) ଟିଏ ରଚନା କରିଛନ୍ତି ସତ୍ୟ । ମାତ୍ର ପ୍ରତ୍ୟେକ ମୁମୁକ୍ଷୁ ହିନ୍ଦୁର ଶ୍ଳାଘ୍ୟ ଏହି ତୀର୍ଥ ସମ୍ପର୍କରେ ଉଚ୍ଛ୍ୱାସ କବି ଯେଉଁ ଭଳି ପ୍ରାଞ୍ଜଳ ଏବଂ ସରଳ, ବ୍ୟାସଙ୍କର ସୂଚନାତ୍ମକ ବର୍ଣ୍ଣନାରେ କୁଆଡ଼ି ତାହା ଦେଖାଯାଏ ନାହିଁ । ବ୍ୟାସଦେବ ଲୋମଶ ଋଷିଙ୍କ ଦ୍ୱାରା

ତୀର୍ଥ କ୍ଷେତ୍ରର ମହିମା ବର୍ଣ୍ଣନା କରିଛ କହିଛନ୍ତି "ସାଗର ସହିତ ସରୋବର ଏବଂ ପୁଣ୍ୟାଶ୍ରମରେ ବିଚରଣ" ଦ୍ୱାରା ସବୁ ପାପରୁ ମୁକ୍ତି ମିଳେ ଏବଂ ଏହାପରେ ସେ ପ୍ରୟାଗ ଏବଂ ଗୟା ତୀର୍ଥ ସମ୍ପର୍କରେ ସଂକ୍ଷିପ୍ତ ଆଲୋଚନା ମାତ୍ର କରିଛନ୍ତି । କବି ସାରଳା ଏହି ପ୍ରସଙ୍ଗଟିକୁ ନିଜର ପାଠକମାନଙ୍କୁ ଭଲଭାବରେ ବୁଝାଇ ଦେବା ନିମନ୍ତେ, ବିସ୍ତୃତ ବର୍ଣ୍ଣନା କରିଛନ୍ତି, ଯେଉଁଥିରୁ ପାଠକ ତୀର୍ଥ ମହିମା ସମ୍ପର୍କରେ ଏକ ସ୍ପଷ୍ଟ ଧାରଣା ଲାଭ କରିଥାଏ । ବ୍ୟାସ ଦେବ 'ବନପର୍ବ'ର ତେୟାଅଶୀ, ଚୌରାଅଶୀ, ପଞ୍ଚାଅଶୀ, ଅଠାଅଶୀ, ଅଣାନବେ, ଏବଂ ନବେ ପ୍ରଭୃତି ଅଧ୍ୟାୟମାନଙ୍କରେ ଭାରତବର୍ଷର ବିଭିନ୍ନ ତୀର୍ଥମାନଙ୍କ ସମ୍ପର୍କରେ ସଂକ୍ଷିପ୍ତ ବର୍ଣ୍ଣନା କରିଛନ୍ତି । ଚୌରାଅଶୀ ଅଧ୍ୟାୟରେ 'ବାରାଣସୀକୁ ଗମନ କରି ସେଠାରେ ମହାଦେବ ବୃଷଧ୍ୱଜଙ୍କର ପୂଜା କରିବାକୁ ହୁଏ' ବୋଲି କହି ବାରାଣସୀ ତୀର୍ଥ ସମ୍ପର୍କରେ ନିଜର ବକ୍ତବ୍ୟ ଶେଷ କରି ଦେଇଛନ୍ତି । ମାତ୍ର ସାରଳା ଦାସ ଗୋଟିଏ ଦୀର୍ଘ ଅଧ୍ୟାୟରେ ମଣିକର୍ଣ୍ଣିକା ଏବଂ ବାରାଣସୀ ତୀର୍ଥର ବିବରଣୀ ପ୍ରଦାନ କରି କହିଛନ୍ତି,

ଯେହୁ ମଣିକର୍ଣ୍ଣିକା ତୀର୍ଥେ ଯେ କରନ୍ତି ସ୍ନାହାନ
ତେବେ ସେ ସକଳ ତୀର୍ଥର ପାବନ୍ତି କାରଣ
ଯେହୁ ବାରାଣାସୀ ତୀର୍ଥେ ଯେ ପଶନ୍ତି ଯେତକକ୍ଷଣେ
ବସନ୍ତି କପିଳାସେ ଶିବନ ଥ ଭୁବନେ ।
ଯେହୁ ମହାତୀର୍ଥ ଯେ ନବକୋଶ ପରିଯନ୍ତେ
ପ୍ରକୃତି ଶଙ୍କା ବାବୁରେ ନ କରିବା ଯେତେଥେ ।

ଏହା ବ୍ୟତୀତ ଶୂଦ୍ର ମୁନି ହରିଶ୍ଚନ୍ଦ୍ର ପ୍ରଭୃତି କାହାଣୀ ଦ୍ୱାରା ଏହି ତୀର୍ଥର ମହିମା ସ୍ପଷ୍ଟ କରି ଦେଇଅଛନ୍ତି । ପବିତ୍ର ଏବଂ ନିଷ୍କଳୁଷ ଜୀବନ ପ୍ରତି ସାଧାରଣ ମଣିଷକୁ ପ୍ରେରିତ କରାଇବା ଯଦି ଶାସ୍ତ୍ରର ଲକ୍ଷ୍ୟ ହୁଏ, ତେବେ ତୀର୍ଥ ବର୍ଣ୍ଣନା ହେଉଛି ତାହାର ଏକ ମାଧ୍ୟମ । ବ୍ୟାସ ଦେବ ଯେ, ଏହି କାର୍ଯ୍ୟଟିକୁ କରି ନାହାନ୍ତି ତାହା ନୁହେଁ । ତେବେ ଏ ଦିଗରୁ ସାରଳା ଦାସଙ୍କ ଉଦ୍ୟମ ଅଧିକ ମଙ୍ଗଳ ବୋଲି ସ୍ୱୀକାର କରିବାକୁ ହେବ । ବ୍ୟାସ ଦେବଙ୍କର ଅଭିଜାତ ପଣ୍ଡିତ ଦୃଷ୍ଟିରେ ସାଧାରଣ ଜନତା, ସେମାନଙ୍କ ଚିନ୍ତା ଏବଂ ଚେତନା, ଦୃଷ୍ଟି ତଥା ଦର୍ଶନ ପ୍ରାୟଶଃ ଉପେକ୍ଷିତ ହୋଇଥିବା ସ୍ଥଳେ, ସାରଳା ଦାସ ସେହିମାନଙ୍କ ମଧ୍ୟରେ ଠିଆ ରହି ସେମାନଙ୍କ କାନ୍ଧରେ ହାତଥୋଇ ସେମାନଙ୍କ ଦୃଷ୍ଟି କୋଣରୁ ହିଁ ପ୍ରତ୍ୟେକ ଘଟଣାର ଅବତାରଣା କରିଛନ୍ତି, ଭଲମନ୍ଦ ବୁଝାଇଛନ୍ତି । ସହରର କୃତ୍ରିମ ଆଭିଜାତ ଏବଂ ପଲ୍ଲୀର ଅକୃତ୍ରିମ ସାରଲ୍ୟ ମଧ୍ୟରେ ପାର୍ଥକ୍ୟ ଯେତିକି, ଏ ଉଭୟ କବିଙ୍କର ଦୃଷ୍ଟି କୋଣର ପାର୍ଥକ୍ୟ ମଧ୍ୟ ସେତିକି । ବ୍ୟାସ ଦେବଙ୍କୁ ନିନ୍ଦା କରାଯାଇ ଉତ୍କଳୀୟ କବିଙ୍କୁ ପ୍ରଶଂସା କରାଯାଉଛି ବୋଲି ଯଦି କେହି ମନେ କରନ୍ତି, ତେବେ

ଆମେ ନିତାନ୍ତ ନାସ୍ତିକ ବୋଲି କହିବାକୁ ପଡ଼ୁଛି । ବ୍ୟାସଙ୍କ ନିକଟରେ ସାରଳାଙ୍କୁ ଥୋଇ ତାଙ୍କୁ ନିନ୍ଦା କରିବା ଯେତିକି ଦୂଷଣୀୟ, ଏହାର ଓଲଟା କାର୍ଯ୍ୟଟି ମଧ୍ୟ ସେତିକି ଗର୍ହିତ । ଉଭୟଙ୍କର ଆଭିମୁଖ୍ୟ ଯେ ସ୍ୱତନ୍ତ୍ର ଏବଂ କେହି କାହାରିଠାରୁ ବଡ଼ କିମ୍ବା ଶ୍ରେଷ୍ଠ ନୁହନ୍ତି, ସେତିକି ମାତ୍ର ଦେଖାଇ ଦେବା ଏ ସୂଚନାର ଲକ୍ଷ୍ୟ ।

ନିବାତ କବଚ ନାମକ ଅତ୍ୟାଗ୍ରୁସ୍ତ ଦୈତ୍ୟ ବଧ ସଂକ୍ରାନ୍ତରେ ବ୍ୟାସ ଏବଂ ସାରଳାଙ୍କ ବର୍ଣ୍ଣନା ସମାନ ନୁହେଁ । ବାରାଣାସୀ ତୀର୍ଥରୁ ଇନ୍ଦ୍ରାଦେଶରେ ଦେବକାର୍ଯ୍ୟ ସାଧନ ନିମନ୍ତେ ଅର୍ଜ୍ଜୁନଙ୍କୁ ସ୍ୱର୍ଗକୁ ଯିବାକୁ ହୋଇଥିଲା ଏବଂ ଦୈତ୍ୟ ବଧ ପରେ ସ୍ୱର୍ଗ ସୁନ୍ଦରୀ ଉର୍ବଶୀ ଅର୍ଜ୍ଜୁନଙ୍କ ପ୍ରତି ଆସକ୍ତ ହୋଇ ବିଫଳକାମା ହେବା ପରେ ତାଙ୍କୁ ନପୁଂସକତ୍ୱର ଅଭିଶାପ ଦେଇଥିଲେ । ସ୍ୱୟଂ ଇନ୍ଦ୍ର ନିରପରାଧ ଅର୍ଜ୍ଜୁନଙ୍କ ମନୋ-ବେଦନା ଦୂରକରିବା ନିମନ୍ତେ ଉର୍ବଶୀଙ୍କୁ ଅଭିଶାପ ଦେଇ କହିଲେ ।

'ଆଲୋ ଜଗନନ୍ଦନ ନିକଳାଙ୍କ ମୋହର ପୁତ୍ର ଗୋଟି
ସେତେ ଶାପ୍ୟ ମୋହର ପୁତ୍ରକୁ' ବୋଲୁ ଅନମିତେ ।
ତୁ ଲେଖ ଯୋନିରେ ଜାତ ହୋଅସିଲେ ମର୍ତ୍ତ୍ୟେ

"ବନପର୍ବ"

ଉର୍ବଶୀ କହିଲେ, "ଯେ ତୁମ୍ଭର ପୁତ୍ର କଉଁ କାଳେ ହତ ହୋଉ ମୋହର ଶାପ୍ୟ –" ନିଜ ଦୃଷ୍ଟିକୋଣରୁ ସ୍ପଷ୍ଟ କରି ଉର୍ବଶୀ ଆହୁରି କହିଥିଲେ, "ଅଜ୍ଞାତବାସକୁ ଯେ ଶାପ୍ୟ ହୋଇବା କହିତ –" ବର୍ଷେ ଭୋଗ୍ୟ ଅଜ୍ଞାତ ବାସ କାଳରେ ଅର୍ଜ୍ଜୁନ ବର୍ଷବର ରୂପରେ ବିରାଟ ଦୁହିତା ଉତ୍ତରାଙ୍କୁ ନୃତ୍ୟ ଗୀତ କାର୍ଯ୍ୟ ଶିକ୍ଷା ଦେବା ନିମନ୍ତେ ଯେତେବେଳେ ନିଯୁକ୍ତ ହେବେ, ସେତେବେଳେ ହିଁ ଉର୍ବଶୀଙ୍କର ଶାପ ଅର୍ଜ୍ଜୁନଙ୍କ ନିମନ୍ତେ ହିତପ୍ରଦ ହେବ । ବ୍ୟାସଦେବ ଏହି ବିଷୟଟିକୁ ସାମାନ୍ୟ ଭିନ୍ନ ପ୍ରକାରରେ ଲେଖିଛନ୍ତି । ଉର୍ବଶୀଙ୍କ ପ୍ରତି ସସ୍ନେହ ଦୃଷ୍ଟି ଅର୍ଜ୍ଜୁନଙ୍କ ନିକଟକୁ ସେ ପ୍ରେରିତା ହୋଇ ଥିଲେ ଇନ୍ଦ୍ରଙ୍କ ନିର୍ଦ୍ଦେଶରେ । ମାତ୍ର ଅର୍ଜ୍ଜୁନଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତା ହେବାପରେ ଉର୍ବଶୀ ତାଙ୍କୁ ଅଭିଶାପ ଦେଇ କହିଥିଲେ, "ତୁମ୍ଭେ ପୁରୁଷତ୍ୱ ବିହୀନ ସ୍ୱରୂପ ବିଖ୍ୟାତ ହେବ ଓ ମାନହୀନ ନର୍ତ୍ତକ ହୋଇ ସ୍ତ୍ରୀମାନଙ୍କ ମଧ୍ୟରେ କ୍ଲୀବ ସଦୃଶ ବିଚରଣ କରିବ ।" ଏହାପରେ ଇନ୍ଦ୍ର ଅର୍ଜ୍ଜୁନଙ୍କୁ ସାନ୍ତ୍ୱନା ଦେଇ କହିଥିଲେ "ହେ ମାନବ ! ଉର୍ବଶୀ ତୁମ୍ଭଙ୍କୁ ଯେଉଁ ଅଭିଶାପ ଦେଇଛନ୍ତି, ତୁମ୍ଭ ପକ୍ଷରେ ଅର୍ଥକାରୀ ଓ କାର୍ଯ୍ୟସାଧକ ହେବ । "ବର୍ଷଯାପ୍ୟ ଅଜ୍ଞାତ ବାସକାଳରେ ଅର୍ଜ୍ଜୁନ ପୁରୁଷତ୍ୱ ବିହୀନ ହୋଇ ନର୍ତ୍ତକ ବେଶରେ ବିହାର କରି ତତ୍ପରେ ପୁରୁଷତ୍ୱ ପ୍ରାପ୍ତ ହେବେ ବୋଲି ଇନ୍ଦ୍ର ସ୍ପଷ୍ଟ କରି ଦେଇଛନ୍ତି । ମାନବୀୟତା ଦୃଷ୍ଟିରୁ ସାରଳାଙ୍କ ଘଟଣା ବିନ୍ୟାସ ହିଁ ଅଧିକ ବିଶ୍ୱାସ ଯୋଗ୍ୟ ମନେହୁଏ । ନୂତ୍ୱଦ୍ୟାତର ଅଭିଶାପ ଏବଂ ସ୍ୱୟଂ ଅଭିଶପ୍ତ ହେବାଭୟରେ

ଶାପର ନିରାକରଣ ସମ୍ପର୍କରେ ସୂଚନା-ଏହାହିଁ ସ୍ୱାଭାବିକ । ବ୍ୟାସଙ୍କ ବର୍ଣ୍ଣନାରେ ଗାମ୍ଭୀର୍ଯ୍ୟ ରହିଛି, ମାତ୍ର ସାଧାରଣ ବିଶ୍ୱାସ-ଯୋଗ୍ୟତା ନାହିଁ । ଦେବରାଜ ଇନ୍ଦ୍ର ଯଦି ପରିଣାମ ସମ୍ପର୍କରେ ଅବଗତ ଥିଲେ, ତେବେ ସେ ଚିତ୍ରସେନ ଦ୍ୱାରା ଉର୍ବଶୀଙ୍କୁ ଅର୍ଜ୍ଜୁନଙ୍କ ନିକଟକୁ ପଠାଇଥିଲେ କାହିଁକି ? ଏଭଳି ଗୋଟିଏ ପ୍ରଶ୍ନ ସ୍ୱତଃ ମନରେ ଉଙ୍କିମାରେ । ଅନ୍ୟପକ୍ଷରେ ସାରଳାଦାସ ଇନ୍ଦ୍ର, ଉର୍ବଶୀ କିମ୍ବା ଅର୍ଜ୍ଜୁନଙ୍କ ଆଚରଣରେ ତିଳେମାତ୍ର ଅଲୌକିକତା ଆରୋପ ନ କରି ସେମାନଙ୍କର ଆଚରଣକୁ ସାଧାରଣ ମାନବ ସୁଲଭ କରିଦେଇ ଥିବାରୁ ଘଟଣାଟି ଅଧିକ ବିଶ୍ୱାସଯୋଗ୍ୟ ହୋଇପାରିଛି । ଆଲୋଚକ ନନ୍ଦ ମହାଶୟ ସାରଳାଙ୍କର ଘଟଣା ବିନ୍ୟାସକୁ "ସାମୟିକ ବିଗ୍ରହରେ ଔପୟିକ ଲୁହେଁ" ବୋଲି ମନ୍ତବ୍ୟ ଦେଇ ଏହାକୁ ଅସ୍ଥାନନ୍ୟସ୍ତ ବୋଲି ମନେ କରିଛନ୍ତି । ତାଙ୍କ ମତରେ ବ୍ୟାସଦେବ ଘଟଣାର ଯେଉଁ ରମ୍ୟ ବର୍ଣ୍ଣନା କରିଛନ୍ତି, ତାହା ଔପନ୍ୟାସିକ ଏବଂ କଳାତ୍ମକ ମଧ୍ୟ । ଅସ୍ତ୍ର ସଂଗ୍ରହ ସମୟରେ ଦ୍ୱୈପପ୍ଥରେ ଅର୍ଜ୍ଜୁନଙ୍କର ତପସ୍ୟା, ଶିବଙ୍କ ସହିତ ସଂଗ୍ରାମ ଏବଂ ଅସ୍ତ୍ରଲାଭ, ଇନ୍ଦ୍ରବରୁଣାଦିଙ୍କର ଅସ୍ତ୍ର ପ୍ରଦାନ ଏବଂ ସ୍ୱର୍ଗକୁ ନିମନ୍ତ୍ରଣ ପର୍ଯ୍ୟନ୍ତ ବର୍ଣ୍ଣନା କରିଛନ୍ତି । ଶିବଙ୍କ ସହିତ ଅର୍ଜ୍ଜୁନଙ୍କର ସଂଗ୍ରାମ ଏବଂ ଅସ୍ତ୍ରଲାଭ ପର୍ଯ୍ୟନ୍ତ ସାରଳା ତାଙ୍କ ଆଦିପର୍ବରେ ବର୍ଣ୍ଣନା କରିଥିବାରୁ ତାହା 'ଦ୍ୱିସ୍ଥାନସ୍ଥିତ ହୋଇଛି ବୋଲି ଆଲୋଚକ ନନ୍ଦ ମତ ଦେଇଛନ୍ତି । ଏଥିରୁ ଗୋଟିଏ ବିଷୟ ସ୍ପଷ୍ଟ ହେଉଛି । ସାରଳା ମହାଭାରତକୁ ବ୍ୟାସ ମହାଭାରତର ଏକ ବିଶୁଦ୍ଧ ଅନୁବାଦ ରୂପେ ଦେଖିବା ନିମନ୍ତେ ନନ୍ଦ ମହୋଦୟ କାମନା କରୁଥିଲେ । ମାତ୍ର ମନେରଖିବାକୁ ହେବ ଯେ, ସାରଳାଦାସ ସ୍ୱୟଂ ଥିଲେ ଜଣେ ପ୍ରତିଭାଧର ମୌଳିକ କବି । ମହାଭାରତ ରଚନା ନିମନ୍ତେ କଳ୍ପନାର ସ୍ୱଚ୍ଛନ୍ଦ ସ୍ୱାତନ୍ତ୍ର୍ୟ ହିଁ ଥିଲା ତାଙ୍କର ଅବଲମ୍ବନ । ତେଣୁ ବିଷୟ କଳ୍ପନା ଏବଂ ଘଟଣା ବିନ୍ୟାସରେ ତାଙ୍କର ସ୍ୱାଧୀନତାକୁ 'ଅସ୍ଥାନନ୍ୟସ୍ତ' ବୋଲି କହିବା ବୋଧହୁଏ ଉଚିତ ହେବ ନାହିଁ । ଏଠାରେ ମନେରଖିବା ଉଚିତ ଯେ, ସାରଳା ଏ ଯେଉଁ ସ୍ୱାଧୀନତା ଗ୍ରହଣ କଲେ, ପରବର୍ତ୍ତୀ କାଳରୁ ଅଧିକାଂଶ ପ୍ରାନ୍ତୀୟ ଭାଷାର ଶାସ୍ତ୍ରକାରମାନେ ସୁଦ୍ଧା ଏହାକୁ ଗ୍ରହଣ କରି ନେଇଛନ୍ତି । ବ୍ୟାସଙ୍କର 'ବନପର୍ବ' ର ଏକ ଘଟଣା ସାରଳାଙ୍କର 'ଆଦିପର୍ବ' ରେ ସ୍ଥାନ ପାଇଗଲେ, ଏହାଦ୍ୱାରା ଔପନ୍ୟାସିକତାକୁ କପରି ଲଙ୍ଘନ କରାଗଲା, ତାହା ଜାଣିହୁଏ ନାହିଁ । ସାରଳା ଯଦି ଏଥି ନିମନ୍ତେ ଉପଯୁକ୍ତ ପରିବେଶ ନିର୍ମାଣ କରି, ସେଠାରେ ଏହାକୁ ମିଶାଇ ଦେବାରେ ସକ୍ଷମ ହୋଇଛନ୍ତି ଏବଂ ପାଠକମାନେ ଏହାକୁ ଗ୍ରହଣ ମଧ୍ୟ କରି ସାରିଛନ୍ତି, ତେବେ କେଉଁ କାରଣରୁ ଆମେ ଏହାକୁ ଅସ୍ଥାନନ୍ୟସ୍ତ ବୋଲି କହିବା ? ସେହିଭଳି ଜୟଦ୍ରଥ ନିଗ୍ରହ । ଅନନ୍ତବସ୍ତ୍ରକୁ ଚକ୍ଷୁଦାନ, କୁନ୍ତୀସୁଭଦ୍ରା ପ୍ରଭୃତିଙ୍କର ପାଣ୍ଡବମାନଙ୍କର ସହିତ ବନବାସ ପ୍ରଭୃତି ସମ୍ପର୍କରେ ମଧ୍ୟ ପୂର୍ବୋକ୍ତ ମନ୍ତବ୍ୟ ଦିଆଯାଇପାରେ । ସାରଳା ଦାସ ଯେ ଜଣେ ବଳିଷ୍ଠ କାହାଣୀକାର ଥିଲେ, ଏହା ନନ୍ଦମହାଶୟ ସ୍ୱୟଂ

ସ୍ୱୀକାର କରିଛନ୍ତି । ବ୍ୟାସ ଯଦି କଳ୍ପନା ବିଳାସର ପରାକାଷ୍ଠା ଦର୍ଶାଇ ସମାଜଜୀବନର ହିତ ନିମନ୍ତେ କାହାଣୀ ପରେ କାହାଣୀ ଯୋଡ଼ି ଶାସ୍ତ୍ର ରଚନା କରିପାରନ୍ତି, ତେବେ ସାରଳାଙ୍କ କ୍ଷେତ୍ରରେ, ତାହାର ଅନ୍ୟଥା ଆଶାକରାଯିବା ଉଚିତ ହେବ କି ? ଏ ପ୍ରସଙ୍ଗରେ 'ପ୍ରଣୟ ବଲ୍ଲରୀ'ର ଭୂମିକାରୁ କବି ଗଙ୍ଗାଧରଙ୍କର ଏକ ମନ୍ତବ୍ୟ ଏଠାରେ ଉଦ୍ଧାର କରିବା ପ୍ରାସଙ୍ଗିକ ହେବ । ସେ ଲେଖିଥିଲେ "ଗୋଟିଏ ହସ୍ତୀ ସ୍ୱାଧୀନ ଭାବରେ ଚାଲିଗଲେ, ତାହାର ଗତିର ଯେଉଁ ଶୋଭାଥାଏ, ଅନ୍ୟ ଗୋଟିଏ ହସ୍ତୀ ପୂର୍ବଗାମୀ ହସ୍ତୀର ଠିକ୍ ପାଦଚିହ୍ନ ଉପରେ ପଦକ୍ଷେପ କରି କରି ଚାଲିଲେ ସେ ଶୋଭା ରହିପାରେ ନାହିଁ, କିନ୍ତୁ ସେହି ମାର୍ଗରେ ହଂସର ନୈସର୍ଗିକ ଗତି ଦର୍ଶନୀୟ ହୋଇ ଥାଏ । ନନ୍ଦମହୋଦୟ ସାରଳାଙ୍କୁ ବ୍ୟାସ ପଦାଙ୍କାନୁସରଣକାରୀ ଅନ୍ୟ ଏକ ହସ୍ତୀ ରୂପରେ ଦେଖିବାକୁ ଚାହିଁଥିବାରୁ ହିଁ ଏ ସମସ୍ତ ଅସୁବିଧା ହୋଇଛି । ସାରଳା ବ୍ୟାସଙ୍କର ଏକ ହମାନ୍ତରାଳ ପ୍ରତିଭା ଏହା ସ୍ୱୀକାର କରି ନେଇଥିଲେ "ଶ୍ରୀସାରଳା ଦାସ କବି ପୌରାଣିକ ବହୁଧନାରେ ପଡ଼ି ଆକସ୍ମିକ ସ୍ଥଳମାନଙ୍କରୁ ବହୁ ବିପ୍ର କୃଷ୍ଣ ଚରିତକୁ ନିକଟାକୃଷ୍ଟି କରି ଆଣି ପକାଇ ଅଛନ୍ତି । କିମ୍ବା "ଅକ୍ଷପରମ୍ପରାନୁଗତ ଶ୍ରାବଣିକ ଜ୍ଞାନଯୋଗୁଁ କିମ୍ବା ଅମନ-ପ୍ରମାଦ ବଶତଃ ଏପରି କବି ମହାଂଶୟ ଭ୍ରାନ୍ତ ଧାରଣାରେ ପଡ଼ି ଏପରି କହିପକାଇ ଅଛନ୍ତି" ପ୍ରଭୃତି ମନ୍ତବ୍ୟମାନ ଦେବାକୁ ନନ୍ଦ ମହୋଦୟ ଇଚ୍ଛାକରି ନଥାନ୍ତେ ।

ଆଉ ଗୋଟିଏ ପ୍ରାସଙ୍ଗିକ କଥା ଏଠାରେ ଉଲ୍ଲେଖ କରିବା ଦରକାର । ତାହା ହେଉଛି ଯେ 'ଜୀବନ ଏବଂ ସାହିତ୍ୟ-ଏ ଦୁଇଟା ବସ୍ତୁ ପରସ୍ପରଠାରୁ ପୃଥକ ନୁହେଁ । ଯେଉଁ ଲେଖକ ପାଖରେ ଏ ଦୁଇଟା ସ୍ୱତନ୍ତ୍ର ତାଙ୍କୁ ଲେଖକ କୁହାଯାଇପାରିବ ନାହିଁ । କେବଳ ମାତ୍ର ଲେଖାରେ 'ସତ୍' ବିଷୟରେ ଅବତାରଣା କରି ନିଜ ଜୀବନରେ ତାହାର ଓଲଟାଟି ଆଚରଣ କରିବା, ଅସତ୍ ପ୍ରସଙ୍ଗରେ ସମୟ କଟାଇବା ଏହା ଶୋଭନୀୟ ନୁହେଁ । ତେଣୁ ଆଚରଣୀୟ ନୁହେଁ ମଧ୍ୟ । ଲେଖା ଅର୍ଥ ହେଉଛି ଆଚରଣ । ଯେମିତି ଲେଖାଯିବ, ଆଚରଣ ମଧ୍ୟ ତଦନୁରୂପ ହେବା ଆବଶ୍ୟକ । ପ୍ରକୃତ ଲେଖକର ଏହାହିଁ ଧ୍ୟେୟ । ଏଇ ଧରଣର ଲେଖକଙ୍କୁ ଲକ୍ଷ୍ୟ କରି ହିଁ ଜନ୍‌ଷ୍ଟୁଆର୍ଟମିଲ୍ କହିଥିଲେ, "The writings by which a man can live are not those that-themselves live" ଯଦି କୌଣସି ଲେଖକ ନିଜ ଲେଖା ସହିତ ନିଜ ଜୀବନର ଆଚରଣର ସାମଞ୍ଜସ୍ୟ ରକ୍ଷା କରି ଦେଇପାରନ୍ତି । ତେବେ ତାଙ୍କର କୌଣସି ଭୟ ନାହିଁ । ସେ ନିଶ୍ଚିତଭାବରେ କାଳଜୟୀ ହେବେ । ସାରଳା ଦାସ ଜୀବନର କଥା କହୁଥିଲେ । ସେ ଜୀବନ ଏ ଦେଶର ଅଜସ୍ର ସାଧାରଣ ଜନତାର ଜୀବନ । ଅଭିଜାତ ନିୟନ୍ତ୍ରିତ ସମାଜ ପାଇଁ ତୁରୀୟରୁମ୍ବ ସାହିତ୍ୟ ସୃଷ୍ଟି କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା । ବରଂ ସାହିତ୍ୟ କ୍ଷେତ୍ରରୁ ଯେଉଁମାନେ ଉପେକ୍ଷିତ, ନିଜ

ପରିବେଶରେ ସାରଳା ସେମାନଙ୍କୁ ହିଁ ଅନ୍ୟଙ୍କ ସ୍ତରରେ ଦେଖିବାକୁ ପାଇଥିଲେ । ରାଜା, ମହାରାଜା, ସାମନ୍ତ ଏମାନଙ୍କୁ ସେ ପରିକଳ୍ପନା କଲେ ଏମାନଙ୍କ ଆଙ୍ଗିକରେ । ପାର୍ଥକ୍ୟ କେବଳ ବାହ୍ୟିକ ଉଭୟ କ୍ଷେତ୍ରରେ ପରିମାଣଗତ । ଅନୁଭୂତି ହିଁ ଏଠାରେ କବିଙ୍କ ନିୟନ୍ତ୍ରିତ କଲା । କଳ୍ପନା ଦୂରେଇ ରହିଲା । ଆଦର୍ଶର କଥା, ନୀତିର କଥା, ଶାସ୍ତ୍ରର କଥା କିମ୍ବା ଜ୍ଞାନର କଥା—ଏ ସବୁ ଯାହା ଅବତାରଣା' କରାଗଲା, ତାହାର ଭିତ୍ତି ସ୍ୱରୂପ ରହିଲା ସାଧାରଣ ଜନତାର ପ୍ରୟୋଜନ ସେମାନଙ୍କର ଦୃଷ୍ଟିକୋଣ ଏବଂ ପ୍ରତ୍ୟାଶା ।

ଜ୍ଞାନର ପ୍ରସଙ୍ଗରେ ସାରଳାଦାସଙ୍କ ପାଣ୍ଡିତ୍ୟ, ଦୂରଦୃଷ୍ଟି ଏବଂ ବହୁଜ୍ଞତ୍ୱ ଉଦାହରଣ ଦ୍ୱାରା ପ୍ରମାଣ କରାଯାଇପାରେ । ଜ୍ୟୋତିଷ ଶାସ୍ତ୍ର ବିଜ୍ଞାନର ଏକ ଦୁରୂହ ବିଭାଗ ଏବଂ ଆବହମାନ କାଳର ଏହା ମାନବସମାଜ ଦ୍ୱାରା ଅଭିନନ୍ଦିତ ହୋଇଆସୁଛି ପଂଚଦଶ ଶତାବ୍ଦୀର ଶେଷପାଦରେ ମଧ୍ୟ ଏହାର ହିତରେଖାର ଆଦୃତ ଲକ୍ଷ୍ୟ କରାଯାଇ ପାରେ । ସାରଳାଙ୍କ କାବ୍ୟରେ ଏହାର ପ୍ରଚୁର ପ୍ରସାର ଥିଲା । କବି ଯେ, ଏହି ଶାସ୍ତ୍ରରେ ଅତ୍ୟନ୍ତ ଧୁରୀଣ ଥିଲେ, ଏହାର ପରିଚୟ ତାଙ୍କ ଗ୍ରନ୍ଥରୁ ପ୍ରଚୁର ପରିମାଣରେ ମିଳିବ । ଯଥା, ଦିକଶୂଳାଦି ନିର୍ଣ୍ଣୟ, ଜନ୍ମ, ମୃତ୍ୟୁ, ବିବାହ, ଗଣ୍ଡଦୋଷ, ଶୁଭାଶୁଭ ନିର୍ଣ୍ଣୟ ପ୍ରଭୃତି ସମ୍ପର୍କରେ ଗ୍ରହ ନକ୍ଷତ୍ରାଦିର ଶୁଭାଶୁଭ ପ୍ରଭାବ ଇତ୍ୟାଦି ବିଷୟରେ ଯେଉଁ ବିସ୍ତୃତ ବର୍ଣ୍ଣନା ତାଙ୍କର ଗ୍ରନ୍ଥ ସମୂହରେ ମିଳେ, ସେଥିରୁ ତାଙ୍କର ଏତଦ୍ ବିଷୟ ବିଜ୍ଞାନର ସ୍ପଷ୍ଟ ଚିତ୍ର ଦେଖିବାକୁ ମିଳିବ । ବହୁପଦରୁ ଗୋଟିଏ ଉଦ୍ଧୃତ ଏ ପ୍ରସଙ୍ଗରେ ବିଚାର କରାଯାଇ ପାରେ । 'ଗଣ୍ଡଦୋଷ' ସମ୍ପର୍କରେ ସାରଳା ଲେଖିଛନ୍ତି ।

ଉଭୟ ମଧ୍ୟେ ଯେବେ ଉପୁଜଇ ସନ୍ତତି,
ସେ ପୁତ୍ର ନାଶ ଯାଏ ଜାଣ ତତକ୍ଷଣାନ୍ତି ।
ମଘା ନକ୍ଷତ୍ରର ଆଦ୍ୟ ଯେଉଁ ଘରିଦଣ୍ଡ
ଏଥେ ଜନମ ହେଲେ ବରଷେ ପାଇଦଣ୍ଡ ।

ମୂଳା ନକ୍ଷତ୍ରରୁ ଯେବେ ଘରିଦଣ୍ଡ ଥାଇ,
ଜନ୍ମିଲେ ଚଉଁରେ ସୁବର୍ଣ୍ଣ-ଗଣ୍ଡ ପଡ଼ଇ ।
ଜ୍ୟେଷ୍ଠା ନକ୍ଷତ୍ରରେ ଯେ ପ୍ରଥମ ପାଦଗଣ୍ଡ
ଏଥେ ଏଥେ ଜନମ ହେଲେ ବରଷେ ପାଇ ଗଣ୍ଡ ।

× × ×

ଏତେ ଯୋଗେ ଦିବସେ ସନ୍ତାନ ହେଲେ ଜନ୍ମ
ପିତାକୁ ଗଣ୍ଡ ଦୋଷ ଲାଗଇ ନିଷ୍ଟେ ।
ରାତ୍ରି କାଳେ ଯଦି ଉପୁଜଇ ସନ୍ତତି
ମାତାକୁହିଁ ଗଣ୍ଡ ହୁଏ ବୋଲନ୍ତି ଅଗସ୍ତି ।

ଏ ସମ୍ପର୍କରେ ଶାସ୍ତ୍ରୀୟ ମତ ହେଉଛି, ସନ୍ଧ୍ୟାଗ୍ରନ୍ଥି ହିତାସ୍ତଭୋଗଣ୍ଡ ଯୋଗୋ ଭବନ୍ତିଶୂଃ, ଆସ୍ମାକଂ ମାତରଂ ତାତଂ ବଦନ୍ତନ୍ତି ଯଥାକ୍ରମଫଳତ. 'ଜ୍ୟୋତିଷ ଶାସ୍ତ୍ର ସମ୍ପର୍କରେ କବି ସାରଳାଙ୍କର ସୂକ୍ଷ୍ମଜ୍ଞାନର ପରିଚୟ ବିଶାଳ ମହାଭାରତରେ ଯଥେଷ୍ଟ ମିଳିବ । ସ୍ୱୟଂ ନନ୍ଦ ମହୋଦୟ ମଧ୍ୟ ଏହା ସ୍ୱୀକାର କରି ଲେଖିଛନ୍ତି," ଜ୍ୟୋତିଃ ଶାସ୍ତ୍ରରେ ଫଳିତ ଜ୍ୟୋତିଷ ଓ ମୌହୂର୍ତ୍ତିକ ଭାଗରେ ଏହାଙ୍କର ଯୋଗ୍ୟତା ପାରଦର୍ଶିତା ଥିଲା, ଏହା କହିବା ବାହୁଲ୍ୟ ମାତ୍ର ।" କିମ୍ବା ସେ ଜ୍ୟୋତିଃ ଶାସ୍ତ୍ରରେ କେତେଦୂର ପ୍ରବୀଣ କିମ୍ବା ପ୍ରଧାନ କାର୍ଣ୍ଣିକ ଥିବାରୁ ତନ୍ତ୍ର ତନ୍ତ୍ର ବିଷୟମାନଙ୍କର ଉପଯୁକ୍ତ ଓ ଶୁଭକାରକ ତିଥି ବାର ଓ ଗ୍ରହ ନକ୍ଷତ୍ରାଦିର କାଳନିକ ସଂସ୍ଥାନ ନିର୍ଦ୍ଦେଶ କରି ଅଛନ୍ତି । ଏତାଦୃଶ ବିବରଣୀ × × ଶାସ୍ତ୍ରୀୟ ସମର୍ଥନ ବର୍ଜ୍ଜିତ ହୋଇ ନପାରେ ବୋଲି ଆମ୍ଭମାନଙ୍କର ବିଶ୍ୱାସ × × ଆମ୍ଭେମାନେ ଜ୍ୟୋତିଃ ଶାସ୍ତ୍ରୋକ୍ତ ପ୍ରମାଣ ବାକ୍ୟସବୁ ମିଳାଇ ଦେଖିଅଛୁ । ଠିକ୍ ଶାସ୍ତ୍ରାନୁମୋଦିତ ହୋଇଅଛି ।" ଜ୍ୟୋତିଃ ଶାସ୍ତ୍ରର ଜଟିଳ ଏବଂ ସୂକ୍ଷ୍ମ ତଥ୍ୟ ଗୁଡ଼ିକୁ ଯେଉଁ କବି ଶାସ୍ତ୍ରୋକ୍ତ ପ୍ରମାଣେ ବିଶ୍ଳେଷଣ କରି ପାରିଛନ୍ତି, ତାହାଙ୍କୁ ଆମେ କେବଳ ମୁଖଧର ମାନି ନେଇପାରିବା କି ? ସଂସ୍କୃତ ଶାସ୍ତ୍ରରେ ତାଙ୍କର ପ୍ରବେଶ ନଥିଲା । ସେ କେବଳ ଶୁଣି ଶୁଣି ଯେତିକ ମନେ ରଖି ପାରିଥିଲେ, ତାହାରି ଭିତ୍ତିରେ ହିଁ ନିଜର ଗ୍ରନ୍ଥ ରଚନା କରିଥିଲେ ଏ ଭଳି ମନ୍ତବ୍ୟ ନିତାନ୍ତ ହାସ୍ୟାସ୍ପଦ ମନେ ହେବ ନାହିଁ କି ? ଏହାଙ୍କର ଜ୍ଞାନକୁ ଅନ୍ଧପରମ୍ପରାନୁଗତ ଶ୍ରାବଣିକ ଜ୍ଞାନ" ମାତ୍ର ବୋଲି ଉଲ୍ଲେଖ କରିବା ଦ୍ୱାରା ତାଙ୍କ ପ୍ରତି ଅନ୍ୟାୟ କରାହେଉ ନାହିଁକି ? ଏସମସ୍ତ ପ୍ରଶ୍ନ ଆମେ ଆମର ପାଠକମାନଙ୍କ ନିକଟରେ ରଖୁଛୁ ।

ବ୍ୟାସଦେବ ବନପର୍ବରେ ନହୁଷ ମୁକ୍ତି, ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗ, ଧୁନ୍ଧୁମାର କଥା ପତିବ୍ରତୋପାଖ୍ୟାନ, ଘୋଷଯାତ୍ରା, ଦୁର୍ବାସା ନିଗ୍ରହ, ଜୟଦ୍ରଥ ଅପମାନ, ରାମକଥା, ସାବିତ୍ରୀ ଉପାଖ୍ୟାନ, କର୍ଣ୍ଣ ଜନ୍ମ, ଧର୍ମବକବୃତ୍ତାନ୍ତ ପ୍ରଭୃତି ଘଟଣା ମାନ ବର୍ଣ୍ଣନା କରିଛନ୍ତି । ଏଥି ମଧ୍ୟରୁ କବି ସାରଳା ଧୁନ୍ଧୁମାର ଉପାଖ୍ୟାନ, ପତିବ୍ରତୋପାଖ୍ୟାନ, ସାବିତ୍ରୀ ଉପାଖ୍ୟାନ ପ୍ରଭୃତିକୁ ସମ୍ପୂର୍ଣ୍ଣ ରୂପେ ତ୍ୟାଗ କରି ଦେଇଛନ୍ତି । ନହୁଷ ମୁକ୍ତି ଲୋମଶ ମୁନି ସମାଗମ, ଧର୍ମ ବକ ବୃତ୍ତାନ୍ତ, ଜୟଦ୍ରଥ ନିଗ୍ରହ, ଗଙ୍ଗାବତରଣ ଋଷ୍ୟଶୃଙ୍ଗ ଚରିତ, ରାମ ଜନ୍ମ, ଦ୍ରୌପଦୀ ସତ୍ୟଭାମା ସମ୍ବାଦ, ନଳୋପାଖ୍ୟାନ ଏବଂ ଶ୍ୟେନ କପୋତ ଆଖ୍ୟାନ ପ୍ରଭୃତି ମୂଳଗ୍ରନ୍ଥର ଘଟଣାମାନ ବର୍ଣ୍ଣନା କଲା ସମୟରେ ସୁଦ୍ଧା ମୌଳିକତା ପ୍ରଦର୍ଶନ କରିଛନ୍ତି । ତଥ୍ୟ ଏବଂ ତତ୍ତ୍ୱର ନିଗୂଢ଼ ଜଟିଳତାକୁ ସମ୍ଭବ ଏଡ଼ାଇ ସରଳ ଏବଂ ସ୍ପଷ୍ଟ ଭାବରେ ଧର୍ମର ଗୂହ୍ୟ ନିହିତ ତତ୍ତ୍ୱକୁ ତାଙ୍କର ଅଳ୍ପଜ୍ଞ ପାଠକମାନଙ୍କ ନିକଟରେ ପହଞ୍ଚାଇ ଦେବା ହିଁ ଥିଲା ସାରଳାଙ୍କର ପ୍ରଧାନ ଉଦ୍ଦେଶ୍ୟ । ସେ ଏଥିରେ ସଫଳ ହୋଇଛନ୍ତି କିମ୍ବା ନାହିଁ । ଏହା ତାଙ୍କର ପାଠକ ମାନେ ହିଁ କହି ପାରିବେ । ଆଲୋଚକ ନନ୍ଦ ଦେଖାଇଛନ୍ତି ଯେ, ଦାତାକର୍ଣ୍ଣ କଥା, ଗଣେଶଚତୁର୍ଥୀର

ଅଶୁଭ ଚନ୍ଦ୍ର କଥା, ଦେଳାବଳୀ କଥା, ହାରାବତୀ କଥା ସତ୍ୟଆମ୍ବ କଥା, ସତଳା ହରଣ କଥା ଲକ୍ଷ୍ମୀବାସ ଦୈତ୍ୟ ବଧ କଥା, କାଳାଗ୍ନି ରାକ୍ଷସୀ କଥା ପ୍ରଭୃତି ଚତୁର୍ବିଂଶତି ଗୋଟି ନୂତନ ଉପାଖ୍ୟାନ ସଂଯୋଗ କରି ସାରଳାଦାସ ନିଜର କଳ୍ପନା ନିପୁଣ ବୁଦ୍ଧିମତ୍ତା'ର ପରିଚୟ ପ୍ରଦାନ କରିଅଛନ୍ତି । 'ବନପର୍ବ' ରେ ହିଁ ସାରଳା ଦାସ ଦ୍ରୌପଦୀଙ୍କର ପଞ୍ଚ ପୁତ୍ରର ଜନ୍ମ ବର୍ଣ୍ଣନା କରିଛନ୍ତି । ବ୍ୟାସ ଦେବଙ୍କ ବର୍ଣ୍ଣନା ପ୍ରକାରେ ଏହି ସମସ୍ତଙ୍କୁ ସେମାନେ ସଂପ୍ରାପ୍ତ ତାରୁଣ୍ୟଥିଲେ । ବ୍ୟାସ ସେମାନଙ୍କର ନାମ ଯଥା କ୍ରମେ ପ୍ରତିବନ୍ଧ୍ୟ, ସୁର ସୋମ, ଶ୍ରୁତକୀର୍ତ୍ତି, ଶତାନୀକ ଏବଂ ଶ୍ରୁତ କର୍ମା ଥିବାର ଉଲ୍ଲେଖ କରିଥିବା ସ୍ଥଳେ, ସାରଳା ଦାସ ସେମାନଙ୍କୁ ଜୟଦେବ, ବଳସେନ, ପରମାନନ୍ଦ, ପ୍ରାକର୍ମ କେଶରୀ ଏବଂ ସୁନସେନ ନାମରେ ଅଭିହିତ କରିଛନ୍ତି । ଆଲୋଚକ ବୃନ୍ଦ ଏଥି ନିମନ୍ତେ ବୃଦ୍ଧ ସାରଳାଙ୍କୁ କଟାକ୍ଷ କରିବାକୁ ଭୁଲି ନାହାନ୍ତି ।

ପ୍ରସଙ୍ଗ କ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ସୃଷ୍ଟି କ୍ଷେତ୍ରରେ ପ୍ରତ୍ୟେକ ସ୍ରଷ୍ଟାର ଏକ ନିଜସ୍ୱ ନୀତିଥାଏ । ସେହି ନୀତି କଦାପି ଅନ୍ୟ କାହାଦ୍ୱାରା ନିୟନ୍ତ୍ରିତ ହେବା ଉଚିତ ନୁହେଁ । ଯେଉଁ ସମାଜରେ ମଣିଷକୁ ସମ୍ମାନ ପାଇବାକୁ ହେଲେ ନିଜର ଆଦର୍ଶ ବିସର୍ଜନ ଦେଇ ତାହା ପାଇବାକୁ ହୁଏ, ସେ ସମାଜ ଆଦୌ ଶ୍ଳାଘନୀୟ ନୁହେଁ । ସାରଳା ଦାସ ଏହି କଥାଟିକୁ ଭଲ ଭାବରେ ବୁଝିଥିବାରୁ ବହୁ ସ୍ଥାନରେ ପ୍ରୟୋଜନ ବୋଧରେ ସେଇ ସମାଜକୁ ଆଘାତ ହାଣିଛନ୍ତି ଏବଂ ନିଜମତରେ ଅଟଳରହି ସ୍ୱତନ୍ତ୍ର ପଥରେ ଗ୍ଭଲିଛନ୍ତି । ବିଶ୍ୱକବି ରବୀନ୍ଦ୍ରନାଥ ଲେଖିଛନ୍ତି—"ଯେଉଁ ସମାଜରେ ମଣିଷ ନିଜର ସତ୍ୟ ଆଦର୍ଶକୁ ବଜାୟରଖି, ନିଜର ସତ୍ୟ ମତକୁ ଖର୍ବ ନକରି ଶ୍ରଦ୍ଧାଲାଭ କରିପାରେ, ସେଇ ସମାଜ ହିଁ ଯଥାର୍ଥ ଶ୍ରଦ୍ଧାଭାଜନ । ·ଯେଉଁଠି ଆଦର ପାଇବାକୁ ହେଲେ ମଣିଷ ନିଜର ସତ୍ୟକୁ ବର୍ଜି କରିଦେବାକୁ ବାଧ୍ୟ ହୁଏ, ସେଠାକାର ଆଦର ଆଦରଣୀୟ ନୁହେଁ । କିଏ ମୋ ଦଳରେ, କିଏ ମୋ ଦଳର ନୁହଁ, ଏକଥା ବୁଝି ଯେଉଁଠି ସ୍ତୁତି, ସମ୍ମାନର ଭାଗ ବଣ୍ଟାଯାଏ, ସେଠାର ସମ୍ମାନ ଅସ୍ପୃଶ୍ୟ ! × × ଯାହା ଅବହେଳାରେ ରଚିତ, ତାହା ଅବହେଳାର ସାମଗ୍ରୀ । ଯେଉଁଥିରେ କେହି ଯଥାର୍ଥ ଜୀବନରେ ସମସ୍ତ ଅନୁରାଗ ଅର୍ପଣ କରି ନାହାନ୍ତି, ତାହା କେବେ ହେଲେ ଅମୋଘ ହୋଇ କାହାରି ଅନ୍ତର ଆକର୍ଷଣ କରି ପାରିବ ନାହିଁ ।" ସାରଳା ଦାସ ନିଜ ଆଦର୍ଶକୁ ଭଲଭାବରେ ଚିହ୍ନିଥିଲେ, ଏବଂ ଶେଷ ପର୍ଯ୍ୟନ୍ତ ତାହାକୁ ରକ୍ଷା କରିବାରେ ସକ୍ଷମ ହୋଇଥିଲେ ମଧ୍ୟ । ସାରଳା ସାହିତ୍ୟ ଅବହେଳାରେ ରଚିତ କିମ୍ବା ଦାସ କବି ଏଥିରେ ନିଜ ଅନ୍ତରର ସମସ୍ତ ଅନୁରାଗ, ଆବେଗ ଢାଳିଦେଇଛନ୍ତି, ଏ ବିଷୟରେ ତାଙ୍କର ପାଠକମାନେହିଁ ଆମ ଅପେକ୍ଷା ବେଶୀ କହି ପାରିବେ । ପଣ୍ଡିତ ମ୍ଲଭ ଦୋଷଦର୍ଶୀ ଦୃଷ୍ଟିରେ ତାଙ୍କ ସାହିତ୍ୟ ଯଦି ଆମକୁ କେବଳ ଦୋଷପୂର୍ଣ୍ଣ

ଦେଖା ଯାଏ, ତେବେ ଏଥିପାଇଁ ଆମେ କାହାକୁ ଅଭିଯୁକ୍ତ କରିବା ? ସାରଳାଙ୍କ ନା ନିଜର ମନ୍ତ୍ରଗ୍ରସ୍ତ ଦୃଷ୍ଟି କୋଣକୁ ?

ସାହିତ୍ୟ ସହିତ ଜୀବନର ନିଗୂଢ଼ ସମ୍ପର୍କ ବିଷୟରେ ଅନେକ କଥା କୁହାଯାଇଛି । ପିଲାଦିନରୁ ମଣିଷ ସମାଜ ସହିତ ଜଡ଼ିତ ହୋଇ କେତେବେଳେ ଆନନ୍ଦ କେତେବେଳେ ଅବା ଆଘାତ ପାଇ ପାଇ ପ୍ରତ୍ୟେକ ମଣିଷର ନିଜସ୍ୱ ଗୋଟିଏ ସ୍ୱଭାବ ଗଢ଼ି ଉଠେ । ଯେଉଁଭିତରୁ ଯାହାର ଦେଖିବାର ପ୍ରବଣତା ବେଶି, ସେ ପରବର୍ତ୍ତୀ ଜୀବନରେ ହୁଏ ବୈଜ୍ଞାନିକ, ଯାହାର ଭାବିବାର ପ୍ରବଣତା ଅଧିକ, ସେ ହୁଏ ଦାର୍ଶନିକ । ମାତ୍ର ଯେ ଏକାଧାରରେ ଅଧିକ ଚିନ୍ତାକରେ, ଅଧିକ ଦେଖେ ଅର୍ଥାତ୍ ଜୀବନର ସବୁଆଡ଼କୁ ଦୃଷ୍ଟି ଖେଳାଇ ପାରେ, ଜୀବନ ଆଉ ଜଗତର ସବୁ କିଛି, ଯାହାର ଚିନ୍ତାକୁ ଆକୃଷ୍ଟ କରେ, ସେହିଁ ହୋଇଯାଏ ଲେଖକ । ସେହି କାରଣରୁ ଏକମାତ୍ର ଲେଖକଙ୍କୁ କୁହାଯାଏ 'Total man' ଅର୍ଥାତ୍ ସର୍ବାତ୍ମକ ମଣିଷ । ଏହାର ସଫଳତା ବସ୍ତୁରେ ଦେଖାଯାଏ, ଲେଖକର ବଳିଷ୍ଠ କଳ୍ପନା ଏବଂ ଅନଳସ ଅନୁଶୀଳନ ପ୍ରବଣତା । ଅନୁଶୀଳନହିଁ ତାଙ୍କୁ ଦିଏ ଅସଲ୍ ନକଲ୍ ଚିହ୍ନିବାର ଦିବ୍ୟ ଶକ୍ତି । ସେହି ଶକ୍ତି ସହାୟ୍ୟରେ ସେ 'ଗ୍ରହଣ ବର୍ଜନ' କ୍ରିୟା ଦ୍ୱାରା ନିଜର ରଚନା ପ୍ରସ୍ତୁତ କରେ । ଏ ଦୃଷ୍ଟିକୋଣରୁ କବି ସାରଳାଙ୍କର ବଳିଷ୍ଠ କଳ୍ପନା ବିଳାସ ଏବଂ ଅନୁଶୀଳନ ପ୍ରବଣତା ସମ୍ପର୍କରେ ବିଚାର କରାଯାଇପାରେ । ବ୍ୟାସ ମହାଭାରତର ବିପୁଳ ଶାସ୍ତ୍ରଧର୍ମିତାକୁ ଏକାନ୍ତ ଭାବରେ ମାନବଧର୍ମିତାରେ ରୂପାନ୍ତରିତ କରିବା ନିମନ୍ତେ ଯେଉଁ ବିପୁଳଜ୍ଞାନ, ଦୂରଦୃଷ୍ଟି ଏବଂ ସମୀକରଣ କ୍ଷମତା ଥିବାର ପ୍ରୟୋଜନ, ତାହା ନିଶ୍ଚିତ ଭାବରେ ଏହି ତଥାକଥିତ ଗ୍ରାମ୍ୟ କବିଙ୍କର ଥିଲା । ଅନୁରୂପ ପ୍ରବଣତା ନଥିଲେ, କେହି ହେଲେ, ଅନ୍ୟ ଏକ ବିପୁଳ ପ୍ରତିଭା ସହିତ କାନ୍ଧକୁ କାନ୍ଧ ମିଳାଇ ଠିଆ ହେବାର ଦୁଃସାହସ କରିବ ନାହିଁ, ଏହି ସାଧାରଣ ସତ୍ୟଟିକୁ ଭୁଲିଗଲେ ଚଳିବ ନାହିଁ ।

ମାନବିକତା ଏବଂ ଶାସ୍ତ୍ରୀୟ ପାଣ୍ଡିତ୍ୟ—ଏ ଉଭୟ ମଧ୍ୟରେ ଦାସ କବି ମାନବିକତାର କର୍ଷଣକୁ ନିଜର ଲକ୍ଷ୍ୟ ରୂପ ଗ୍ରହଣ କରି ନେଇ ଥିବାରୁ, ପାଣ୍ଡିତ୍ୟ ଗୌଣ ହୋଇଯାଇଛି, ତତ୍ତ୍ୱର ରୂପ ହୋଇଛି ଏଠାରେ ଏକାନ୍ତ ସରଳ, ସର୍ବଜନ ବୋଧ । ଗୋଟିଏ ମାତ୍ର ପ୍ରସଙ୍ଗ ଆଲୋଚନା କରି ଆମେ ଏହି ପ୍ରବନ୍ଧର ଉପସଂହାର କରିବୁ । ମୂଳ ମହାଭାରତରେ ବନପର୍ବର ଶେଷ ଆଡ଼କୁ ବ୍ୟାସ ଦେବ ଯୁଧିଷ୍ଠିର ଯକ୍ଷ ସମ୍ବାଦ ବିଷୟର ଅବତାରଣା କରିଛନ୍ତି । ପାଣ୍ଡବମାନଙ୍କୁ ପରୀକ୍ଷା କରିବା ନିମନ୍ତେ ସ୍ୱୟଂ ଧର୍ମଦେବ ଏକ ବକପକ୍ଷୀର ଛଦ୍ମବେଶ ଧାରଣ କରି ଦ୍ୱୈତବନର ଏକ ସରୋବର ଜଳରେ ରହି ଯାହା ବଳରେ ଭୀମ ଅର୍ଜୁନକୁଳ ଓ ସହଦେବଙ୍କୁ ହତ୍ୟାକରିଥିଲେ ।

ଶେଷରେ ଯୁଧିଷ୍ଠିର ଏହି ମାୟାବୀଙ୍କର ସମସ୍ତ ପ୍ରଶ୍ନର ଉତ୍ତର ଦେଇ ସାରିବା ପରେହିଁ ପାଣ୍ଡବମାନେ ପୁନର୍ଜୀବିତ ହୋଇଥିଲେ । ଅରଣି ଅପହରଣରତ ଏକ ମୃଗର ଛଦ୍ମ ବେଶରେ ସ୍ୱୟଂ ଧର୍ମରାଜ ପାଣ୍ଡବମାନଙ୍କୁ ଆଶ୍ରମଠାରୁ ବହୁ ଦୂରକୁ ଆନୟନ, ତୃଷାର୍ତ୍ତ ପାଣ୍ଡବମାନଙ୍କର ଜଳ ଅନ୍ୱେଷଣ ଏବଂ ସେଠାରେ ଧର୍ମରାଜଙ୍କର ମାୟାବିସ୍ତାର ପ୍ରଭୃତି ବିଷୟ ବ୍ୟାସଦେବ ଆନୁପୂର୍ବିକ ଲେଖିଛନ୍ତି ।

ଦାସ କବି ମୂଳ ବିବରଣୀର ଆଖ୍ୟାନ ଅଂଶର ବହିରାବରଣଟିକୁ ମାତ୍ର ଠିକ୍ ରଖି ଅନ୍ୟ ଅଂଶ ପରିତ୍ୟାଗ କରିଛନ୍ତି ସ୍ୱାଭାବିକ ଭାବରେ । ପ୍ରଥମ କଥା ବ୍ୟାସ କବି ଏହି ଘଟଣାଟିକୁ ଘଟାଇଛନ୍ତି ବନବାସର ଅନ୍ତିମ ଚରଣରେ । ସାରଳା ଦାସ ଏହି ସମୟକ୍ରମ ବଦଳାଇ ଦେଇ 'ଅଷ୍ଟବରଷ ବନବାସ' ଅନ୍ତେ ଏହି ଘଟଣା କାମଦେବ ବନରେ ଘଟିଥିବାର ବର୍ଣ୍ଣନା କରିଛନ୍ତି । ବ୍ୟାସଦେବଙ୍କର ଧର୍ମ ବକ ଯୁଧିଷ୍ଠିରଙ୍କୁ ଯେଉଁ ପ୍ରଶ୍ନ ପଚାରିଛନ୍ତି, ଏବଂ ଯେଉଁ ଉତ୍ତର ପାଇଛନ୍ତି, ସେଥିରୁ ସାରଳା ମୋଟା ମୋଟି ଏହାହିଁ ଗ୍ରହଣ କରିଛନ୍ତି ଯେ, ଏହି ସ୍ଥାନରେ କିଛି ତାତ୍ତ୍ୱିକ ଆଲୋଚନା ଦେବାକୁ ହେବ । ତାଙ୍କର ପାଠକମାନେ ଯେଉଁ ତତ୍ତ୍ୱସହିତ ନିବିଡ଼ ଭାବରେ ପରିଚିତ, ସାରଳା ତାକୁହିଁ ଉକ୍ତଗ୍ରନ୍ଥରେ ସ୍ଥାନ ଦେଇଛନ୍ତି । ବ୍ୟାସଙ୍କର ଯକ୍ଷ ପ୍ରଥମ ପ୍ରଶ୍ନ କହିଛନ୍ତି "କେଉଁ ଦ୍ରବ୍ୟ ସୂର୍ଯ୍ୟଙ୍କୁ ଉନ୍ନୀତ କରେ ? ତାହାଙ୍କ ଚତୁଃପାର୍ଶ୍ୱରେ କେଉଁମାନେ ବିଚରଣ କରନ୍ତି, କିଏ ତାହାଙ୍କୁ ଅସ୍ତ କରାଏ ଇତ୍ୟାଦି । ଅର୍ଦ୍ଧାଶନରେ କାଳଯାପନ କରୁଥିବା ମୁଣ୍ଡମାଳ ଗୁଣ୍ଡରେ ମାଣ ଅହୋରାତ୍ର ବହିବା ନିମନ୍ତେ ସଂଗ୍ରାମ କରୁଥିବା, ସାରଳା ଦାସଙ୍କର ଅଗଣିତ ପାଠକମାନଙ୍କ ନିକଟରେ ଏହି ସବୁ ଆଲୋଚନା ଏକାନ୍ତ ଭାବରେ ସୌଖୀନ୍ ପର୍ଯ୍ୟାୟର । ସାହୁକାର, ଜମିଦାର, ରାଜା, ସାମନ୍ତ ମାନେହିଁ ତାଙ୍କ ଅକ୍ଷିରେ ସର୍ବମୟ କର୍ତ୍ତା । ତେଣୁ ସାରଳା ଦାସଙ୍କର ଧର୍ମବକ ପ୍ରଶ୍ନ କହିଛନ୍ତି

"ଆହୋ ମହାତମା ରାଜା କାହାକଇଂ ବଶ୍ୟ,
ଭଣ୍ଡାର ବିଧ୍ୱଂସଇ କେ ସଂସାର କରଇ ନାଶ ।"
ଯୁଧିଷ୍ଠିର ମଧ୍ୟ ଏହାର ସରଳ ଉତ୍ତର ଦେଇ କହିଛନ୍ତି,
"ରାଜା ଧର୍ମରେ ହୋନ୍ତେ ବଶ୍ୟ,
ଅଧର୍ମ କ୍ରୋଧରେ ଭଣ୍ଡାର ଯାଇନାଶ ।"

ଧର୍ମର ଗୁରୁତ୍ୱ ତତ୍ତ୍ୱ ପ୍ରଚାର କରିବା ସରକାରଙ୍କର ଉଦ୍ଦେଶ୍ୟ ଥିଲା । ହିଂସା ଏବଂ କ୍ରୋଧକୁ ସକଳ ଅନର୍ଥର ମୂଳ ବୋଲି ସମସ୍ତ ଶାସ୍ତ୍ର କରନ୍ତି । ଦାସ-କବି ଏଠାରେ ତାହାକୁ ହିଁ ମାନବର ଅଧଃପତନର କାରଣ ବୋଲି ବର୍ଣ୍ଣନା କରିଛନ୍ତି । ବ୍ୟାସଦେବ ମଧ୍ୟ ଏହି ପର୍ଯ୍ୟାୟରେ ଅକ୍ରୋଧକୁ ଅ-ଶୋକର କାରଣ ରୂପେ ଚହ୍ନିତ କରିଅଛନ୍ତି ।

ବ୍ୟାସଙ୍କର ଯେଉଁ ପର୍ଯ୍ୟାୟଟିକୁ ସାରଳା ଗ୍ରହଣ କରିଛନ୍ତି । ତାହା ହେଉଛି, 'କେବଣ ପୁରୁଷ ମିତ୍ର ହୋଏ ପ୍ରବାସକୁ ? ଗୃହକୁ ମଇତ୍ର କେହୁ ? କେ ସଖା ହୋଇବ ବ୍ୟାଧିକ ? ପ୍ରାଣ ସନ୍ଦେହ କାଳକୁ କେ ମଇତ୍ର ? ଆପଦ ପଡ଼ିଲେ ପାର କରଇ କେ ? ବ୍ୟାସଦେବଙ୍କର ପ୍ରଶ୍ନ, " ପ୍ରବାସୀକୁ ମିତ୍ର କଏ ? ଗୃହବାସୀଙ୍କ ମିତ୍ର କଏ ? ଅତୁର ଜନଙ୍କର ମିତ୍ର କଏ ? ମୁମୂର୍ଷ ବ୍ୟକ୍ତିର ମିତ୍ର କଏ ? "ବ୍ୟାସ ଏବଂ ସାରଳା ଏହି ସବୁ ପ୍ରଶ୍ନର ଯେଉଁ ଉତ୍ତର ପରିକଳ୍ପନା କରିଛନ୍ତି, ସେଥିରେ ମଧ୍ୟ ପାର୍ଥକ୍ୟ ରହିଛି । ପ୍ରଥମ ପ୍ରଶ୍ନର ଉତ୍ତର ସାରଳାଙ୍କ ଯୁଧିଷ୍ଠିର "ବିଦ୍ୟା" ବୋଲି କହିଥିବାସ୍ଥଳେ ବ୍ୟାସଙ୍କର ଯୁଧିଷ୍ଠିର 'ବନ୍ଧୁ' ବୋଲି କହିଛନ୍ତି । ଗ୍ରାମୀଣ କବି ନିଜ ପରିବେଶ, ମୂର୍ଖବ୍ୟକ୍ତିର ଅସହାୟତା, ଜ୍ଞାନ ଆହରଣ ନିମନ୍ତେ ସାଧାରଣ ଜନତାକୁ ପ୍ରେରଣାଦାନ ପ୍ରଭୃତି ଦୃଷ୍ଟିକୋଣରୁ ଯେଉଁ ଉତ୍ତରଟି ପରିକଳ୍ପନା କରିଛନ୍ତି, ତାହା ଚାଣକ୍ୟଙ୍କର ବିଦ୍ୱାନ୍ ସର୍ବତ୍ର ପୂଜ୍ୟତେ' ଉପଦେଶର ଆଧାରରେ ପରିକଳ୍ପିତ ଏବଂ ସର୍ବଜନଗ୍ରାହ୍ୟ । ଏହା ତୁଳନାରେ ବ୍ୟାସଙ୍କର ପରିକଳ୍ପନାଟି ଏକାନ୍ତ ସାଧାରଣ ବୋଲି ମନେହୁଏ । ଦ୍ୱିତୀୟ ପ୍ରଶ୍ନର ଉତ୍ତର ଉଭୟ କ୍ଷେତ୍ରରେ ସମାନ । ତୃତୀୟ ପ୍ରଶ୍ନର ଉତ୍ତର ମଧ୍ୟରେ ସୂକ୍ଷ୍ମ ପାର୍ଥକ୍ୟ ନାହିଁ । ଚତୁର୍ଥ ପ୍ରଶ୍ନର ଉତ୍ତର ସାରଳା ଦାସ 'ଧର୍ମ' ଶବ୍ଦ ଦ୍ୱାରା ଦେଇଥିବା ସ୍ଥଳେ ବ୍ୟାସ ଏହାକୁ 'ଦାନ' ବୋଲି କହିଛନ୍ତି । ବ୍ୟାସ ଦେବ ଏଠାରେ 'ସାଧନ' ସମ୍ପର୍କରେ ଉଲ୍ଲେଖ କରିଥିବାସ୍ଥଳେ ସାରଳାଦାସ ଆଉ ଟିକିଏ ଆଗେଇ ଯାଇ ଏହା'ର ପରିଣାମ ବା ସାଧ୍ୟକୁ ପ୍ରକୃତ ଉତ୍ତର ବୋଲି ଗ୍ରହଣ କରିଛନ୍ତି । ଏହି ପର୍ଯ୍ୟାୟରେ ବ୍ୟାସଙ୍କର ଅଉ କୌଣସି ପ୍ରଶ୍ନ ନାହିଁ । ସାରଳା ଦାସ ଆଉ ଦୁଇଟି ପ୍ରଶ୍ନ ନିଜ କଳ୍ପନାରୁ ଯୋଡ଼ି ପ୍ରଥମଟିର ଉତ୍ତର 'ଦୁର୍ଗା' ଏବଂ ଦ୍ୱିତୀୟଟିର ଉତ୍ତର 'ଧର୍ମବକ' ବୋଲି କହିଛନ୍ତି ।

ବ୍ୟାସଦେବ ଏହି ପର୍ଯ୍ୟାୟରେ ଯେଉଁ ପ୍ରଶ୍ନର ଅବତାରଣା କରିଛନ୍ତି ମୋଟାମୋଟି ସେଗୁଡ଼ିକର ଲକ୍ଷ୍ୟ ହେଉଛି ଜ୍ଞାନର ପ୍ରସାର । 'ପୃଥିବୀ ଅପେକ୍ଷା ଗୁରୁତର କଏ, ଆକାଶ ଅପେକ୍ଷା ଉଚ୍ଚତର କଏ, ବାୟୁ ଅପେକ୍ଷା କଏ ଶୀଘ୍ରଗାମୀ ଓ ତୃଣ ଅପେକ୍ଷା କଏ ଅଧିକ ? କିମ୍ବା ସେଇ ପ୍ରସିଦ୍ଧ ପ୍ରଶ୍ନ "କଃ ସୁଖୀ ? କିମ୍ ଆଶ୍ଚର୍ଯ୍ୟମ ? କଃ ପନ୍ଥା ? କା ବାର୍ତ୍ତା ॥ ଏବଂ ଏହାର ଉତ୍ତର 'ଅହନି ଅହନି ଭୂତାନି ଗଚ୍ଛନ୍ତି ଯମ ମନ୍ଦିରମ୍ ଶେଷାଃ ଜୀବିତୁମିଚ୍ଛନ୍ତି କିମାଶ୍ଚର୍ଯ୍ୟମ୍ ଅତଃପରମ୍ ? ॥

ତର୍କୋଽପ୍ରତିଷ୍ଠା ।
ଶ୍ରୁତି ବିଭିନ୍ନା ଶ୍ରୁତୟଶ୍ଚ ଭିନ୍ନା ।
ନାସୌମୁନିର୍ଯସ୍ୟ ମତଃ ପ୍ରମାଣମ୍
ଧର୍ମସ୍ୟ ତତ୍ତ୍ୱଂ ନିହିତଗୁହାୟାମ୍

ମହାଜନ ଯେନ ଗତୋ ସ ପନ୍ଥା!" ପ୍ରଭୃତିରୁ ବ୍ୟାସ-କବିଙ୍କର ଦୂରଦୃଷ୍ଟି ପାଣ୍ଡିତ୍ୟ ଏବଂ ଚିନ୍ତାପୁଷ୍ଟଳତା ପ୍ରଭୃତି-ସମ୍ପର୍କରେ ଧାରଣା ହୋଇଥାଏ । ଏ ପ୍ରଶ୍ନ ଗୁଡ଼ିକ ମୁଖ୍ୟତଃ ସ୍ତବନାତ୍ମକ । ଏହା ତୁଳନାରେ ଦାସ କବି ଯେଉଁ ପ୍ରଶ୍ନ ଗୁଡ଼ିକର ଅବତାରଣା କରିଛନ୍ତି, ସେଥିପାଇଁ ସେ ନିଜ ପରିବେଶ ଉପରେ ହିଁ ଅଧିକ ନିର୍ଭର କରିଛନ୍ତି । ମାଟି, ଆକାଶ, ଜଳ, ବାୟୁ, ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ନକ୍ଷତ୍ର-ଯାହା କିଛି ଜଣେ ସାଧାରଣ ମଣିଷର ମନକୁ ସ୍ୱଗ୍ରହାନ୍ତ କରିବ ତାହାହିଁ ଏଠାରେ ପ୍ରଶ୍ନାକାରରେ ଉଠିଥାଇଛି । ଜୀବନ ମୃତ୍ୟୁର ଚିର ରହସ୍ୟ ଭେଦ ନିମନ୍ତେ ମଧ୍ୟ ଏଠାରେ ଦାସ କବି ଔତ୍ସୁକ୍ୟ ଦେଖାଇଛନ୍ତି । ସର୍ବୋପରି ସାରଳା ଦାସଙ୍କର ପରିବେଷଣ ଶୈଳୀ ଏଠାରେ ଏକାନ୍ତ ନାଟକୀୟ ହୋଇଛି । ଯାତ୍ରା, ଲୀଳା, ପାଲା, ଦାସକାଠିଆ ପ୍ରଭୃତି ଲୋକ ନାଟକ ଗୁଡ଼ିକରେ ସମସ୍ୟା ପୂର୍ତ୍ତିର ଯେଉଁ ଶୈଳୀ ଗୃହୀତ ହୋଇଥିବାର ଦେଖାଯାଏ, ତାହା ନିଶ୍ଚିତ ଭାବରେ ସାରଳାଙ୍କ ଦ୍ୱାରା ହିଁ ସୃଷ୍ଟି ହୋଇଥିବା ମନେ ହୁଏ । ଉଦାହରଣ ସ୍ୱରୂପ-ଧର୍ମବକର ପ୍ରଶ୍ନ-କାମଧେନୁ ଦୁଷ୍ଟ ଗାଈ-ଯୁଧିଷ୍ଠିରଙ୍କର ଉତ୍ତର-ସେ କଥା ନୋହଇ ନୋହଇ—"ଏହା ସହିତ ତୁଳନା କରାଯାଇପାରେ ଚଢେ଼ୟାନାଟର ପ୍ରଶ୍ନୋତ୍ତର –

ଶୁଣନ୍ତେ ନାଗର, କୁହ ମୋ ଆଗର
ପୃଥିବୀ କାହୁଁ ହୋଇଲା,

କିଏ ଜାତକଲା, କାହୁଁ ସେ ଅଇଲା
ଏକଥା କହିବ ଭଲା—"

ଏବଂ ଏହାର ଉତ୍ତର
ସେ ସତ୍ୟ ଯୁଗେଣ ନିଜେ ନାରାୟଣ
ବଟ ପତ୍ରରେ ଶୋଇଲେ,

ମେଦାସୁରକୁ ବଧ ଯେ କରିଣ ।
ମେଦିନୀ ତିଆରି କଲେ—

ମୋଟାମୋଟି ଭାବରେ ତେଣୁ କୁହାଯାଇପାରେ ଯେ, ବନପର୍ବ' ରଚନାରେ ସାରଳାଦାସ ମାନବୀୟ ଗୁଣାବଳୀର ବର୍ଣ୍ଣନା ଉପରେ ଅଧିକ ଗୁରୁତ୍ୱ ଦେଇଥିବାସ୍ଥଳେ 'ବ୍ୟାସ' ଜ୍ଞାନର ପ୍ରସାରବୁଦ୍ଧି ବଡ଼ କରି ଦେଖିଛନ୍ତି । ସାହିତ୍ୟିକ ଖ୍ୟାତି ଅର୍ଜନ, ଅର୍ଥ ଉପାର୍ଜନ ଏଭଳିକ ପ୍ରତିଷ୍ଠା, ପ୍ରତିପତ୍ତିର କାମନା – ଏ ସବୁ-କ୍ଷେତ୍ରରେ ଆଦୌ ନଥିଲା । ଏ କ୍ଷେତ୍ରରେ ଉଭୟ କବିଙ୍କର ମୂଳ ଉଦ୍ଦେଶ୍ୟ ଥିଲା ସମାଜର କଲ୍ୟାଣ ସାଧନ ।

ଉଭୟ ମେଥିରେ ସଫଳକାମ ହୋଇପାରିଛନ୍ତି । ତେଣୁ ଉଭୟେ ବରେଣ୍ୟ । ଏତକ କରିପାରିଛନ୍ତି ବୋଲି ଜନତା ଏପର୍ଯ୍ୟନ୍ତ ମଧ୍ୟ ସେମାନଙ୍କୁ ବିସ୍ମୃତ ଦ୍ୱାରା ପ୍ରତ୍ୟାଖ୍ୟାତ କରିପାରିନାହାନ୍ତି । ସାରଳା ଦାସ ସାଧାରଣ ଓଡ଼ିଆ ପାଠକର ହୃଦୟ ସିଂହାସନରେ ବସିଛନ୍ତି, ବ୍ୟାସ ରହିଛନ୍ତି ଭାବଗ୍ରାହୀ ପଣ୍ଡିତ ମଣ୍ଡଳୀର ହୃଦୟର ଅନ୍ତସ୍ଥଳରେ ।

**ହାରମଣି ନବାସ**
ଦେଉଳ ସାହି
କଟକ

—*—

# ବିରାଟ ପର୍ବ

ଅଧ୍ୟାପକ ଡ଼ଃ ପ୍ରମୋଦକୁମାର ଦାଶ

---

ତତ୍ତ୍ୱଦର୍ଶୀ ସର୍ବଜ୍ଞ ମହର୍ଷି ବେଦବ୍ୟାସ-ବିରଚିତ ଶ୍ରୀମନ୍ମହାଭାରତ ଭାରତର ବିଭିନ୍ନ ପ୍ରାଦେଶିକ ଭାଷାରେ ଅନୂଦିତ । ମହାପ୍ରାଜ୍ଞ କବି ସାରଳାଦାସ ବ୍ୟାସ-କୃତ ସଂସ୍କୃତ ମହାଭାରତକୁ ଆଦର୍ଶ ରୂପେ ଅବଲମ୍ବନ କରି 'ମହାଭାରତ' ପରି ବିରାଟ ଗ୍ରନ୍ଥ ଲେଖିଯାଇ ଅଛନ୍ତି ସତ; କିନ୍ତୁ ମୂଳ ମହାଭାରତର ସେ ଅନୁବାଦକ ନୁହନ୍ତି କିମ୍ବା ଅବିକଳାନୁକରଣରେ ନିଜ ଗ୍ରନ୍ଥକୁ ସମୃଦ୍ଧ କରିନାହାନ୍ତି । ମୂଳ ଗ୍ରନ୍ଥର ଅମୂଲ୍ୟ ଘଟଣାଂଶମାନ ସ୍ୱୀୟ ମୁକ୍ତ- କୋଷରେ ସାଇତି ଋଷି ଆପଣାର ଅସାମାନ୍ୟ କଳ୍ପନା ଶକ୍ତି ଓ ପ୍ରତିଭାର ପରାକାଷ୍ଠା ବଳରେ ସେ ମହାଭାରତ ମହାକାବ୍ୟ ରଚନା କରିଛନ୍ତି । ଫଳତଃ ତାଙ୍କ ମହାଭାରତର ସର୍ବ ଭାରତୀୟତା ସ୍ଥାନରେ ଉତ୍କଳୀୟ ଜନଜୀବନ ଓ ସଂସ୍କୃତିର ବିକଚ-ବିନାଶ ସାଧିତ ହୋଇ ପାରିଛି । ବ୍ୟାସ-ସାରଳା ଉଭୟ ମହାଭାରତ ଗ୍ରନ୍ଥର ତୁଳନାତ୍ମକ ବିଚାର କରିବା ପୂର୍ବରୁ ପାଠକ ସାଧାରଣ ଉଭୟ ଗ୍ରନ୍ଥ ରଚନାର ପୃଷ୍ଠଭୂମି ପ୍ରତି ଦୃଷ୍ଟି ଦେବା ବିଧେୟ । କାରଣ ପଞ୍ଚଦଶ ଶତାବ୍ଦୀରେ ରଚିତ ସାରଳାଙ୍କ ମହାଭାରତର ସାଂସ୍କୃତିକ ପୃଷ୍ଠଭୂମି, ତୃତୀୟ-ଚତୁର୍ଥ ଶତାବ୍ଦୀରେ ସଂସ୍କୃତ ମହାଭାରତର ସାଂସ୍କୃତିକ ପୃଷ୍ଠଭୂମି ଠାରୁ ଅଳ୍ପ ସ୍ୱତନ୍ତ୍ର । ମୂଳ ଭାରତରେ ଯେପରି ଗୁପ୍ତଯୁଗର ଆଧ୍ୟାତ୍ମିକ ଭାବନା ଓ ସାଂସ୍କୃତିକ ଚେତନା ପ୍ରକାଶିତ, ସାରଳାଙ୍କ ଭାରତ ସେପରି ପଞ୍ଚଦଶ ଶତାବ୍ଦୀ ଉତ୍କଳର ଆଧ୍ୟାତ୍ମିକ ଭାବନା ଦ୍ୱାରା ପ୍ରଭାବିତ । ବିଷୟବସ୍ତୁ ପରିବେଷଣରେ ସାରଳା ଯେତିକି ଅଗ୍ରସର ହୋଇଛନ୍ତି, ମୂଳ ମହାଭାରତର କଥାବସ୍ତୁ ତାଙ୍କ ପାଖରେ ସେତିକି ନିଷ୍ପ୍ରଭ ହୋଇଉଠିଛି ଓ ମହାଭାରତୀୟ ଚରିତ୍ର ଗୁଡ଼ିକ ସେତିକି ହୋଇ ପାରିଛନ୍ତି ଉତ୍କଳୀୟ । ଆଞ୍ଚଳିକତାର ପରିବେଶ ମଧ୍ୟରେ ସେମାନଙ୍କର ସୁଖ ଦୁଃଖର ଜୀବନ ଜୀବିକାର ସ୍ୱର୍ଣ୍ଣଭୂମି ହୋଇଛି ଉନ୍ମୀଳିତ । ତେଣୁ ସଂସ୍କୃତ ମହାଭାରତଠାରୁ ସାରଳାଙ୍କ ଭାରତର ଯେଉଁ ବୈଷମ୍ୟ ପରିଲକ୍ଷିତ ହୁଏ, ତାହା 'ଶୂଦ୍ର' ସାରଳାଦାସଙ୍କ ସଂସ୍କୃତାନଭିଜ୍ଞତା ଅଥବା ମୂର୍ଖତା ପ୍ରସୂତ ନୁହେଁ; ବରଂ ଏହି ବୈଷମ୍ୟ ଓ ପ୍ରକ୍ଷେପ ସମ୍ପୂର୍ଣ୍ଣ ସ୍ୱେଚ୍ଛାକୃତ । (୧) ଆଲୋଚ୍ୟ ବିରାଟ ପର୍ବରେ ଏହା ଲକ୍ଷ୍ୟ କରାଯାଇପାରେ ।

---

ଓଡ଼ିଆ ସାହିତ୍ୟର ଆଦିପର୍ବ-ସୁରେନ୍ଦ୍ର ମହାନ୍ତି, ପୃ.୧୩୫

## ସାମ୍ୟ-ବୈଷମ୍ୟ :—

ବିରାଟ ପର୍ବରେ ପାଣ୍ଡବମାନଙ୍କ ଏକବର୍ଷ ଅଜ୍ଞାତ ବାସ ଓ କୀଚକ ବଧ ଉଭୟ ଗ୍ରନ୍ଥର ସାଧାରଣ ବିଷୟ । ମହାଭାରତୀୟ ଚରିତ୍ର ଓ କଥାବସ୍ତୁକୁ ସାରଳା ଦାସ ମୋଟାମୋଟି ଭାବରେ ଗ୍ରହଣ କରିଥିଲେ ମଧ୍ୟ ଆପଣାର ଗଭୀର ଅଧ୍ୟବସାୟ, ଅଖଣ୍ଡନିଷ୍ଠା ଓ ବ୍ୟାପକ ସୁଦୂରଦୃଷ୍ଟି ବଳରେ ଏହି ବିଷୟ ପ୍ରଖ୍ୟାପନରେ ବହୁ ବୈଷମ୍ୟ ପ୍ରଦର୍ଶନ କରିଅଛନ୍ତି । ମୂଳ ଗ୍ରନ୍ଥରେ ବିରାଟ ରାଜା ଓ ରାଣୀ ସୁଦେଷ୍ଣାଙ୍କର ପୂର୍ବଜନ୍ମ ବିବରଣ, କୀଚକ ଶତେ ଭାଇଙ୍କ ଜନ୍ମ ଓ ବିରାଟ ରାଜାଙ୍କର ମତ୍ସ୍ୟଦେଶରେ ଅଭିଷେକ ପ୍ରଭୃତିର ବର୍ଣ୍ଣନା ଆଦୌ ନାହିଁ । କିନ୍ତୁ ସାରଳାଙ୍କ ଭାରତରେ ଯୁଧିଷ୍ଠିରଙ୍କ ଜିଜ୍ଞାସା ମତେ ବ୍ୟାସଦେବ ବିରାଟଙ୍କ ପୂର୍ବଜନ୍ମ ବୃତ୍ତାନ୍ତ କହିଅଛନ୍ତି । ପାଣ୍ଡବମାନେ ଏକବର୍ଷ ତେରଦିନ ବିରାଟ ରାଜାଙ୍କ ରାଜ୍ୟରେ ଅଜ୍ଞାତବାସ କରିବେ । ସେତିକିବେଳେ ବିରାଟ ଧର୍ମରାଜ ଯୁଧିଷ୍ଠିରଙ୍କ ସେବାକରି ମୁକ୍ତି ଲାଭ କରିବେ ବୋଲି ଦେବତାମାନେ ସ୍ଥିରଇ ଥିଲେ । ପୁଣି ପ୍ରବଳ ପ୍ରତାପୀ କୀଚକ ଦ୍ରୌପଦୀଙ୍କୁ ଦେଖି କାମାସକ୍ତ ହେବ ଓ ଫଳତଃ ମୃତ୍ୟୁଲାଭ କରିବ ବୋଲି ବ୍ୟାସଦେବ କହିଥିଲେ । ଏଥିରୁ ଜଣାଯାଏ ଯେ, ସେମାନଙ୍କ ପାଣ୍ଡବମାନେ ଅଜ୍ଞାତବାସ ସଂପର୍କରେ ପୂର୍ବରୁ ସଂପୂର୍ଣ୍ଣ ଅବହିତ ଥିଲେ । ମୂଳଭାରତର ବିରାଟରାଣୀ ସୁଦେଷ୍ଣା ସାରଳାଙ୍କ କାବ୍ୟରେ ଶ୍ରୀକୃଷ୍ଣା ନାମ ବହନ କରିଛନ୍ତି । ସଙ୍କୋଚନ ରାଜାଙ୍କ କନ୍ୟା ଏହି ଶ୍ରୀକୃଷ୍ଣା ବିରାଟ ରାଜାଙ୍କୁ ବିବାହ କରିବା ଓ କୀଚକ ବାହୁବଳରେ ବିରାଟରାଜା ମଘଦେଶ, ମତ୍ସ୍ୟଦେଶରେ ଅଭିଷିକ୍ତ ହେବା ବୃତ୍ତାନ୍ତ ସାରଳାଙ୍କର ଏକାନ୍ତ ମୌଳିକ ରଚନା । ପାଣ୍ଡବମାନେ ଦ୍ରୌପଦୀ ଓ ଶ୍ରୀକୃଷ୍ଣଙ୍କ ସହିତ ମଣିଭଦ୍ରା ନଦୀ କୂଳରେ ବସି ସେମାନଙ୍କ ଅଜ୍ଞାତବାସ ସଂପର୍କରେ ଚିନ୍ତା କରିଥିଲେ । ସେ ସମୟରେ ସେମାନଙ୍କୁ କିପରି ଚଳିବାକୁ ହେବ ଏବଂ ବିରାଟରାଜା, ରାଜ ପରିବାର ସହିତ କିପରି ବ୍ୟବହାର କରିବାକୁ ହେବ, ସେସବୁ ଶ୍ରୀକୃଷ୍ଣ ସେମାନଙ୍କୁ ଶିକ୍ଷା ଦେଇଥିଲେ । 'ଜନଘୋଷ' ବୋଲି ଏକ ଅଦ୍ଭୁତ ବିଦ୍ୟା ସେମାନଙ୍କୁ ଶିକ୍ଷାଦେଇ କହିଲେଯେ, ସେମାନେ ସମସ୍ତଙ୍କୁ ଚିହ୍ନିପାରିବେ, କିନ୍ତୁ ସେମାନଙ୍କୁ କେହି ଚିହ୍ନିପାରିବେ ନାହିଁ । ଶ୍ରୀକୃଷ୍ଣ ପୁଣି ମନ୍ତ୍ର ପରୀକ୍ଷା କରାଇବା ଦ୍ୱାରା ପଞ୍ଚପାଣ୍ଡବ ଦ୍ରୌପଦୀଙ୍କ ସମେତ ସେମାନଙ୍କ ଶରୀରର ସ୍ୱସ୍ୱ ବର୍ଣ୍ଣ ହରାଇ ନୂତନ ବର୍ଣ୍ଣ ଧାରଣ କରିଥିଲେ । ( ) ସାରଳାଙ୍କର ଏହି ବର୍ଣ୍ଣନା ମୂଳ ମହାଭାରତରେ ପରିଦୃଷ୍ଟ ହୁଏ ନାହିଁ । ପୁନଶ୍ଚ ପାଣ୍ଡବମାନେ ସେମାନଙ୍କ ଅସ୍ତ୍ରଶସ୍ତ୍ର ରଖିବାଲାଗି ଅର୍ଜୁନଙ୍କ ଖଡ଼୍ଗରେଖାରେ ଶମୀ-ଶିଂଶୁପା ଭଳି ଦୁଇଗୋଟି ମହାନ ବୃକ୍ଷ ଜନ୍ମିବା କଥା ମୂଳଗ୍ରନ୍ଥାନୁମୋଦିତ ନୁହେଁ । ମୂଳଗ୍ରନ୍ଥରେ ବର୍ଣ୍ଣିତ ଥିବା ପାଣ୍ଡବମାନଙ୍କୁ ଧୌମ୍ୟ ପୁରୋହିତଙ୍କ ଉପଦେଶାବଳୀ ସାରଳା ସଂପୂର୍ଣ୍ଣ ରୂପେ ପରିହାର କରିଅଛନ୍ତି । ଧୌମ୍ୟଙ୍କ ନୀତି ଉପଦେଶ; ଧର୍ମ, ଅର୍ଥ, କାମ ପ୍ରଭୃତିର ରକ୍ଷା, ରାଜାଙ୍କ ପ୍ରତି ସମ୍ମାନ

---

୨ ସାରଳା ମହାଭାରତ-ବିରାଟ ପର୍ବ (ସାଂସ୍କୃତିକ ବ୍ୟାପାର ବିଭାଗ ପ୍ରକାଶିତ) ପୃ ୨୫

ପ୍ରଦର୍ଶନ, ବିଶ୍ୱାସୀ ବ୍ୟକ୍ତିଠାରେ ଗୋପନୀୟ ତଥ୍ୟ ପ୍ରକାଶ ମୈତ୍ରୀଠାରେ ବିଶ୍ୱାସ, ଡାର୍ମାଙ୍କ ମଳ ନିର୍ଣ୍ଣୟ ପଣ୍ଡିତ ଆଚରଣ ବିଧି ସଂପର୍କରେ ବିସ୍ତୃତ ବର୍ଣ୍ଣନା ଯାହା ବ୍ୟାସ-ଦେବ କହିଅଛନ୍ତି (୩) ତାହା ସାରଳା ଶ୍ରୀକୃଷ୍ଣଙ୍କ ମୁଖରେ କେବଳ ତାର ଆଭାଷ ଦେଇଛନ୍ତି ମାତ୍ର । ଅସ୍ତ୍ର ରକ୍ଷାକରିବା ନିମିତ୍ତ ଅର୍ଜୁନଙ୍କ ଦ୍ୱାରା ଟଙ୍ଗ ମାଧ୍ୟମରେ ପ୍ରଚଣ୍ଡୀ-ବଳୀର ମୂର୍ତ୍ତି ନିର୍ମାଣ ଓ ଅର୍ଜ୍ଜୁନଙ୍କ ମୁଖରେ ତ ର ପୂର୍ବଜନ୍ମ କଥନ ସାରଳାଦାସ ଅତି ଚମତ୍କାର ଭାବେ କହିଥିବା ସତ୍ତ୍ୱେ ବ୍ୟାସ କେବଳ ଲୋକମାନଙ୍କୁ ଭୟଭୀତ କରାଇବାପାଇଁ ପାଣ୍ଡବମାନଙ୍କ ଦ୍ୱାରା ଏକ ଅସ୍ଥିକଙ୍କାଳ ଝୁଲାଇବାର ଚିତ୍ର ଦେଇଛନ୍ତି । (୪) ପୁଣି ଯୁଧିଷ୍ଠିର ଆପଣା ଆପଣାମାନଙ୍କର ଜୟ, ଜୟନ୍ତ, ବିଜୟ, ଜୟସେନ ଓ ଜୟଦ୍‌ବଳ ବୋଲି ଯେଉଁ ପାଞ୍ଚ ଗୋଟି ଗୁପ୍ତନାମ ରଖିଥିଲେ, ତାକୁ ସାରଳା ଏକା ବେଳେକେ ବିସ୍ମୃତ ହୋଇଯାଇଛନ୍ତି ।

ପାଣ୍ଡବମାନଙ୍କର ବିରାଟ ରାଜସଭାକୁ ଭିନ୍ନ ଭିନ୍ନ ରୂପରେ ପ୍ରବେଶ ଓ ଅବସ୍ଥାନକୁ ସାରଳାଦାସ ମୂଳମହାଭାରତଠାରୁ ମଧ୍ୟ ଭିନ୍ନ ରୂପରେ ପ୍ରକାଶ କରିଛନ୍ତି । ମୂଳ ମହାଭାରତରେ ଯୁଧିଷ୍ଠିର କଙ୍କ ଓ ଅର୍ଜୁନ ବୃହନ୍ନଳା ରୂପେ ଥିବା ସ୍ଥଳେ ସାରଳା ଯୁଧିଷ୍ଠିରଙ୍କୁ କୋଳ୍ପଭଟ୍ଟ ଓ ଅର୍ଜ୍ଜୁନଙ୍କୁ ବୃହନ୍ନାରୀ ରୂପେ ଉଲ୍ଲେଖ କରିଛନ୍ତି । ମୂଳ ଗ୍ରନ୍ଥରେ ପାଣ୍ଡବମାନଙ୍କ ଛଦ୍ମବେଶ ଓ ନାମ ପଛରେ କୌଣସି କାରଣ ବିଦ୍ୟମାନ ନଥିବାବେଳେ ସାରଳ ସ୍ୱ ଅସାଧାରଣ କଳ୍ପନା ବଳରେ ପାଣ୍ଡବମାନଙ୍କ ଛଦ୍ମନାମ ପଛରେ ଥିବା ବିଭିନ୍ନ ଆଶ୍ଚର୍ଯ୍ୟପୂର୍ଣ୍ଣ କଥାନକର ବିସ୍ତୃତ ବିବରଣ ଦେଇ ନାମଗୁଡ଼ିକର ମାହାତ୍ମ୍ୟକୁ ସାବ୍ୟସ୍ତ କରିଅଛନ୍ତି । ଏହା ତାଙ୍କର ବହୁପୁରାଣଶ୍ରୁତ କଥାର ଅନୁକୃତି ହୋଇପାରେ; କିନ୍ତୁ ଏଥିରେ ପ୍ରଦର୍ଶିତ କଳ୍ପନା ଓ ବର୍ଣ୍ଣନା ବାହୁଲ୍ୟ ତାଙ୍କର କବି ପ୍ରତିଭାକୁ ବହୁଗୁଣିତ କରିପାରିଛି । ସଂସ୍କୃତ ମହାଭାରତରେ ପାଣ୍ଡବମାନେ କେଉଁ ରାଜ୍ୟରେ ରହିବେବୋଲି ଚିନ୍ତା କରିଛନ୍ତି । ଏ ପ୍ରସଙ୍ଗରେ ବ୍ୟାସଦେବ ଅର୍ଜୁନଙ୍କ ମୁଖରେ ପାଞ୍ଚାଳ, ଚେଦି, ମତ୍ସ୍ୟ, ଶୂରସେନ, ପଟ୍ଟଚର, ଦଶାର୍ଣ୍ଣ, ନବରାଷ୍ଟ୍ର, ମଲ୍ଲ, ଶାଲ୍ୱ, ଯୁଗନ୍ଧର,କୁନ୍ତୀ-ରାଷ୍ଟ୍ର, ସୁରାଷ୍ଟ୍ର ଓ ଅବନ୍ତୀ ପ୍ରଭୃତିର ବର୍ଣ୍ଣନା ଅତି ବିସ୍ତୀର୍ଣ୍ଣ ଓ ରମଣୀୟଭାବେ ପ୍ରଦାନ କରିଛନ୍ତି । (୫) ସାରଳା ଏସବୁ ବର୍ଣ୍ଣନା ଆଦୌ ଦେଇନାହାନ୍ତି, ବରଂ ପାଣ୍ଡବମାନଙ୍କ ଅଜ୍ଞାତବାସ ନିମନ୍ତେ ମତ୍ସ୍ୟଦେଶହିଁ ଉପଯୁକ୍ତ ସ୍ଥାନ ବୋଲି କହିଛନ୍ତି । ମତ୍ସ୍ୟ ଦେଶକୁ ଯିବା ପୂର୍ବରୁ ଯୁଧିଷ୍ଠିର ବାଞ୍ଛାବଟକୁ ସ୍ତବ କରିଛନ୍ତି । ମୂଳ ଗ୍ରନ୍ଥରେ ଯୁଧିଷ୍ଠିର ତ୍ରିଭୁବନେଶ୍ୱରୀ ଦୁର୍ଗାଙ୍କୁ ସ୍ତୁତି କରିଛନ୍ତି । ତାଙ୍କ ସ୍ତୁତିରେ ଦୁର୍ଗାଦେବୀ ତାଙ୍କୁ ଦର୍ଶନଦେଇ

---

୩ ମହାଭାରତ-ବିରାଟପର୍ବ-ଗୋବିନ୍ଦ ଚନ୍ଦ୍ର ମହାପାତ୍ର , ୯-୧୦

(୪) ତତ୍ରୈବ, ପୃ. ୨୭

(୫) ତତ୍ରୈବ, ପୃ. ୨

ଶତ୍ରୁନାଶନ ପୂର୍ବକ ନିଷ୍କଣ୍ଟକ ରାଜ୍ୟଭୋଗ କରିବାପାଇଁ ଅଭୟ ବର ଦେଇଛନ୍ତି । ଧର୍ମରାଜାଙ୍କ ଏହି ସ୍ତୁତି ମୂଳ ଗ୍ରନ୍ଥରେ ବିସ୍ତୃତଭାବେ ବର୍ଣ୍ଣିତ । ସାରଳା ମହାଭାରତରେ ଏହା ସମ୍ପୂର୍ଣ୍ଣ ପରିତ୍ୟକ୍ତ । ପ୍ରସଙ୍ଗକ୍ରମେ ସାରଳା ବାଞ୍ଛାବଟ ମଧ୍ୟରେ ଥିବା ସାହଡ଼ ବୃକ୍ଷର ବର୍ଣ୍ଣନ ଓ ତାର ମାହାତ୍ମ୍ୟ ପ୍ରଖ୍ୟାପନ ଭଳି କାହାଣୀ ଯାହା ସଂଯୋଜନା କରିଛନ୍ତି ତାହା ମୂଳ ଭାରତ ବହିର୍ଭୂତ । ପାଣ୍ଡବମାନେ ବିରାଟ ରାଜ୍ୟକୁ ଯିବା ପୂର୍ବରୁ ଯୁଧିଷ୍ଠିରଙ୍କ ମୁଖରେ ସାରଳା ତ୍ରିପୁରାସୁର ବଧ କଥା କହିଛନ୍ତି । ଏହା ମୂଳ ଗ୍ରନ୍ଥରେ ନାହିଁ । କୋଙ୍କଭଟ୍ଟ ରୂପେ ଯୁଧିଷ୍ଠିରଙ୍କର ବିରାଟ ରାଜ୍ୟରେ ପ୍ରବେଶ ଓ ରାଜାଙ୍କଠାରୁ ଶାଢ଼ୀ ଗ୍ରହଣ ପୂର୍ବକ ରାଜାଙ୍କ ସଖାରୂପେ, ଦ୍ୟୂତକ୍ରୀଡ଼ାସଙ୍ଗୀରୂପେ ଅବସ୍ଥାନ ପରେ ଭୀମ, ଅର୍ଜ୍ଜୁନ, ଦ୍ରୌପଦୀ, ନକୁଳ ଓ ସହଦେବ ଯଥାକ୍ରମେ ସେ ରାଜ୍ୟରେ ସ୍ଥାନ ପାଇଛନ୍ତି । ଯୁଧିଷ୍ଠିର ସଭାପଣ୍ଡାରୂପେ, ଭୀମ ସୂପକାର, ଅର୍ଜ୍ଜୁନ ବୃହନ୍ନଳା, ଦ୍ରୌପଦୀ ସୈରନ୍ଧ୍ରୀ, ନକୁଳ ଅଶ୍ୱପାଳ ଓ ସହଦେବ ଗୋପାଳକ ରୂପେ ନିଯୁକ୍ତି ପାଇଛନ୍ତି । ମୂଳ ମହାଭାରତରେ ଭୀମଙ୍କ ପରେ ଦ୍ରୌପଦୀ ବିରାଟ ରାଜ ଉଆସରେ ପ୍ରବେଶ କରିଛନ୍ତି । ବିରାଟ ରାଣୀ ସୁଦେଷ୍ଣା ତାଙ୍କୁ ସାଦରରେ ଗ୍ରହଣ କରିଛନ୍ତି । ତତ୍ପରେ ସହଦେବ, ଅର୍ଜ୍ଜୁନ ଓ ପରିଶେଷରେ ନକୁଳ ରାଜ୍ୟମଧ୍ୟକୁ ପ୍ରବେଶ କରି ସ୍ୱ ସ୍ୱ କର୍ମରେ ନିଯୁକ୍ତ ହୋଇଛନ୍ତି । ସାରଳା ମହାଭାରତରେ ଯୁଧିଷ୍ଠିରକୁ ଦେବପୁରୁଷ ଜ୍ଞାନ କରି ବିରାଟ ରାଜା ଉପର ହସ୍ତରେ ଶାଢ଼ୀ ଦେଇନାହାନ୍ତି ବରଂ ଯୁଧିଷ୍ଠିର ନିଜେ ଶାଢ଼ୀ ନେଇ ମୁଣ୍ଡରେ ବାନ୍ଧିଛନ୍ତି । କାରଣ ବିରାଟ ରାଜାଙ୍କଠାରୁ ଶାଢ଼ୀ ଗ୍ରହଣ କଲେ ଲକ୍ଷ୍ୟପଣ ହେବା ଭୟରେ ସେହି ଅନ୍ୟଭାଇମାନଙ୍କ ମୁଣ୍ଡରେ ଶାଢ଼ୀ ବାନ୍ଧିଦେଇଛନ୍ତି । (୧) ମୂଳଗ୍ରନ୍ଥରେ ଏ ଶାଢ଼ୀ ଗ୍ରହଣୀକଥା କୁହାଯାଇନାହିଁ । ଓଡ଼ିଆ ମହାଭାରତରେ ଭୀମ, ନକୁଳ, ସହଦେବ ପ୍ରଭୃତିଙ୍କର ବିରାଟରାଜାଙ୍କ ସମକ୍ଷରେ ନିଜ ନିଜ କାର୍ଯ୍ୟରେ ପରୀକ୍ଷା ଦେବା ବର୍ଣ୍ଣନା ଅତି ଚମତ୍କାର ରୂପ ପରିଗ୍ରହ କରିଛି । ବିଶେଷତଃ ନକୁଳଙ୍କ ଦୁଷ୍ଟ ଅଶ୍ୱସାଧନ ଓ ସହଦେବଙ୍କ ଦ୍ୱାରା ପୃଥ୍‌ନାରାଇଙ୍କ ପ୍ରତ୍ୟାବର୍ତ୍ତନ କବିଙ୍କ ଅସାଧାରଣ କଳ୍ପନାଶକ୍ତିର ପରିଚୟ ଦିଏ । ୨]

ସଂସ୍କୃତ ମହାଭାରତରେ ଭୀମକର୍ମା ସିଂହ ବିକ୍ରମ ଭୀମସେନଙ୍କର ମଲ୍ଲ ଓ ଶାର୍ଦ୍ଦୁଳାଦିଙ୍କ ସହ ଯୁଦ୍ଧ ପ୍ରସଙ୍ଗ ବର୍ଣ୍ଣିତ ଅଛି । ପାଣ୍ଡବମାନଙ୍କର ବିରାଟ ଦେଶ ନିବାସର ଚତୁର୍ମାସ ପରେ ସୁବିଖ୍ୟାତ ଜୀମୂତ ନାମକ ମଲ୍ଲକୁ ଭୀମ ପରାସ୍ତକରି ଅନ୍ୟାନ୍ୟ ମଲ୍ଲମାନଙ୍କୁ ମଧ୍ୟ ନିହତ କରିଥିଲେ । ତାହାଙ୍କ ସହିତ ଯୁଦ୍ଧ କରିବା ନିମିତ୍ତ ସମବଳ ମଲ୍ଲ

---

୧ ସାରଳା ମହାଭାରତ--ବିରାପର୍ବ, ପୃ,୧୨

୨ ତତ୍ରୈବ, ପୃ, ୧୨୩

ନ ମିଳିଲେ ସେ ସମୟେ ସମୟେ ସିଂହ ଅଥବା ଶାର୍ଦ୍ଦୂଳଙ୍କୁ ନେଇ ଯୁଦ୍ଧ କରୁଥିଲେ ।
୮ । ବର୍ଣ୍ଣନାପ୍ରିୟ ସାରଳା ଦାସ ଏ ପ୍ରସଙ୍ଗ ଉଲ୍ଲେଖ କରି କହିଛନ୍ତି ଯେ ପାଣ୍ଡବଗଣ ବିରାଟ ଦେଶରେ ଧନୁମାସକୁ ଆଦିକରି ଷଟମାସ ଅବସ୍ଥାନ କରିବାପରେ ସପ୍ତମ ମିଥୁନ ମାସରେ ଜରାନାୟକ ଶବର ମହାବଳ ଶାର୍ଦ୍ଦୂଳ ସହ ରାଜସଭାକୁ ଆସିଥିଲା । ଏହି ଶବର ବୃତ୍ତାନ୍ତ ସାରଳା ଦୀର୍ଘ ଦଶପୃଷ୍ଠା ଧରି ବର୍ଣ୍ଣନା କରିଛନ୍ତି । ତ୍ରେତା ଯୁଗର ଅଙ୍ଗଦ ଜାରା ରୂପେ ଜନ୍ମିଥିବା କଥା ସେ କହିଅଛନ୍ତି । ବ୍ୟାଘ୍ରସହ କୀଚକ ଯୁଦ୍ଧ କରିବାପାଇଁ ଶବର ବିରାଟ ରାଜାଙ୍କୁ ଆହ୍ୱାନ କରିଛି, କିନ୍ତୁ ବିରାଟ ଏଥିରେ ଅସମ୍ମତି ପ୍ରକାଶକରିବାରୁ ଏକ ଦନ୍ତୀହସ୍ତୀ ସହିତ ବ୍ୟାଘ୍ରର ସମର ହୋଇଛି । ହସ୍ତୀ ପ୍ରାଣତ୍ୟାଗ କଲାପରେ ତା ଶରୀରରୁ ଜଣେ ଦିବ୍ୟ ପୁରୁଷ ବାହାରି ଯୁଧିଷ୍ଠିରଙ୍କ ଦର୍ଶନ ପାଇ ସ୍ୱର୍ଗଗାମୀ ହୋଇଛନ୍ତି । ତତ୍ପରେ ଯୁଧିଷ୍ଠିରଙ୍କ ଆଦେଶପାଇ ଭୀମ ଶାର୍ଦ୍ଦୂଳକୁ ନିହତ କରିଛନ୍ତି । ଶାର୍ଦ୍ଦୂଳ ଶରୀରରୁ ସ୍ୱର୍ଗଗାମୀ ପୁରୁଷ ସମ୍ବନ୍ଧରେ ସାରଳା ଅଗସ୍ତି ମୁନିଙ୍କ ମୁଖରେ କହିଛନ୍ତି ଯେ ବିଶ୍ୱାବସୁ ନାମକ ଗନ୍ଧର୍ବ ବ୍ରହ୍ମା ତର୍ପଣ କରୁଥିବାବେଳେ ତାଙ୍କ ତର୍ପଣ ଜଳରେ ହସି ହୋଇଥିଲେ । ବ୍ରହ୍ମାଙ୍କ ମନ ବିଚଳିତ ହେବାରୁ ସେ କ୍ରୋଧ ପ୍ରକାଶ କରି ଗନ୍ଧର୍ବଙ୍କୁ ଅଭିଶାପ ଦେଲେ । ଫଳରେ ସେ ଗଜମୂର୍ଖ ହୋଇ ମର୍ତ୍ତ୍ୟରେ ଜନ୍ମହେଲେ । ଶବର ସେହି ଗଜକୁ ବନରୁ ଧରିଆଣି ବିରାଟଙ୍କୁ ଦେଇଥିଲେ । ଯୁଧିଷ୍ଠିରଙ୍କୁ ଦେଖି ସେ ଗଜ ପ୍ରାଣତ୍ୟାଗ କଲା ଓ ଗନ୍ଧର୍ବ ପୁରୁଷ ରୂପେ ପୁନଶ୍ଚ ସ୍ୱର୍ଗଗାମୀ ହେଲା । ବ୍ୟାଘ୍ର ଶରୀରରୁ ସ୍ୱର୍ଗଗାମୀ ହୋଇଥିବା ପୁରୁଷଙ୍କର ପ୍ରାକ୍ତନ କର୍ମବିପାକ ସମ୍ବନ୍ଧରେ ସାରଳା ଇନ୍ଦ୍ର ଓ ତ୍ୱଷ୍ଟାଋଷିଙ୍କ ବିବାଦମୂଳକ କଥାଟିକୁ କିଞ୍ଚିତ୍ ଭିନ୍ନ କ୍ରମରେ କହିଛନ୍ତି । ଏଠାରେ ବୋଧହୁଏ କବି ଅବିଶ୍ରାନ୍ତ ରଚନା ପ୍ରବାହର ଆବେଗରେ ପଡ଼ି ପ୍ରମାଦପୂର୍ଣ୍ଣ ବର୍ଣ୍ଣନା ଦେଇଛନ୍ତି । ପ୍ରତ୍ୟୁତ୍ପନ୍ନମତି ସାରଳାଦାସ ପ୍ରାକ୍‌କଳ୍ପିତ କଥାକୁ ବିଶ୍ୱାବସୁ ଗନ୍ଧର୍ବ ଉପାଖ୍ୟାନ ଅସଙ୍ଗତ ମନେକରି ପ୍ରୋକ୍ତ ଗଜଶାର୍ଦ୍ଦୂଳ ବିଷୟକ ପ୍ରଶ୍ନର ପୁନରୁତ୍ଥାନ ୯ କରାଇ ସଙ୍ଗତ ଉତ୍ତର ପ୍ରଦାନ କରି କହିଛନ୍ତି ଯେ, ଏକଦା ପ୍ରସୁପ୍ତ ସ୍ଥୂଳ ଋଷିଙ୍କ ଦେହରେ ଇନ୍ଦ୍ରଙ୍କ ପୁତ୍ର ଦୁହେଁ ଶୃଗାଳ, ମୂଷିକ ସୂକ୍ଷ୍ମ ଶରୀରତଃ ପ୍ରବିଷ୍ଟ ହୋଇ ଋଷିଙ୍କୁ କାମୋନ୍ମତ୍ତ ବାଉଳ ପ୍ରାୟ କଲାରୁ ସେ ଅନୁକ୍ଷଣ ହରିଣୀ ସୁରତରେ ମଗ୍ନ ରହିଲେ । ସମୟକ୍ରମେ ସୁପ୍ତ ସ୍ଥୂଳଋଷିଙ୍କ ଦେହରୁ ବିନିର୍ଗତ, ଭୟରେ ପଳାୟିତ ବାସବ ପୁତ୍ର ଦ୍ୱୟଙ୍କୁ ସେ ଦେଖି ଗଜ ଓ ବ୍ୟାଘ୍ର ହୁଅ ବୋଲି ଅଭିଶାପ ଦେଲେ । ପରେ ଯୁଧିଷ୍ଠିରଙ୍କ ଦର୍ଶନରେ ସେମାନେ ସ୍ୱର୍ଗଗାମୀ ହେବେ ବୋଲି ମୋକ୍ଷର କାରଣ ମଧ୍ୟ କହିଥିଲେ ।
୧୦ ଏ ପ୍ରସଙ୍ଗ ବର୍ଣ୍ଣନାରେ ଅସଂଲଗ୍ନତା ଲକ୍ଷ୍ୟକରି କବି ଆପେ ଭାରତ ତରିତରେ

---

୮ ସଂସ୍କୃତ ମହାଭାରତ— ୧୩/୪୦ ଶ୍ଳୋକ
୯ ସାରଳା ମହାଭାରତ-ବିରାଟପର୍ବ, ପୃ ୨୧୮
୧୦ ତତ୍ରୈବ, ପୃ. ୨୨୦

ଦୂରଧିଗମ୍ୟତ୍ୱ ଓ ଅଗାଧତ୍ୱ ପ୍ରକାଶକରି ପ୍ରୋକ୍ତ ସଙ୍ଗତ ଉତ୍ତର ପ୍ରଦାନାର୍ଥ ଶ୍ରୀସାରଳା ଦେବୀଙ୍କୁ ସବିନୟ ସ୍ତୁତି ଓ ପ୍ରାର୍ଥନା କରିଅଛନ୍ତି । ଏଥିରୁ ଜଣାଯାଏ ଯେ, କବି କଳ୍ପନା କିମ୍ବା ଦେବୀଦତ୍ତ ଜ୍ଞାନ ବୈଭବରେ ଲେଖି ଲେଖି ଯାଇ ଯେଉଁ ସ୍ଥଳରେ ଅଗାଧ ବା ଜଟିଳ ମନେ କରିଛନ୍ତି ସେଠାରେ ସର୍ବାଭୀଷ୍ଟ ପ୍ରଦାୟିନୀ ଶ୍ରୀ ସାରଳାଦେବୀଙ୍କର ସ୍ତୁତି କରିଛନ୍ତି । [୧୧] ଏ ବର୍ଣ୍ଣନା ସମ୍ବନ୍ଧ ସାରଳାଙ୍କ ସ୍ୱକଳ୍ପନା ଓ ପୁରାଣ ଜ୍ଞାନର ପରିଚୟ ଦେଇଥାଏ । ପୁନଶ୍ଚ ଭୀମସେନ କର୍ତ୍ତୃକ ଗଜଦର୍ପ କେଶରୀ ନାମକ ମଲ୍ଲ ନିହତ, ତା ଦେହରୁ ଆବିର୍ଭୂତ ଦିବ୍ୟ ପୁରୁଷ ସ୍ୱର୍ଗର ଅତିଥ୍ୟ ଗ୍ରହଣ କରିବା, ତାର ପୂର୍ବ ଜନ୍ମ ଓ ଶାପ ବୃତ୍ତାନ୍ତ କବି ବର୍ଣ୍ଣନା କରିଅଛନ୍ତି । ମୂଳ ଭାରତରେ ଜୀମୂତ ମଲ୍ଲ ଉଲ୍ଲେଖ ଥିବା ସ୍ଥଳେ ସାରଳା ଗଜଦର୍ପକେଶରୀ ଭଳି ବିଦେଶୀ ମଲ୍ଲକୁ ସ୍ୱକଳ୍ପନାରେ ସୃଷ୍ଟି କରିଅଛନ୍ତି । ଏ ମଲ୍ଲ ସତ୍ୟଯୁଗରେ ବଳସ୍ୱାଦକ୍ଷ ରୂପରେ କପିଳାସ ପର୍ଷିମଦ୍ୱାର ମଲ୍ଲ ମଣିଭଦ୍ରଙ୍କ ସହ ଯୁଦ୍ଧ କରୁଥିଲା । ଶିବ ସେମାନଙ୍କ ଯୁଦ୍ଧ ଦେଖି ଦ୍ୱାପର ଯୁଗରେ ବଳସ୍ୱାଦକ୍ଷ ମଲ୍ଲରୂପେ ଓ ମଣିଭଦ୍ର ଭୀମ ରୂପେ ଜନ୍ମହେବେ, ଭୀମଙ୍କ ଦ୍ୱାରା ବଳାସ୍ୱାଦକ୍ଷର ମୃତ୍ୟୁ ହେବ ଓ ସେ ସ୍ୱର୍ଗଗାମୀ ହେବ ବୋଲି ବର ଦେଇଥିଲେ । [୧୨]

ପ୍ରସଙ୍ଗକ୍ରମେ ସାରଳାଦାସ,ଭୀମଙ୍କର ଗୌରୀ, ଶୌରୀ ଓ ନଳ-ଏ ଷଡ଼ ପ୍ରକାର ପାକବିଦ୍ୟା ବିଷୟରେ କହିଅଛନ୍ତି । ଏ ଭଳି ସୁସ୍ୱାଦୁ ପ୍ରସ୍ତୁତ ପାକ ଭୋଜନରେ ବିରାଟ ରାଜାଙ୍କର ଉଦର ପୂର୍ଣ୍ଣହୁଅନ୍ତେ ସେ ଭୋଜନ ସ୍ଥାନରୁ ଉଠିପାରିଲେ ନାହିଁ । ସେତେବେଳେ ଯୁଧିଷ୍ଠିରଙ୍କ ମୁଖରେ କବି ଆତାପି ବାତାପି ଉପାଖ୍ୟାନ ବୁଝାଇଛନ୍ତି ଓ ବିରାଟ ନୃପତି ଏ ମନ୍ତ୍ର ଶିଖିବା ପ୍ରସଙ୍ଗ ମୂଳ ମହାକାବ୍ୟରେ ନାହିଁ ।

ତତ୍ପରେ କୀଚକବଧ ପ୍ରକରଣରେ କବି ସମୟ ନିର୍ଦ୍ଦେଶ କରିଅଛନ୍ତି ଯେ, ପାଣ୍ଡବମାନେ 'ଧନୁମାସର ଅନ୍ତେ," ଅର୍ଥାତ୍ ମାଘ ପ୍ରାରମ୍ଭରେ ବିରାଟ ରାଜ୍ୟରେ ଅଜ୍ଞାତ ବାସ ନିମିତ୍ତ ପ୍ରବେଶ କରିଥିଲେ । ବୈଶାଖମାସ ପ୍ରବେଶ ହୁଅନ୍ତେ ଯୁଧିଷ୍ଠିରଙ୍କ ଆଦେଶ ମତେ ରାଜ୍ୟରେ ବସନ୍ତୋତ୍ସବ ପାଳିତ ହୋଇଥିଲା । ବାସନ୍ତିକ ନାଟକେଳି ମହୋତ୍ସବବେଳେ କୀଚକ ଦ୍ରୌପଦୀଙ୍କୁ ଦେଖି କାମାସକ୍ତ ହୋଇପଡ଼ିଥିଲେ । ମୂଳ ମହାଭାରତରେ ବର୍ଣ୍ଣିତ ଅଛିଯେ, ପାଣ୍ଡବ ମାନଙ୍କର ଅଜ୍ଞାତବାସର ଚତୁର୍ଥମାସରେ ମତ୍ସ୍ୟଦେଶ ମହୋତ୍ସବ ବୋଲି ଲୋକଙ୍କର ଏକ ଉତ୍ସବ ଆରବ୍ଧ ହେଲା । [୧୩] ଏହାରି ପ୍ରଭାବରେ ସାରଳା ବସନ୍ତୋତ୍ସବର ଅବତାରଣା କରିଥିବା ଭଳି ମନେ ହୁଏ । କବିଙ୍କ ମତରେ ପାଣ୍ଡବମାନଙ୍କର ବିରାଟ ରାଜ୍ୟ ପ୍ରବେଶର ଚତୁର୍ଥମାସରେ କୀଚକ

---

୧୧ ଶ୍ରୀଭାରତ ଦର୍ପଣ-ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦଶର୍ମା, ପୃ. ୧୦୨

୧୨ ସାରଳା ମହାଭାରତ-ପୃ ୨୫୧-୫୨

୧୩ ସଃ ମ:- ୩ ଅଧ୍ୟାୟ/୧୪ ଶ୍ଳୋକ

ଦ୍ରୌପଦୀଙ୍କୁ ଦେଖିଥିଲେ । କିନ୍ତୁ ଏହାପୂର୍ବରୁ ଭୀମଙ୍କର ବ୍ୟାଘ୍ରସହିତ ଯୁଦ୍ଧ ପ୍ରକରଣ ସାରଳା କହିଛନ୍ତି ଯେ, ପାଣ୍ଡବମାନେ ବିରାଟରାଜ୍ୟରେ ଛ'ମାସ ରହିବାପରେ ଭୀମ ବ୍ୟାଘ୍ର ସଂଘର୍ଷ ହୋଇଥିଲା । ଉଭୟ ବିବରଣକୁ ବିଚାରକଲେ ଏବଂ ଉଲ୍ଲିଖିତ ସମୟକୁ ଦେଖିଲେ ଜଣାଯାଏ ଯେ ସାରଳାଦାସ ପ୍ରମାଦବଶତଃ ପୂର୍ବାପର ସମୟ ନିର୍ଦ୍ଧେଶକୁ ଏପରି ବୈଷମ୍ୟରେ ପକାଇଛନ୍ତି । ମୂଳ ମହାଭାରତରେ ବର୍ଣ୍ଣିତ ଅଛି ଯେ ପାଣ୍ଡବଙ୍କ ଅଜ୍ଞାତବାସର ପ୍ରାୟଶଃ ଏକାଦଶ ମାସରେ କୀଚକ ଦ୍ରୌପଦୀଙ୍କର ରୂପ ସନ୍ଦର୍ଶନରେ ମୋହିତ ହୋଇଥିଲେ । ୧୪ କାମମୋହିତ କୀଚକ କରୁଣା ଦାସୀ ହସ୍ତରେ ବହୁ-ମୂଲ୍ୟ ଅଳଙ୍କାର ଦେଇ ସୈରନ୍ଧ୍ରୀଙ୍କୁ ପ୍ରଲୁବ୍ଧ କରିବାପାଇଁ ଚେଷ୍ଟା କରିଛନ୍ତି, ଯାହା ମୂଳ ଗ୍ରନ୍ଥରେ ପରିଦୃଷ୍ଟ ହୁଏନାହିଁ । ମୂଳ ଗ୍ରନ୍ଥରେ ବରଂ କୀଚକ ନିଜେ ଦ୍ରୌପଦୀଙ୍କ ଠାରେ ପ୍ରେମ ନିବେଦନ କରି ନିରାଶ ହୋଇଥିବା କଥା ବର୍ଣ୍ଣିତ । କୀଚକର ଗୃହପ୍ରତି ଦ୍ରୌପଦୀଙ୍କୁ ସୁଦେଷ୍ଣାଙ୍କର ବ୍ୟାଜମୂଳକ ପ୍ରେରଣ ଭଳି ମୂଳ କଥାବସ୍ତୁକୁ ସାରଳା ପରିହାର କରିନାହାନ୍ତି; ବରଂ ତାଙ୍କୁ କୀଚକ ପାଖକୁ ସିଧାସଳଖ ନ ପଠାଇ ତନ୍ତୁପଳୀ 'ରାଧିକା' ହସ୍ତରେ ପଠ ଦେବାପାଇଁ କହିଅଛନ୍ତି । ୧୫ ମୂଳଗ୍ରନ୍ଥରେ ସୁଦେଷ୍ଣା ଅତ୍ୟନ୍ତ ତୃଷ୍ଣା ହୋଇଥିବାରୁ ଦ୍ରୌପଦୀଙ୍କୁ ପାନୀୟ ପାଇଁ କୀଚକ ଗୃହକୁ ପଠାଇଛନ୍ତି । ସୈରନ୍ଧ୍ରୀ ପଥ ମଧ୍ୟରେ ସୂର୍ଯ୍ୟଙ୍କୁ ପ୍ରାର୍ଥନା କରିବା ଏବଂ ସୂର୍ଯ୍ୟ ତାହାଙ୍କର ରକ୍ଷାନିମିତ୍ତ ଗୋଟିଏ ରାକ୍ଷସକୁ ରକ୍ଷକ ସ୍ୱରୂପ ପଠାଇବା ଭଳି ସାରଳାଙ୍କ ସୈରନ୍ଧ୍ରୀ ସୂର୍ଯ୍ୟଙ୍କପ୍ରେରିତ ଛାୟାମାୟା ଶକ୍ତି ଦ୍ୱୟଙ୍କ ସହ କୀଚକ ନିକଟକୁ ଯାଇଥିବାର ବର୍ଣ୍ଣନା ରହିଛି । ଉଭୟ ଗ୍ରନ୍ଥରେ ଭୟାତୁର ଦ୍ରୌପଦୀଙ୍କ ପଶ୍ଚାଦ୍ଧାବନ କରି କୀଚକ ବିରାଟ ସଭାକୁ ଯାଇଛନ୍ତି ଓ ସେଠାରେ ଦ୍ରୌପଦୀଙ୍କୁ ପଦପ୍ରହାର କରିଛନ୍ତି । ମୂଳ ଗ୍ରନ୍ଥରେ ଦ୍ରୌପଦୀ ବିରାଟାଧିପତିଙ୍କୁ ଗାଳିଦେଲା ପରି ସାରଳା ମଧ୍ୟ ତାଙ୍କ ଗ୍ରନ୍ଥରେ ସାମ୍ୟତା ପ୍ରଦର୍ଶନ କରିଛନ୍ତି । ସୈରନ୍ଧ୍ରୀ ଯୁଧିଷ୍ଠିରଙ୍କଠାରୁ ନିରାଶ ହୋଇ ଅର୍ଜ୍ଜୁନ, ନକୁଳ, ସହଦେବ ପ୍ରଭୃତିଙ୍କ ସାହାଯ୍ୟ ପ୍ରାର୍ଥିନୀ ହୋଇଛନ୍ତି । ପରେ ପରେ ଭୀମଙ୍କ ନିକଟରେ ପହଞ୍ଚି ସମସ୍ତ ଘଟଣା କହିଥିଲେ । ମୂଳଗ୍ରନ୍ଥରେ ଦ୍ରୌପଦୀ ଯୁଧିଷ୍ଠିରଙ୍କ ଠାରୁ ଯାଇ ଭୀମଙ୍କର ସାହାଯ୍ୟ ନେଉଥିଲେ । ସାରଳାଙ୍କ ଦ୍ରୌପଦୀ ପ୍ରଚ୍ଛନ୍ନଭାବରେ ଯୁଧିଷ୍ଠିରଙ୍କୁ କୀଚକର ଦୌରାତ୍ମ୍ୟ ଜଣାଇଥିବା ପ୍ରସଙ୍ଗରେ ସେ ସମୟକୁ ଅଜ୍ଞାତବାସ ଅବଶିଷ୍ଟ "ଦେଢମାସ ମାତ୍ରଦିବସ" ଓ "ସତର ଦିବସ" (୧୬) ଅଛି ବୋଲି କହିଅଛନ୍ତି । କିନ୍ତୁ ମୂଳଗ୍ରନ୍ଥରେ କେବଳ ପଞ୍ଚଦଶ ଦିବସ

---

୧୪ ବସମାନେଷୁ ପାର୍ଥେଷୁ ମତ୍ସ୍ୟସ୍ୟ ନଗରେ ତଦା, 'ମହାରଥେଷୁ ଛନ୍ନେଷୁ ମାସଦଶ ସମାଯଯୁଃ" ତସ୍ମିନ୍ ବର୍ଷେ ଗତପ୍ରାୟେ କୀଚକସ୍ତୁ ମହାବଳଃ, ସେନାପତି-ର୍ବିରାଟସ୍ୟ ଦଦର୍ଶ ଦ୍ରୁପଦାତ୍ମଜା ।।" ୧୪/୧-୪ ଶ୍ଳୋକ

୧୫ ସାରଳା ମହାଭାରତ-ପୃ. ୨୯୦

୧୬ ସା : ମ :—ପୃ. ୩୨୨, ୩୨୭

ଅପେକ୍ଷା କରିବାକୁ ଦ୍ରୌପଦୀଙ୍କୁ ଭୀମସେନ କହିଅଛନ୍ତି । କାରଣ ପଞ୍ଚଦଶ ଦିବସପରେ ବନବାସର ତ୍ରୟୋଦଶ ବର୍ଷ ପରିସମାପ୍ତି ହେବ ଓ ଦ୍ରୌପଦୀ ରାଜମହିଷୀ ହେବେ । (୧୭) ସାରଳାଦାସ ଅଧିକନ୍ତୁ ଏହିଭଳି ସମସ୍ତଙ୍କୁ ବୈଷମ୍ୟରେ ପକାଇଅଛନ୍ତି । ମୂଳଗ୍ରନ୍ଥରେ ଦ୍ରୌପଦୀ-ଭୀମ ସମ୍ବାଦ ଭିତରେ ଆମେ ଦ୍ରୌପଦୀ ଚରିତ୍ରର ବୈଶିଷ୍ଟ୍ୟ ଦେଖିବାକୁ ପାଉଁ । ସେ ସବୁ ଭାଇମାନଙ୍କର ଗୁଣ ଭୀମ ନିକଟରେ ପ୍ରକାଶ କରିଅଛନ୍ତି ଯାହା ସାରଳାଙ୍କ ଗ୍ରନ୍ଥରେ ନାହିଁ । ସାରଳାଙ୍କ ଦ୍ରୌପଦୀ ଗର୍ଭର ଆଶାବାଦିନୀ ହୋଇ ସ୍ୱାମୀମାନଙ୍କ ପାଖକୁ ଯାଇଛନ୍ତି । ଯେଉଁ ଯେଉଁଠାରୁ ନିରାଶାମନରେ ଫେରିଛନ୍ତି ସେହି ସେହି ସ୍ୱାମୀମାନଙ୍କର ନିନ୍ଦାଗାନ କରିଛନ୍ତି । କୀଚକକୁ ପ୍ରେମ ସଙ୍କେତ ଜଣାଇବାପାଇଁ ଦ୍ରୌପଦୀ ନିଜେ ଗନ୍ଧମାଲ୍ୟାଦି ହସ୍ତରେ ସେହି ପାପିଷ୍ଠର ଦ୍ୱାରସ୍ଥ ହୋଇଥିଲେ, ଯାହା ମୂଳଗ୍ରନ୍ଥରେ ନାହିଁ । ପୁଣି ଭୀମସେନ କୀଚକକୁ ବଧ କରିବା ପାଇଁ ନାଟ୍ୟମନ୍ଦିରକୁ ଯିବାପୂର୍ବରୁ ପାଞ୍ଚଘଣ୍ଟା ରାତିରେ ନିକଟସ୍ଥ ନଦୀଜଳରେ ସ୍ନାନ କରିବା, ପବନ ଦେବତାଙ୍କୁ ସ୍ମରଣ କରିବା ଓ ପବନଦେବତା ତାଙ୍କୁ ଅର୍ଜୁନଙ୍କର ସ୍ତ୍ରୀବେଶାଳଙ୍କାର ଆଣିଦେବା ପ୍ରଭୃତି ବିଷୟର ଅବତାରଣା ସାରଳାଙ୍କ ନିଜସ୍ୱ କଳ୍ପନା । ପରଦିନ ରାଜସଭାକୁ କୀଚକକୁ ଆଣିବାପାଇଁ ବିରାଟରାଜା ଅନୁଚରମାନଙ୍କୁ ନୃତ୍ୟ ମନ୍ଦିରକୁ ପଠାଇଥିଲେ । ସେମାନେ କୀଚକର ମୃତ୍ୟୁ ସମ୍ବାଦ ତାଙ୍କୁ ଜଣାଇଲେ । ଏଠାରେ ସାରଳା ମୂଳଗ୍ରନ୍ଥଠାରୁ ସ୍ୱଳ୍ପ ପରିମାଣରେ ପରିବର୍ତ୍ତନ କରି କୀଚକ ମୃତ୍ୟୁରେ ବିରାଟରାଜା ତଥା ରାଜଉଆସର ନାରୀମାନଙ୍କର ଶୋକ ଓ ଶୁଦ୍ଧି ବିଷାଦ ବର୍ଣ୍ଣନା କରିଛନ୍ତି । କୀଚକର ଅବଶିଷ୍ଟ ଅନେଶ୍ୱତ ଭାଇଙ୍କର ନାମୋଲ୍ଲେଖ କରି ସାରଳା ନିଜର ମୌଳିକତା ପ୍ରଦର୍ଶନ କରିଛନ୍ତି । (୧୮)

ମୂଳ ମହାଭାରତ ମତରେ କୀଚକ ମୃତ୍ୟୁ ବେଳକୁ ଅଜ୍ଞାତବାସର ତ୍ରୟୋଦଶ ଦିବସ ମାତ୍ର ଅବଶିଷ୍ଟ ଥିବାର ପ୍ରମାଣ ରହିଛି । ଯେତେବେଳେ ଦ୍ରୌପଦୀଙ୍କ ପାଇଁ ଗନ୍ଧର୍ବ ଭୟତ୍ରସ୍ତ ବିରାଟ ନୃପତି ସ୍ୱରାଜ୍ୟରେ ତାଙ୍କର (ଦ୍ରୌପଦୀଙ୍କର) ଅବସ୍ଥାନକୁ ଅସ୍ୱୀକାର କରିଥିଲେ । ସେତେବେଳେ ଦ୍ରୌପଦୀ ସୁଦେଷ୍ଣାଙ୍କୁ ଆଶ୍ୱାସ ବିଶ୍ୱାସ ପ୍ରଦାନକରି ଆଉ ତ୍ରୟୋଦଶ ଦିବସ ମାତ୍ର ରହିବାପାଇଁ ଜଣାଇଥିଲେ । (୧୯) ଏଠାରେ ସାରଳା ସମସ୍ତ ନିର୍ଦ୍ଦେଶ ନକରି କେବଳ ଗନ୍ଧର୍ବଠାରେ ଆତ୍ମସମର୍ପଣ କରିବା ପାଇଁ ଦ୍ରୌପଦୀଙ୍କୁ ନିର୍ଦ୍ଦେଶ ଦେଇଥିଲେ । ତଦ୍ଦ୍ୱାରା ବିରାଟ ରାଜାଙ୍କର ବିପଦ ରକ୍ଷା ହୋଇପାରିବ । (୨୦)

(୧୭) ସଂ : ମ—୨୧ ଅଧ୍ୟାୟ/୧୭ ଶ୍ଳୋକ

(୧୮) ସା : ମ :—ପୃ. ୩୫୯

(୧୯) "ତ୍ରୟୋଦଶାହମାତ୍ରଂ ତୁ ରାଜା କ୍ଷାମ୍ୟତୁ ଭାବିନ,
କୃତକୃତ୍ୟା ଭବିଷ୍ୟନ୍ତି ଗନ୍ଧର୍ବାସ୍ତେ ନ ସଂଶୟଃ ।" ୨୪/୨୯ ଶ୍ଳୋକ

(୨୦) ସା : ମ :—ପୃ. ୩୬୯

ବିରାଟରାଜାଙ୍କ ଗୋଗୋଷ୍ଠହରଣ ପର୍ଯ୍ୟାୟରେ ସାରଳାଦାସ ମୂଳ ଗ୍ରନ୍ଥଠାରୁ ବୈଷମ୍ୟ ରକ୍ଷା କରିଅଛନ୍ତି । ଦୁର୍ଯ୍ୟୋଧନଙ୍କ ସମ୍ମତିକ୍ରମେ ତ୍ରିଗର୍ତ୍ତରାଜା ସୁଶର୍ମା ବିରାଟରାଜ୍ୟକୁ ଗୋହରଣାର୍ଥ ମାର୍ଗଶିର ମାସ କୃଷ୍ଣପକ୍ଷ ପଞ୍ଚମୀ ସୋମବାରରେ ଅଭିଯାନ ଆରମ୍ଭ କରିଥିଲେ । (୨୧) ଏଥିପୂର୍ବରୁ କୀଚକବଧ ସମୟକୁ ବୃଷମାସ ଏବଂ ପାଣ୍ଡବ-ମାନଙ୍କର ଅଜ୍ଞାତ ବାସର ମାସଦ୍ୱୟ ଅବଶିଷ୍ଟ ଅଛିବୋଲି କୁହାଯାଇଛି । ପ୍ରତ୍ୟେକ ଘଟଣାରେ ସାରଳା ମାସ, ତିଥି, ବାର ପ୍ରଭୃତି ନିର୍ଦ୍ଧାରଣ କରିଥିଲେ ମଧ୍ୟ ଘଟଣା ସହିତ ସମୟ ନିର୍ଦ୍ଧାରଣରେ ଅସଙ୍ଗତି ଅନେକତ୍ର ପରିଲକ୍ଷିତ ହେଉଅଛି । ସଂସ୍କୃତ ମହାଭାରତରେ ଅଛି କୃଷ୍ଣପକ୍ଷ ସପ୍ତମୀରେ ସୁଶର୍ମାଙ୍କ ଏ ପ୍ରକାର ଅଭିଯାନ ଆରମ୍ଭ ହୋଇଥିଲା । (୨୨) ସାରଳାଙ୍କ ଗ୍ରନ୍ଥରେ ଯୁଧିଷ୍ଠିର, ଭୀମ, ନକୁଳ ପ୍ରଭୃତିଙ୍କୁ ନେଇ ବିରାଟରାଜ ସୁଶର୍ମାଙ୍କ ସହ ଯୁଦ୍ଧ କରିବାକୁ ଯାଇଥିଲେ । ଭୀମସେନଙ୍କ ଅଭିମାନ ଓ ଔଦ୍ଧତ୍ୟ କବିଙ୍କ ଲେଖନୀରେ ଜୀବନ୍ତଭାବରେ ରୂପପାଇଛି । ଯେତେବେଳେ ସୁଶର୍ମା ବିରାଟକୁ ବନ୍ଧନ କରିଛନ୍ତି ସେତେବେଳେ କ୍ରୋଧାନ୍ଧୀଭୂତ ଭୀମସେନ ଧାଇଁଯାଇ ବାମହସ୍ତରେ ସୁଶର୍ମା ଓ ଦକ୍ଷିଣ ହସ୍ତରେ ବିରାଟ ଉଭୟଙ୍କ କେଶଧରି ଯୁଧିଷ୍ଠିରଙ୍କ ସମ୍ମୁଖରେ ଉପସ୍ଥିତ କରାଇଛନ୍ତି । (୨୩) ଭୀମଙ୍କର ନାତିରୁଦ୍ଧ ଔଦ୍ଧତ୍ୟର ପରିଚୟ ଦେବାରେ ଏଠାରେ ସାରଳା ପଛାଇ ନାହାନ୍ତି । ଏହି ଗ୍ରନ୍ଥରେ ଭୀମ ସୁଶର୍ମାଙ୍କୁ ପରାସ୍ତ କରିଥିବା ସ୍ଥଳେ ମୂଳଗ୍ରନ୍ଥରେ ଯୁଧିଷ୍ଠିର, ଭୀମ, ନକୁଳ, ସହଦେବ ସମସ୍ତେ ଏକମେଳ ହୋଇ ସୁଶର୍ମାଙ୍କୁ ପରାସ୍ତ କରିଥିଲେ । ଭୀମଙ୍କ ପ୍ରହାରରେ ସୁଶର୍ମା ମୂର୍ଚ୍ଛିତ ହୋଇଥିଲେ ଓ ଯୁଧିଷ୍ଠିର ପରେ ତାଙ୍କୁ ବନ୍ଧନ ମୁକ୍ତ କରି ଛାଡ଼ି ଦେଇଥିଲେ । ସାରଳାଙ୍କ ତ୍ରିଗର୍ତ୍ତିରାଜା ପରାଭବ ପାଇ ଭଗ୍ନବଳସହ ବିରାଟ ଦେଶରୁ ହସ୍ତିନାରେ ପ୍ରବେଶ କରି ନିଜର ପରାଜୟ ଦୁର୍ଯ୍ୟୋଧନଙ୍କ ଆଗରେ ବର୍ଣ୍ଣନା କରିଥିଲେ । ତାଙ୍କ ଦୁଃଖରେ ଦୁଃଖିତ ଦୁର୍ଯ୍ୟୋଧନ ଭୀଷ୍ମାଦି ସହ ଅମିତ ବଳଶାଳୀ ସୈନ୍ୟମାନଙ୍କୁ ଧରି ବିରାଟରାଜ୍ୟ ଆକ୍ରମଣ କରିଥିଲେ । ଏହି ଘଟଣା ବର୍ଣ୍ଣନା କରିବାରେ ସାରଳା ବହୁ ଅସଙ୍ଗତି ପ୍ରକାଶ କରିଛନ୍ତି । ମୂଳଗ୍ରନ୍ଥରେ ଅଛି ଯେ, ସୁଶର୍ମାଙ୍କ ଅଭିଯାନର ପରଦିବସରେ ଦୁର୍ଯ୍ୟୋଧନାଦି କୁରୁଗଣ ବିରାଟରାଜ୍ୟ ପ୍ରତି ଯୁଦ୍ଧଯାତ୍ରା କରିଥିଲେ । (ଅ-୩୦/୨୭ ଶ୍ଳୋକ) ଯୁଦ୍ଧଯାତ୍ରା ପୂର୍ବରୁ ଦୁର୍ଯ୍ୟୋଧନ କହିଥିଲେ ଯେ, "ସଂପ୍ରତି ମହାରଥ ସୁଶର୍ମା ତ୍ରିଗର୍ତ୍ତିଦେଶୀୟ ସମସ୍ତ

---

(୨୧) ସା : ମ : - ପୃ ୩୬୮

(୨୨) ଆ ଦାରୁଂ ଗାଃ ସୁଶର୍ମାଥ କୃଷ୍ଣପକ୍ଷସ୍ୟ ସପ୍ତମୀଂ
ଅପରେ ଦିବସେ ସର୍ବେ ରାଜନ୍ ସଂଭୂୟ କୌରବାଃ ।
ଅଷ୍ଟମ୍ୟାନ୍ତେ ନ୍ୟଗୃହ୍ଣନ୍ତ ଗୋକୁଳାନ ସହସ୍ରଶଃ ।" – ୩୦/୨୬ ଶ୍ଳୋକ

(୨୩) ସା : ମ :—ପୃ. ୪୦୪

ସୈନ୍ୟ ଓ ବାହାନମାନଙ୍କ ସଙ୍ଗରେ ପୂର୍ବରୁ ସେହି ନଗରକୁ ଯାଉନ୍ତୁ ଓ ଶୀଘ୍ର ଗୋପାଳମାନଙ୍କ ନିକଟବର୍ତ୍ତୀ ହୋଇ ବହୁତ ଧନରତ୍ନ ସଞ୍ଚୟ କରୁଥାଉନ୍ତୁ । ଆମ୍ଭେମାନେ ସୈନ୍ୟମାନଙ୍କୁ ଦୁଇଭାଗରେ ବିଭକ୍ତକରି ତାହାଙ୍କ ପଶ୍ଚାତ୍ ପଶ୍ଚାତ୍ ସେହି ସ୍ଥାନରେ ଉପସ୍ଥିତ ହୋଇ ସୁନ୍ଦର ଓ ଗୁଣବନ୍ତ ଅପରିମିତ ଗୋଧନସବୁ ଆଣିବା'' । (୨୪) ଅତଏବ ବିରାଟରାଜ ଭୀମ ଯୁଧିଷ୍ଠିରଙ୍କ ସମ୍ମତ ତେଣେ ସୁଶର୍ମାଙ୍କ ପ୍ରଣକାରରେ ତତ୍ପର ଥିବାବେଳେ କୌରବମାନେ ଏଣେ ଗୋରକ୍ଷମାନଙ୍କୁ ପ୍ରହାର କରି ଗୋଧନମାନଙ୍କୁ ବଳାତ୍କାରରେ ଆକ୍ରମଣ କରିଥିଲେ । ବୈରାଟିକମାନଙ୍କ ମଧ୍ୟରୁ କେବଳ ଉତ୍ତର ରାଜଭବନରେ ଉପସ୍ଥିତ ଥିଲେ । ଏହି ଘଟଣାକୁ ସାରଳା ଠିକ୍ ସ୍ମରଣ କରି ନ ପାରି କୌରବମାନଙ୍କ ଆକ୍ରମଣ ବେଳେ ବିରାଟଙ୍କର ପ୍ରାସାଦରେ ଅନବସ୍ଥିତ ଦର୍ଶାଇବା ପାଇଁ କହିଛନ୍ତି ଯେ, ବିରାଟ ନୃପତି ସୁଶର୍ମାଙ୍କୁ ପରାସ୍ତ କରି ପାଣ୍ଡବମାନଙ୍କ ସହ ସ୍ୱଭବନରେ ପ୍ରବେଶିବାର କେତେଦିନ ପରେ କଳିଙ୍ଗ ଦେଶର ରାଜା ବୀରବାହୁ (ଯାହାଙ୍କ ପିତା ଏକଦା କୀଚକ ଦ୍ୱାରା ନିହତ ହୋଇଥିଲେ) ବିରାଟ ରାଜ୍ୟ ଆକ୍ରମଣ କଲାରୁ ବିରାଟ ତେଣେ ଯୁଦ୍ଧରେ ଯୁଧିଷ୍ଠିର, ଭୀମାଦିଙ୍କ ସହ ବ୍ୟାପୃତ ଥିଲେ । ସାରଳାଙ୍କ କଳିଙ୍ଗ ଦେଶର ନାମ 'କଳିଙ୍ଗ' ପଦଭୁ ହୋଇଥିବାରୁ ଏ ପ୍ରସଙ୍ଗରେ ତାଙ୍କର କଳ୍ପନା ପ୍ରବଣତାର ପରିଚୟ ମିଳି ପାରୁଛି । (୨୫) ପୁଣି ଦୁର୍ଯ୍ୟୋଧନଙ୍କର ଗୋଧନ ଆକ୍ରମଣ ବର୍ଣ୍ଣନା କରିବାବେଳେ ସାରଳା ବିଚିତ୍ର କଳ୍ପନା-ପ୍ରସୂତ କଥାମାନ କହିଅଛନ୍ତି । ତନ୍ତ୍ରୀପାଳ ସହଦେବଙ୍କ ସ୍ମୃତିରେ ସନ୍ତୁଷ୍ଟା ପୃଥ୍ୱୀନାରୀଙ୍କ ଗୋସୈନ୍ୟ ସହ କୌରବ ଚତୁରଙ୍ଗ ସୈନ୍ୟଙ୍କୁ ପରାସ୍ତ କରିଥିବା ଓ ଶ୍ରୀକୃଷ୍ଣଙ୍କ ମାୟାବଳରେ ସହଦେବଙ୍କ କନ୍ଧରୁ ଦୁଇବାହୁ ବାହାରି ଚତୁର୍ଭୁଜ ହୋଇ ସେ ଯୁଦ୍ଧ କରିବା, ଗୋହତ୍ୟା ଭୟରେ କୌରବବୀରମାନେ ପଶୁ ପୀଡ଼ିତ ହେଇ ସୁଦ୍ଧା ଗୋସୈନ୍ୟ ବିନାଶରୁ ନିବୃତ୍ତହେବା ଇତ୍ୟାଦି ଅଲୌକିକ କଥା ସମୂହ ମୂଳଗ୍ରନ୍ଥରେ ଆଦୌ ପରିଦୃଷ୍ଟ ହୁଏ ନାହିଁ । (୨୬) ଏ ସ୍ଥଳରେ ଗୋହତ୍ୟା ଅତି ଦୁସ୍ତର ପାପ ଏହା ସ୍ଥିର କରିବା ପାଇଁ ପୁରାଣକାର ସାରଳା କହିଛନ୍ତି ଯେ, ଏକଦା ମହାଦେବ ଗଙ୍ଗାତୀରରେ କୁଶବିଡ଼ା ଥୋଇ ସ୍ନାନ କରୁଥିଲେ । ଇତ୍ୟବସରେ ନନ୍ଦିନୀ ଆସି କୁଶ ବିଡ଼ାକ କବଳିତ କରିଦେବାରୁ ମହାଦେବ କ୍ରୋଧରେ ତାଙ୍କୁ ପ୍ରହାର କରିଥିଲେ । ଫଳରେ ନନ୍ଦିନୀଙ୍କ ଛିନ୍ନ ମସ୍ତକ ଶିବଙ୍କ ହସ୍ତରେ ଲାଗି ରହିଥିଲା । (୨୭) ଏହା ପରେ ସହଦେବ ବିରାଟ ରାଜପୁତ୍ର ଉତ୍ତରଙ୍କୁ କୌରବବାହିନୀ ସହ ଯୁଦ୍ଧ

(୨୪) ମହାଭାରତ – ବିରାଟପର୍ବ – ଗୋବିନ୍ଦଚନ୍ଦ୍ର ମହାପାତ୍ର, ପୃ. ୮୮

(୨୫) ଶ୍ରୀଭାରତ ଦର୍ପଣ-ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦ ଶର୍ମା-ପୃ.୧୦୨

(୨୬) ସା: ମ:-ପୃ. ୪୩୨

(୨୭) ତତ୍ରୈବ, ପୃ. ୪୩୩-୩୪

କର ଗୋଧନ ରକ୍ଷା କରିବା ପାଇଁ ନିବେଦନ କରିଛନ୍ତି । ସହଦେବଙ୍କ କଥାନୁସାରେ ଉତ୍ତର ଅର୍ଜ୍ଜୁନ (ବୃହନ୍ନଳା) ଙ୍କୁ ସାରଥି କରି ନେଇଛନ୍ତି । କିନ୍ତୁ ମୂଳ ଗ୍ରନ୍ଥରେ ଅର୍ଜ୍ଜୁନ ଉତ୍ତମତା ଅନ୍ତେବାସିନ୍ୟ ଉତ୍ତରାଙ୍କ ଅନୁରୋଧରେ ଉତ୍ତରାଙ୍କର ସାରଥି ହୋଇଥିଲେ । ଉତ୍ତର ଯୁଦ୍ଧକ୍ଷେତ୍ରରେ ମହା ସାଗରୋପମ ଭୟଙ୍କର କୌରବ ସୈନ୍ୟ ଦର୍ଶନରେ ଭୀତ ହୋଇ ପଳାୟନ କଲାବେଳେ ଅର୍ଜ୍ଜୁନ ଶୁକ ମହାରାଜାଙ୍କ ଉପାଖ୍ୟାନ ଶୁଣାଇ ଉତ୍ତରଙ୍କୁ କିପରି ସତେଜ କରାଇଥିଲେ । ପୁଣି ଉତ୍ତରାଙ୍କ ଧନୁ ଦେଖି ଛଦ୍ମବେଶୀ ଅର୍ଜ୍ଜୁନ ଉପହାସ କରିଥିଲେ । ଏସବୁ ଘଟଣା ମୂଳ ଗ୍ରନ୍ଥରେ ନାହିଁ ।

ତତ୍ପରେ ଅର୍ଜ୍ଜୁନ ଉତ୍ତରାଙ୍କ ସହ ଶମୀବୃକ୍ଷ ନିକଟରେ ପହଞ୍ଚିଛନ୍ତି । ଏସ୍ଥାନରେ ସାରଳା ଶମୀ-ଶିଂଶୁପା ବୃକ୍ଷ ଦ୍ୱୟର ମୂଳ ହରିହର, ଭୀମ-ଅର୍ଜ୍ଜୁନ ନକୁଳ-ସହଦେବ ସ୍କନ୍ଧଡାଳ, ଉପରର ଉଚ୍ଚଶାଖା ଯୁଧିଷ୍ଠିର ଓ ଦ୍ରୌପଦୀ ଏହାର ପୁଷ୍ପବୋଲି କଳ୍ପନା କରିଛନ୍ତି । ପୁନଶ୍ଚ ଅର୍ଜ୍ଜୁନଙ୍କ ନିର୍ଦ୍ଦେଶରେ ଶର ହରଣ କରିବା ପାଇଁ ଉତ୍ତର ବୃକ୍ଷସ୍ଥ କୋଟରରେ ହସ୍ତ ଦିଅନ୍ତେ, ତାଙ୍କୁ କାଳସର୍ପ ଦଂଶନ କଲା । ଅର୍ଜ୍ଜୁନ ଗାରୁଡ଼ ମନ୍ତ୍ର ପଢ଼ି ତାଙ୍କୁ ସାନ୍ତ୍ୱନା କରାଇବା, କାଳସର୍ପ ଶୋଷେକ ଅର୍ଜ୍ଜୁନଙ୍କ ଉପରେ କର୍ଣ୍ଣଙ୍କ ଆଶ୍ରୟ ପ୍ରାର୍ଥୀ ହେବା ଏବଂ ଖାଣ୍ଡବ ବନ ଦହନ ବେଳେ ଅର୍ଜ୍ଜୁନ ତାର ବଂଶଧରଙ୍କୁ ବିନାଶ କରିଥିବା ହେତୁ ପୂର୍ବ ବୈରସାଧନାର୍ଥେ ଶମୀ କୋଟରରେ ରହିଥିବା କଥା ସାରଳା ହୁଏତ ମୂଳ ମହାଭାରତ ବ୍ୟତୀତ ଅନ୍ୟାନ୍ୟ ପୁରାଣମାନଙ୍କୁ ଆଶ୍ରୟ କରି ଲେଖିଥାଇପାରନ୍ତି । ମୂଳଗ୍ରନ୍ଥରେ ଅଛି ଯେ, ଉତ୍ତର ସେହି କୋଟରସ୍ଥିତ କମାଣ ଓ କବଚମାନଙ୍କୁ ଦେଖିବା ମାତ୍ରେ କିଛି ସମୟ ପର୍ଯ୍ୟନ୍ତ କ୍ରୋଧ ଯୁକ୍ତ ସର୍ପ ପ୍ରାୟ ଭୟରେ ଉଦ୍‌ବିଗ୍ନ ହୋଇଥିଲେ ଓ ତାହାଙ୍କର ସର୍ବାଙ୍ଗ ଶରୀର ରୋମାଞ୍ଚରେ ପୂରିଯାଇଥିଲା । (୮୮) ମନେହୁଏ ସାରଳା ସର୍ପ କଥାର ସୂଚନା ମୂଳମହାଭାରତରୁ ସ୍ମରଣରେ ରଖି ଉକ୍ତ ବୃତ୍ତାନ୍ତ ଲେଖିଅଛନ୍ତି ।

ଅନନ୍ତର ଅର୍ଜ୍ଜୁନ ଉତ୍ତରଙ୍କ ନିକଟରେ ପାଣ୍ଡବୀୟ ଶସ୍ତ୍ରମାନଙ୍କର ପରିଚୟ ପ୍ରଦାନ କରିଥିବା ସ୍ଥଳେ ଉତ୍ତରଙ୍କ ପ୍ରଶ୍ନୋତ୍ତର କ୍ରମେ ଆପଣାର ଦଶନାମର ବିବରଣ ଦେଇଥିଲେ । ସାରଳା ଦାସ ମୂଳଗ୍ରନ୍ଥାନୁସାରେ ଅର୍ଜ୍ଜୁନଙ୍କ ଦଶନାମ କହିଥିଲେ ମଧ୍ୟ ସେଥିରେ ଥିବା 'କୃଷ୍ଣ' ନାମକୁ ପରିହାର କରି 'ପାର୍ଥ' ନାମ ପ୍ରଦତ୍ତ କରିଅଛନ୍ତି । ଶମୀ ବୃକ୍ଷ ସମୀପରେ ଉତ୍ତରଙ୍କ ପ୍ରଶ୍ନରେ ଅର୍ଜ୍ଜୁନ ଶମୀସ୍ଥ ପ୍ରଚଣ୍ଡାବଳୀ ଗନ୍ଧର୍ବର ପ୍ରାକ୍ତନ ବୃତ୍ତାନ୍ତ, ଶମୀ-ଶିଂଶୁପା ବୃକ୍ଷ ଦ୍ୱୟଙ୍କ ହରିହରସମ୍ଭୂତ ଶକ୍ତି ପ୍ରସୂତତ୍ତ୍ୱ, ଅମ୍ବାସୁର ବଧ ପ୍ରସଙ୍ଗ ଭଳି କେତେକ ଅମୂଳକ ଏବଂ ପୁରାଣାଶ୍ରିତ ବୃତ୍ତାନ୍ତ ବର୍ଣ୍ଣନା କରିଛନ୍ତି । ଇତ୍ୟବସରେ ଇନ୍ଦ୍ରଙ୍କ ଆଦେଶରେ ମାତଲି କିରୀଟାଦି ଭୂଷଣ ଓ ଦେବ ଦତ୍ତ ଶଙ୍ଖ

(୮୮) ଐ :-ଅ ୪୧/୧୧ ଶ୍ଳୋକ

ଆଦି ଉପସ୍ଥାପିତ କରିବା, ଶଙ୍ଖ ପ୍ରାପ୍ତିର ଐତିହାସିକ ଘଟଣା, ଶ୍ରୀକୃଷ୍ଣ ପ୍ରେରିତ ଦାରୁକଙ୍କ ନନ୍ଦିଘୋଷ ରଥ ସମର୍ପଣ କଥା ଯାହା ସାରଳା ଦାସ ବର୍ଣ୍ଣନା କରିଛନ୍ତି, ତାହା ମୂଳ ଗ୍ରନ୍ଥାନୁମୋଦିତ ନୁହେଁ । ପୁଣି ଅର୍ଜ୍ଜୁନଙ୍କର ଅକ୍ଷୟତୂଣ ଓ ପାଶୁପତ ଅସ୍ତ୍ର ପ୍ରାପ୍ତି ବିବରଣ, ମହିଷାସୁର ବଧ ପ୍ରସଙ୍ଗ ସାରଳା ଅର୍ଜ୍ଜୁନଙ୍କ ମୁଖରେ ଯାହା ବିସ୍ତୃତ ଭାବେ ବର୍ଣ୍ଣନା କରିଛନ୍ତି ତାହା ବ୍ୟାସ-କୃତ ଭାରତରେ ନାହିଁ । ଏଥିରେ ଅଛି ଯେ, ଅର୍ଜ୍ଜୁନ ନାରୀବେଶ ପରିତ୍ୟାଗ କରି ବୈଶ୍ୱାନରଙ୍କୁ ଧ୍ୟାନ କରିବାରୁ ତାଙ୍କର ପ୍ରସାଦରେ ଏକ ଦିବ୍ୟରଥ ବ୍ୟୋମରୁ ଆସି ଭୂମିରେ ଅବତୀର୍ଣ୍ଣ ହୋଇଥିଲା । ଏହି ରଥରେ ବସି ଅସ୍ତ୍ରଶସ୍ତ୍ର ଧରି ଅର୍ଜ୍ଜୁନ ଯୁଦ୍ଧକ୍ଷେତ୍ରରେ ପ୍ରବେଶ କରିଥିଲେ । (୨୯) ମୂଳଗ୍ରନ୍ଥରେ ଅର୍ଜ୍ଜୁନଙ୍କର ଧନୁର୍ନାଦ ଶ୍ରବଣ ଓ ଯୁଦ୍ଧରେ ତାଙ୍କର ସମାଗମନ ଜାଣିପାରି କୃପ, ଭୀଷ୍ମ, ଦ୍ରୋଣ, ଅଶ୍ୱତ୍ଥାମା ପ୍ରଭୃତି ଦୁର୍ଯ୍ୟୋଧନଙ୍କ ଆଗରେ ଅର୍ଜ୍ଜୁନଙ୍କର ଭୁବନ ବିଜୟୀ ବୀରତ୍ୱ କାହାଣୀ ପ୍ରଖ୍ୟାପନ କରିଥିଲେ ଓ ଯୁଦ୍ଧରୁ ବିରତ ହେବା ପାଇଁ ସଦୁପଦେଶ ଦେଇଥିଲେ । (୩୦) ଏହା ବ୍ୟତୀତ କର୍ଣ୍ଣଙ୍କର ଆତ୍ମଗର୍ବ ଓ ଦ୍ରୋଣନିନ୍ଦା ମୂଳଗ୍ରନ୍ଥରେ ଯେପରି ବର୍ଣ୍ଣିତ ସାରଳାଙ୍କ ଭାରତରେ ସେପରି ନାହିଁ । ଯୁଦ୍ଧର ବର୍ଣ୍ଣନା ମୂଳଗ୍ରନ୍ଥରେ ଯେପରି ବିଶଦ ଭାବରେ କରାଯାଇଛି ସେପରି ଓଡ଼ିଆ ଗ୍ରନ୍ଥରେ ନାହିଁ । ବିରାଟପର୍ବରେ ଅର୍ଜ୍ଜୁନ ଯୁଦ୍ଧକ୍ଷେତ୍ରରେ ପ୍ରବେଶକରି ଉତ୍ତର କୁମାରଙ୍କ ଆଗରେ କୁରୁବୀର ମାନଙ୍କର ପରିଚୟ, କର୍ଣ୍ଣଜନ୍ମ ବୃତ୍ତାନ୍ତ ପ୍ରଭୃତି କହି ଅଛନ୍ତି । ପୁଣି ଅର୍ଜ୍ଜୁନ ଯୁଦ୍ଧ ପ୍ରାରମ୍ଭରେ ଆତ୍ମପରିଚୟ ଦେଇଥିବାର ଉକ୍ତ ଅଛି । (୩୧) ମାତ୍ର ମୂଳ ଗ୍ରନ୍ଥ ମତରେ ଯେତେବେଳେ ଅଦ୍ୱିତୀୟ ଧନୁର୍ଦ୍ଧର ପିତାମହ ଭୀଷ୍ମ ଯୁଦ୍ଧ କ୍ଷେତ୍ରରୁ ପଳାୟନ କଲେ, ସେତେବେଳେ ଦୁର୍ଯ୍ୟୋଧନ ପ୍ରୋତ୍ସାହିତ ହୋଇ ଅର୍ଜ୍ଜୁନ ସମ୍ମୁଖକୁ ପ୍ରଧାବିତ ହୋଇଥିଲେ । ସେତିକି ବେଳେ ଅର୍ଜ୍ଜୁନ ତାଙ୍କୁ ଆତ୍ମପରିଚୟ ପ୍ରଦାନ କରିଥିଲେ । (୩୨) ଏଥିରେ ଯୁଦ୍ଧବର୍ଣ୍ଣନା ଏବଂ ବିବିଧ ଶରମାନଙ୍କର ନାମ, ସେଗୁଡ଼ିକର ପ୍ରୟୋଗ କୌଶଳ ଯେଉଁଳି ଉଲ୍ଲେଖ ରହିଛି ସାରଳାଙ୍କ ଭାରତରେ ସେଉଁଳି ପରିଲକ୍ଷିତ ହୁଏ ନାହିଁ । ଗ୍ରନ୍ଥର ୫୭ ଅଧ୍ୟାୟରେ ଅର୍ଜ୍ଜୁନ କୃପଙ୍କ ସହ, ୫୮ ଅଧ୍ୟାୟରେ ଦ୍ରୋଣଙ୍କ ସହ, ୫୯ ଅଧ୍ୟାୟରେ ଅଶ୍ୱତ୍ଥାମାଙ୍କ ସହ, ୬୦ ଅଧ୍ୟାୟରେ କର୍ଣ୍ଣଙ୍କ ସହ, ୬୪ ଅଧ୍ୟାୟରେ ଭୀଷ୍ମଙ୍କ ସହ ଏବଂ ୬୫ ଅଧ୍ୟାୟରେ ଦୁର୍ଯ୍ୟୋଧନାଦିଙ୍କର ସହ ଯେପରି ଯୁଦ୍ଧ କରିଅଛନ୍ତି, ତାହା ପାଠକଲେ ଜଣାଯାଏ ଯେ, ବ୍ୟାସଦେବ ସତେ ଯେପରି ଏଭଳି ଯୁଦ୍ଧ ପ୍ରତ୍ୟକ୍ଷ କରିଅଛନ୍ତି । ସାରଳା କିନ୍ତୁ ଅର୍ଜ୍ଜୁନଙ୍କ ସହ ଦୁର୍ଯ୍ୟୋଧନ ଶତଭ୍ରାତାଙ୍କର, କର୍ଣ୍ଣଙ୍କର ଏବଂ ଭୀଷ୍ମାଦିବୀରମାନଙ୍କର ଯୁଦ୍ଧ ବର୍ଣ୍ଣନା

(୨୯) ତତ୍ରୈବ, ୪୬ ୫-୭ ଶ୍ଲୋକ

(୩୦) ମହାଭାରତ-ବିରାଟପର୍ବ ଗୋବିନ୍ଦଚନ୍ଦ୍ର ମହାପାତ୍ର, ପୃ ୧୩୦-୧୩୭

(୩୧) ସଃ ମଃ-ପୃ ୫୩୯

(୩୨) " ଯୁଧିଷ୍ଠିରସ୍ୟାସ୍ମି ନଦେଶକାରୀ ପାର୍ଥସ୍ତୃତୀୟୋ ଯୁଧି ସଞ୍ଚିତୋଽସ୍ମି । ୬୫/୧୬ପଦ ।

ସ୍ୱଳ୍ପ ପରିମାଣରେ କରିଅଛନ୍ତି । ସାରଳାଙ୍କ ଯୁଦ୍ଧ ବର୍ଣ୍ଣନା ଭିତରେ କୌରବବୀର ମାନଙ୍କର ପରସ୍ପର ଆକ୍ଷେପୋକ୍ତି, ଅତୀତ ଘଟଣାର ପୁନରୁତ୍‌ଥାନ ଏବଂ ଅର୍ଜ୍ଜୁନଙ୍କ ପ୍ରତି ପ୍ରାପ୍ତ ସମସ୍ତଙ୍କର ଏକ ଉପ୍ସାରୁର ମନର ଉଲ୍ଲେଖ ପରିଲକ୍ଷିତ । ପରିଶେଷରେ ଅମିତ କୌରବସୈନ୍ୟଙ୍କୁ ଅର୍ଜ୍ଜୁନ ମୋହନାସ୍ତ୍ରରେ ମୋହିତ କରିଦେଲା ପରେ ସୌବଳ ଶକୁନିଙ୍କ ଗର୍ଦ୍ଦଭପୃଷ୍ଠଶାୟୀ, ଦୁର୍ଯ୍ୟୋଧନଙ୍କୁ ଚଣ୍ଡାଳ ପାଦନ୍ୟସ୍ତ-ମସ୍ତକ କରିବା, କୃପାଚାର୍ଯ୍ୟଙ୍କୁ ସାତଟବଣ୍ଟି ଆକରି ଛୁଡ଼ିବା, ଶଲ୍ୟଙ୍କୁ ଲଣ୍ଡାକରିବା, ରାଜସ୍ତ୍ରୀମାନଙ୍କର ଅଙ୍ଗୁଳି ଛେଦନ କରିବା ଭଳି ଅର୍ଜ୍ଜୁନଙ୍କର ଅମିତ ପ୍ରତ୍ୟେକ କାର୍ଯ୍ୟମାନ ସାରଳା ଦେଇଅଛନ୍ତି । (୩୩) ମୂଳ ଗ୍ରନ୍ଥରେ ଏତିକିମାତ୍ର ବିକୃତିକରଣ ଉକ୍ତ ଅଛି ଯେ, ଅର୍ଜ୍ଜୁନ "ନବ୍ରତକୋପଃ ଧ୍ୱଜନେ ବଧେସ୍ୱ" — ଏହା ସ୍ୱିବ ଉତ୍ତର କର୍ତ୍ତିକ ଦ୍ରୋଣ, କୃପ, କର୍ଣ୍ଣ, ଅଶ୍ୱତ୍ଥାମା ପ୍ରଭୃତିଙ୍କର ବସ୍ତ୍ରାଳଂକାର ହରଣକରି ଦୁର୍ଯ୍ୟୋଧନଙ୍କର ମୁକୁଟମାତ୍ର ଛେଦନ କରିଥିଲେ । ସାରଳାଙ୍କ ଅର୍ଜ୍ଜୁନ ମୋହନାସ୍ତ୍ର ପ୍ରୟୋଗକରି ସମସ୍ତ ସୈନ୍ୟଙ୍କୁ ମୋହ କରିଥିବାବେଳେ ବ୍ୟାସଙ୍କ ଅର୍ଜ୍ଜୁନ ଶଙ୍ଖଧ୍ୱନି କରି ସମସ୍ତ ମହାରଥୀମାନଙ୍କୁ ମୋହଗ୍ରସ୍ତ କରାଇଥିଲେ । (୩୪)

ରାଜପୁତ୍ର ଉତ୍ତରଙ୍କ ବିଜୟବାର୍ତ୍ତା ଶ୍ରବଣକରି ବିରାଟରାଜାଙ୍କ ହୃଦୟରେ ଅପରିସୀମ ଆନନ୍ଦ ଜାତ ହୋଇଥିଲା । ଅତ୍ୟଧିକ ଆନନ୍ଦ ବଶତଃ ସେ ଯୁଧିଷ୍ଠିରଙ୍କସହ ଅକ୍ଷକ୍ରୀଡ଼ାରେ ମତ୍ତଥିବାବେଳେ ଯୁଧିଷ୍ଠିର ପ୍ରାୟତଃ ବୃଥାର ବୃହନ୍ନଳାଙ୍କ ଯୋଗୁ ଉତ୍ତରକୁମାର ଜୟଲାଭ କଲେ ବୋଲି କହିଥିଲେ । ଫଳରେ ବିରାଟ କ୍ରୋଧବଶତଃ ଅକ୍ଷଶଳାକାରେ ଯୁଧିଷ୍ଠିରଙ୍କ ମସ୍ତକକୁ କ୍ଷତ କରିଥିଲେ । ମୂଳ ଗ୍ରନ୍ଥରେ ବିରାଟରାଜା ଯୁଧିଷ୍ଠିରଙ୍କ ମୁଖରେ ଦୃଢ଼ରୂପେ ଆଘାତ କରିଥିଲେ ବୋଲି ବର୍ଣ୍ଣିତ । ବିଶେଷ ଆଘାତ ହୋଇଥିବାରୁ ତାହାଙ୍କ ନାସିକାରୁ ରକ୍ତଧାର ବହିର୍ଗତ ହୋଇଥିଲା ଓ ନିକଟରେ ଥିବା ପତିବ୍ରତା ଦ୍ରୌପଦୀ ରକ୍ତ ତଳେ ପଡ଼ିବା ପୂର୍ବରୁ ଗୋଟିଏ ଜଳପୂର୍ଣ୍ଣ ସୁବର୍ଣ୍ଣ ପାତ୍ରରେ ରକ୍ତଧାରକୁ ଧରିନେଲେ । (୩୫) ଅଜାତଶତ୍ରୁ, ଅକୋପିତ, ଧର୍ମରାଜା ଯୁଧିଷ୍ଠିର ବିକ୍ଷତମସ୍ତକ ହେବାର କାରଣ ପ୍ରାକ୍ତନ ଦୁଷ୍କର୍ମଫଳ ବୋଲି ସାରଳା କହିଅଛନ୍ତି ଯେ ଏକଦା ଶୈଶବରେ ଯୁଧିଷ୍ଠିର ଏକ ଗୋଡ଼ଧରି ଲଖମାରିବା ଦ୍ୱାରା ଗୋଟିଏ ମଣ୍ଡୁକ ନିହତ ହୋଇଥିଲା । ଫଳତଃ ଯମରାଜାଙ୍କଠାରୁ ତାଙ୍କୁ ଏହି ଅଭିଶାପ ମିଳିଥିଲା । ଏହି ଘଟଣା ଉପସ୍ଥାପନର କିଛିତ ପୂର୍ବରୁ ସାରଳାଙ୍କ ଅର୍ଜ୍ଜୁନ ଉତ୍ତରକୁମାରଙ୍କୁ କହିଛନ୍ତି ଯେ, "ଅଜ୍ଞାତବାସ ଆଉ ଦିନ ଦିବସ ଅଛି ।" ୩୬) ପୁଣି ଯୁଧିଷ୍ଠିରଙ୍କ

---

୩୩) ସା: ମ:-ପୃ. ୫୭୧--୫୭୪

୩୪) ସ: ମ:--ଅ ୬୬/ ୧୧ ଶ୍ଲୋକ

୩୫) ମହାଭାରତ-ବିରାଟପର୍ବ--ଗୋବିନ୍ଦଚନ୍ଦ୍ର ମହାପାତ୍ର, ପୃ. ୧୯୧

୩୬) ସ: ମ:-ପୃ. ୫୮୪

ଅଜ୍ଞାପାଇ (କୋନ୍ତଭଣ୍ଠ) ଉତ୍ତର ଯେତେବେଳେ ତାଙ୍କୁ ଭେଟିବାପାଇଁ ଯାଇଛନ୍ତି, ସେତେବେଳେ ସେ ଅର୍ଜ୍ଜୁନ ବୃହନ୍ନଳାଙ୍କୁ ସାଙ୍ଗରେ ହାତଧରି ନେବାପାଇଁ କହିଅଛନ୍ତି । ଅର୍ଜ୍ଜୁନ ଏଠାରେ ମଧ୍ୟ ତାଙ୍କୁ କହିଛନ୍ତି, "ହେ ନୃପତ ବେନଦନ ହେଉ କନା ତୁମ୍ଭ" (୩୭) ଏଥିରୁ ଜଣାଯାଉଅଛି ଯେ, ଅଜ୍ଞାତ ବାସର ଦିବସଦ୍ୱୟ ମାତ୍ର ଅବଶିଷ୍ଟ ରହିଛି ବୋଲି ସାରଳା ପ୍ରକାଶ କରିଛନ୍ତି । ମୂଳଗ୍ରନ୍ଥ ସହିତ ଏହା ପ୍ରାୟ ସାମ୍ୟ ରକ୍ଷା କରିଅଛି । ମୂଳରେ ବିରାଟରାଜା କୌରବବିଜେତା ମହାପୁରୁଷ କେଉଁଠି ଅଛନ୍ତି ବୋଲି ଜିଜ୍ଞାସା କରିବାରୁ ରାଜପୁତ୍ର ଉତ୍ତର ଉତ୍ତରଦେଇଥିଲେ ଯେ ସେହି ଦେବପୁରୁଷ କାଲି ବା ତତ୍ପର ଦିବସରେ ଅବଶ୍ୟ ଦେଖାଦେବେ (୩୮)

ବିରାଟପର୍ବର ପରିସମାପ୍ତି ଅଭିମନ୍ୟୁ-ଉତ୍ତରାଙ୍କ ବିବାହପରେ ଘଟିଅଛି । ବୈବାହିକ ପର୍ବର ପ୍ରାରମ୍ଭ ପୂର୍ବରୁ ପାଣ୍ଡବମାନେ ଶୁଦ୍ଧସ୍ନାନ ହୋଇ ଶୁକ୍ଳବସ୍ତ୍ରାଳଙ୍କାର ପରିଧାନ କରି ଉତ୍ତର ସହିତ ରାଜସଭା ମଣ୍ଡନ କରିଥିଲେ । ଧର୍ମରାଜ ଯୁଧିଷ୍ଠିରଙ୍କୁ ବିରାଟ ରାଜାଙ୍କ ସିଂହାସନରେ ବସାଇ ଅଭିଷିକ୍ତ କରିଥିଲେ । ଏସମୟରେ ବିରାଟରାଜା ସେହି ଅବସ୍ଥାରେ ପାଣ୍ଡବମାନଙ୍କୁ ଦେଖି କୋପାବିଷ୍ଟ ହୋଇଥିଲେ । ତାଙ୍କର କୋପ ଶାନ୍ତକରାଇ ଅର୍ଜ୍ଜୁନ ଓ ଉତ୍ତର ପାଣ୍ଡବ ତଥା ଦ୍ରୌପଦୀଙ୍କ ପ୍ରକୃତ ପରିଚୟ ଦେଇଥିଲେ । ଏ ଘଟଣା ସମ୍ପୃକ୍ତ ମୂଳମହାଭାରତର ସପ୍ତତିଅଧ୍ୟାୟରେ ବର୍ଣ୍ଣିତ । କିନ୍ତୁ ବୈଷମ୍ୟପ୍ରିୟ ସାରଳା ଏ ସ୍ଥଳରେ ଯୁଧିଷ୍ଠିରଙ୍କ ଅଭିଷେକ ସମୟକୁ କେତେକ ଅତିରିକ୍ତ ଆଶ୍ଚର୍ଯ୍ୟପୂର୍ଣ୍ଣ କଥାରେ ମଣ୍ଡିତ କରିଛନ୍ତି । ତାଙ୍କ ମତରେ ପ୍ରଥମେ ସହଦେବଙ୍କ ମନ୍ତ୍ରଣାରେ ଯୁଧିଷ୍ଠିରାଦି ଭାଇମାନେ ଏବଂ ଦ୍ରୌପଦୀ ନିଶା ସମୟରେ ପୂର୍ବୋକ୍ତ ଶମୀ ବୃକ୍ଷମୂଳେ ଉପସ୍ଥିତ ହୋଇଥିଲେ । ସେ ସମୟରେ ବ୍ୟାସ, ବିଶ୍ୱାମିତ୍ର, ମାର୍କଣ୍ଡ, ବିଭାଣ୍ଡ, ଗାଗବ, ବଶିଷ୍ଠ, ଅଗସ୍ତି, ନାରଦ, ଗାଲବ, ଗୌତମ, ଭରଦ୍ୱାଜ ପରାଶର, ଶାନ୍ତନୁ, ଧୌମ୍ୟ ପ୍ରଭୃତି ଋଷି ଓ ସେମାନଙ୍କର ଶିଷ୍ୟ ପ୍ରଶିଷ୍ୟଗଣ ସେଠାରେ ଉପସ୍ଥିତ ହେଲେ । ବିଶ୍ୱକର୍ମା ଇନ୍ଦ୍ରଙ୍କ ସମାବେଶରେ ସୁଧର୍ମାସଭାକୁ ସେଠାକୁ ଆଣିଲେ । ବିଭିନ୍ନ ଗନ୍ଧର୍ବ ପୁରୁଷମାନେ, ଇନ୍ଦ୍ର, ନନ୍ଦ, ବସୁଦେବ, ବଳଦେବ, ଶ୍ରୀକୃଷ୍ଣାଦି ଯଦୁବଂଶୀୟ ବୀରମାନେ ବିଭିନ୍ନ ଦିଗପାଳମାନେ ସେଠାରେ ଉପସ୍ଥିତ ହେଲେ । ଯୁଧିଷ୍ଠିର ଏସମସ୍ତ ଦେବଗଣଙ୍କ ଧରି ଭେରୀ, ତୂରୀ, ମୃଦଙ୍ଗାଦି ବାଦ୍ୟନାଦ ମଧ୍ୟରେ ମହାସମାରୋହରେ ଅଭିଷିକ୍ତ ହୋଇଥିଲେ । (୩୯) ପାଣ୍ଡବଙ୍କ ଅଭିଷେକ ଉତ୍ସବ ଦେଖି ବଳରାମଙ୍କ ମନରେ ଦୁଃଖ ଓ କ୍ଷୋଭ ଜନ୍ମିଲ ତାହାଙ୍କୁ ଅପମାନ କଥା ସାରଳା ଯେପରି ବର୍ଣ୍ଣନା

---

୩୭) ତତ୍ରୈବ, ପୃ: ୫୯୩

୩୮) ସଂ: ମ:-ଅ ୬୯/୧୪ଶ୍ଳୋକ

(୩୯) ସା: ମ:—ପୃ. ୭୦୩-୭୧୯

କରିଅଛନ୍ତି ତାହା ମୂଳାନୁମୋଦିତ ନୁହେଁ । ଅଭିଷେକ ଅନ୍ତେ ସମାଗତ ଦେବବୃନ୍ଦ ଓ ବନ୍ଧୁବର୍ଗ ସ୍ୱ ସ୍ୱ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲାପରେ ପାଣ୍ଡବମାନେ ବିରାଟ ସିଂହାସନରେ ଯୁଧିଷ୍ଠିରଙ୍କୁ ସମାସୀନ କରାଇଥିଲେ । ଏଥିରେ ବିରାଟ ରାଜାଙ୍କ କୋପ, ଉତ୍ତର କୁମାରଙ୍କ ଦ୍ୱାରା ପାଣ୍ଡବମାନଙ୍କର ପ୍ରକୃତ ପରିଚୟ ପ୍ରଦାନ ଓ ବିରାଟ ରାଜାଙ୍କ ପାଣ୍ଡବମାନଙ୍କ ନିକଟରେ କ୍ଷମାଭିକ୍ଷା ପ୍ରସଙ୍ଗ ଗୁଡ଼ିକ କେତେକାଂଶରେ ସାରଳାଙ୍କ ପୁନରାବୃତ୍ତି ଦୋଷରେ ଦୂଷିତ । ବିରାଟଙ୍କର ଯୁଧିଷ୍ଠିରଙ୍କ ନିକଟରେ ଅନୁନୟ ଓ ଯୁଧିଷ୍ଠିରଙ୍କର ବିରାଟ ରାଜସିଂହାସନରେ ପୁନର୍ବାର ଅଭିଷେକ (୪୦) କବିଙ୍କର ବର୍ଣ୍ଣନା ବାତୁଳର ପରିଚୟ ଦିଏ । ବିରାଟରାଜାଙ୍କ କର୍ତ୍ତବ୍ୟରେ ସନ୍ତୁଷ୍ଟ ହୋଇ ଯୁଧିଷ୍ଠିର ତାଙ୍କୁ ବରଦେବା ଓ ଉତ୍ତରା-ଅଭିମନ୍ୟୁଙ୍କ ବିବାହାଦି ଯେପରି ମହାସମାରୋହରେ ଓ ଆଡ଼ମ୍ବରପୂର୍ଣ୍ଣ ସହକାରେ ସମାପ୍ତି ହୋଇଛି ସେପରି ମୂଳ ଭାରତରେ ଦେଖିବାକୁ ମିଳେନାହିଁ । ମୂଳଗ୍ରନ୍ଥରେ ଉଭୟଙ୍କ ବିବାହପରେ 'ବିରାଟପର୍ବ' ପର୍ବସମାପ୍ତି ହୋଇଥିବା ସ୍ଥଳେ ସାରଳା ଆଉ ଟିକିଏ ଆଗେଇଯାଇ ଧୃତରାଷ୍ଟ୍ର ଶକୁନିଙ୍କ କଥୋପକଥନ, ଧୃତରାଷ୍ଟ୍ରଙ୍କ ଅପମାନ ଓ ଯୁଧିଷ୍ଠିରାଦି ପାଣ୍ଡବ -ମାନଙ୍କ ଇନ୍ଦ୍ରପ୍ରସ୍ଥକୁ ଯିବା ଅନୁକୂଳ ପ୍ରସଙ୍ଗ ବର୍ଣ୍ଣନା କରି ପର୍ବଟିକୁ ସମାପ୍ତ କରି ଅଛନ୍ତି ।

### ନୂତନ କଥାବସ୍ତୁର ଆକ୍ଷେପ :—

ସଂସ୍କୃତ ମହାଭାରତରେ ବର୍ଣ୍ଣିତ ହୋଇନଥିବା ଅନେକ ବିଷୟ ଓ ଉପାଖ୍ୟାନ ସାରଳା ଆପଣାର କଳ୍ପନା ଶକ୍ତି ବଳରେ ଲିପିବଦ୍ଧ କରିଯାଇଛନ୍ତି । ସେଥିରୁ କବିଙ୍କର ମୌଳିକ କବି ପ୍ରତିଭା, ପୁରାଣଜ୍ଞାନ, ସାମାଜିକ ତଥା ଆଧ୍ୟାତ୍ମିକ ଦୃଷ୍ଟିକୋଣର ପରିଚୟ ମିଳେ । ଆଲୋଚ୍ୟ 'ବିରାଟପର୍ବ'ରେ ଏଭଳି କେତେକ ଦୃଷ୍ଟାନ୍ତ ପରିଲକ୍ଷିତ ।

### ଶମୀବୃକ୍ଷର ଉତ୍ପତ୍ତି :—

ଶିବ ହରଣାକ୍ଷୀ ଅପ୍ସରୁଣୀର ଶୃଙ୍ଗାରରେ ମାତି ତା ନିକଟରେ ଏକାଦଶ ବର୍ଷ କଟାଇଲେ । ପାର୍ବତୀ ତେଣେ ମନ ଦୁଃଖରେ କୈଳାସ ପର୍ବତରେ ଥାଆନ୍ତି । ଏହି ସମୟରେ ଶ୍ରୀକୃଷ୍ଣଙ୍କ ସହ ଅର୍ଜୁନ ସେଠାରେ ପହଞ୍ଚି ସମସ୍ତ ବୃତ୍ତାନ୍ତ ଜାଣି ମନଭେଦୀ ଶର ପ୍ରୟୋଗକରି ଅପ୍ସରୁଣୀକୁ ନିହତ କଲେ । ଶିବ ସେଠାରୁ ଫେରି ଆସି ଶ୍ରୀକୃଷ୍ଣ, ଅର୍ଜୁନ ଓ ପାର୍ବତୀଙ୍କୁ ଦେଖିଲେ । ସମସ୍ତେ ଅର୍ଜୁନଙ୍କୁ ପ୍ରଶଂସା କରି ବର ପ୍ରଦାନ କରିଥିଲେ । ଈଶ୍ୱରଙ୍କ ବିଭୂତି ପାର୍ବତୀଙ୍କ ଜପାମାଳି' କେଶବଙ୍କ ଶ୍ରୋଣି ବ୍ରହ୍ମାଙ୍କ କପାଳରେ ଶ୍ରୀକୃଷ୍ଣ ମର୍ଦ୍ଦନ କରି ଖଡ଼୍ଗ ଗୋଟିଏ ତିଆରି କଲେ । ତତ୍ପରେ ଖଡ଼୍ଗଟିକୁ ଅର୍ଜୁନଙ୍କୁ ଦେଇ

(୪୦) ତତ୍ରୈବ, ପୃ ୭୬୭-୭୫୪

କହିଥିଲେ ଯେ, ଯେତେବେଳେ ସେ ଖଣ୍ଡରେ ଚନ୍ଦନଗାର କାଟି ସ୍ମରଣ କରିବେ ସେତେବେଳେ ଏ ଦେବତାମାନେ ବୃକ୍ଷରୂପରେ ଆବିର୍ଭୂତ ହେବେ । ପାଣ୍ଡବମାନେ ସେମାନଙ୍କ ଅଜ୍ଞାତବାସ ପୂର୍ବରୁ ଅର୍ଜୁନ ଏହି ଖଣ୍ଡରେଖା ଟାଣିବା ଦ୍ୱାରା ହରିହରାତ୍ମକ ଶମୀଶିଂଶୁପା ବୃକ୍ଷଦ୍ୱୟର ସୃଷ୍ଟି ହୋଇଥିଲା ।

## ମୃତ୍ୟୁପିଣ୍ଡ ବୃତ୍ତାନ୍ତ :-

ପ୍ରଚଣ୍ଡାବଳୀ ଉପାଖ୍ୟାନ ସଂପର୍କରେ ସାରଳା ଦାସ କହିଅଛନ୍ତି ଯେ, ତାର (ପ୍ରଚଣ୍ଡାବଳୀ) ପତ୍ନୀ ଗନ୍ଧକାଳୀ ଇନ୍ଦ୍ରଙ୍କ ଗନ୍ଧଚନ୍ଦନାଦି ଯୋଗାଇବାରେ ନିଯୁକ୍ତ ପାଇଥିଲା । ସେ ଅତ୍ୟନ୍ତ ରୂପବତୀ ଥିଲା । ନିବାତକବଚ ନାମକ ଅସୁର ଇନ୍ଦ୍ରଙ୍କୁ ଯୁଦ୍ଧରେ ପରାସ୍ତ କରି ଗନ୍ଧକାଳୀକୁ ହରଣ କରିନେଲା । ଅର୍ଜୁନ ଇନ୍ଦ୍ରଙ୍କ ଶତ୍ରୁ ନିବାତକବଚକୁ ବଧ କରି ଗନ୍ଧକାଳୀକୁ ଉଦ୍ଧାର କରେ ଏବଂ ତାକୁ ପ୍ରଚଣ୍ଡାବଳୀ ହାତରେ ସମର୍ପଣ କରିଥିଲେ । ଫଳରେ ପ୍ରଚଣ୍ଡାବଳୀ ଅର୍ଜୁନଙ୍କୁ ବର ପ୍ରଦାନ କରି କହିଥିଲେଯେ , ଅଜ୍ଞାତବାସ ଶେଷ ପର୍ଯ୍ୟନ୍ତ ସେ ମୃତ୍ୟୁପିଣ୍ଡ ଭଳି ଶମୀବୃକ୍ଷରେ ରହି ପାଣ୍ଡବମାନଙ୍କ ଅସ୍ତ୍ର ଶସ୍ତ୍ର ରକ୍ଷା କରିବ ।

## ଭୀମସେନଙ୍କ ପାକପ୍ରଣାଳୀ ଶିକ୍ଷା :-

ଭୀମ ସୂପକାର ବେଶ ଧାରଣ କରିବା ପୂର୍ବରୁ ଯୁଧିଷ୍ଠିରଙ୍କ ସମ୍ମୁଖରେ ନିଜର ବାଲ୍ୟଜୀବନର କାହାଣୀ କହିଅଛନ୍ତି । ପଣ୍ଡୁରାଜା କୁନ୍ତୀଙ୍କ ସହ ଶତଶୃଙ୍ଗ ପର୍ବତରେ ଥିବାବେଳେ ପାଞ୍ଚଦିନର ଶିଶୁ ହୋଇଥିଲେ ମଧ୍ୟ ଭୀମ ରନ୍ଧଣାପାକ ଅର୍ଦ୍ଧେକ ଲେଖାଏ ପ୍ରତ୍ୟେକ ଦିନ ଲୁଚି ରହି ଖାଉଥିଲେ । ଏକଥା କୁନ୍ତୀ ଜାଣିପାରି ପଣ୍ଡୁଙ୍କୁ କହିଲେ । ଏଭଳି ପ୍ରାୟ ସାତବର୍ଷ ଗଲା ପରେ ଦିନେ ପଣ୍ଡୁ ଖଡ୍ଗହସ୍ତ ହୋଇ ଅନ୍ଧକାର ଭିତରେ ପାକଶାଳା ଜଗି ରହିଲେ । ଭୀମ ପାକଶାଳା ଭିତରେ ପଶି ଅନ୍ନ ଭକ୍ଷଣ କଲାବେଳେ ପଣ୍ଡୁ ଦେଖି କ୍ରୋଧାନ୍ୱିତ ହୋଇ ତାଙ୍କୁ ନିହତ କରିବା ଉଦ୍ଦେଶ୍ୟରେ ଆଗେଇ ଆସିବାବେଳେ ଭୀମ ବନ ମଧ୍ୟରେ ସ୍ୱରଶତ ଯୋଜନ ପର୍ଯ୍ୟନ୍ତ ଦୌଡ଼ିଥିଲେ । ଉଭୟେ ଆଗପଛ ହୋଇ ଦୌଡ଼ିବା ଭିତରେ ଭୀମ ପଛକୁ ଦୃଷ୍ଟି ଦେବାରୁ ଝୁଣ୍ଟିକରି ତଳେ ପଡ଼ିଗଲେ । ପଣ୍ଡୁ ତାଙ୍କ ଉପରେ ଖଡ୍ଗଦ୍ୱାରା ଆଘାତ କରିବା ପୂର୍ବରୁ ଅଗ୍ନି ଦେବ ସେଠାରେ ଉପସ୍ଥିତ ହୋଇ ପଣ୍ଡୁଙ୍କୁ ଶାନ୍ତ୍ୱନା ଦେଇଥିଲେ ଓ ଭୀମସେନଙ୍କୁ ଗନ୍ଧର୍ବ, ସର୍ବ, ନଳ — ଏ ତିନି ପ୍ରକାର ରନ୍ଧଣା ବିଧି ଶିଖାଇଥିଲେ । (୪୧)

## ସାହାଡ଼ାପତ୍ରର ମାହାତ୍ମ୍ୟ –

ଯୁଧିଷ୍ଠିର ଅଜ୍ଞାତବାସ କରିବା ପୂର୍ବରୁ ବାଞ୍ଛାବଟକୁ ସ୍ତୁତି କଲାବେଳେ ଭୀମ ସାହାଡ଼ାବୃକ୍ଷ ତଳେ ବସି ପତ୍ର ଗୋଟିଏ ମୁଣ୍ଡରେ ମାରି ସ୍ତୁତି କରିଛନ୍ତି । ଯୁଧିଷ୍ଠିରଙ୍କ

ପ୍ରଶ୍ନର ଉତ୍ତରରେ ଖ୍ରୀମ ସାହାଡ଼ା ପତ୍ରର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ଦିନେ ଶିବ ବୃଷଭ ଆରୋହଣ କରି ଭ୍ରମଣ କରୁଥିବ ବେଳେ ବାମପଟରେ ସାହାଡ଼ା ବୃକ୍ଷ ଦେଖି ବୃଷଭ ପତ୍ର ଗୋଟିଏ ଆଣି ମୁଣ୍ଡରେ ଲଗାଇଲେ । ଏହାର କାରଣ ଶିବ ଜିଜ୍ଞାସା କରନ୍ତେ ବୃଷଭ ଉତ୍ତରରେ କହିଛନ୍ତି ଯେ ବାମ ପାର୍ଶ୍ୱରେ ସାହାଡ଼ା ବୃକ୍ଷ ଦେଖିଲେ ସୁସ୍ୱାଦୁ ଭୋଜନ ମିଳେ । ଏହାର ପରୀକ୍ଷା କରିବା ପାଇଁ ଶିବ ବୃଷଭଙ୍କୁ ଦିନସାରା କିଛି ଖାଇବା ପିଇବାକୁ ନଦେଇ ଦ୍ରୁତଗତିରେ ସପ୍ତବ୍ରହ୍ମାଣ୍ଡ ଭ୍ରମଣ କଲେ ଓ ସନ୍ଧ୍ୟା ବେଳକୁ ତାଙ୍କୁ ନେଇ ଗୃହାଳରେ ବାନ୍ଧିଦେଲେ । ସାରାଦିନ ସ୍ୱାମୀଙ୍କ ପରିସ୍ଥିତି ବୁଝି ପାର୍ବତୀ ସଂଧ୍ୟା ପୂର୍ବରୁ ମନୋହିରେ ବସିଥିବାବେଳେ ଶିବଙ୍କ ଡ଼ମ୍ବରୁନାଦ ଶୁଣି ମନୋହି ଯୋଗାଡ଼ କରି ବୃଷଭଙ୍କ ଗୁଆଣିରେ ମେଲି ଦେଲେ । ବୃଷଭ ଶିବଙ୍କ ଅଜ୍ଞାତରେ ତାହା ଭକ୍ଷଣ କରି ପରମଶାନ୍ତିରେ ନିଦ୍ରାଗଲେ । ସେହି ଦିନଠାରୁ ସାହାଡ଼ା ବୃକ୍ଷକୁ ସମସ୍ତେ ବନ୍ଦନା କରିବାକୁ ଈଶ୍ୱର କହିଥିଲେ । (୪୯)

**ଦେବଦତ୍ତ ଶଙ୍ଖ ବିବରଣୀ: –**

ସାରଳାଙ୍କ ବର୍ଣ୍ଣନା ଅନୁସାରେ ଅର୍ଜ୍ଜୁନଙ୍କର ଯେତେବେଳେ ନପୁଂସକ ଲକ୍ଷଣ ଦୂରହେଲା, ସେତେବେଳେ ମାତଳି ଦେବଦତ୍ତ ଶଙ୍ଖ ଆଣି ତାଙ୍କୁ ପ୍ରଦାନ କରିଥିଲେ । ଏ ଶଙ୍ଖ ପ୍ରାପ୍ତି ବିଷୟରେ ପ୍ରଶ୍ନ କରିବାରୁ ଅର୍ଜ୍ଜୁନ କହିଛନ୍ତି ଯେ, ଏକଦା ଚନ୍ଦ୍ରଭାଗା ଅର୍କ ତୀର୍ଥରେ ଅମ୍ବାସୁରର ପତ୍ନୀ ସରହି ସୁନ୍ଦରୀ ସ୍ନାନ କରୁଥିଲେ । ସେହି ସମୟରେ କୁବେରଙ୍କ ପତ୍ନୀ ହାରାବତୀ ବିଭିନ୍ନ ଅଳଙ୍କାରରେ ମଣ୍ଡିତାହୋଇ ସଖୀମାନଙ୍କ ସହି ସେଠାକୁ ସ୍ନାନ କରିବାକୁ ଯାଇଥିଲେ । ସରହି ସୁନ୍ଦରୀ କୁବେର ପତ୍ନୀଙ୍କୁ ଗୋଟିଏ ମାଗିବାରୁ ସେ "ଦେବତାଙ୍କ ଅଳଙ୍କାରକୁ ଇଚ୍ଛାକଲୁ କେମିତି ପାଇବୁ" ବୋଲି ଉପହାସ କରିଥିଲେ ଓ ତାକୁ ଗାଳି ଦେଇଥିଲେ । ଫଳରେ ସରହିସୁନ୍ଦରୀ କାନ୍ଦି କାନ୍ଦି ଅମ୍ବାସୁର ଆଗରେ ସମସ୍ତ ବୃତ୍ତାନ୍ତ କହିଥିଲା । ଅମ୍ବାସୁର କ୍ରୋଧ ବଶତଃ ନଳ କୁବେରଙ୍କୁ ବନ୍ଦୀ କରି ନାରୀମାନଙ୍କର ସମସ୍ତ ଅଳଙ୍କାର ପତ୍ର ସହିତ ଜଳ ଅନ୍ଧାର-ପୁରକୁ ଚାଲିଗଲା । ତତ୍ପରେ କୁବେର ଆସି ବ୍ରହ୍ମାଦି ଦେବତାମାନଙ୍କୁ ଗୁହାରି କରିବାରୁ ବ୍ରହ୍ମା ଅର୍ଜ୍ଜୁନଙ୍କୁ ଡ଼କାଇ ଅସୁର ସହିତ ଯୁଦ୍ଧ କରିବା ପାଇଁ ଦେବଦତ୍ତ ଶଙ୍ଖକୁ ପ୍ରଦାନ କରିଥିଲେ । ସେ ଶଙ୍ଖ ଅର୍ଜ୍ଜୁନ ବାଦନ କରନ୍ତେ ଅମ୍ବାସୁର ଜଳମଧ୍ୟରୁ ବାହାରି ଆସିଥିଲା । ଫଳରେ ଅର୍ଜ୍ଜୁନ ତା ସହିତ ଯୁଦ୍ଧ କରି ତାକୁ ବଧ କରିଥିଲେ । ଗଳ୍ପାଂଶର ଏତିକି କହି ସାରଳା କ୍ଷାନ୍ତ ହୋଇନାହାନ୍ତି ବରଂ ଦେବଦତ୍ତ ଶଙ୍ଖର ମହିମା ଅର୍ଜ୍ଜୁନ ମୁଖରେ ପ୍ରକାଶକରି ସ୍ୱ ବର୍ଣ୍ଣନା ସ୍ୱରୂପର ପରିଚୟ ଦେଇଛନ୍ତି । ଶଙ୍ଖଟିକୁ ଲକ୍ଷିତ

---

(୪୮) ସା.ମ.— ୪୫-୪୭

(୪୯) ତତ୍ରୈବ, ପୃ ୬୫ ୬୭

ସ୍ୱରରେ ଯନ୍ତ୍ର ବାଦନ କରାଯାଏ ତାହେଲେ "ଅବୋଧ ଜାମେଗ" ମାନେ ବଶତା ସ୍ୱୀକାର କରନ୍ତି । ମଧ୍ୟମ ସ୍ୱରରେ ଯନ୍ତ୍ର ବାଦନ କରାଯାଏ, ତା'ହେଲେ ଲକ୍ଷେ ଯୋଜନ ପର୍ଯ୍ୟନ୍ତ ପ୍ରାଣୀମାନେ ତାହା ଜାଣି ପାରନ୍ତି । ଉଚ୍ଚ ସ୍ୱରରେ ଯନ୍ତ୍ର ଏହା ବାଜେ, ତାହେଲେ ଏହାର ଶବ୍ଦରେ ଅସାଧ୍ୟ ସାଧନ ହୋଇପାରିବ । ଏଙ୍କୁ ଆକର୍ଷଣ କରାଇଲେ ମହାମତ୍ତା ହସ୍ତୀମାନେ ଅସ୍ତ୍ର ଧରିପାରିବେ ନାହିଁ । (୪୩)

ଏଭଳି ଆଶ୍ଚର୍ଯ୍ୟ ପୂର୍ଣ୍ଣ କଥାନକମାନ ସଂଯୋଜନ କରି ସାରଳା ଦାସ ତାଙ୍କ ମହାଭାରତକୁ ସୁଖପାଠ୍ୟ କରିପାରିଛନ୍ତି । ନୂତନ କାହାଣୀମାନ ତାଙ୍କର କଳ୍ପନା ପ୍ରସୂତ ହୋଇପାରେ ଅଥବା କାହାଣୀର ସୂତ୍ରମାତ୍ର ସଂଗୃହୀତ ହୋଇଥାଇ ପାରେ, ସେଥିପ୍ରତି ଗୁରୁତ୍ୱ ନ ଦେଇ ଗଳ୍ପ କହିବାର ଶୈଳୀପ୍ରତି ପାଠକମାନେ ଦୃଷ୍ଟି ଦେବା ଉଚିତ୍ ।

## ବର୍ଣ୍ଣନା ଚାତୁରୀ :–

ବିରାଟପର୍ବର ଆଲୋଚନା ପର୍ଯ୍ୟାୟରେ ଉଭୟ ସଂସ୍କୃତ ଓ ଓଡ଼ିଆ ମହାଭାରତର ବର୍ଣ୍ଣନା ଶୈଳୀ ସୀମାବଦ୍ଧ ନୁହେଁ । ଏ କ୍ଷେତ୍ରରେ ମୂଳ ମହାଭାରତଠାରୁ ସାରଳାଙ୍କ କାବ୍ୟରେ ଯେଉଁ କେତେକ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ, ତାହା ଆଲୋଚନାର ଅପେକ୍ଷା ରଖେ । ମୂଳଗ୍ରନ୍ଥର ଦାର୍ଶନିକ ଓ ତାତ୍ତ୍ୱିକ ଆଲୋଚନା ସବୁକୁ ସାରଳା ତାଙ୍କ କାବ୍ୟରେ ପରିହାର କରିଅଛନ୍ତି । ସେହିପରି ମୂଳମହାକାବ୍ୟର ଦେବଗୁଣ୍ଟ ବିରାଟ ନାୟକ ନାୟିକାମାନଙ୍କୁ ସାଧାରଣ ମାନବସ୍ତରକୁ ନେଇ ଆସିଛନ୍ତି । ସାରଳାଦାସ ହୃଦୟଙ୍ଗମ କରିଥିଲେଯେ, ସାହିତ୍ୟର ଅର୍ଥ ହେଉଛି ଜୀବନ । କେବଳ ଶୁଷ୍କ ଆଦର୍ଶ ନୀତିଶିକ୍ଷା ବା ଦର୍ଶନ ଭିତରେ ତାଙ୍କର ବର୍ଣ୍ଣନା ସୀମିତ ନ ରହି ବରଂ ବେଶି ସମାଜିକ ଗୁଣାବଳୀରେ ଭୂଷିତ । ଏ ବର୍ଣ୍ଣନା ହୃଏତ ଅତିରଞ୍ଜନ ହୋଇପାରେ, କିନ୍ତୁ ଜୀବନ ସହିତ ଏହାର ସମ୍ପର୍କ ଅତି ନିବିଡ଼ । ସାରଳାଙ୍କ ବର୍ଣ୍ଣନା ମୂଳଗ୍ରନ୍ଥଠାରୁ କେଉଁଠି ସଂକ୍ଷିପ୍ତ, କେଉଁଠି ବିସ୍ତୃତ ଓ କେଉଁଠି ପରିତ୍ୟକ୍ତ ତାହାର ସୂଚନାମାତ୍ର ପୂର୍ବ ଆଲୋଚନା ମାନଙ୍କରେ ଦିଆଯାଇଛି । ଏତଦ୍‌ଭିନ୍ନ ତାଙ୍କ ବର୍ଣ୍ଣନାବିଳାସର କେତେକ ବୈଶିଷ୍ଟ୍ୟ ଆଲୋଚନା ପ୍ରସଙ୍ଗରେ ଦିଆଯାଇପାରେ ।

## ସାମାଜିକ ଚଳଣି ବର୍ଣ୍ଣନା :–

ଦେବ, ବ୍ରାହ୍ମଣ, ଗୁରୁ, ପିତାମାତା, ବୈଦ୍ୟ, ଯୋଗୀ, ଗୋରୁ, ପୁତ୍ର, ମହତ୍‌ଜନ ପ୍ରଭୃତିଙ୍କ ସହିତ ସଦ୍‌ବ୍ୟବହାର କରିବା, ଶାସ୍ତ୍ରାନୁମୋଦିତ ଧର୍ମପାଳନ କରିବା, ସତ୍ୟ ଓ ନ୍ୟାୟମାର୍ଗରେ ଚାଲିବା ପ୍ରଭୃତି ସାମାଜିକ ରୀତିନୀତିକୁ ସାରଳା

(୪୩) ତତ୍ରୈବ, ପୃ ୧୦୩-୧୦୬

ଭାସ୍ତରୂପେ ବର୍ଣ୍ଣନା କରିଅଛନ୍ତି । ସ୍ୱଳ୍ପସ୍ଥାନାସ୍ତ ସହବାସରେ ଯୌନପ୍ରବୃତ୍ତିର ଅକୁଣ୍ଠ ପରିତର୍ପଣ ପରିବର୍ତ୍ତେ ସଂଯମର ଶୁଚିତା କିବି ଏହି ପର୍ବରେ ସୂଚାଇଛନ୍ତି । ଦ୍ରୌପଦୀ-ଭୀମସେନ କଥୋପକଥନ ଭିତରେ (ପୃ ୩୨୭), କୀଚକ ପାଖକୁ ଗନ୍ଧଚନ୍ଦନାଦି ନେଇ ଦ୍ରୌପଦୀ ଯାଇଥିବା ବେଳେ (ପୃ ୩୩୪) ଏ ପ୍ରସଙ୍ଗର ଅବତାରଣା କରାଯାଇଛି । ପୁନଶ୍ଚ ରଜୋବତୀ ନାରୀକୁ ସ୍ପର୍ଶକଲେ କେଉଁ କେଉଁ ଦୋଷହୁଏ, ତାହାମଧ୍ୟ ସାରଳା କୀଚକ-ମୈରନ୍ଧ୍ରୀ ଆଲୋଚନାବେଳେ ପ୍ରକାଶ କରିଛନ୍ତି (ପୃ ୩୦୭) । ସାମାଜିକ ଧର୍ମାଧର୍ମ ବିଷୟର ଭିତ୍ତି କରି 'ନିନ୍ଦା'କୁ ଗୁରୁତ୍ୱଦେଇ କହିଛନ୍ତି ଯେ, ଏହା ଅଧର୍ମ ଅଟେ । ଏହି ପର୍ଯ୍ୟାୟର ଦୀର୍ଘ ତାଳପୃଷ୍ଠା ବର୍ଣ୍ଣନା ଦେଇ ସାରଳା ମୂଳଗ୍ରନ୍ଥଠାରୁ ସ୍ୱାତନ୍ତ୍ର୍ୟ ଓ ସ୍ୱଗ୍ରନ୍ଥର କଳେବର ବିସ୍ତୃତ କରିଥିଲେ ମଧ୍ୟ ଏଥିରୁ ତାଙ୍କର ସଚେତନତା ଉପଲବ୍ଧ ହୁଏ । ଦେବ, ଗୁରୁ, ବ୍ରାହ୍ମଣ, ଲକ୍ଷ୍ମୀ, ପିତାମାତା, ପୃଥ୍ୱୀ, ଜଳ, ତୀର୍ଥ, ରାଜା, ବୃକ୍ଷ, ଗୃହ, ଭୋଜନ ପ୍ରଭୃତିଙ୍କୁ ନିନ୍ଦାକଲେ ରାଜଦଣ୍ଡର ଭୟ ନ ଥାଇପାରେ, ମାତ୍ର ଏହା-ଠାରୁ ଅଧିକ ନୈତିକ ଓ ଆଧ୍ୟାତ୍ମିକ ଦଣ୍ଡର ବ୍ୟବସ୍ଥା କବି କରିଅଛନ୍ତି । (୪୪) ପୁନଶ୍ଚ ମହାଭାରତ ଚରିତକୁ ବା ଗ୍ରନ୍ଥକୁ ନିନ୍ଦାକଲେ କ'ଣ ହୁଏ ଓ ଏହା ପାଠକଲେ କେଉଁ ଫଳମିଳେ, ତାର ପୁନରାବୃତ୍ତି ଏ ପର୍ବରେ ପ୍ରାୟତଃ ଦେଖିବାକୁ ମିଳେ । ଆଲୋଚ୍ୟ ପର୍ବର ଶେଷପର୍ଯ୍ୟାୟରେ ଅଭିମନ୍ୟୁ-ଉତ୍ତରାଙ୍କ ବିବାହର ଦୀର୍ଘ ଏବଂ ଜୀବନ୍ତ ବର୍ଣ୍ଣନା ସାରଳାଙ୍କ ସମାଜଜୀବନ ଅଧ୍ୟୟନ ତଥା ବର୍ଣ୍ଣନା କଳାମର ପରିଚୟ ଦେଇଥାଏ । ବିବାହ ସମୟରେ ଅଗ୍ନିଙ୍କୁ ଆହୂତି ଦେବାବେଳେ ଅଗ୍ନିଙ୍କର କେଉଁ ଅଙ୍ଗ ବିଶେଷରେ ଘୃତ ପଡ଼ିଲେ କି କି ଫଳମିଳେ, ତା'ର ଅତି ମନୋରମ ଓ ଆଶ୍ଚର୍ଯ୍ୟପୂର୍ଣ୍ଣ ବର୍ଣ୍ଣନା ସାରଳାଙ୍କ କଳ୍ପନା ପ୍ରବଣତାକୁ ସୂଚାଇଥାଏ । (୪୫) ଏତଦ୍‌ବ୍ୟତୀତ ସ୍ୱାମୀ-ସେବକର ସମ୍ବନ୍ଧ, ଭୂତବିଦ୍ୟା, ଚନ୍ଦନଯାତ୍ରା, ବିଭିନ୍ନ ଖାଦ୍ୟ ପଦାର୍ଥ ମାନଙ୍କର ସୁରୁଚି ଓ ସଙ୍ଗତିପୂର୍ଣ୍ଣ ବର୍ଣ୍ଣନା ପ୍ରଦାନରେ ସାରଳା ସ୍ୱ ମୌଳିକତା ପ୍ରଦର୍ଶନ କରିଅଛନ୍ତି ।

**ଶୁଭାଶୁଭ ନିରୂପଣ :—**

ସାରଳା ନିଜର ବର୍ଣ୍ଣନା ସ୍ୱରୂପ ପ୍ରଦର୍ଶନ କରିବା ନିମିତ୍ତ ସ୍ଥଳବିଶେଷରେ ଜ୍ୟୋତିଷଗଣନା ଓ ଶୁଭାଶୁଭ ନିରୂପଣ ଚିତ୍ର ଦେଇଛନ୍ତି । ମୁଖ୍ୟତଃ ଦୁଇଗୋଟିସ୍ଥଳରେ ଏଭଳି ବର୍ଣ୍ଣନାର ବସ୍ତୁନିଷ୍ଠକରଣ ଆମେ ଦେଖିଥାଉଁ । ପାଣ୍ଡବମାନେ ଅଜ୍ଞାତବାସ କରିବା ପୂର୍ବରୁ ଯୁଧିଷ୍ଠିରଙ୍କୁ ସହଦେବ ଧନୁମାସ ଶୁକ୍ଳପକ୍ଷ ଗୁରୁବାର ଦଶମୀ ରେବତୀ ନକ୍ଷତ୍ରରେ ଯୋଗିନୀ ମହାଲକ୍ଷ୍ମୀମୂର୍ତ୍ତି ଧର୍ମ ଈଶାନ୍ୟ କୋଣକୁ ଗତିକରିବା କହିଛନ୍ତି । ଏ

(୪୪) ସା: ମ:—ପୃ. ୧୦୪-୧୦୭
(୪୫) ତତ୍ରୈବ, ପୃ ୭୮୯-୭୯୧

ସମୟରେ ଯାତ୍ରା ଅନୁକୂଳ କଲେ ସର୍ବ ପ୍ରକାର ସିଦ୍ଧି ଲାଭ ହେବବୋଲି ସୂଚାଇଛନ୍ତି । (୪୬) ବିରାଟପର୍ବ ଶେଷରେ ଯେତେବେଳେ ପାଣ୍ଡବମାନେ ଇନ୍ଦ୍ରପ୍ରସ୍ଥକୁ ଯିବାପାଇଁ ଇଚ୍ଛାକରିଛନ୍ତି, ସେତେବେଳେ ସହଦେବ ମଧ୍ୟ କୁମ୍ଭମାସ ପରେ ମୀନ ମାସ ମଳମାସ ହେବ ଓ ବୈଶାଖମାସ ବସନ୍ତ ଋତୁରେ ଯାତ୍ରାରମ୍ଭ କରିବେବୋଲି କହିଛନ୍ତି । ଏ ପ୍ରସଙ୍ଗରେ ସାରଳା ସ୍ପଷ୍ଟ ଏ ପର୍ଯ୍ୟନ୍ତ ଜ୍ୟୋତିଷଗଣନାର ଉଲ୍ଲେଖ କରିଛନ୍ତି । (୪୭) ଏତଦ୍‌ଭିନ୍ନ ଅନ୍ୟାନ୍ୟ ଅନେକ ପ୍ରସଙ୍ଗ ବର୍ଣ୍ଣନା କରିବା ପୂର୍ବରୁ ମାସ, ବାର, ତିଥି ସହିତ ଶୁଭାଶୁଭ ନିରୂପଣର ଚିତ୍ର ଏ ପର୍ବରେ ବିରଳ ନୁହେ ।

**ବଂଶବର୍ଣ୍ଣନା :—**

ସାରଳାଦାସ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ବଂଶର ବର୍ଣ୍ଣନା ଦେଲାବେଳେ ସେ ବଂଶର ପୂର୍ବପୁରୁଷମାନଙ୍କର ସୁଦୀର୍ଘ ନାମୋଲ୍ଲେଖ କରିଅଛନ୍ତି । ଶ୍ୱେତରାଜାଙ୍କ କଥା କହିବାକୁ ଯିବା ପୂର୍ବରୁ ତାଙ୍କର ପୂର୍ବପୁରୁଷଙ୍କ ବର୍ଣ୍ଣନା (ପୃ. ୪), ସଙ୍କୋଚନ ରାଜାର ପୂର୍ବପୁରୁଷଙ୍କ ବର୍ଣ୍ଣନା ( ପୃ୯-୧୦), ଯଦୁବଂଶର ଉତ୍ପତ୍ତି ଓ ବାସୁଦେବଙ୍କ ପୂର୍ବପୁରୁଷଙ୍କ ବର୍ଣ୍ଣନା (ପୃ-୬୦-୬୧), ପୃଥୁନା ରାଣୀର ପୂର୍ବଜମାନଙ୍କର ବର୍ଣ୍ଣନା (ପୃ.୬୮-୬୯) ପ୍ରଭୃତି ବିସ୍ତୃତ ଏବଂ ଆବଶ୍ୟକରହିତ ବିବରଣୀ ଦେଇ କବି ସ୍ୱ ବର୍ଣ୍ଣନାଶୈଳୀର ପରାକାଷ୍ଠା ଦେଖାଇଛନ୍ତି ।

**ନୀତିବାକ୍ୟ ବର୍ଣ୍ଣନା :—**

ସାରଳା ମହାଭାରତରେ ସଂସ୍କୃତ ମହାଭାରତରେ ନୀତିକାବ୍ୟ ବିନ୍ୟାସ ଯଥାଯଥ ଭାବରେ ରୂପପାଇ ନଥିଲେ ମଧ୍ୟ କବିର ଅଭିରୁଚି ଓ ମନୀଷା ବଳରେ ସାରଳା ବିଷୟାବତରଣ ସ୍ଥଳମାନଙ୍କରେ ନୀତି ଉପଦେଶର ବର୍ଣ୍ଣନା କରିଅଛନ୍ତି । ବିରାଟରାଜାଙ୍କ ସିଂହାସନରେ ପାଣ୍ଡବମାନଙ୍କର ସମାସୀନ ଦେଖି ପରିକୁପିତ ବିରାଟ ରାଜାଙ୍କୁ ଉତ୍ତର କୁମାରଙ୍କ ନୀତିବାକ୍ୟ ଶୁଣାଇବା 'ସାରଳାଙ୍କର ନିଜସ୍ୱ କଳ୍ପନା । (ପୃ ୬୩) ପର ସମ୍ପଦ ହରଣ କଲେ ଧର୍ମ ନାଶ ହୁଏ ବୋଲି ସାରଳା ଭୀଷ୍ମଙ୍କ ମୁଖରେ ଦୁର୍ଯ୍ୟୋଧନଙ୍କୁ କହିଅଛନ୍ତି । (ପୃ.୪୧) ପାଣ୍ଡବଗଣ ବିପଦ ସମୟରେ ବିରାଟରାଜାଙ୍କ ଦ୍ୱାରା ଉପକୃତ ହୋଇଥିବାରୁ ଯୁଧିଷ୍ଠିର କୃତଜ୍ଞତା ପ୍ରକାଶ କରି ତ୍ରିଗର୍ତ୍ତଙ୍କ ଦ୍ୱାରା ବନ୍ଦୀ ହୋଇଥିବା ବିରାଟଙ୍କୁ ମୁକ୍ତକରିବା ସେମାନଙ୍କର ପ୍ରଧାନ କର୍ତ୍ତବ୍ୟ ବୋଲି ଭୀମସେନଙ୍କୁ ବୁଝାଇଛନ୍ତି । (ପୃ-୩୯୬) ପୁନଶ୍ଚ ଧୌମ୍ୟ ପୁରୋହିତଙ୍କ

(୪୬) ତତ୍ରୈବ, ପୃ, ୪୮
(୪୭) ତତ୍ରୈବ, ପୃ,୭୦୭

ମୁଖରେ ଦୁର୍ଯ୍ୟୋଧନଙ୍କୁ କହୁଥିବା, "ବାବୁ ଧର୍ମ ଅଂଶ ଥିଲେ ହେ ମାନଗୋବନ୍ଦ, କଦାଚହେଁ ପ୍ରାଣୀଙ୍କୁ ନ ପଡ଼େ ପରମାଦ"—ଭଳି ନୀତି ଉପଦେଶ ସାରଳା ପ୍ରୟୋଗ କରିବାକୁ ଭୁଲି ନାହାନ୍ତି ।

**ରୂପବର୍ଣ୍ଣନାଃ—**

ବିରାଟ ପର୍ବରେ ସାରଳାଦାସ ପାଣ୍ଡବମାନଙ୍କର ଅଜ୍ଞାତବାସ ସମୟର ବେଶ ବର୍ଣ୍ଣନାକୁ ଅତି ଚମତ୍କାରଭାବେ ଉପସ୍ଥାପିତ କରିଅଛନ୍ତି । ମୂଳଗ୍ରନ୍ଥର ଦ୍ୱାଦଶଅଧ୍ୟାୟ—ଶ୍ଳୋକ ୬/୭/୮ରେ ନକୁଳ ଜଣେ ଶ୍ରେଷ୍ଠ ଅଶ୍ୱବନ୍ଧୁ ଓ ତାଙ୍କର ରୂପ ଅତି ସୁନ୍ଦର ବୋଲି ବ୍ୟାସଦେବ କହିଅଛନ୍ତି । ସାରଳାଙ୍କ ନକୁଳ ନିଜକୁ ଗ୍ରନ୍ଥିକାର ବୋଲି କହିବା ଭିତରେ ପ୍ରକୃତ ଗ୍ରନ୍ଥିକାର ବେଶ ଓ ଅଶ୍ୱମାନଙ୍କର ଲକ୍ଷଣ ଯାହା ପ୍ରକାଶିତ ହୋଇଛି, ସେଥିରୁ କବିଙ୍କର ରୂପ-କଳ୍ପନାର ପରିଚୟ ବେଶ୍ ମିଳେ । (୪୮) ଅନୁରୂପ ଭାବରେ ଦ୍ରୌପଦୀଙ୍କ ସୌନ୍ଦର୍ଯ୍ୟର ଦୀର୍ଘବର୍ଣ୍ଣନା (ପୃ. ୧୨୯-୧୩୧ ) ପ୍ରଦାନ କରି ତାଙ୍କୁ ଦେବ, ଗନ୍ଧର୍ବ, ମାନବ ମଧ୍ୟରେ ଶ୍ରେଷ୍ଠାନାରୀ ରୂପେ କଳ୍ପନା କରିବାରେ କବି କମ୍ ପ୍ରଚେଷ୍ଟା କରିନାହାନ୍ତି । ଏତଦ୍‌ଭିନ୍ନ ସହଦେବ, ଭୀମ, ଅର୍ଜୁନ ପ୍ରଭୃତିଙ୍କର ଛଦ୍ମବେଶ ଓ ରୂପ ବର୍ଣ୍ଣନା କରିବାରେ କବି ନିଜର ଅପୂର୍ବ କଳାକୁଶଳତା ପ୍ରଦର୍ଶନ କରିଅଛନ୍ତି । ଅତି ସାଧାରଣ କଥା ଓ ଚରିତ୍ର ପଛରେ କାର୍ଯ୍ୟକାରଣ ସମନ୍ୱିତକରି ସାରଳା ସୁବିସ୍ତୃତ ଓ ସୁସଙ୍ଗତ ବର୍ଣ୍ଣନା ପ୍ରଦାନ କରିଥିବା ହେତୁ ତାଙ୍କ ରଚିତ ଏ ପର୍ବଟି ମୂଳ ରଚନାଠାରୁ ବୃହତ୍ ଆକାର ଧାରଣ କରିଅଛି । ସୁବୋଧ ସରଳ ଭାଷା ପ୍ରୟୋଗ ଦ୍ୱାରା କବିଙ୍କର ଅର୍ଗଳଶୂନ୍ୟ ବର୍ଣ୍ଣନା ଜୀବନ୍ତ ରୂପ ପାଇ ମୂଳଗ୍ରନ୍ଥ ଅପେକ୍ଷା ସ୍ୱାଭାବିକ ହୋଇପାରିଛି । ବର୍ଣ୍ଣନାର ଧାରବାହିକତା ଭିତରେ ଅତିରଞ୍ଜନ ମାତ୍ରା ରହିଥିଲେ ମଧ୍ୟ ଏବଂ ପାଠକ ପକ୍ଷରେ ତାହା ବିରକ୍ତିକର ହେଲେ ମଧ୍ୟ ବିଭିନ୍ନ ଗଳ୍ପର ସୁସଂଯୋଜନ ପର୍ବଟିକୁ ହୃଦୟଗ୍ରାହୀ କରିପାରିଛି ।

ବ୍ୟାସ-ସାରଳା ମହାଭାରତଦ୍ୱୟ ଅନୁଧ୍ୟାନ କଲେ ଜଣାଯାଏ ଯେ, ବ୍ୟାସଙ୍କ ରଚନା ପ୍ରବୃତ୍ତିମୂଳକ ହେଲାବେଳକୁ ସାରଳାଙ୍କ ରଚନା ପ୍ରଥମଟିର ଘଟଣାସମୂହକୁ ଧରି ଚରିତ ସାଦୃଶ୍ୟ ପରି ମନେହୁଏ । ମୂଳଗ୍ରନ୍ଥର ତାତ୍ତ୍ୱିକ ବ୍ୟାଖ୍ୟା ସାରଳା କେତେକାଂଶରେ ପରିହାର କରିଛନ୍ତି ଓ ନିଜ ମନୋଧର୍ମାନୁସାରେ ତାହାକୁ ନୂତନ ରୂପ ଦେଇଛନ୍ତି । ମୂଳଗ୍ରନ୍ଥରେ ଘଟଣାମାନଙ୍କର ବର୍ଣ୍ଣନା ସିଧାସଳଖ ଭାବେ କୁହାଯାଇଥିବାବେଳେ ସାରଳା ସେହି ସେହି ଘଟଣାମାନଙ୍କରେ ଶାଖା-ପ୍ରଶାଖା ପୁଷ୍ଟି କଳ୍ପିତ ଗଳ୍ପଗୁଡ଼ିଏ ଖଞ୍ଜିଦେଇଅଛନ୍ତି । ମୂଳପର୍ବଟି ବୁଦ୍ଧିଦୀପ୍ତ ମସ୍ତିଷ୍କର

---

୪୮ ତଦୈବ, ପୃ ୧୪୫ – ୪୬

ସ୍ୱେଲବେଲଙ୍କୁ ସାରଳାଙ୍କ ପର୍ବଟି ସଂପୂର୍ଣ୍ଣରୂପେ ହୃଦୟସ୍ପର୍ଶୀ । ମୂଳରେ ଥିବା ଚରିତ୍ର-ମାନଙ୍କରେ ଦେବସୁଲଭ ଗୁଣ ସାରଳାଙ୍କ ନିକଟରେ ଦୁର୍ଲ୍ଲଭ । ଉତ୍କଳୀୟ ଜନଜୀବନକୁ ଆଖି ଆଗରେ ରଖି, ସେମାନଙ୍କ ପାଇଁ ସାରଳା ଏ ପର୍ବଟିକୁ ବର୍ଣ୍ଣନାତ୍ମକ ଓ ମୂଳତଥ୍ୟର ଏକ ବିଶ୍ଳେଷଣାତ୍ମକ ବିବରଣୀ ପୌରାଣିକ ଶୈଳୀରେ ଉପସ୍ଥାପିତ କରିଛନ୍ତି । ଫଳତଃ ମୂଳମହାଭାରତ ଅପେକ୍ଷା ଏହା ଅଧିକ ପରିମାଣରେ ଆବେଗ ପ୍ରସୂତ ଓ ଓ ମନୋରଞ୍ଜକ — ଏହା ନିଃସନ୍ଦେହ ।



# ଉଦ୍‌ଯୋଗ ପର୍ବ

ପଠାଣି ପଟ୍ଟନାୟକ

**ମୂଳ ମହାଭାରତର କ୍ରମବିକାଶ**

ମହାମୁନି ବ୍ୟାସଦେବଙ୍କ "ମହାଭାରତ" ନାମରେ ଆଜି ଯାହା ସୁପରିଚିତ ତାହାର ଆଦ୍ୟ ରୂପ ସେହିପରି ନଥିଲା । ଯୁଗ ଯୁଗ ଧରି କେତେ ବୈପ୍ଳବିକ ପରିବର୍ତ୍ତନ ଆହରଣ ଓ ସଂଯୋଜନ ମଧ୍ୟରେ ସେ ଦିନର "ଜୟ", "ଭାରତ" ରୂପରେ ପରିଚିତ ହୋଇ ପରେ "ମହାଭାରତ" ରୂପରେ ପ୍ରତିଷ୍ଠା ଅର୍ଜନ କରିଅଛି । କୌରବ ଏବଂ ପାଣ୍ଡବମାନଙ୍କ ମଧ୍ୟରେ ସଂଗଠିତ ଯୁଦ୍ଧର କାହାଣୀ ପ୍ରଥମେ ଆଠହଜାରରୁ ଦଶହଜାର ଶ୍ଳୋକ ମଧ୍ୟରେ ଆବଦ୍ଧ ଥିଲା ବୋଲି ଗବେଷକଗଣ ମତ ପ୍ରଦାନ କରିଥା'ନ୍ତି । ପରବର୍ତ୍ତୀକାଳରେ "ଭାରତ" ନାମରେ ପରିଚିତ ଏହି ସମର କାହାଣୀ ବିକଶିତ ରୂପରେ ଚବିଶହଜାର ଶ୍ଳୋକରେ ଲିପିବଦ୍ଧ ହେଲାବୋଲି ବୁଝାଯାଏ । In outline this must have been the story of the earliest form of the epic called "Jaya' or "Bharata". In extent the work could not have then contained more than 24,000 stanzas. (The cultural Heritage of India-Vol II P -52 )

କାଳଚକ୍ରର ଗତିପଥରେ ବ୍ୟାସଙ୍କ ଲିଖିତ "ଭାରତ"ର କଳେବର ପ୍ରସାରିତ ହେବାକୁ ଲାଗିଲା । ଭାରତୀୟ ମନୀଷା ଏହାକୁ ମହାଭାରତ ନାମ ପ୍ରଦାନ କରି ଯୁଗେ ଯୁଗେ ତହିଁରେ କେତେ ଜ୍ଞାନର ଭଣ୍ଡାର ସାଇତି ରଖିଛନ୍ତି ତାର ତୁଳନା ନାହିଁ । ମୂଳ ଆଖ୍ୟାନଭାଗ ଯୁଦ୍ଧର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ସହିତ ତହିଁରେ ସଂଯୋଜିତ ହେଲା ଅସୁମାରି କାହାଣୀ, ବଂଶାନୁଚରିତ, ଧର୍ମ, ଦର୍ଶନ, ରାଜନୀତି ସମ୍ପର୍କୀୟ ବହୁ ଆଲୋଚନା ଓ ପର୍ଯ୍ୟାଲୋଚନା । ତେଣୁ ପରବର୍ତ୍ତୀକାଳରେ କୁହାଗଲା – 'ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ ।" ଭାରତବର୍ଷକୁ ଜାଣିବାକୁ ହେଲେ ମହାଭାରତ ଅଧ୍ୟୟନ କରିବାକୁ ହେବ । ମହାଭାରତ ମଧ୍ୟରେ ଭାରତୀୟ ଜୀବନର ସର୍ବାଙ୍ଗୀନ ବିକାଶ ଓ ଐଶ୍ୱର୍ଯ୍ୟ ଲିପିବଦ୍ଧ ହୋଇଅଛି । ଗବେଷକଗଣ ବର୍ତ୍ତମାନ ଯେଉଁ ମହାଭାରତ ସମ୍ପାଦନା କରିଅଛନ୍ତି, ତହିଁରେ ଉତ୍ତର ଭାରତୀୟ ସଂସ୍କରଣରେ ୮୨,୧୩୬ ଶ୍ଳୋକ ଏବଂ ଦକ୍ଷିଣ

ଭାରତୀୟ ସଂସ୍କରଣରେ ୯୫, ୫୮୭ ଶ୍ଲୋକ ଦୃଷ୍ଟିଗୋଚର ହୋଇଥାଏ । ଆଲୋଚକ ମାନେ ତେଣୁ ସିଦ୍ଧାନ୍ତ କରିଛନ୍ତି ଯେ ବ୍ୟାସଙ୍କ କୃତ ମୂଳ ମହାଭାରତ ଅତୁଟ ଅବସ୍ଥାରେ ଆମ ନିକଟରେ ପହଞ୍ଚି ପାରିନାହିଁ । ଏଥିରେ ଏହି ମହାନ ଜାତିର ଜୀବନଜିଜ୍ଞାସା ଓ ଦର୍ଶନ, ଧର୍ମାନୁଚିନ୍ତା ଓ ସାମାଜିକ ମୂଲ୍ୟବୋଧ, ଆଧ୍ୟାତ୍ମିକସାଧନା ଓ ରାଜନୈତିକ ତଥା କୂଟନୈତିକ ପରୀକ୍ଷାନିରୀକ୍ଷା ପ୍ରଭୃତି ଉଚ୍ଚତର ମୂଲ୍ୟବୋଧ ବହୁ ମନୀଷୀଙ୍କର ଲେଖନୀ ଜରିଆରେ ଲିପିବଦ୍ଧ ହୋଇଅଛି । ସେଥିପାଇଁ ବ୍ୟାସଦେବଙ୍କୁ କୌଣସି ବ୍ୟକ୍ତିବିଶେଷ ରୂପେ ବିଚାର ନ କରି ଆଲୋଚକଗଣ ଜ୍ଞାନଭଣ୍ଡାରର ସଂକଳୟିତା ଭାବରେ ଗ୍ରହଣ କରିଥାନ୍ତି । ଉଦାହରଣ ସ୍ୱରୂପ କୁହାଯାଇଛି—

"The first impression a critical readcs would get from the mahabharata is that it is not the composition of a single author, not eaven of fhose of one generation; he soon notices that it is an assemblage of heterogeneous of elements – a compilation involving many authors of varying abilities, who added a considerable amount of adventitious matter to the original epic nucleus from time to time. The great epic in its present form is the outcome of a long and continuous literary activity.

(The cultural Heritage of India-Vol—II P. 56 The Ramakrishna Mission )

## ସଂସ୍କୃତ ମହାଭାରତ ଓ ଓଡ଼ିଆ ମହାଭାରତ

ଆଜକୁ ପାଞ୍ଚଶହ ବର୍ଷ ପୂର୍ବେ ଓଡ଼ିଆ ସାହିତ୍ୟର ଆଦିକବି ସାରଳା ଦାସ ମହାଭାରତ ପ୍ରଣୟନ କଲେ । ସେତେବେଳେ ସାରଳା ଦାସଙ୍କ ଆଗରେ କେବଳ ବ୍ୟାସଙ୍କର ମହାଭାରତ ଥିଲା ଏକମାତ୍ର ପ୍ରେରଣାର ଉତ୍ସ । ମହାକବି ସାରଳା ଦାସ ମୂଳ ମହାଭାରତର ଅନୁବାଦ କରିନାହାନ୍ତି । ବ୍ୟାସଙ୍କର ମହାଭାରତର କଥାଭାଗକୁ କିଛି ଅଂଶରେ ଗ୍ରହଣ କରି ସତେ ଯେପରି ସେ ନିଜେ ଏକ ମୌଳିକ ମହାଭାରତ ଲେଖିଯାଇଅଛନ୍ତି ଯହିଁରେ ଓଡ଼ିଆ ଜାତିର ସଂସ୍କୃତିକ ଓ ସାମାଜିକ ରୂପରେଖ ଅତ୍ୟନ୍ତ ପ୍ରାଣବନ୍ତ ଭାବରେ ପ୍ରତିଫଳିତ । ମୂଳଗ୍ରନ୍ଥରେ ବହୁ ମୂଲ୍ୟବାନ ଅଂଶ ସାରଳା ଦାସ ପରିହାର କରିଅଛନ୍ତି । ଏଥିପାଇଁ କେତେକ ଆଲୋଚକ ତାଙ୍କୁ ଆକ୍ଷେପ

କରିଥାନ୍ତି । ମାତ୍ର ସାରଳା ଦାସଙ୍କ ଆଗରେ ଥିଲେ ଏ ଦେଶର ସରଳ ଜନସାଧାରଣ । ସେକାଳରେ ପୁରାଣପଣ୍ଡାମାନଙ୍କ ଜରିଆରେ ଶାସ୍ତ୍ର ପୁରାଣ ପ୍ରଚାରିତ ହେଉଥିଲା । ତତ୍ତ୍ୱମୂଳକ ଧର୍ମଶାସ୍ତ୍ର ଓ ପୁରାଣ ହୃଦୟଙ୍ଗମ କରିବା ସେମାନଙ୍କ ପକ୍ଷରେ ସମ୍ଭବ ନଥିଲା । ସାରଳା ଦାସ ଥିଲେ ଲୋକ ଶିକ୍ଷକ । ସେ ପ୍ରାକୃତ ଭାଷାରେ ଏହି ମହାକାବ୍ୟ ରଚନା କରି ପ୍ରାକୃତ ଜନସାଧାରଣଙ୍କର ହୃଦୟରେ ଜ୍ଞାନର ଆଲୋକଶିଖା ଜାଳି ଦେଇଥିଲେ । ଆଦର୍ଶ କାହାଣୀ ଜରିଆରେ ସେ ଇଚ୍ଛା କରିଥିଲେ ସାମାଜିକ ଜୀବନକୁ ଶୁଦ୍ଧ ଓ ସଂସ୍କୃତ କରିବାପାଇଁ । ସେଥିପାଇଁ ତାଙ୍କୁ ବହୁ ସାଧନା କରିବାକୁ ପଡ଼ିଛି । ଜ୍ଞାନର ଭଣ୍ଡାରରୁ ବଞ୍ଚିତ ନିରୀହ ଅଶିକ୍ଷିତ ପଲ୍ଲୀବାସୀଙ୍କୁ ସେ କେବଳ ମହାଭାରତର ଅନୁପମ ଚରିତମାନଙ୍କ ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି । ଲୋକ ସଂସାରରେ ପ୍ରଚଳିତ ବହୁ କାହାଣୀ ସାରଳା ଦାସ ମହାଭାରତରେ ଗଭିର୍ତ ହୋଇଅଛି । ପୁନଶ୍ଚ ନିଜ ଲିଖିତ ମହାଭାରତର ଚରିତ, ଉପାଖ୍ୟାନ, ବର୍ଣ୍ଣନାବିଳାସ ମଧ୍ୟରେ ସାରଳା ଦାସ ଓଡ଼ିଶାର ସଂସ୍କୃତି ଓ ଜାତିବୃତ୍ତିକୁ ଆରୋପ କରି ଅଛନ୍ତି । ବ୍ୟାସଙ୍କର ମହାଭାରତ ଓ ସାରଳାଙ୍କ ମହାଭାରତ ମଧ୍ୟରେ ସେଥିପାଇଁ ଆକାଶ ପାତାଳ ପ୍ରଭେଦ ଅନୁଭୂତ ହୋଇଥାଏ । ଓଡ଼ିଆ ମହାଭାରତର ପ୍ରମୁଖ ଆଲୋଚକ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ତେଣୁ ଯଥାର୍ଥରେ କହିଛନ୍ତି—

"ସାରଳାଦାସ କବି କେବଳ ଏ ସ୍ଥଳରେ କାହିଁକି, ସର୍ବତ୍ର ମୂଳଗତ ଧର୍ମଶାସ୍ତ୍ର ବିଷୟକ ଓ ତତ୍ତ୍ୱ ବିଷୟକ ଯାବତୀୟ ସମ୍ବାଦ ଓ ଉପଦେଶଗୁଡ଼ିକ ତ୍ୟାଗ କରିଅଛନ୍ତି କହିଲେ ଚଳେ ।"

(ଶ୍ରୀଭାରତ ଦର୍ପଣ-ପୃ ୧୦୫-୧୦୭-୧୯୬୮)

ସାରଳାଦାସ ଉଦ୍‌ଯୋଗ ପର୍ବର ଆରମ୍ଭ କରିଛନ୍ତି ପାଣ୍ଡବଙ୍କର ଇନ୍ଦ୍ରପ୍ରସ୍ଥରେ ପ୍ରବେଶ କଲା ସମୟରୁ ଯେତେବେଳେ ଧୌମ୍ୟ ପୁରୋହିତଙ୍କୁ ଦୂତରୂପରେ କୁରୁସଭାକୁ ପ୍ରେରଣ କରାଯାଇଛି । ଯୁଧିଷ୍ଠିର ଆଶା କରିଥିଲେ ଯେ ଦୀର୍ଘ ୧୩ବର୍ଷ କାଳ ରାଜ୍ୟରୁ ବାହାରେ ରହି ସେମାନେ ଫେରି ଆସିଥିବାରୁ ଦୁର୍ଯ୍ୟୋଧନ ସେମାନଙ୍କୁ ସସମ୍ମାନେ ପାଛୋଟି ନେବେ ଏବଂ ସେମାନଙ୍କର ରାଜ୍ୟରେ ଥିବା ହକ୍ ଅଧିକାର ଫେରାଇ ଦେବେ । ମାତ୍ର କାର୍ଯ୍ୟରେ ତାହା ହୋଇ ନାହିଁ । ପାଣ୍ଡବମାନେ ଦାବୀ ହାସଲ ପାଇଁ ଯୁଦ୍ଧ କରିବେ ବୋଲି ନିଷ୍ପତ୍ତି କରିଛନ୍ତି । ତେବେ ତା ପୂର୍ବରୁ ସେମାନେ ଶ୍ରୀକୃଷ୍ଣଙ୍କୁ ମଧ୍ୟସ୍ଥି ରୂପେ କୁରୁସଭାକୁ ପ୍ରେରଣ କରିଛନ୍ତି ।

ଶ୍ରୀକୃଷ୍ଣ କୁରୁସଭାରେ ଅପମାନିତ ହୋଇ ଫେରି ଆସିଛନ୍ତି ଏବଂ ମହାଭାରତ ଯୁଦ୍ଧ ପାଇଁ ସମସ୍ତ ଆୟୋଜନ ସାଧିତ ହୋଇଛି । ଯୁଦ୍ଧ ସମ୍ପର୍କରେ ନାନା ଭାବରେ ଭବିଷ୍ୟତବାଣୀ କରାଯାଇଛି । ସାରଳାଦାସ ମୂଳର ପ୍ରଜାଗର ଏବଂ ସନତ ସୁଜାତ

ଉପପର୍ବଙ୍କୁ ସମ୍ପୂର୍ଣ୍ଣ ପରିତ୍ୟାଗ କରିଛନ୍ତି । ମୂଳରେ ମନ୍ତ୍ରୀ ବିଦୁର ପରାମର୍ଶ ଦେଇଛନ୍ତି ପାଞ୍ଚଟି ପଲ୍ଲୀ ପ୍ରଦାନ କରି ପାଣ୍ଡବମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ । ମାତ୍ର ସାରଳା ମହାଭାରତରେ ଧୌମ୍ୟପୁରୋହିତ ପଲ୍ଲୀ ମାଗିବାକୁ ଯାଇ ହତାଶ ହୋଇ ଫେରି ଆସିଲା ପରେ କହିଛନ୍ତି—

"ଆହୋ ତୁ ଯେବେ ସହିବୁ ବାବୁ ତେବେ ସେ ରହିଲା ତୋର ବଂଶ ।

ଯୁଧିଷ୍ଠିର କରୁ ବ୍ୟସ୍ତ ହୋଇ କହିଛନ୍ତି—"ଦୁଃଖ ସହିବାର ସୀମାଅଛି । ଆଉ କେତେ ଅତ୍ୟାଚାର ବରଦାସ୍ତ କରିବୁ । ସ୍ୱହୁଁ ସ୍ୱହୁଁ ପଞ୍ଚତ୍ରୟୋବର୍ଷ ଅତିକ୍ରାନ୍ତ ହେବାକୁ ଯାଉଛି ।'' ତେଣୁ ମହାମନ୍ତ୍ରୀ ବିଦୁରଙ୍କ ଆଗରେ ଶପଥ କରି ସେ କହିଛନ୍ତି—

"ଅଥବା ପଲ୍ଲୀ ପାଞ୍ଚଖଣ୍ଡି ଯେବେ ନ ଦିଅଇ ମୁକୁ
ଅବଶ୍ୟ ସଂଗ୍ରାମ ହୋଇବ କହିଲି ଦୃଢ଼ବାକ୍ୟ ତୁକୁ ।"

ମୂଳ ମହାଭାରତରେ ଶ୍ରୀକୃଷ୍ଣଙ୍କୁ ପରମବ୍ରହ୍ମ ବୋଲି ବହୁ ସ୍ଥାନରେ ଉଲ୍ଲେଖ କରାଯାଇଛି । ସାରଳାଦାସ ଶ୍ରୀକୃଷ୍ଣଙ୍କର ସମସ୍ତ ମାନବୀୟ ଲୀଳା ପ୍ରକାଶ କରିଥିଲେ ହେଁ ତାଙ୍କର ଅତିମାନବତ୍ୱ ପ୍ରକଟନ କରିବାକୁ କୁଣ୍ଠିତ ହୋଇ ନାହାଁନ୍ତି । ସେ କରିଛନ୍ତି ଯେ ଶ୍ରୀକୃଷ୍ଣ, ସେ ହେଉଛନ୍ତି ଶ୍ରୀଜଗନ୍ନାଥ । ସାରଳାଦାସ ଶ୍ରୀକୃଷ୍ଣଙ୍କୁ ସର୍ବଦା ଜଗନ୍ନାଥ ନାମରେ ହିଁ ସମ୍ବୋଧନ କରିଥିବା ଜଣାଯାଏ । ଏହି ପର୍ବରେ ଅର୍ଜୁନଙ୍କୁ ଯୁଧିଷ୍ଠିର କହିଛନ୍ତି –

"ତୁ ରେ ପାର୍ଥିବ ବେଗେ ଚଳସି ଦ୍ୱାରକା
ଶ୍ରୀ ଜଗନ୍ନାଥଙ୍କରେ ଘେନି ଆସିବୁ ତୁ ସେବକା"

ମୂଳ ମହାଭାରତରେ ଉଦ୍‌ଯୋଗ ପର୍ବରେ ଅମ୍ବା ଉପାଖ୍ୟାନ ରହିଛି । ସାରଳାଦାସ ଏହି ଉପାଖ୍ୟାନଟି ଆଦିପର୍ବରେ ସଂଯୋଜିତ କରିବାକୁ ଉଦ୍‌ଯୋଗ ପର୍ବରେ ତାହା ପରିହାର କରିଅଛନ୍ତି ।

ମୂଳ ଉଦ୍‌ଯୋଗ ପର୍ବର ବହୁ ପ୍ରସଙ୍ଗ ଓଡ଼ିଆ ମହାଭାରତରେ ସ୍ଥାନ ପାଇନାହିଁ । ଉଦାହରଣ ସ୍ୱରୂପ ବିରାଟ ରାଜସଭାରେ ଶ୍ରୀକୃଷ୍ଣ ଓ ବଳରାମଙ୍କ ଭାଷଣ, ନହୁଷ ଉପାଖ୍ୟାନ, ବିଦୁରଙ୍କ ନୀତି ବଚନ ଓ ହିତୋପଦେଶ ଚତୁର୍ବର୍ଣ୍ଣ ଧର୍ମର ସଂକ୍ଷିପ୍ତ ବର୍ଣ୍ଣନା, ବ୍ରହ୍ମଚର୍ଯ୍ୟ ଓ ବ୍ରହ୍ମର ନିରୂପଣ, ବ୍ରହ୍ମବିଦ୍ୟା ପ୍ରତିପାଦନ, ପାତାଳଲୋକ ଓ ଗରୁଡ଼ଲୋକର ବର୍ଣ୍ଣନା, ଗାଳବଙ୍କ ଉପାଖ୍ୟାନ ପ୍ରଭୃତି ବହୁ ପ୍ରସଙ୍ଗ ସାରଳାଦାସ ଗ୍ରହଣ କରିନାହାନ୍ତି । ତେବେ ସାରଳାଦାସଙ୍କ କଥାବସ୍ତୁ ମୋଟାମୋଟି ଭାବରେ ମୂଳ ପ୍ରସଙ୍ଗକୁ ଅନୁସରଣ କରି ଲିଖିତ । ସାରଳାଦାସ ମଧ୍ୟେ ମଧ୍ୟେ

କେତେକ ବ୍ୟତିକ୍ରମ ପ୍ରବେଶ କରାଇଛନ୍ତି । ଉଦାହରଣ ସ୍ୱରୂପ ମୂଳ ମହାଭାରତରେ କୁରୁସଭାରେ ରାଜା ଦୁର୍ଯ୍ୟୋଧନ ଶ୍ରୀକୃଷ୍ଣଙ୍କୁ ଅସମ୍ମାନ କରିବାରୁ ସେ ତାଙ୍କୁ ପରାଭବ ଦେବା ଉଦ୍ଦେଶ୍ୟରେ ବିଶ୍ୱରୂପ ପ୍ରଦର୍ଶନ କଲେ । ସେହି ଭୟାନକ ମୂର୍ତ୍ତି କେବଳ ଭୀଷ୍ମ, ଦ୍ରୋଣ, ମହାମତି ବିଦୁର, ମହାତ୍ମା ସଞ୍ଜୟ ଓ ତପୋଧନ ଋଷିମାନେ ଦିବ୍ୟଚକ୍ଷୁ ଲାଭ କରି ଦର୍ଶନ କରିପାରିଲେ । ସଭାସ୍ଥଳରେ ଉପସ୍ଥିତ ଅନ୍ୟମାନେ ଅତିଶୟ ଭୟରେ ଚକ୍ଷୁ ମୁଦ୍ରିତ କଲେ । ସେହି ସମୟରେ ମହାରାଜ ଧୃତରାଷ୍ଟ୍ର ବିକଳ ହୋଇ ପ୍ରାର୍ଥନା କଲେ ଭଗବାନଙ୍କ ବିଶ୍ୱରୂପ ଦର୍ଶନ ପାଇଁ ତାଙ୍କୁ କେବଳ ଦିବ୍ୟ ଚକ୍ଷୁ ପ୍ରଦାନ କରାଯାଉ । ବ୍ୟାସଦେବ ଲେଖିଛନ୍ତି—"ତଦନନ୍ତର ମହାବାହୁ ବାସୁଦେବ କହିଲେ, ହେ କୁରୁନନ୍ଦନ ! ଯେଉଁ ଚକ୍ଷୁକୁ ଅନ୍ୟ କେହି ଦେଖି ନପାରିବେ ତାଦୃଶ ଦୁଇଗୋଟି ଚକ୍ଷୁ ପାଇବା ହେଉନ୍ତୁ । ହେ ମହାରାଜ ? ଧୃତରାଷ୍ଟ୍ର ରାଜା ବିଶ୍ୱରୂପ ଦେଖିବା ଇଚ୍ଛାରେ ବାସୁଦେବଙ୍କ ପ୍ରସାଦରୁ ଯୋଡ଼ିଏ ଚକ୍ଷୁ ପାଇଲେ । ରାଜା ଓ ଋଷିମାନେ ଧୃତରାଷ୍ଟ୍ର ଚକ୍ଷୁ ପାଇବାର ଦେଖି ଚମତ୍କୃତ ହୋଇ ଶ୍ରୀକୃଷ୍ଣଙ୍କୁ ସ୍ତବ କଲେ ।"

(ମହାଭାରତ-ଉଦ୍‌ଯୋଗ ପର୍ବ ଓଡ଼ିଆ ସାହିତ୍ୟ ଏକାଡ଼େମୀ-ପୃ ୧୨୯-୩୦)

କିନ୍ତୁ ଏ କ୍ଷେତ୍ରରେ ସାରଳା ଦାସ ଧୃତରାଷ୍ଟ୍ରଙ୍କୁ ଚକ୍ଷୁଦାନ କରିନାହାନ୍ତି । ବୈତରଣୀ ତୀରରେ କରଦାର ବୋଲି ଏକ ନଗରେ ରୁଦ୍ରଶର୍ମଣ ନାମରେ ଜଣେ ଅନ୍ଧ ବ୍ରାହ୍ମଣ ବାସ କରୁଥାଏ । ସେ ପୁତ୍ର ଭାରିଜା ସହିତ ଭିକ୍ଷା ମାଗି ମାଗି ଏକଦା ଦ୍ୱାରକାରେ ଅବସ୍ଥାନ କରେ । ଶ୍ରୀକୃଷ୍ଣଙ୍କ ପୁତ୍ର ସହିତ ଅନ୍ଧର ପୁତ୍ର ଧୂଳିଖେଳ ଖେଳିବା ଅବସରରେ ଉଚିବାଟହୋଇ ପ୍ରଦ୍ୟୁମ୍ନକୁ ଆଘାତ କରେ । ଏଥିରେ ଶ୍ରୀକୃଷ୍ଣ ପୁତ୍ର ସ୍ନେହରେ ବିଚଳିତ ହୋଇ ପ୍ରାସାଦରୁ ବାହାରି ଆସିଛନ୍ତି ଅନ୍ଧପୁତ୍ରକୁ ପରାଭବ ଦେବାପାଇଁ । ସେ କ୍ରୋଧରେ କହିଛନ୍ତି—

"ତୋହୋର ପୁତ୍ରଗୋଟି ସୁପୋତେ ମାରିଅଛୁ ସଖା
ଦେଖସିରେ ଅନ୍ଧ
ଗୋବିନ୍ଦ ପ୍ରତିବାକ୍ୟ ସେ ଦିଅନ୍ତି ଗୋବିନ୍ଦ ।
ଦେଖୁକନା ବୋଲି ଦେବ ବୋଇଲେ ବାକ୍ୟ ଗୋଟି
ଶତେ ଜନ୍ମର ଅନ୍ଧପଟଳ ଗଲା ତାର ଫିଟି ।"

(ସାରଳା ମହାଭାରତ-ଉଦ୍‌ଯୋଗ ପର୍ବ- ଶାକୁନିକ ବ୍ୟାପାର ବିଭାଗ- ପୃ ୧୧୭)

ଉଭୟ ମହାଭାରତରେ ଶ୍ରୀକୃଷ୍ଣଙ୍କ ଆଲୌକିକତା ପ୍ରଦର୍ଶନ କରାଯାଇଥିଲେହେଁ କାହାଣୀରେ ବ୍ୟତିକ୍ରମ ଲକ୍ଷ୍ୟ କରାଯାଏ । ଏହାହିଁ ସାରଳା ଦାସଙ୍କର ବୈଶିଷ୍ଟ୍ୟ ।

ସଂସ୍କୃତ ମହାଭାରତରେ 'ବିଦୁରଙ୍କ ଉପଦେଶ' ଅତ୍ୟନ୍ତ ମୂଲ୍ୟବାନ । ସାରଳା ଦାସ ସେ ସବୁ ପରିହାର କରିବା ଫଳରେ ଓଡ଼ିଆ ଭାଷାର ପାଠକମାନେ ନିଶ୍ଚିତ ଭାବରେ ଅତ୍ୟନ୍ତ ମୂଲ୍ୟବାନ ଜୀବନଦର୍ଶନରୁ ବଞ୍ଚିତ ହୋଇଛନ୍ତି । ଉଦାହରଣ ସ୍ୱରୂପ—

'ବିଦୁର କହିଲେ, ଯାହାଙ୍କର ପରାଜୟ ଇଚ୍ଛା କରାଯାଏ ନାହିଁ' ସେ ପ୍ରଶ୍ନ ନ କଲେ ସୁଦ୍ଧା ତାହାଙ୍କର ଶୁଭ ଅବା ଅଶୁଭ, ପ୍ରିୟ ଅଥବା ଅପ୍ରିୟ ସମ୍ବାଦ ଯଥାର୍ଥ ରୂପରେ ବର୍ଣ୍ଣନ କରିବା ଉଚିତ । ଅତଏବ ହେ ରାଜନ୍ । ଆମ୍ଭେ କୁରୁମାନଙ୍କ ହିତ ଇଚ୍ଛା କରି ଆପଣଙ୍କୁ ଧର୍ମାନୁଗତ ଓ ଶ୍ରେୟସ୍କର ବାକ୍ୟ କହୁଅଛୁଁ, ଶୁଣିବା ହେଉନ୍ତୁ । ହେ ମହାରାଜ । ଯେଉଁ କର୍ମ ଅସତ୍ ଉପାୟରେ ସିଦ୍ଧ ହୋଇପାରେ ଓ ଦୁଃଖ ଫଳମାନଙ୍କୁ ଦାନ କରେ, ସେହି ମିଥ୍ୟା ସମ୍ବଳିତ କପଟ ଦ୍ୟୂତରେ ଆପଣ କଦାପି ମାନସିକୁ ବଳ ଇବେ ନାହିଁ । ଯେଉଁ କର୍ମ ସୁଷ୍ଠୁ ଉପଯୁକ୍ତ ହୋଇ ଉତ୍ତମ ଉପାୟରେ ସିଦ୍ଧ ନୁହେଁ, ତାହା ବିଷୟରେ ବୁଦ୍ଧିମାନ ବ୍ୟକ୍ତିମାନେ କଦାପି ମନରେ ଗ୍ଲାନି କରନ୍ତି ନାହିଁ । ସମସ୍ତ ପ୍ରକାର କର୍ମର ଅନୁବନ୍ଧ ଅର୍ଥାତ୍ ଅଧିକାରୀ, ବିଷୟ, ସମ୍ବନ୍ଧ ଓ ପ୍ରୟୋଜନ ଅଛି । ପ୍ରଥମରେ ସେହିମାନଙ୍କୁ ନିଶ୍ଚୟ କରି, ପଶ୍ଚାତ୍ ତାହାର ଅନୁଷ୍ଠାନ କରିବାର ଔଚିତ୍ୟ ବିବେଚନା ନ କରି ହଠାତ୍ କୌଣସି କର୍ମ କରିବାକୁ କଦାପି ପ୍ରବୃତ୍ତ ହେବ ନାହିଁ । ପଣ୍ଡିତମାନେ କର୍ମର ଅନୁବନ୍ଧ । ପରିଣାମ ଓ ଆପଣାର ଉଦ୍ୟମ ଏହି ସମସ୍ତ ବିବେଚନା କରି ତହିଁରେ ପ୍ରବୃତ୍ତ ହୁଅନ୍ତି । ଅଥବା ତହିଁରୁ ନିବୃତ୍ତ ହୋଇ ଥାଆନ୍ତି ।''

(ମହାଭାରତ ଉଦ୍‌ଯୋଗ ପର୍ବ-ଓଡ଼ିଆ ସାହିତ୍ୟ ଏକାଡେମୀ – ପୃ-୧୬୩)

ସଂସ୍କୃତ ମହାଭାରତ ଏହିପରି ନୀତିମୟ ଦର୍ଶନ ପ୍ରଖ୍ୟାପନରେ ଅତ୍ୟନ୍ତ ସମୃଦ୍ଧ ଓ ମୁଖରିତ । ସାରଳାଦାସ ଇଚ୍ଛାକରି ତାଙ୍କର ଗ୍ରାମୀଣ ସଜ୍ଜନଙ୍କୁ ତାହା ଶୁଣାଇ ନାହାନ୍ତି । ତେବେ ସେ ବିଭିନ୍ନ ପୁରାଣ, ପରମ୍ପରା ପ୍ରଚଳିତ ଲୋକ କଥା ଅଥବା ମୌଳିକ ପରିକଳ୍ପନାରୁ ବହୁ ଚମତ୍କାର କାହାଣୀ ସୃଷ୍ଟି କରି ଉପଦେଶ ଛଳରେ ତାଙ୍କର ପାଠକମାନଙ୍କୁ ପରିବେଷଣ କରିଅଛନ୍ତି । ଉଦାହରଣ ସ୍ୱରୂପ ବେଲ୍ଲାଳସେନ ଉପାଖ୍ୟାନ, ଭାରଦାବୃତ୍ତାନ୍ତ, ହନୁମାନର ନିମନ୍ତ୍ରଣ, ରାଣୀ ସୁଦେଷ୍ଣାଙ୍କ ଗୁଣ୍ଡିବୁଢେଣୀ ହେବା ପ୍ରସଙ୍ଗ, ଭୂଲସୀବଣ ବାଘ ଓ ଭୂଲାମୁହଁ କାଙ୍କ ବିବରଣ, ବାବନାଭୂତ କଥା ଓ ଅଳସୁଆ କଥା ପ୍ରଭୃତି ସାରଳାଦାସଙ୍କର ନିଜସ୍ୱ ସୃଷ୍ଟି । ଏଥିରେ ଚମତ୍କାର ବର୍ଣ୍ଣନା ବିଳାସ ସହିତ ପ୍ରସଙ୍ଗୋଚିତ ନୀତିକଥାର ପ୍ରଚୁର ଲକ୍ଷ୍ୟ କରାଯାଇଥାଏ । ସାଧାରଣ ଗ୍ରାମୀଣ ପାଠକଙ୍କୁ ତତ୍ତ୍ୱ କଥା ନ କହି କାହାଣୀ କରିଆରେ ଉପଦେଶ ପ୍ରଦାନ କରିବା ଅତ୍ୟନ୍ତ ସମୀଚୀନ ହୋଇଅଛି ।

## ସୁଦେଷ୍ଣା ପାଟମହାଦେବୀ ଓ ଗୁଣ୍ଡିଚାଦେବୀ:—

ବିରାଟ ରାଜାଙ୍କ ପାଟମହାଦେବୀ ସୁଦେଷ୍ଣାଙ୍କୁ ସାରଳାଦାସ ଶ୍ରୀକୃଷ୍ଣା ନାମରେ ନାମିତ କରିଛନ୍ତି । ସେ ମହାଭାରତ ଯୁଦ୍ଧ ସମ୍ବନ୍ଧରେ ଭବିଷ୍ୟତବାଣୀ କରିବା ସଙ୍ଗେ ସଙ୍ଗେ ନିଜର ଜାତିସ୍ମରତ୍ୱ ପ୍ରକାଶ କରି କହିଛନ୍ତି ଯେ ଶ୍ରୀ ଜଗନ୍ନାଥ ମନ୍ଦିର ବିଖ୍ୟାତ ଇନ୍ଦ୍ରଦ୍ୟୁମ୍ନଙ୍କର ରାଣୀ ରୂପେ ସେ ଜନ୍ମ ଗ୍ରହଣ କରିବେ । ସାରଳା ଦାସ ବହୁ ସ୍ଥଳରେ ଉତ୍କଳର ସାଂସ୍କୃତିକ ଜୀବନକୁ ମୂଳ ମହାଭାରତର କାହାଣୀରେ ଆରୋପ କରିବାକୁ ସୁଖ ପାଇଛନ୍ତି । ବିରାଟରାଣୀ କହୁଛନ୍ତି—

"ସତ୍ୟଯୁଗେଣ ଶ୍ୱେତ ନାମେଣ ମହାରାଜା
ମୁହିଁ ଶକୁନ୍ତଳା ଯେ ତାହାର ଭାରିଜା ।
ତ୍ରେତୟା ଯୁଗରେ ସକେତ ନାମେ ନରପତି
ମୁହିଁ ତାହାର ଭାରିଜା ହୋଇଲି ଶଚୀବତୀ ।
ଯେବେ ଦ୍ୱାପର ଯୁଗେ ଉପୁଜିଲା ବିରାଟନାମେ ରଜା
ଶ୍ରୀକୃଷ୍ଣା ନାମେଣ ମୁଁ ତାହାର ଭାରିଜା ।
କଳିଯୁଗେ ଉପୁଜିବ ଇନ୍ଦ୍ରଦ୍ୟୁମନ ହୋଇ
ଗୁଣ୍ଡିଚା ନାମେଣ ମୁଁ ତାହାର ମହାଦେଈ ।
ବିରାଟ ଭାରିଜା ଶ୍ରୀକୃଷ୍ଣା ନାମ ମୋର ଯେବେ
ତେଣ୍ୟାସ୍ତୁ ବର୍ଷାବୃତ୍ତିପଣେ ଖଟିଲେ ପାଣ୍ଡବେ ।

ସ୍ୱଦେଶପ୍ରେମୀ ମହାକବି ସାରଳାଦାସ ମହାଭାରତର ବହୁ ପ୍ରସଙ୍ଗ ଆଲୋଚନା କାଳରେ ଓଡ଼ିଶାର ଗୌରବ ଗାନ କରିବାକୁ ଭୁଲିଯାଇ ନାହାନ୍ତି ।

### ଅଳସୁଆ ବିବରଣ :—

ଯୁଧିଷ୍ଠିରଙ୍କୁ ଉପଦେଶ ଦେବା ଛଳରେ ମନ୍ତ୍ରୀ ଶକୁନି ଏଇ କାହାଣୀଟି କହିଥିଲେ । ତାଙ୍କର ବକ୍ତବ୍ୟ ହେଲା—'ବାଳୁତ ଅଗ୍ୟାନେ ସେ ପାତକ ଦୋଷ ନାହିଁ ।'' ଏହି ସିଦ୍ଧାନ୍ତକୁ ପ୍ରମାଣ କରିବା ପାଇଁ ଶକୁନି କହିଛନ୍ତି—କୃଷ୍ଣାବେଣୀ ନଦୀତୀରରେ କାମପୁର ନଗରେ ମେନକା ନାମରେ ଜଣେ ଶୂଦ୍ର ବାସ କରୁଥାଏ । ସେ ଅତ୍ୟନ୍ତ ଅଜ୍ଞାନ ଏବଂ ଅଳସୁଆ । କାଠ ଭାଙ୍ଗି ସେ କୌଣସି ପ୍ରକାରେ ଗୁଜୁରାଣ ଚଳାଉଥାଏ । ଥରେ ପ୍ରବଳ ଝଡ଼ ହେବାରୁ ଅଳସୁଆ ଆଉ କାଠ କାଟିବାପାଇଁ ବାହାରି ପାରିଲାନାହିଁ । ଶେଷରେ ସେ ଗୋଟିଏ ମନ୍ଦିର ମଧ୍ୟରେ ଦେଖିଲା କାଠରେ ତିଆରି ବ୍ରହ୍ମା ବିଷ୍ଣୁ ମହେଶ୍ୱରଙ୍କର ତିନି ମୂର୍ତ୍ତି ଶୋଭା ପାଉଛି । କାଠ ସଂଗ୍ରହ ଉଦ୍ଦେଶ୍ୟରେ ସେ ବିଷ୍ଣୁ ପ୍ରତିମାକୁ ଧରି ହାଣିବାକୁ ବସନ୍ତେ ବିଷ୍ଣୁ ସ୍ୱଦେହରେ ଉଭା ହୋଇ ତାହାପାଇଁ ସୁହୃଳ

କଉନ୍ତର ବ୍ୟବସ୍ଥା କରଦେଲେ । କମେ ସେ ସୁଖରେ ଘରଦ୍ୱାର କର ରହବାରୁ ପଟ୍ଟରାଣୀ ଅନନ୍ତ୍ୟାର ସ୍ୱା ଅନୁସନ୍ଧାନ କର ସମସ୍ତ ବୁଦ୍ଧିପାରଳ ଏବଂ ଏହ ସହଜ ଉପ ସ୍ୱରେ ଅର୍ଥ ରୋଜଗାର କରବାପାଇଁ ତାର ସ୍ୱମୀଙ୍କୁ ପେରଣା ପ୍ରଦାନ କଲ । ଅନନ୍ତ୍ୟା କୁଠାର ଧର ଠାକୁର ପ୍ରଭମଙ୍କୁ ହାଣିବାକୁ ବସନ୍ତେ ଧର୍ମ ନ ଲଙ୍ଘିବାପାଇଁ ଠ କୁର କହଲେ –

ମୂର୍ଖ ଅଳସୁଆ ପାମର ମନ୍ଦ ଜାତ
ମୂର୍ଖ ଲୋକକୁ ଆମ୍ଭେ ଦେବତାସ୍ୱେ କରୁଂ ଖ୍ୟାତ ।
ଦୁଃଖ କଷ୍ଟେ ପଡ଼ ଗ୍ୟାନ ଦୋହର ଅଛୁ
ଶାହାନ୍ତ ସଙ୍ଗତେ ଟୋହୋଳ ଧର୍ମକୁ ଗ୍ୟାନ ବାଛୁ ।
ଦେବତା ଅସୁର ଯେ ମାନବ ରୂପ କାୟେ
ଅସୁର କଲା ଲୋକଙ୍କୁ ଆମ୍ଭେ ଦେବତାସ୍ୱେ କରୁଂ ଭୟେ ।
ଭୁ ଯେ ଭୋଗୀ ଶୋଷୀ ଦେବତା ବ୍ରାହ୍ମଣ ଅଛଯେ ଅନ୍ନ ଦ୍ୟନ୍ତ୍ୟା
ଗ୍ୟାନ ଥିଲ ପ୍ରାଣୀ କ ଯେ ନ ଡ଼ରନ୍ତ ଦେବତା" ।

ଯେଉଁମାନେ ପାପ ପଥରେ ଅଗ୍ରସର ହୋଇ ଇହକାଳରେ ସୁଖ ଭୋଗ କରନ୍ତ ସେମାନେ ଅଳସୁଆ ପର ପରଲୋକଙ୍କର ଅତ୍ୟନ୍ତ କଷ୍ଟ ଭୋଗ କରନ୍ତ । ଯେଉଁମାନେ ଧର୍ମ ପଥରେ ଯାଇ ଦୁଃଖ ପାଉଥାନ୍ତ, ସେମାନେ ଅନନ୍ତ୍ୟା ଶୂଦ୍ରପର ପର ଲୋକରେ କାଞ୍ଚନଗର ରାଜଚକ୍ରବର୍ତ୍ତୀ ହୁଅନ୍ତ । ମନ୍ତ୍ରୀ ଶକୁନ ଯୁଧିଷ୍ଠିରଙ୍କୁ ବୁଝାଇ କହଛନ୍ତ —

"ସ୍ୱେହୁ କହଣ ଶକୁନ ପୁଣି ବୋଲେ ଗୀର
ଅଳସୁଆ ପ୍ରାପ୍ୟେ ଅଟେ ଅନ୍ତର କୁମର ।
ଭୁହ ଯେ ଅଟୁ ଦରଦ୍ର ଅନନ୍ତ୍ୟାର ପର
ପାଶକୁ ତୁ କାହିଁ ପାପ ଆଚରଣ କର ।"

କାହାଣୀ ଛଳରେ ଲୋକଶିକ୍ଷା ପ୍ରଦାନ କରବା ହେଉଛୁ କବ ସାରଳା ଦାସଙ୍କର ପରମ କୌଶଳ । ଏହା ତାଙ୍କର ନଜସ୍ୱ ଶୈଳୀ । ତେଣୁ ସେ ତତ୍ତ୍ୱଦର୍ଶୀ ଅଧ୍ୟାତ୍ମ ଗୁଡ଼କୁ ମୂଳ ଭାରତରୁ ଆଦୌ ଗ୍ରହଣ କର ପାରନାହାନ୍ତ ।

**ସରଦାର ଭବଷ୍ୟତ ବାଣୀ : –**

ମହାଭାରତର ଅଠର ଦନ ଯୁଦ୍ଧ ସମ୍ପର୍କରେ ସାରଦାର ଭବଷ୍ୟତ ବାଣୀ ମଧ୍ୟ ସାରଳାଦାସଙ୍କର ନଜସ୍ୱ ପରକଳ୍ପନା । ମୂଳ ମହାଭାରତରେ ଏ ପ୍ରସଙ୍ଗ ଆଦୌ ନାହିଁ । ଯୁଧିଷ୍ଠିର ଭବଷ୍ୟତ ଯୁଦ୍ଧ ସମ୍ପର୍କରେ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରଛନ୍ତ ।

ଭବିଷ୍ୟତ ଜ୍ଞାତା ସହଦେବ ଭାରଦାକୁ ଅଣାଇ ତାହାଠାରୁ ଏହା ଶ୍ରବଣ କରିବାପାଇଁ ପରାମର୍ଶ ଦେଇଛନ୍ତି । ଓଡ଼ିଶାର ବୈତରଣୀ ନଦୀ କୂଳରେ ଯାଜପୁର ନଗର ଉପସ୍ଥିତ । ସେହିଠାରେ ଧବଳ ପର୍ବତ ପାଦ ଦେଶରେ ଭାରଦା ତାର ସୁନ୍ଦରୀ ସ୍ତ୍ରୀ ସହିତ ବାସ କରୁଥାଏ । ସ୍ତ୍ରୀର ସେବା କରି ଏବଂ ତାର ଯୌବନକୁ ବିନଷ୍ଟ କରି ସେ ଚଳୁଥାଏ । ଜ୍ୟେଷ୍ଠଙ୍କ ଆଦେଶରେ ଭୀମସେନ ଭାରଦାକୁ ଆଣିବା ପାଇଁ ଆସିଥିଲେ । ଏଇଭଳି ପାପିଷ୍ଠର ଅଙ୍ଗ ସ୍ପର୍ଶ କରିବା ପାଇଁ ତାଙ୍କର ମନ ଡାକିଲା ନାହିଁ । ଧର୍ମ ହାନି ଭୟରେ ଭୀମସେନ ତାର ଚୂଟି ଧରି ଶୂନ୍ୟେ ଶୂନ୍ୟେ ହସ୍ତିନାପୁରକୁ ନେଇଗଲେ । କୁରୁକ୍ଷେତ୍ର ଯୁଦ୍ଧଭୂମିରେ ଏକ ସ୍ତମ୍ଭରେ ସର୍ବକାଳରେ ଭାରଦାକୁ ବାନ୍ଧି ଦିଆଗଲା । ସେ ଏଡ଼େ ପାପିଷ୍ଠ ଯେ ଭୂତ ପ୍ରେତ ମଧ୍ୟ ତାକୁ ଭକ୍ଷଣ କଲେ ନାହିଁ । ସେହିଠାରେ ଶ୍ରିହ୍ନା ନାମରେ ଶୃଗାଳ ଏବଂ ତାର ସ୍ତ୍ରୀ ତାରକ୍ଷୀ ଉପସ୍ଥିତ ହୁଅନ୍ତି । ମାତ୍ର ଏ ପାପିଷ୍ଠର ମାଂସ ଭକ୍ଷଣ ପାଇଁ ସେମାନେ ଆଗ୍ରହ ପ୍ରକାଶ କଲେନାହିଁ । ସେହି ଅବସରରେ ଶିହ୍ନା ଶୃଗାଳ ମହାଭାରତ ଯୁଦ୍ଧର ସମସ୍ତ କଥା ବର୍ଣ୍ଣନା କରି ସାନ୍ତ୍ୱନା ପ୍ରଦାନ କରିଛି —

'ଶ୍ରିକାଳ ହୋଇଲା ସଖିରେ ମନୁମାଂସେ କଲୁ ଯେବେ ଇଚ୍ଛା
ସେହି ଅଷ୍ଟାଦଶ ଦିବସେ ତୋହୋର ପୂରିବ ମନବାଞ୍ଛା ।'

ଶ୍ରିକାଳଠାରୁ ଶୁଣି ଭାରଦା ପରଦିନ ପ୍ରଭାତରେ ଯୁଧିଷ୍ଠିରଙ୍କୁ ଜଣାଇଲା—"ହାରିବେ ଦୁର୍ଯୋଧନ ଜିଣିବେ ଯୁଧିଷ୍ଠି ।" ଭାରତ ଉପାଖ୍ୟାନ ଅବତାରଣା କରି ଲେଖକ ସମାଜରେ ନୀତିମୟ ଜୀବନର ପରିଚାଳନା ପାଇଁ ପ୍ରାଧାନ୍ୟ ଆରୋପ କରିଛନ୍ତି । କେବଳ ସେତିକ ମାଂସ ଭୋଜନ ଲୋଭରେ ମହାଭାରତ କଥାକୁ ଶ୍ରିକାଳ ଶୁଣି ନିନ୍ଦା କରିବାରୁ ଅନ୍ଧ ହୋଇଗଲା । କାର୍ଯ୍ୟ କାରଣ ସମ୍ପର୍କ ଅନୁରୋଧରେ କବି ସାରଳା ଦାସ ପାପ ପାଇଁ ଉପଯୁକ୍ତ ଶାସ୍ତି ବିଧାନ କରିଛନ୍ତି ।

**ତୁଳସୀ ବଣ ବାଘ କଥା :–**

ଲୋକ କଥାକାର ସାରଳାଦାସ ଏହି କାହାଣୀ ଜରିଆରେ ଲୋକଶିକ୍ଷା ଦେବାପାଇଁ ଚେଷ୍ଟା କରିଛନ୍ତି । ସଂସ୍କୃତ ମହାଭାରତରେ ଏହି ପ୍ରସଙ୍ଗ ଦୃଷ୍ଟିଗୋଚର ହୁଏ ନାହିଁ । ସନ୍ନଗଣ୍ଡ ଗ୍ରାମାନ୍ତରେ ଏକ ପିପ୍ପଳ ବୃକ୍ଷ । ସେଠାରେ ଏକ ମର୍କଟ ବାସ କରୁଥାଏ । ଏକଦା ଏକ କପଟୀ ବ୍ୟାଘ୍ର ସେହି ବୃକ୍ଷତଳେ ତୁଳସୀବଣରେ ବାସ କରିବାକୁ ଲାଗିଲା ଏବଂ ନିଜର ଆଚରଣ ଦ୍ୱାରା ପ୍ରକାଶ କରୁଥିଲା ଯେ ସେ ହିଂସାମାର୍ଗକୁ ପ୍ରତ୍ୟାଖ୍ୟାନ କରିଅଛି । ମାୟା ମୋହ ଛାଡ଼ି ସେ ବୈଷ୍ଣବ ରୂପ ଧାରଣ କରିଛି । କବି ଲେଖିଛନ୍ତି—

“ମାୟା ମୋହ ଛାଡ଼ି ଆମ୍ଭେ ବଇଷ୍ଣବ ହୋଇଲୁ
ଶରୀର ମୋକ୍ଷ କାରଣେ ତୀର୍ଥରେ ରହିଲୁ ।

ଜୀବ ବଧକୁ ବଡ଼ ଭୟଟି ଆମ୍ଭର
ତେଣୁ ଭୂମି ଫୁଙ୍କି ଧିରେ ଧିରେ ପକାଉ ପୟର ।

ନ ଗୁଣ ପାଦ ପଡ଼ି ନାଶନ୍ତି କ୍ଷୁଦ୍ରଜୀବ
କୀଟ ପତଙ୍ଗ ନକ ହୁଅନ୍ତି ମୃତ୍ୟୁଯୋଗ ଭାବ ।

ଜଳ ପବନ ବିନା ମୋହୋର ଆହାର
ଯେହୁ ସବେ ଦେଖ ଅମ୍ଭେ ଧରନ୍ତୁ ଶରୀର ।’

କପଟାଚାର କରି ବ୍ୟାଘ୍ର ମର୍କଟକୁ ହତ୍ୟା କରିବା ପାଇଁ ଚେଷ୍ଟିତ ଥିଲେହେଁ କୌଶଳ କ୍ରମେ ବାନର ସେଥିରୁ ଉଦ୍ଧାର ପ୍ରାପ୍ତ ହେଲା । କବି ଏଠାରେ ଅନ୍ଧରାଜା ଧୃତରାଷ୍ଟ୍ରଙ୍କୁ ଅପମାନିତ କରିବାପାଇଁ ଏହି ଉଦାହରଣ ଦେଇଛନ୍ତି —

“ତୁଳସୀବଣ ବ୍ୟାଘ୍ର ପରି ଯେହୁ ଅନ୍ଧ
ଯେହାର ମୁଖକୁ ସେ ବୃହିଁଲେ ବଡ଼ ମନ୍ଦ ।
ତାହା ଯୋଗରୁ ବିନା ସକଳେ ନାଶ ଯିବା
ଯେହୁ ମନ୍ଦ ପାପିଷ୍ଠ ବଚନ ନ ଶୁଣିବା ।”

## ତୁଳା ମୁହାଂ କଂକ :-

ଶକୁନି ମନ୍ତ୍ରୀ ଧୃତରାଷ୍ଟ୍ରଙ୍କୁ ଅପମାନିତ କରିବାରୁ ସେ ଶକୁନିକୁ କହିଛନ୍ତି—
“ଶୁଣରେ ଶକୁନି ଯେବେ ତୋହୋର ମନ୍ତ୍ରୀପଣ
ତୁଳାମୁହାଂ କଙ୍କ ପରି ତୋହର ଆଚରଣ ।”

ଏକ ଜଳାଶୟ ନିକଟରେ କପଟ ଆଚରଣ କରି ବଗଟିଏ ମୁହଁରେ ତୁଳାଦେଇ ଜଳପାନ କରୁଥାଏ । ପଚାରିଲେ କହେ—

କାଂକେ ବୋଲନ୍ତି ଅମ୍ଭେ ପାପକୁ ଭୟେ କରି
ଅଳପ ନୀର ମାତ୍ର ସେ ଆହାର ଆମ୍ଭର ।

ନ ପୁଣି କ୍ଷୁଦ୍ର ଜୀବ ଜଳ ସଙ୍ଗତରେ
ନ ପୁଣ ପଶନ୍ତି ସେ ଆମ୍ଭର ଗର୍ଭରେ ।

ତେଣୁ ତୁଳା ମୁଖେ ଦେଇ ଆମ୍ଭେ ସାବୁ ନୀର
ତେଣୁ ତୁଳାମୁହା କାଂକ ନାମଟି ଆମ୍ଭର ।

ଏହି କାଂକ ପ୍ରାଣୀମାନଙ୍କୁ ଆସନ୍ନ ଅନାବୃଷ୍ଟିରୁ ରକ୍ଷା କରିବା ଉଦ୍ଦେଶ୍ୟରେ ଜଳଜୀବ ମାନଙ୍କୁ ଗୋଟି ଗୋଟି କରି ନେଇ ଏକାନ୍ତରେ ହତ୍ୟା କରୁଥିଲା । ସେ ବିଶ୍ୱାସରେ ବିଷଦେଇ ଶେଷରେ ଗୋଟିଏ କଙ୍କଡ଼ା ହାତରେ ପ୍ରାଣ ତ୍ୟାଗ କଲା ସେହିପରି ମନ୍ତ୍ରୀ ଶକୁନି ବିଶ୍ୱାସରେ ବିଷ ପ୍ରଦାନ କରି କୁରୁବଂଶକୁ ନିପାତ କରିବାକୁ ବସିଛି ବୋଲି ମହାରାଜା ଧୃତରାଷ୍ଟ୍ର କହିଛନ୍ତି—

ଯେ ଶକୁନି ହେଲା ଯେବେ ଗୁଳାମୁହାଂ କାଂକ
କୁରୁକୁଳର ଯେ ଅଟେ ନିଚଯେ ଅନ୍ତକ ।
ବିଶ୍ୱାସୀ ସକଳ ଯେ ମରିଇବ ମୋର
କାଳେହେଁ ପୁଣ ସେହୁ ଯିବ ଯମପୁର ।

ଲୋକଚରିତ୍ର ଅଧ୍ୟୟନ ପାଇଁ ସାରଳାମହାଭାରତ ଏକ ଅପୂର୍ବ ଗ୍ରନ୍ଥ । ନିତିଦିନର ଅନୁଭୂତିସିଦ୍ଧ ଘଟଣା ଗୁଡ଼ିକୁ ସେ କାହାଣୀ ଛଳରେ ଉପସ୍ଥାପନ କରିଯାଇଛନ୍ତି । ଏଥିପାଇଁ ସେ ବ୍ୟାସଦେବଙ୍କୁ ଆଦୌ ଅପେକ୍ଷା କରି ନାହାନ୍ତି ।

**ବାବନାଭୂତ କଥା—**

ରାଣୀ ଭାନୁମତୀ ଦୁର୍ଯ୍ୟୋଧନଙ୍କୁ ମହାଭାରତ ଯୁଦ୍ଧ ସମ୍ପର୍କରେ ଯେଉଁ ସ୍ୱପ୍ନ ବିବରଣ ପ୍ରଦାନ କରିଛନ୍ତି ତାହା ସାରଳାଦାସଙ୍କର ମୌଳିକ ପରିକଳ୍ପନା । ମୂଳ ମହାଭାରତରେ ଏହାର ସୂଚନା ନାହିଁ । ତୁଙ୍ଗଭଦ୍ରା ନଦୀ କୂଳରେ ଏକ ଅମୋକ୍ଷ ଭୂମି ଥିଲା । ସେଠାରେ ସମସ୍ତ ପ୍ରେତ ଏକାଠି ହୁଅନ୍ତି । ପଶ୍ଚିମ ସୋମରାଷ୍ଟ୍ରର ଶୂଦ୍ରକ ବୋଲି ରାଜନ ସେଠାରେ ତନ୍ତ୍ରମନ୍ତ୍ର କରି ଜୀବନ ଯାପନ କରୁଥାଏ । ସେ ସେହି ପ୍ରେତ ଭୂମିକୁ ସ୍ପର୍ଶ କରିବାରୁ ପ୍ରେତମାନେ ଉତ୍ପାତ ହେଲେ । ମାତ୍ର ମନ୍ତ୍ରବଳରେ ସେମାନେ ଆୟତ୍ତ ହୋଇଗଲେ । ଶେଷରେ ପ୍ରେତଙ୍କର ରାଜା ବାବନାଭୂତ ରାଜନ ସହିତ କଟାଳ କରିବାକୁ ବସିଲା । ମାତ୍ର ମନ୍ତ୍ରବଳରେ ଭୂତ ରାଜା ସମେତ ସମସ୍ତେ ଅଧୀନ ହେଲେ ଏବଂ ମନ୍ତ୍ରୀଙ୍କର ଆଦେଶରେ ଗ୍ରାମମାନଙ୍କରୁ ଆଦାୟ କରି ଷାଠିଏ ପୌଟି ଚାଉଳ ତାହାକୁ ଦେଲେ । ଭାନୁମତୀ ମନ୍ତ୍ରୀ ଶକୁନିକୁ ଏହି ବାବନାଭୂତ ଭଳି ମନ୍ତ୍ରୀ ବୋଲି ଆକ୍ଷେପ କରିଛି । କାରଣ ଭୂତନଶାତରଗଣଙ୍କ କଥାକୁ ଅସ୍ୱୀକାର କରି ବାବନାଭୂତ ଯେପରି ଧ୍ୱଂସକୁ ନିମନ୍ତ୍ରଣ କରିଆଣିଲା ସେହିପରି ଶକୁନି ମଧ୍ୟ ସମସ୍ତଙ୍କ ଉପଦେଶକୁ ପ୍ରତ୍ୟାଖ୍ୟାନ କରି କୁରୁକୁଳ ପାଇଁ ଧ୍ୱଂସକୁ ଆବାହାନ କରି ଆଣିବ । ପାଣ୍ଡବମାନଙ୍କ ଅନିଷ୍ଟ ଚିନ୍ତାକରୁଥିବା କୁରୁବଂଶକୁ ଭାନୁମତୀ ସ୍ମରଣ କରାଇ ଦେଇଛି—

"ସ୍ୱାମୀ କଲା ଉପକାର ନ ମାନନ୍ତି ଯେବଣ ଜନ
ଜୀବନ୍ତେ ଆସାର୍ଥକ ମଲେଣ ନରକ ପତନ ।

ତେବେ ସାରଳାଦାସ ନିଜ ମହାଭାରତରେ ଲୋକଚରିତ ପ୍ରତିପାଦନ ଏବଂ ଲୋକଶିକ୍ଷା ପାଇଁ ବହୁ ମୌଳିକ କାହାଣୀର ସଂଯୋଜନା କରିଥିଲେ ହେଁ, ଲୋକ ଆବଶ୍ୟକତା ଦୃଷ୍ଟିରୁ ମୂଳଗ୍ରନ୍ଥର ବହୁ ତତ୍ତ୍ୱପୂର୍ଣ୍ଣ ଅଧ୍ୟାୟ ପରିହାର କରିଥିଲେ ହେଁ ସେ ମୋଟାମୋଟି ଭାବରେ ବ୍ୟାସଦେବଙ୍କୁ ଅନୁସରଣ କରିଛନ୍ତି । ଉଦାହରଣ ସ୍ୱରୂପ ଶ୍ରୀକୃଷ୍ଣଙ୍କ ନାରାୟଣ ରୂପ ସେ ବ୍ୟାସଙ୍କ ଅନୁକ୍ରମେ ନିଜ ମହାଭାରତରେ ବହୁସ୍ଥଳରେ ପ୍ରଦର୍ଶନ କରିଥିବା ଜଣାଯାଏ । ଅଥଚ ପରମବ୍ରହ୍ମ ଶ୍ରୀକୃଷ୍ଣ ସାରଳାଙ୍କ ଲେଖନୀରେ ଆମରି ପରିବାରର ଜଣେ ହୋଇ ଉଠିଛନ୍ତି ।

ସାରଳା ମହାଭାରତ ମୂଳ ଗ୍ରନ୍ଥକୁ ଅନୁସରଣ କରି ସୁଦ୍ଧା ସ୍ୱଭାବରେ ଏହି ଲୌକିକ ପରିବେଷଣ ଯୋଗୁ ଓଡ଼ିଆ ଜାତିର ଏହା ଜୀବନ-ବେଦ ହୋଇ ଆସିଅଛି । ଓଡ଼ିଆ ସାହିତ୍ୟରେ ସାରଳା ମହାଭାରତ ତେଣୁ ସର୍ବଯୁଗମସ୍ପୀ ଐଶ୍ୱର୍ଯ୍ୟର ଅଧିକାରୀ ହେବା ଅତ୍ୟନ୍ତ ସ୍ୱାଭାବିକ ।





# ଭୀଷ୍ମ ପର୍ବ

ଡକ୍ଟର ଜୟନ୍ତ କୁମାର ଦାସ

---

ବ୍ୟାସ ରଚିତ ମହାଭାରତକୁ ପ୍ରାଚୀନ ଭାରତର ଇତିହାସ ଆଖ୍ୟା ଦିଆଯାଇ ଥାଏ । ତତ୍କାଳୀନ ସାମାଜିକ ଜୀବନ, ଧର୍ମ, ସଂସ୍କୃତି ଆଚାର ବିଚାର, ରାଜନୀତି, ଅର୍ଥନୀତି, ବିଜ୍ଞାନ, ଭୂଗୋଳ ପ୍ରଭୃତି ସମସ୍ତ ଆବଶ୍ୟକୀୟ ତଥ୍ୟ ଏଥିରେ ରହିଛି । ସେଥିପାଇଁ କୁହାଯାଇଥାଏ, "ଯାହା ନାହିଁ ଭାରତେ ତାହା ନାହିଁ ଭାରତେ ।" ଶୂଦ୍ରମୁନି ସାରଳା ଦାସ ଭାରତୀୟ ଜୀବନର ଏ ଆଲେଖ୍ୟକୁ ଆଞ୍ଚଳିକ ଭାଷାରେ ପ୍ରଥମ ଥର ପାଇଁ ଆହରଣ କଲେ । ସଂସ୍କୃତ ଭାଷାର ଏ ବିଶାଳ ଗ୍ରନ୍ଥାଗାରକୁ ସେ ଓଡ଼ିଆ ଭାଷାରେ ରୂପାୟିତ କଲେ । ଯେ ପର୍ଯ୍ୟନ୍ତ ଯାହା କେବଳ ପଣ୍ଡିତ, ଏବଂ ଜ୍ଞାନୀଙ୍କର ବିଚରଣର ବସ୍ତୁଥିଲା, ତାକୁ ସେ ଅଜ୍ଞାନୀ, ସାଧାରଣ ମଣିଷର ହାତପାଆନ୍ତାକୁ ନେଇ ଆସିଲେ । ରସଗ୍ରାହୀ ପାଠକୀୟ ଆଗ୍ରହକୁ ଚାହିଁ, ଓଡ଼ିଆ ମହାଭାରତକୁ ସେ ନିରସ ଅନୁବାଦ କରିନାହାନ୍ତି, ବିଷୟ ଏବଂ ତଥ୍ୟକୁ ନେଇ ସେ ପାଣ୍ଡିତ୍ୟପୂର୍ଣ୍ଣ ତତ୍ତ୍ୱକୁ ପରିହାର କରିଛନ୍ତି । ଜଟିଳତାରୁ ଦୂରେଇ ରଖି, ସେ ସ୍ୱୀୟ ଗ୍ରନ୍ଥକୁ ସରଳତାରେ ଅନୁପମ କରି ତୋଳିଛନ୍ତି । ସାରଳା ମହାଭାରତର ଆଦ୍ୟ ସମାଲୋଚକ ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦ ଶର୍ମା ମଧ୍ୟ ସ୍ୱୀକାର କରିଛନ୍ତି," ଏହି କବି ମୂଳ ଗ୍ରନ୍ଥର ଅନୁବାଦ କରି ନାହାନ୍ତି କିମ୍ବା ଅବିକଳାନୁକରଣରେ ଲେଖି ନାହାନ୍ତି । ମୂଳ ଗ୍ରନ୍ଥର ପ୍ରଗାଢ଼ ଶୁଶ୍ରୂଷାରେ ଏକାନ୍ତ ଅନୁରକ୍ତ ଥାଇ ସମଗ୍ର ଭାରତର ସ୍ଥୂଳ ସ୍ଥୂଳ ବିଷୟ ଓ ଆମୂଳାନ୍ତ ଘଟନାଂଶମାନ ମାତ୍ର ସ୍ୱୀୟ ଅବ୍ୟାହତ ସ୍ମୃତିକୋଷରେ ପ୍ରସାସ୍ତରଖି ଅସାମାନ୍ୟ କଳ୍ପନା ଶକ୍ତି ଓ ବିଷୟ ସମ୍ବିଧାନ ପ୍ରବୀଣତା ବଳରେ ବଳୀୟାନ ହୋଇ ଅଳଙ୍କୀକରଣ, ବିସ୍ତୃତୀକରଣ, ଅନୁକ୍ତ ପ୍ରକ୍ଷେପ ଓ ଉକ୍ତ ନିକ୍ଷେପାଦି କ୍ରମରେ ଏହି ପ୍ରକାଣ୍ଡ ଗ୍ରନ୍ଥକୁ ଲେଖି ଯାଇଛନ୍ତି ।" (ଶ୍ରୀ ଭାରତ ଦର୍ପଣ ପୃ ୧୦) । ଶୂଦ୍ରମୁନିଙ୍କର ଓଡ଼ିଆ ଭାଷାରେ ଏ ପ୍ରଚେଷ୍ଟା ଫଳରେ ସେ ପର୍ଯ୍ୟନ୍ତ କେବଳ ପଣ୍ଡିତମାନଙ୍କର ଏକଚାଟିଆ ହୋଇ ରହିଥିବା ଏ ଜ୍ଞାନର ଭଣ୍ଡାର ଯେ କେବଳ ସାଧାରଣ ଲୋକଙ୍କ ହାତକୁ ଚାଲି ଆସିଲା ତା ନୁହେଁ, ପରବର୍ତ୍ତୀ କାଳରେ ଅନ୍ୟ ଆଞ୍ଚଳିକ ଭାଷାରେ ମଧ୍ୟ ମହାଭାରତ କ୍ରମେ ଲେଖାଗଲା, ଯେଉଁମାନେ ଏଇ ଆଦିକବିଙ୍କୁ ହିଁ ଅନୁସରଣ କଲେ । ବଙ୍ଗଳାରେ କାଶୀରାମ ଦାସ, ହିନ୍ଦୀରେ ଚୌହାନ ସବଳ ସିଂହ ଏବଂ ତେଲୁଗୁରେ ତିକ୍କନା ସୋମଯାଜୀଙ୍କ ନାମ ଏଥିପାଇଁ ସ୍ମରଣ କରାଯାଇ ପାରେ । ପ୍ରୋକ୍ତ ଭାଷାମାନଙ୍କରେ "ମହାଭାରତ"

ଲେଖାଯିବା ପର୍ଯ୍ୟନ୍ତ ସାରଳା ମହାଭାରତ ହିଁ ଉତ୍ତରରେ ବଙ୍ଗଠାରୁ ଦକ୍ଷିଣରେ ଆନ୍ଧ୍ର ପର୍ଯ୍ୟନ୍ତ ପ୍ରସିଦ୍ଧି ଲାଭ କରିଥିଲା । ତେଲୁଗୁ ଭାଷାରେ ଏହାର ଅନୁବାଦ ଓଡ଼ିଶାର ସୀମା ସେତେବେଳେ ଆନ୍ଧ୍ର ପ୍ରଦେଶରେ ବ୍ୟାପିଥିବାରୁ ଏବଂ ତେଲୁଗୁ ପଣ୍ଡିତମାନେ ଓଡ଼ିଶାର ରାଜାମାନଙ୍କ ପାଖରେ ଆଶ୍ରୟ ନେଇଥିବାରୁ ସମ୍ଭବ ଥିଲା । ସେହିପରି ବଙ୍ଗଳାଦେଶ, ମେଦିନୀପୁର, ବୀରଭୂମ ପ୍ରଭୃତିରେ ପ୍ରଚଳିତ ଥିବା କଥା ଡକ୍ଟର ହରେକୃଷ୍ଣ ମହତାବ ପ୍ରକାଶ କରିଛନ୍ତି । (ସାରଳା ସମୀକ୍ଷା ପୃ ୨) ସଂସ୍କୃତ ମହାଭାରତର ପାଣ୍ଡିତ୍ୟକୁ ପରିହାର କରି ଶୂଦ୍ର ଶାରଳାଙ୍କ ପ୍ରାକୃତ ଗ୍ରନ୍ଥକୁ ସାଧାରଣ ପାଠକମାନେ ଆଦରରେ ଗ୍ରହଣ କରିଯିବାବାର ଏ ସମ୍ବାଦ ହିଁ ତାର ଲୋକପ୍ରିୟତାର ପ୍ରମାଣ ।

ସଂସ୍କୃତ ମହାଭାରତର ପର୍ବସଂଖ୍ୟାକୁ ସମାନ ରଖିଲେ ମଧ୍ୟ ନାମ ବା ବିଷୟକୁ ସାରଳା ସେହିପରି ଗ୍ରହଣ କରି ଯାଇନାହାନ୍ତି । ମୂଳ ମହାଭାରତର ଅଷ୍ଟାଦଶ ପର୍ବ ମଧ୍ୟରେ ସୌପ୍ତିକ, ଅନୁଶାସନିକ, ମହା ପ୍ରସ୍ଥାନିକ ପର୍ବ ଇତ୍ୟାଦିକୁ ସାରଳା ମହାଭାରତରେ ଅନ୍ୟ ନାମ ଦିଆଯାଇଛି ବା ଅନ୍ୟ ପର୍ବ ସାଙ୍ଗରେ ମିଶାଇ ଦିଆଯାଇଛି । ସେହିପରି ଅନ୍ୟ ପର୍ବରୁ ଅଂଶ ବିଶେଷ ଗ୍ରହଣ କରି ସାରଳା, ମଧ୍ୟ, ଗଦା ଏବଂ କାର୍ତ୍ତିକା ପର୍ବତ୍ରୟ ସୃଷ୍ଟି କରିଛନ୍ତି । ସେଥିପାଇଁ ମୂଳ ଏବଂ ଓଡ଼ିଆ ମହାଭାରତରେ ପର୍ବର କ୍ରମ ଗୁଡ଼ିକରେ ଭିନ୍ନତା ଦେଖାଯାଏ । ଦ୍ୱିତୀୟରୁ ନବମପର୍ଯ୍ୟନ୍ତ ପର୍ବ ମୂଳ ଗ୍ରନ୍ଥରେ ସଭା, ବନ, ବିରାଟ ଉଦ୍‌ଯୋଗ, ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ ହୋଇଥିଲା ବେଳେ ସାରଳା ତାଙ୍କୁ ତୃତୀୟରୁ ଦଶମ ପର୍ଯ୍ୟନ୍ତ ପର୍ବ ଭାବରେ ଗ୍ରହଣ କରିଛନ୍ତି । ସ୍ତ୍ରୀ, ଶାନ୍ତି ସଂସ୍କୃତରେ ଏକାଦଶ ଏବଂ ଦ୍ୱାଦଶ ପର୍ବ ବେଳେ ଓଡ଼ିଆରେ ତ୍ରୟୋଦଶ ଏବଂ ଚତୁର୍ଦ୍ଦଶ ପର୍ବ । ଆଦିପର୍ବର ପରିଶିଷ୍ଟରୁ କଥାଭାଗ ଗ୍ରହଣ କରି ମଧ୍ୟପର୍ବ, ମୂଳଗ୍ରନ୍ଥର ଶଲ୍ୟ ପର୍ବରୁ ଦୁର୍ଯ୍ୟୋଧନର ହ୍ରଦ ପ୍ରବେଶ ଅଂଶ ମୁଖ୍ୟତଃ ନେଇ ଗଦାପର୍ବ, ସୌପ୍ତିକ ପର୍ବର ଅଂଶ ସହିତ ପାଣ୍ଡବ ତନୟ ନିଧନକୁ ନେଇ କାର୍ତ୍ତିକା ପର୍ବ ସୃଷ୍ଟି କରିଥିଲା ବେଳେ ସାରଳା ଦାସ ସଂସ୍କୃତର ଅନୁଶାସନ ପର୍ବକୁ ସମ୍ପୂର୍ଣ୍ଣଭାବରେ ତ୍ୟାଗ କରିଛନ୍ତି ଏବଂ ମହା ପ୍ରସ୍ଥାନିକ ପର୍ବର କଥାଭାଗକୁ ସମ୍ପୂର୍ଣ୍ଣ ଭାବରେ ସ୍ୱର୍ଗାରୋହଣ ପର୍ବର ଅନ୍ତର୍ଭୁକ୍ତ କରିଛନ୍ତି । ବ୍ୟାସ ମହାଭାରତ ରଚନା କଲାବେଳେ ତାଙ୍କର ଦୃଷ୍ଟି ଥିଲା ବିଶାଳ ଭାରତୀୟ ସାମାଜିକ ଜୀବନ, ପଣ୍ଡିତମାନେ ତାର ଥିଲେ ପାଠକ କିନ୍ତୁ ସାରଳାଙ୍କ ଦୃଷ୍ଟିରେ ସେ ସମାଜ ଯେପରି ସଂକୁଚିତ ହୋଇପଡ଼ିଥିଲା ସେହିପରି ପାଠକ ଶ୍ରୋତାଙ୍କ ପରିସର ବଢ଼ି ଯାଇଥିଲା । ଭାରତୀୟ ସମାଜକୁ ସେ ଉତ୍କଳୀୟ ପରିବେଶରେ ଯେପରି ଥାପି ଦେଇଥିଲେ ସେହିପରି ତାଙ୍କ ଚତୁଃପାର୍ଶ୍ୱରେ ଥିବା ଗଣମାନେ ହିଁ ହୋଇଥିଲେ ପାଠକୀୟ ମୂଳ ଲକ୍ଷ୍ୟ । ସେଥିପାଇଁ ବ୍ରହ୍ମଜ୍ଞାନ, ତତ୍ତ୍ୱ ଆଧ୍ୟାତ୍ମ ଉପଦେଶ ପରି ପାଣ୍ଡିତ୍ୟକୁ ତ୍ୟାଗକରି ସାଧାରଣ ମଣିଷ ପାଖରେ ଆଦୃତ ହେବାପରି ରସାଳ ଗଳ୍ପ ସୃଷ୍ଟି କରି ଗ୍ରନ୍ଥକୁ ତାଙ୍କର ଏକ ସ୍ୱୟଂ ସମ୍ପୂର୍ଣ୍ଣ ମୌଳିକ ଏବଂ ବହୁ ଆଦୃତ ସୃଷ୍ଟିରେ ପରିଣତ କରିଥିଲେ ।

କୌରବ-ପାଣ୍ଡବଙ୍କର ଅଷ୍ଟାଦଶ ଦିବସର ଯୁଦ୍ଧ ସଚରାଚର ମହାଭାରତ ଯୁଦ୍ଧ ରୂପେ କଥିତ, ୪ଟି ପର୍ବରେ ତାର ବିସ୍ତୃତ ବିବରଣୀ ସ୍ଥାନ ପାଇଛି । ପର୍ବର ନାମକରଣ ମଧ୍ୟ ଯୁଦ୍ଧର ଗତି ଅନୁସାରେ କୌରବ ପକ୍ଷର ସେନାପତିଙ୍କର ନାମକୁ ନେଇ ଦିଆଯାଇଛି । ପ୍ରଥମ ଦଶ ଦିନରେ ଯୁଦ୍ଧ ବର୍ଣ୍ଣନାରେ ଭୀଷ୍ମ ପୂର୍ବ ପର ପଞ୍ଚଦିନର ଯୁଦ୍ଧ ଦ୍ରୋଣ ପର୍ବରେ ଲିଖାଯାଇଛି । ଦୁଇ ଦିନରେ ଯୁଦ୍ଧ କର୍ଣ୍ଣ ପର୍ବରେ ଥିଲାବେଳେ, ଶେଷ ଦିନର ଯୁଦ୍ଧ ବର୍ଣ୍ଣନା ହେଲା ଶଲ୍ୟ ପର୍ବ । ସାରଳାଦାସଙ୍କ ଭାଷାରେ—

"ଭୀଷ୍ମ ଦଶଦିନ ଯେ ଦ୍ରୋଣ ପଞ୍ଚ ଦିବସ
ଦୁଇଦିନେ କର୍ଣ୍ଣ ହେଲା ପ୍ରାଣେ ନାଶ ।
ସତର ଦିନ ଆରକୁ ହୋଇଲା ସଂପୂର୍ଣ୍ଣ
କୁମ୍ଭମାସ କୃଷ୍ଣପକ୍ଷ ଚତୁର୍ଥୀର ଦିନ ॥"

ମୂଳ ମହାଭାରତରେ ଏଇ ଯୁଦ୍ଧ ଦିବସର ଧାରାକୁ କଡ଼ାକଡ଼ି ଭାବରେ ଅନୁସରଣ କରାଯାଇଥିଲେ ମଧ୍ୟ ସାରଳାଦାସ ସେ ସମ୍ପର୍କରେ ସଚେତନ ନଥିବାର ଦେଖାଯାଇଛି । ଭୀଷ୍ମ ଏବଂ ଦ୍ରୋଣଙ୍କ ସେନାପତିତ୍ୱରେ ହୋଇଥିବା ଯୁଦ୍ଧକୁ ସେ ମୂଳ ଗ୍ରନ୍ଥର ଅନୁରୂପ କରିଥିଲେ ମଧ୍ୟ କର୍ଣ୍ଣ ଯୁଦ୍ଧ ସମୟକୁ ଗୋଳମାଳ କରି ଦେଇଛନ୍ତି । ତାଙ୍କର ମହାଭାରତରେ ଯୁଦ୍ଧର ବିବରଣୀ ବର୍ଣ୍ଣନା ଅନୁସାରେ ୧୯ ଦିନ ହୋଇଥାଏ, କିନ୍ତୁ ୧୮ ଦିନ ଏ ଯୁଦ୍ଧସମୟକୁ ସେ ମଧ୍ୟ ଗ୍ରହଣ କରିଯାଇଛନ୍ତି, ତେଣୁ ତାହା ପରବର୍ତ୍ତୀ ପଣ୍ଡିତମାନଙ୍କର ପ୍ରକ୍ଷିପ୍ତତାର କାରଣରୁ ସଂଘଟିତ ହୋଇଛି ବୋଲି ମନେକରାଯାଏ । ଆଦିକବି ସାରଳାଦାସଙ୍କ ବର୍ଣ୍ଣନା ଅନୁସାରେ କର୍ଣ୍ଣ ଅଢ଼େଇ ଦିନ ଯୁଦ୍ଧକରି ମଧ୍ୟାହ୍ନରେ ନିହତ ହୋଇଥିଲେ । ତାପର ସମସ୍ତ ଦୁର୍ଯୋଧନ ପ୍ରମୁଖ କୌରବ ପକ୍ଷ ବାଳାପରେ ବିତାଇ ଦେଇଥିଲେ, ତାପରଦିନ ଅର୍ଥାତ୍ ଉନବିଂଶ ଦିବସରେ ଶଲ୍ୟ ଯୁଦ୍ଧ କରିଥିଲେ । ଏହା କୌଣସି ପ୍ରକାରେ ଗ୍ରହଣୀୟ ନୁହେଁ ।

ଯୁଦ୍ଧ ପ୍ରକରଣର ଆଦ୍ୟ ଅଂଶ ହେଲା ମହାଭାରତର ଭୀଷ୍ମପର୍ବ । ସେଥିରେ ଏଇ ଭୟାବହ ଯୁଦ୍ଧର ପ୍ରଥମ ଦଶଦିନର ଯୁଦ୍ଧ ଯେ କେବଳ ସ୍ଥାନ ପାଇଛି ତା ନୁହେଁ । ମହାଭାରତର ସାରରୂପେ ବର୍ଣ୍ଣିତ ଶ୍ରୀମଦ୍ ଭାଗବତ ଗୀତା ମଧ୍ୟ ଏହାର ଅଂଶ ବିଶେଷ । ମୂଳ ସଂସ୍କୃତ ମହାଭାରତକୁ ସାଧାରଣ ଭାବରେ ୪ଭାଗରେ ବିଭକ୍ତ କରାଯାଇଛି । ୧୨୨ ଅଧ୍ୟାୟ ବିଶିଷ୍ଟ ଏଇ ପର୍ବରେ ପ୍ରଥମ ୧୦ଟି ଅଧ୍ୟାୟ "ଜମ୍ବୁଖଣ୍ଡ ବିନିର୍ମାଣ ପର୍ବ", ପରବର୍ତ୍ତୀ ୨ଟି ଅଧ୍ୟାୟ "ଭୂମିପର୍ବ" । ତୃତୀୟ ଭାଗ ହେଲା "ଶ୍ରୀମଦ୍ ଭଗବତ ଗୀତାର ପ୍ରକରଣ, ଆରମ୍ଭ ଏବଂ ବର୍ଣ୍ଣନ ଯାହାପାଇଁ ୩୦ ଅଧ୍ୟାୟ ଦିଆଯାଇଛି । ପରିଶେଷରେ "ଭୀଷ୍ମବଧ ପର୍ବ" ଯାହା ଅବଶିଷ୍ଟ ୮୦ଟି ଅଧ୍ୟାୟରେ ବର୍ଣ୍ଣିତ ହୋଇଛି । ସାରଳା ଦାସଙ୍କର ଭୀଷ୍ମପର୍ବ କିନ୍ତୁ ମାତ୍ର ୨୪ ଅଧ୍ୟାୟ ବିଶିଷ୍ଟ । ସେଥିରେ ଯେ ମୂଳ

ମହାଭାରତର ପ୍ରଥମ ଛଅଗୋଟି ଉପପର୍ବକୁ ପ୍ରାୟତଃ ପରିହାର କରିଛନ୍ତି । ସଂସ୍କୃତ ମହାଭାରତର ଭୀଷ୍ମପର୍ବରେ ପ୍ରଥମ ଦୁଇଟି ଉପପର୍ବରେ କୁରୁକ୍ଷେତ୍ରରେ କୁରୁ ଏବଂ ପାଣ୍ଡବଙ୍କର ସୈନ୍ୟସଜ୍ଜା, ଏବଂ ବ୍ୟାସଙ୍କ ଦ୍ୱାରା ଧୃତରାଷ୍ଟ୍ରଙ୍କ ଅନୁରୋଧରେ ସଞ୍ଜୟଙ୍କୁ ମହାଭାରତ ଯୁଦ୍ଧ ଦେଖିବା ପାଇଁ ଦିବ୍ୟଦୃଷ୍ଟି ପ୍ରଦାନ ବ୍ୟତୀତ ଅନ୍ୟପ୍ରସଙ୍ଗ ଗୁଡ଼ିକ ଅପ୍ରାସଙ୍ଗିକ । ସେଥିରେ ବର୍ଣ୍ଣନା କରାଯାଇ ଥିବା ପୃଥିବୀ, ସୁଦର୍ଶନ ଦ୍ୱୀପ, ମାଲ୍ୟବାନ ଗିରି, ରମଣକ ବର୍ଷ, ଶାକଦ୍ୱୀପ, ଉତ୍ତର ଦ୍ୱୀପ ପ୍ରଭୃତି ଯୁଦ୍ଧ ସହିତ ପ୍ରତ୍ୟକ୍ଷ ଭାବରେ ସମ୍ପୃକ୍ତ ନୁହେଁ, ତେଣୁ ସେଗୁଡ଼ିକୁ ପରିତ୍ୟାଗ କରି ଆଦିକବି ସାରଳା ଉତ୍ତମ ସମ୍ପାଦନାର କର୍ତ୍ତବ୍ୟ କରିଛନ୍ତି । ଯୁଦ୍ଧର ଆରମ୍ଭ ପୂର୍ବରୁ ଅନେକ ଅଦରକାରୀ କଥା କହି ପାଠକ ଶ୍ରୋତାମାନଙ୍କୁ ଧୈର୍ଯ୍ୟହରା ନକରି ସିଧାସଳଖ କୌରବଶ୍ରେଷ୍ଠ ଦୁର୍ଯ୍ୟୋଧନ ଦ୍ୱାରା ଆସନ୍ନ ଯୁଦ୍ଧପାଇଁ ପିତାମହ ଭୀଷ୍ମଙ୍କୁ ସେନାପତି ପଦରେ ବରଣ କରିବା ପ୍ରସଙ୍ଗରୁ ହିଁ ସାରଳାଦାସ ଭୀଷ୍ମପର୍ବ ଆରମ୍ଭ କରିଛନ୍ତି । ସେଥିପାଇଁ ମୂଳ ମହାଭାରତର ଭୀଷ୍ମବଧ ପର୍ବ (ଭୀଷ୍ମପର୍ବରେ) ୮୦ଟି ଅଧ୍ୟାୟରେ ଯୁଦ୍ଧର ପ୍ରସ୍ତୁତି ଏବଂ ପ୍ରଥମ ୧୦ ଦିନର ଯୁଦ୍ଧ ବର୍ଣ୍ଣନାକୁ ସ୍ଥାନ ଦେଇଥିଲା ବେଳେ ସାରଳା ଦାସଙ୍କ ମହାଭାରତରେ ସେଥିପାଇଁ ଆବଶ୍ୟକ ପଡ଼ିଛି ମାତ୍ର ୨୧ଟି ଅଧ୍ୟାୟ । ଏପରିକି ସାରଳା ଦାସ ୧୦ ଦିନର ମହାଭାରତ ଯୁଦ୍ଧକୁ ମୂଳ ଗ୍ରନ୍ଥର ୬୮ଟି ଅଧ୍ୟାୟ ପରିବର୍ତ୍ତେ ମାତ୍ର ୧୦ଟି ଅଧ୍ୟାୟରେ ଶେଷ କରିଛନ୍ତି । ସେଥିପାଇଁ ମୂଳଗ୍ରନ୍ଥର ପାଣ୍ଡିତ୍ୟପୂର୍ଣ୍ଣ ବସ୍ତୁକୁ ସେ ଯେପରି ବାଦ ଦେଇଛନ୍ତି, ସେହିପରି ଅନେକ ପ୍ରକରଣକୁ ପ୍ରାସଙ୍ଗିକ ସ୍ଥାନରେ ପୂର୍ବରୁ କିମ୍ବା ପରେ ମଧ୍ୟ ବର୍ଣ୍ଣନା କରିଛନ୍ତି ।

ଶ୍ରୀମଦ୍ ଭଗବତ ଗୀତା ସଂସ୍କୃତ ମହାଭାରତର ମଣି ରୂପେ ପରିଚିତ ଯାହା ଭୀଷ୍ମପର୍ବକୁ ମଣ୍ଡନ କରିଛି । ସାରଳା ମହାଭାରତରେ କିନ୍ତୁ ତାହା ପରିତ୍ୟକ୍ତ । ଯୁଦ୍ଧକ୍ଷେତ୍ରରେ ନିଜର ପ୍ରିୟଜନମାନଙ୍କୁ ଦର୍ଶନ କରି ପାଣ୍ଡବ ଫାଲଗୁନ ଯୁଦ୍ଧ ପାଇଁ ଅନିଚ୍ଛା ପ୍ରକାଶ କରିଛନ୍ତି । ଅର୍ଜ୍ଜୁନଙ୍କ ମୁଖରେ—

"ବାନ୍ଧବଜଣ ପିତୃହରି ନାନା ସ୍ୱାର୍ଥ ବଧ
ସେକ ସହୋଦରେ କର୍ମେ ହୋଇବୁ ଦ୍ୱନ୍ଦବାଦୀ ।୫୭।
ନୋହୁନା ରାଜ୍ୟଭାର ନୋହୁ ଯେ ସଂଗ୍ରାମ
ସେତେ ଦ୍ୱନ୍ଦ ମୋତେ ନକରାଅ ପୁରୁଷଙ୍କ ଉତ୍ତମ ।"୫୮।

(ସା. ମ, ଭୀଷ୍ମପର୍ବ ପୃ ୯୫)

ସାରଥି ଶ୍ରୀକୃଷ୍ଣଙ୍କ ପାଇଁ ଏହାହିଁ ପରୀକ୍ଷାର ସମୟ । ଅନିଚ୍ଛୁ ଅର୍ଜ୍ଜୁନଙ୍କ ମନରେ ଯୁଦ୍ଧେଚ୍ଛା ଜଗାଇଦେବା ପାଇଁ ତାଙ୍କର ପ୍ରବର୍ତ୍ତନାର ସ୍ୱରୂପ ହିଁ ସଂସ୍କୃତ 'ମହାଭାରତ'ରେ ଶ୍ରୀମଦ୍ ଭଗବତ ଗୀତା ।

"ଅର୍ଜୁନଙ୍କ ମୁଖରୁଂ ଏମନ୍ତ ବାକ୍ୟ ଶୁଣି
ଅମୃତଭୁତ ଜାଣି ହସିଲେ ଦେବ ଚକ୍ରପାଣି ।
ନରୁତାନ୍ତ ବୋଲନ୍ତି ଏହି ସୋଦରମା ପଣପେନ
ମାତ୍ର ମୋହେ ବଣ୍ୟ ଗଳକ ବୀର ଫାଲଗୁନ
ଏହି ମୋହ ଗ୍ରୁଣ୍ଡକର ଏହି ସମୟେ ପସଇ କେଉଣ ବାଗେ
କୃଷ୍ଣେଣ ମନାଇବା ବୋଲି ମନେ ବସ୍ୱରନ୍ତି ଶ୍ରୀରଙ୍ଗେ ।"

ଏଇଠି ମୂଳ ମହାଭାରତରେ ବ୍ୟାସଦେବ ଶ୍ରୀକୃଷ୍ଣଙ୍କ ମୁଖରେ ଅର୍ଜୁନଙ୍କ ପାଇଁ ସଂସାରର ଅସାର କର୍ମପାଇଁ ଆଗ୍ରହ ଏବଂ କ୍ଷତ୍ରୀୟ ଧର୍ମ ପାଳନର ଆବଶ୍ୟକତା ସମ୍ପର୍କରେ ଉପଦେଶ ଦେଇଛନ୍ତି । ତାହା ପାଣ୍ଡିତ୍ୟପୂର୍ଣ୍ଣ ଆଧ୍ୟାତ୍ମିକ ଜ୍ଞାନଯୁକ୍ତ ତକର ବ୍ୟାଖ୍ୟା । ଶୂଦ୍ରମୁନି ଜନର ପାଠକମାନଙ୍କ ପାଇଁ ତାର ଆବଶ୍ୟକତା ମଣି ନାହାନ୍ତି । ବଙ୍ଗଳା, ହିନ୍ଦୀ, ତେଲୁଗୁ, ଏବଂ ତାମିଲ ମହାଭାରତମାନଙ୍କରେ ଶ୍ରୀମଦ୍ ଭଗବତ୍ ଗୀତା ସମ୍ପର୍କରେ ସଂକ୍ଷିପ୍ତ ସୂଚନା ମାତ୍ର ଦିଆଯାଇଛି କିନ୍ତୁ ସାରଳା ମହାଭାରତରେ ତାହା ସମ୍ପୂର୍ଣ୍ଣ ଭାବରେ ପରିତ୍ୟକ୍ତ ।

ଜ୍ଞାନ ନୁହେଁ ତତ୍ତ୍ୱକର୍ମ, ତତ୍ତ୍ୱ ନୁହେଁ କାର୍ଯ୍ୟ ହିଁ ସାରଳା ଦାସଙ୍କ ପାଖରେ ପ୍ରଧାନ ହୋଇ ଦେଖାଦେଇଛି । ତାଙ୍କ ମହାଭାରତରେ ଚରିତ୍ରମାନେ ପଣ୍ଡିତ, ବିଦ୍ୟାବାଗୀଶ ନୁହନ୍ତି ଯାହାଙ୍କ ପାଇଁ ଆଧ୍ୟାତ୍ମିକ ଜ୍ଞାନ ପୂର୍ଣ୍ଣ ଉପଦେଶ ଆବଶ୍ୟକ । ଶ୍ରୀକୃଷ୍ଣ ତାଙ୍କର ମଧ୍ୟ ତତ୍ତ୍ୱଜ୍ଞାତା ପଣ୍ଡିତ ନୁହନ୍ତି । ସେମାନେ ସମସ୍ତେ ତାଙ୍କର ପାର୍ଶ୍ୱସ୍ଥ ଗ୍ରାମର ଗ୍ରାମବାସୀ ଯାହାଙ୍କ ପାଇଁ ଉପଦେଶ, ଭାଷଣ ନୁହେଁ, ଆବଶ୍ୟକ ଉଦାହରଣ । ସେଥିପାଇଁ ଶ୍ରୀକୃଷ୍ଣ ଅର୍ଜୁନଙ୍କ ଅନିଚ୍ଛା ଯୋଗୁ ତାଙ୍କୁ ଜ୍ଞାନ ଶିକ୍ଷା ନଦେଇ, କୌରବଙ୍କର ଅତ୍ୟାଚାରର କାହାଣୀ ବାରମ୍ବାର କହିଛନ୍ତି, ଉତ୍ତେଜିତ କରିଛନ୍ତି । ଅର୍ଜୁନଙ୍କ ଉତ୍ତେଜନାରେ ବଳମ୍ଭ ଦେଖି ଧର୍ମରାଜ ଯୁଧିଷ୍ଠିରଙ୍କୁ କୌରବଙ୍କ ବିରୁଦ୍ଧରେ ପ୍ରବର୍ତ୍ତାଇଛନ୍ତି । ପୁଣି ଥରେ ଅଗ୍ରଜ ଯୁଧିଷ୍ଠିରଙ୍କୁ କୌରବମାନଙ୍କ ଦ୍ୱାରା ଅପମାନିତ କରାଇଛନ୍ତି, ଅତ୍ୟାଚାରିତ କରାଇଛନ୍ତି ମଧ୍ୟମ ପାଣ୍ଡବ ଫାଲଗୁନଙ୍କୁ ଉତ୍ୟକ୍ତ କରିବାପାଇଁ ତା ସହିତ ତାଙ୍କର ଶ୍ଳେଷଯୁକ୍ତ ବକ୍ରୋକ୍ତି ଅର୍ଜୁନଙ୍କୁ ସମସ୍ତ ବନ୍ଧନ କାଟି ଏ ରକ୍ତାକ୍ତ ସମରରେ ଲମ୍ଫ ଦିଆଇବାପାଇଁ ଯଥେଷ୍ଟ ଥିଲା । କୌରବ ଆକ୍ରମଣର ଶିକାର ହୋଇଥିବା ଯୁଧିଷ୍ଠିରଙ୍କ ବିଷୟରେ ସେ ଅର୍ଜୁନଙ୍କୁ କହିଛନ୍ତି :

"ଗୋବିନ୍ଦ ବୋଇଲେ ପାର୍ଥ ନୁହଁଇଟି ଏମନ୍ତ ।
ସମସ୍ତେ ଅଭିନ୍ନ ତୋହର ସୋଦରରେ ପାର୍ଥ ॥
ଭୀଷ୍ମେ ତୋହର ଅଜା ଦ୍ରୋଣେ ତୋହର ଗୁରୁ ଶଲ୍ୟ ମାତୁଳ କର୍ଣ୍ଣ ତୋହର ଭ୍ରାତ ।

କର୍ମେ ମନେ ଅନ୍ତର ଧରୁ
କୁରୁପତି ଭାଇତୋର ଶକୁନି ମଉଳା
ଅଶ୍ୱତ୍ଥାମା ତୋର ଭ୍ରାତ କୃପେତ ଦ୍ରୋଣଙ୍କର ଶଳା
ତୁମେ ସମସ୍ତେ ଅଭିନ୍ନ ଅଟ ଏକ କାୟେ
ସେ କର୍ମେ ଯୁଧିଷ୍ଠିର ଚନ୍ଦ୍ରବେ ଅପଚୟେ
(ସା.ମ.-ସ୍ୱ.ପ.ପୃ. ୧୬୮)

ଶ୍ରୀକୃଷ୍ଣଙ୍କର କୁଟିଳତା, କାର୍ଯ୍ୟ ସାଧନ ପାଇଁ ଗ୍ରାମ୍ୟ ଖଳ ନାୟକୀୟ ଉଦ୍ୟମ ସଫଳ ହୋଇଛି ଅର୍ଜୁନ ଗାଣ୍ଡିବ ଟେକିଧରି ଯୁଦ୍ଧରେ ଝାସ ଦେଇଛନ୍ତି । ମହାଭାରତ ଯୁଦ୍ଧ ଆରମ୍ଭ ହୋଇଯାଇଛି । ସଂସ୍କୃତ ଗ୍ରନ୍ଥରେ ଶ୍ରୀମଦ୍ ଭଗବତ ଗୀତାର ଯେଉଁ ଲକ୍ଷ୍ୟ ତାହା ଏଠାରେ ମଧ୍ୟ ପୂରଣ ହୋଇଛି । ସେଠାରେ ଶ୍ରୀକୃଷ୍ଣଙ୍କର ଭୂମିକା ଯେପରି ସମ୍ପାଦିତ ହୋଇଥିଲା । ଏଠାରେ ତାହା ଅନ୍ୟ ପଥରେ ହେଲେ ମଧ୍ୟ ସାଧିତ ହୋଇଛି ।

ତା ଛଡ଼ା ସମସାମୟିକ ପରିବେଶ କଥା ମଧ୍ୟ ବିଚାରକୁ ନେବାକୁ ପଡ଼ିଥିବ ତାଙ୍କୁ । ଅଗଣିତ, ଅଜ୍ଞାନୀ, ଗ୍ରାମ୍ୟ ଜନତା ଯେଉଁମାନେ ସଂସ୍କୃତ ସାହିତ୍ୟର ଏ ଅପହଞ୍ଚ ପୁଷ୍କରିଣୀରେ ସ୍ନାନ କରିବେ ତାଙ୍କୁ ହିଁ ସେ ଦୃଷ୍ଟି ଦେଇଛନ୍ତି, ସେମାନଙ୍କୁ ରୁକ୍ଷ କଣ୍ଟକୁର ଶିଳା ରୂପି ତତ୍ତ୍ୱରେ ଭାରାକ୍ରାନ୍ତ ନକରି କୋମଳ ପୁଷ୍ପତୁଲ୍ୟ ତରଳ ଗଳ୍ପ ସାହାଯ୍ୟରେ ଶାନ୍ତି ପ୍ରଦାନ କରିବା ଥିଲା ତାଙ୍କର ଲକ୍ଷ୍ୟ । ଯେଉଁମାନେ ଜ୍ଞାନୀ, ପଣ୍ଡିତ ସେମାନେ ବ୍ୟାସଙ୍କ ପାଖକୁ ଯାଆନ୍ତୁ, କିନ୍ତୁ ବ୍ୟାସ ପଣ୍ଡିତଙ୍କ ହେୟମନ୍ୟ ଅଶିକ୍ଷିତ,ଅପଣ୍ଡିତଙ୍କୁ ହିଁ ସେ ସାଉଁଟି ଧରିଛନ୍ତି । ସେତେବେଳେ ପୃଥ୍ୱୀ ସହଜିଆ ଅଭିବ୍ୟକ୍ତି ଯୁକ୍ତ ସାମାଜିକ ଆନ୍ଦୋଳନରେ ଓଡ଼ିଆମାନେ ଅନଭିଜ୍ଞ । ପାଣ୍ଡିତ୍ୟ ଦେଖାଇବାକୁ ଚେଷ୍ଟା କରିଥିଲେ ସାରଳା ଦାସ ହୁଏତ ପାରିବେଶିକ ରୂପରେ ଅପାଂକ୍ତେୟ ହୋଇ ପଡ଼ିଥାନ୍ତେ । ସେଥିପାଇଁ ତରଳ ଆଦି ରସାତ୍ମକ ଏବଂ ବୀରତ୍ୱ ବ୍ୟଞ୍ଜକ ଗଳ୍ପର ଆବରଣ ତଳେ ଉପଲକ୍ଷ୍ୟକୁ ସେ ସ୍ଥାପିତ କରିଛନ୍ତି । କର୍ମ, ଜ୍ଞାନ ସାଂଖ୍ୟ, ଅଧ୍ୟାତ୍ମ୍ୟ, ଭକ୍ତି ପ୍ରଭୃତିକୁ ଯୋଗ ରୂପେ ଉପସ୍ଥାପନା କରି ନାହାନ୍ତି, କରିଛନ୍ତି କାର୍ଯ୍ୟରୂପେ, ତତ୍ତ୍ୱ ଭାବରେ ନକହି କହିଛନ୍ତି ଗଳ୍ପରୂପେ ଆଉ କାହାଣୀ କହିଲାବେଳେ ସବୁରି ଅଜାଣତରେ ସେଥିରେ ତତ୍ତ୍ୱକୁ ଖଞ୍ଜି ଦେଇଛନ୍ତି । 'ଗୀତା' ତେଣୁ ସାରଳା ମହାଭାରତରେ ମଣି ରୂପେ ସଂସ୍ଥାପିତ ନ ହୋଇ ବିଭୂତି ସ୍ୱରୂପ ପରିବ୍ୟାପ୍ତ ହୋଇଛି । ସେଥିରେ ପଣ୍ଡିତ ସାରଳା ଦାସ ବଳି ପଡ଼ିଛନ୍ତି ନିଜକୁ ମୂର୍ଖ କହି ଅପଣ୍ଡିତର ବାହାନା ଦେଖାଇ । ଏହି ସଫଳତାକୁ ନିଜର କରିବା ପାଇଁ ସେ ବେଶ୍ ସହଜ ଭାବରେ ସବୁକଥାକୁ ଉପସ୍ଥାପନ କରି ଆସିଛନ୍ତି । ସେଥିପାଇଁ

ସେଇଁଠାରେ ତତ୍ତ୍ୱକଥା, ସେ ତାହାକୁ ଏଡ଼େଇ ଯାଇଛନ୍ତି, ନିଜକୁ କ୍ଷୁଦ୍ର କରି, ମୂର୍ଖ ରୂପେ ପରିଚୟ ଦେଇ ।

"ଅଜପା ଅପଣ୍ଡିତ ମୁଁ ଅକର୍ମଣ୍ୟ ଅଟଇ । ଶ୍ରୀ ଚଣ୍ଡି ସାରେଳା ବାସୁକର ସେମାନେ ଭେଟାଇ ।।"

(ସା. ମ.-ଶ୍ରୀ.ପ. ପୃ ୨୩୭)

— ୨ —

କୁରୁ କ୍ଷେତ୍ରରେ ମହାଭାରତ ଯୁଦ୍ଧର ପ୍ରଥମ କାଣ୍ଡାରୀ ହେଲେ ପିତାମହ ଭୀଷ୍ମ । ପ୍ରଥମ ଦଶ ଦିନର ଯୁଦ୍ଧରେ ସେନାପତିତ୍ୱ କରି ଏଇ ଅଧର୍ମ ଯୁଦ୍ଧକୁ ସେ ଧର୍ମମାର୍ଗରେ ପରିଚାଳନା କରିବାକୁ ଚେଷ୍ଟାକରି ଆସିଥିଲେ । ଆଜୀବନ ସତ୍ୟ, ନିଷ୍ଠା, ନ୍ୟାୟ ଏବଂ ଧର୍ମର ସମର୍ଥନ କରି ମଧ୍ୟ ନିଜର ଇଚ୍ଛା ବିରୁଦ୍ଧରେ ସେ ଏ ଅନ୍ୟାୟ ଯୁଦ୍ଧରେ ସଂପୃକ୍ତ ହୋଇ ପଡ଼ିଥିଲେ । ଯୁଦ୍ଧ ପୂର୍ବରୁ ପାଣ୍ଡବ ଅଗ୍ରଜ ଯୁଧିଷ୍ଠିରଙ୍କୁ ଆଶୀର୍ବାଦ ଦେଇ ସେ କହିଥିଲେ, "ଭୀଷ୍ମେ ବୋଇଲେ ତୋର ମନୋବାଞ୍ଛା ସିଦ୍ଧହେଉ, ଅମ୍ଭର ଆଜ୍ଞା ଘେନ ବୃଦ୍ଧ ଶତ୍ରୁ କ୍ଷୟେ ଯାଉ ।। ହସ୍ତିନା ଯଇନ୍ତା ଇନ୍ଦ୍ରପ୍ରସ୍ଥ ଯମ ପ୍ରସ୍ଥ ବାରୁଣାବନ୍ତସ୍ତେ ପଞ୍ଚୁକଟକେ ହୁଅରୁ ଏକଛତ୍ର ।।

(ଶା.ମ.-ଭୀ.ପ. ପୃ ୧୦୨)

ଏପରିକି ସର୍ବାନ୍ତକରଣରେ ପାଣ୍ଡବ ପକ୍ଷର ବିଜୟ ଚାହୁଁଥିଲେ ମଧ୍ୟ କୌରବ ଅର୍ଥରେ ପ୍ରତିପାଳିତ ହୋଇଥିବାରୁ ସେ ଏ ପକ୍ଷ ତ୍ୟାଗ ନକରିବା କଥା ମଧ୍ୟ କହିଥିଲେ, "...ତୁମେ ଯୁଦ୍ଧକର, ଯୁଦ୍ଧରେ ଜୟଲାଭକର ଓ ଅନ୍ୟ ଯାହା ତୁମର ଅଭିଳାଷ ଥାଏ, ଯୁଦ୍ଧରେ ତାହା ସୁଦ୍ଧା ପ୍ରାପ୍ତ ହେବ । ତୁମ୍ଭେ ଆମ୍ଭ ନିକଟରୁ କି ବର ପ୍ରାର୍ଥନା କରିବ ତାହା କହ, ଏପରି ହେଲେ ତୁମର ପରାଜୟର ସମ୍ଭାବନା ନାହିଁ । ମହାରାଜ ! ପୁରୁଷ ଅର୍ଥର ଦାସ ଅଟେ, ଅର୍ଥ କାହାରି ଦାସ ନୁହେଁ-ଏହା ସତ୍ୟ । ଆମ୍ଭେ ଅର୍ଥଦ୍ୱାରା କୌରବଙ୍କ ନିକଟରେ ବନ୍ଧ ରହିଅଛୁ ।" (ସଂ. ମ.-ଭୀ.ପ-ଗୋବିନ୍ଦଚନ୍ଦ୍ର ମହାପାତ୍ର ପୃ ୧୭୦) ଏହା ଏକ ଅପୂର୍ବ ପରିବେଶ ଥିଲା ସେ ନିଜେ କୌରବ ପକ୍ଷରେ ଥିଲେ କିନ୍ତୁ ତାଙ୍କର ଶୁଭେଚ୍ଛା ଥିଲା ପାଣ୍ଡବ ପକ୍ଷରେ, ସ୍ଥୂଳ ଶରୀର ତାଙ୍କର ଥିଲା କୌରବ ପକ୍ଷରେ ଆତ୍ମା କିନ୍ତୁ ସତତଃ ପାଣ୍ଡବ ବିଜୟ ହିଁ କାମନା କରୁଥିଲା ।

ଗାଙ୍ଗେୟ ସତ୍ୟବ୍ରତଙ୍କର ତ୍ୟାଗ ଆଦର୍ଶ, ପାଣ୍ଡିତ୍ୟ, ବୀରତ୍ୱ ଏବଂ ସ୍ନେହ ତାଙ୍କୁ ମହାଭାରତୀୟ ରାଜନ୍ୟମଣ୍ଡଳୀରେ ଧ୍ରୁବ ସଦୃଶ ସ୍ଥାପନ କରି ଥିଲା । ପିତା ଶାନ୍ତନୁଙ୍କର ସୁଖପାଇଁ ସେ ନିଜର ଭବିଷ୍ୟତର ସୁଖକୁ ଜଳାଞ୍ଜଳୀ ଦେଇଥିଲେ ପୁଣି ପରିବାରର ସୁରକ୍ଷା ପାଇଁ ବ୍ୟକ୍ତିଗତ ଇଚ୍ଛାକୁ ମଧ୍ୟ ଦମନ କରିଥିଲେ । ପିତାମହର ସମ୍ମାନ ନେଇ ସେ

ହସ୍ତିନାରେ ସୋମବଂଶର ତିନି ପୁରୁଷର ସନ୍ତାନମାନଙ୍କୁ ସ୍ନେହ ଦେଇ ରକ୍ଷାକରି ଆସିଥିଲେ । ଏ ପରିବାରର ସମସ୍ତ ଅନ୍ୟାୟ ଅସତ୍ୟ ଏବଂ ବ୍ୟଭିଚାରର ମଧ୍ୟରେ ସେହି ଥିଲେ ନ୍ୟାୟ ଏବଂ ସତ୍ୟର ଆଲୋକବର୍ତ୍ତିକା । ବଂଶରକ୍ଷା ନାମରେ ବ୍ୟଭିଚାର ପାଇଁ ବିମାତା ସତ୍ୟବତୀଙ୍କର ପ୍ରଲୋଭନକୁ ସେ ପାଦରେ ଦଳିଦେଇ ଥିଲେ ସତ୍ୟର ପ୍ରତିଷ୍ଠା ପାଇଁ । "ସୂର୍ଯ୍ୟ ଯଦି ଶୀତଳ ହୁଏ ଚନ୍ଦ୍ର ଶୀତଳତା ତ୍ୟାଗ କରେ, ଧର୍ମରାଜ ଧର୍ମ, ପୃଥିବୀ ଗନ୍ଧ ଓ ଜଳରସ ଶୂନ୍ୟ ହୁଏ, ତଥାପି ସତ୍ୟବ୍ରତ କେବେହେଲେ ସତ୍ୟ ପ୍ରତିଜ୍ଞାରୁ ବିଚ୍ୟୁତ ହେବନାହିଁ ।" (ସଂ.ମ.-ଆ.ପ. ପୃ ୧୭ ଅଧ୍ୟାୟ) ପିତୃହୀନ ପାଣ୍ଡବ ଏବଂ ଦୃଷ୍ଟିହୀନ ଧୃତରାଷ୍ଟ୍ରଙ୍କ ପୁତ୍ର କୌରବମାନଙ୍କୁ ସେ ପିତାମହର ସ୍ନେହ ଦେଇ ପାଳନ କରି ଆସିଥିଲେ । ଅନ୍ୟାୟ, ଅସତ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାକୁ ଉପଦେଶ ଦେଇ ଆସିଥିଲେ କିନ୍ତୁ ବ୍ୟଭିଚାର ଏବଂ ଅନ୍ୟାୟର ମଧ୍ୟରୁ ଯେଉଁମାନେ ସୃଷ୍ଟି ସେମାନେ ସତ୍ୟର ପଥରେ ଯାନ୍ତେ ବା କିପରି ? ତାଙ୍କର ସମସ୍ତ ଆନ୍ତରିକତା ସତ୍ତ୍ୱେ ପିତାମହ ଦେବବ୍ରତ ପୌତ୍ର କୌରବ ମାନଙ୍କୁ ପତନ ମୁଖରୁ ଅଟକେଇ ପାରିଲେ ନାହିଁ । ନିଜେ ଇଚ୍ଛାମୃତ୍ୟୁ ବଳରେ ବଳୀୟାନ ହୋଇ ମଧ୍ୟ ପିଏ ପ୍ରତିଜ୍ଞା ରକ୍ଷା ପାଇଁ ଅମ୍ବାର ଅଭିଶାପକୁ ମୁଣ୍ଡ ପାତି ସହିନେଲେ ଶତ ଉପଦେଶ ସତ୍ତ୍ୱେ ସେ ନିଜର ପୌତ୍ରମାନଙ୍କୁ ସର୍ବନାଶୀ ଯୁଦ୍ଧରୁ ବିରତ କରି ପାରିଲେ ନାହିଁ । ମହାଭାରତ ଯୁଦ୍ଧ ଅବଶ୍ୟମ୍ଭାବୀ ହୋଇ ପଡ଼ିଲା ଏବଂ ପିତାମହ ଭୀଷ୍ମହିଁ ହେଲେ ତାର ପ୍ରଥମ ସେନାପତି । ସେ ଏଇ ସମରର ଫଳାଫଳ ସମ୍ପର୍କରେ ପୂର୍ବରୁ ଅବହିତ ହୋଇ ସାରିଥିଲେ । ସେଥିପାଇଁ ଆଶୀର୍ବାଦ ଦେଲାବେଳେ ପାଣ୍ଡବମାନଙ୍କୁ ନିଜର ମୃତ୍ୟୁଭେଦ ମଧ୍ୟ ପ୍ରକାଶ କରି ଦେଇଥିଲେ ।

ଅଷ୍ଟାଦଶ ଦିବସ ବ୍ୟାପି ଯୁଦ୍ଧର ପ୍ରଥମ ଦଶ ଦିନରେ କୌରବ ପକ୍ଷର ଯୁଦ୍ଧ ପରିଚାଳନା କରିଥିଲେ ପିତାମହ ଭୀଷ୍ମ । ଏଇ ଦଶ ଦିନର ଯୁଦ୍ଧ ବିବରଣୀ ସଂସ୍କୃତ ମହାଭାରତରେ ଭୀଷ୍ମ ପର୍ବର ତୃତୀୟ ଭାଗ "ଭୀଷ୍ମ ବଧ" ଅଂଶ ଅଧିକାର କରିଥିଲା ବେଳେ ସାରଳା ତାକୁ ସମସ୍ତ ଭୀଷ୍ମ ପର୍ବର ବିଷୟ କରି ତୋଳିଛନ୍ତି । ଭୀଷ୍ମଙ୍କୁ ସେନାପତି ପଦରେ ବରଣ କରିବାଠାରୁ ଆରମ୍ଭକରି ତାଙ୍କର ଶରଶଯ୍ୟା ଗ୍ରହଣ କରିବା ପର୍ଯ୍ୟନ୍ତ ଘଟଣା ଏଥିରେ ସ୍ଥାନପାଇଛି । ମହାଭାରତ ଯୁଦ୍ଧର ବର୍ଣ୍ଣନା ମୂଳ ସଂସ୍କୃତ ଗ୍ରନ୍ଥପରି, ଏଠି କିନ୍ତୁ ତାହା ଅନୁବାଦ ନୁହେଁ । ବ୍ୟାସଙ୍କର ପ୍ରତ୍ୟେକ ଦିନର ବର୍ଣ୍ଣିତ ଯୁଦ୍ଧର ବିଷୟ ଦାସଙ୍କଠାରୁ ଭିନ୍ନ । କେଉଁଦିନ କିପରି ଯୁଦ୍ଧ ହେଲା ତାହାପରେ କିଏ ଆସିଲା, ବା କିଏ ମୃତ୍ୟୁ ବରଣ କଲା, କିଏ ପାଣ୍ଡବ ପକ୍ଷରେ ସେନାପତି ହେଲା, କାହାକୁ କିଏ ବଧକଲା, ସେ ସମ୍ପର୍କରେ ମୂଳ ସଂସ୍କୃତ ଏବଂ ସାରଳା ରଚିତ ଗ୍ରନ୍ଥରେ ସମତା ରକ୍ଷିତ ହୋଇନାହିଁ । ପ୍ରଥମ ଦିନରୁହିଁ ଦୁଇପକ୍ଷର ମହାବୀର ମାନେ ପରସ୍ପର ସହିତ ଯୁଦ୍ଧରେ ପ୍ରମତ୍ତ ହେଲେ । "ସେହି ଦୁଇକୂଳରୁ ଶାର୍ଦ୍ଦୂଳ ପରସ୍ପର ବିଦ୍ୱେଷୀ ହେଲେ । ବଳଶାଳୀ ଗଙ୍ଗାନନ୍ଦନ ସମରରେ ପାର୍ଥକୁ ବିଦ୍ଧକରି ବିକମ୍ପିତ କରି ପାରିଲେ ନାହିଁ ।

ଓ ଚନ୍ଦ୍ରରୂପ ଅର୍ଜୁନ ମଧ୍ୟ ଭୀଷ୍ମଙ୍କୁ ଯୁଦ୍ଧରେ ବିଚଳିତ କରିବାକୁ ସମର୍ଥ ହେଲେ ନାହିଁ ।" (ଶା. ମ.-ଭୀ. ପ.-ଗୋ. ଚ. ମ. ପୃ ୧୮୧) ଦୁଇ ପକ୍ଷର ଏଇ ଲୋମହର୍ଷଣ ଯୁଦ୍ଧ ବର୍ଣ୍ଣନାରେ ମୂଳ ଗ୍ରନ୍ଥ ପରିପୂର୍ଣ୍ଣ । ପ୍ରଥମ ଦିନର ଯୁଦ୍ଧରେ ହିଁ ମଦ୍ରରାଜ ଶଲ୍ୟଙ୍କ ଦ୍ୱାରା ବିରାଟ ପୁତ୍ର ଉତ୍ତରକୁମାର ଏବଂ ସେନାପତି ଗାଙ୍ଗେୟ ଦ୍ୱାରା ଉତ୍ତର ଅନୁଜ ଶ୍ୱେତକୁମାରଙ୍କର ନିଧନ ଘଟିଛି । ଅଗ୍ରଜ ଦ୍ୱୟଙ୍କର ନିଧନରେ ବିରାଟନନ୍ଦନ ଶଙ୍ଖ ମହା ପରାକ୍ରମରେ କୁରୁସେନାମାନଙ୍କୁ ଅସ୍ତ ବ୍ୟସ୍ତ କରି ପକାଇଲେ । ତାହାଦେଖି ଶାନ୍ତନୁ ନନ୍ଦନ ଭୀଷ୍ମ ମଧ୍ୟ ପାଣ୍ଡବ ପକ୍ଷର ରଥୀଙ୍କୁ ସଂହାର କଲେ । ପ୍ରଥମ ଦିନର ଏ ପ୍ରବଳ ଯୁଦ୍ଧ ଏବଂ ବୀରମାନଙ୍କର ହତାହତ ମୂଳ ଗ୍ରନ୍ଥରେ ଥିଲେ ମଧ୍ୟ ସାରଳା ମହାଭାରତରେ ଯୁଦ୍ଧ ଭୀଷଣ ନଥିଲା । ପ୍ରଥମ ଦିନ କୌଣସି ବୀର ହତାହତ ହୋଇନାହାନ୍ତି ।

"ଉଭୟ ବଳ ଯୋଦ୍ଧାଙ୍କେ ନଘୁଞ୍ଚନ୍ତି ରଣେ,
ଥାଟ ଆବୋରି ସମର କରନ୍ତି ଜଣେ ଜଣେ ॥
ଏମନ୍ତେ ସନେକ ସମର କରନ୍ତି ବାଳବେନ ।
ଦିନକର ନାଥ ଅସ୍ତକୁ ଆଉ ବେଳ ଅଛଇ ଦିନଘଣ୍ଟି ॥"

(ଶା. ମ.—ଭୀ. ପ. ପୃ '୭୦)

ସେଦିନ କିନ୍ତୁ ଶିଖଣ୍ଡିଙ୍କର ପରାକ୍ରମ ସାରଳା ଦାସଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

ଦ୍ରୁପଦଙ୍କର ପୁତ୍ର ଭୁଜେ ଧରିବାଣ ।
ଶଲ୍ୟକଇଂ ନାରାଜ ଯେ ବର୍ଷିଲା ଗରୁଡ଼ବାଣ ॥

× × × ×

କୋନ୍ତି ମୁନେ ଧଇଲାକ ଶଲ୍ୟଙ୍କର ରଥ ଚୋଲ ।
ଚକାକୃତ କରି ବୁଲାଇଲା ମହାବଳୀ ॥
ଦେଖିଣ ବିରସ ଯେ ଗାଲବଂକର ସୁତ ।
ଶଲ୍ୟଂକର ବିଅର୍ଥେ ଧାଇଂଲେ ସୋମଦତ୍ତ ॥

(ଶା. ମ.-ଭୀ. ପ ପୃ ୧୫୮)

ପ୍ରଥମ ଦିନ ଭୀଷ୍ମଙ୍କର ପରାକ୍ରମ ଦେଖି ଦ୍ୱିତୀୟ ଦିନ ବେଳକୁ ଧର୍ମରାଜ ଯୁଧିଷ୍ଠିର ଚିନ୍ତିତ ହୋଇପଡ଼ିଲେ ଏବଂ ଯୁଦ୍ଧରୁ ଅପସରି ଯିବାପାଇଁ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ । ପାଣ୍ଡବ ସଖା ଦ୍ୱାରକାପତି ତାଙ୍କୁ ଆଶ୍ୱାସନା ଦେଇ ସେନାପତି ଧୃଷ୍ଟଦ୍ୟୁମ୍ନଙ୍କୁ ସର୍ବଶତ୍ରୁ ପୀଡ଼ନ କ୍ରୌଞ୍ଚାରୁଣ ବ୍ୟୂହ ରଚନା କରିବା ପାଇଁ ଆଦେଶ ଦେଲେ । ସେଦିନ ଭୀଷ୍ମ ଅର୍ଜୁନ ଯୁଦ୍ଧ ଏବଂ ଧୃଷ୍ଟଦ୍ୟୁମ୍ନ ଓ ଦ୍ରୋଣାଚାର୍ଯ୍ୟଙ୍କ ଯୁଦ୍ଧ ପ୍ରବଳ ହୋଇଥିଲା ।

ମହାବଳୀ ଭୀମ ସେଦିନ କଳିଙ୍ଗ ଏବଂ ନିଷାଦ ସହିତ ସମର କରି ପରିଶେଷରେ କଳିଙ୍ଗରାଜଙ୍କୁ ନିଧନ କରିଥିଲେ । ସାରଳା ଦାସ କିନ୍ତୁ ଦ୍ୱିତୀୟ ଦିନ ଦ୍ୱିତୀୟ ପାଣ୍ଡବ ଭୀମସେନର ପରାକ୍ରମରେ ଆକୃଷ୍ଟ ହୋଇପଡ଼ିଛନ୍ତି । ପାଣ୍ଡବ ପକ୍ଷରୁ ଦଶ ସହସ୍ର ରଥ ହତ ହୋଇଥିଲେ ମଧ୍ୟ ବୃକୋଦର ଅଶ୍ୱ ଓ ସୂତ ନିହତ କରିଥିଲେ, ସୋମଦତ୍ତଙ୍କୁ ପରାସ୍ତ କରିଥିଲେ କୃପଙ୍କ ରଥ ଓ ସାରଥିଙ୍କୁ ଧ୍ୱସ୍ତ କରିଥିଲେ । ପାଣ୍ଡବ ଶରଣାଗତ ଦୃର୍ଦ୍ଧକ୍ଷଙ୍କୁ ରଥରେ ବସାଇ ଭୂରିଶ୍ରବା ନେଇ ପଳାଇଲା ବେଳେ ବୀର ଭୀମସେନ ଶିଖଣ୍ଡି ସହିତ ମିଶି ତାଙ୍କୁ ମୁକ୍ତକରି ଆଣିଲେ ।''

ରେରେକାର ଶବଦ କରି ବୀର ପାଣ୍ଡବ ପଞ୍ଚାଣ
ଭୂରିସବାଙ୍କର ରଥେ ପିଟିଲା ଗିରିବର ଚୂଡ଼ଣା
ଅସାଷ୍ଟମ ହୋଇଣ ସେ ପଡ଼ିଲେ ଭୂମିରେ,
ରଥ ଭାଙ୍ଗି ଗଦା ପଡ଼ିଲା ଭୂରି ସବାଙ୍କ ଉପରେ
ଭୀମ ଦୃର୍ଦ୍ଧକ୍ଷ ଯେ ଶ୍ରୀଖଣ୍ଡ ତିନି ଯୋଧ
ଅର୍ଜୁନ ସନ୍ନିଧେ ଆସି ଶ୍ରୀକୃଷ୍ଣଙ୍କ ପାଦ ବନ୍ଦି ।

(ଶା. ମ.-ଭୀ. ପ. ପୃ ୧୮୧)

ସାରଳାଦାସଙ୍କର ଭୀଷ୍ମ ଦ୍ୱିତୀୟ ଦିନର ଯୁଦ୍ଧରେ ଯୋଦ୍ଧାଙ୍କର ହତାହତ ଦେଖି ବଡ଼ ବ୍ୟଥିତ ହୋଇ ପଡ଼ିଲେ ଏବଂ ସେଥିରୁ ମୁକ୍ତ ହେବାର ପଥ ଖୋଜିଲେ । ''ଭୀଷ୍ମେ ବୋଇଲେ ପ୍ରୋହିତେ ଆମ୍ଭେ ଅନେକ କଲୁ ହତା ଯେଥିକୁ ମନେ ମୋର ଲାଗିଲା ଗୁରୁ ଚିନ୍ତା, ଧର୍ମ ପୁରୋହିତ ବୋଇଲେ ଭୀଷ୍ମ ଅନ୍ନଦାନ କଲେ, ହତ୍ୟାଦି ବିମୋଚନ ହୋଇବହୋ ଜନ ପୁଷ୍ଟ ହେଲେ ।''

ତୃତୀୟ ଏବଂ ଚତୁର୍ଥ ଦିବସରେ ଏ ଯୁଦ୍ଧ ଆହୁରି ଭୟାବହ ଆକାର ଧାରଣ କରିଛି । ଭୀଷ୍ମ ଗାରୁଡ଼ ବ୍ୟୂହ ରଚନା କଲାବେଳେ ଅର୍ଜୁନ ଅର୍ଦ୍ଧଚନ୍ଦ୍ର ବ୍ୟୂହ କଲେ । ଭୀମ-ଘଟୋତ୍କଚ ବହୁ କୌରବ ସୈନ୍ୟ ନିହତ କରିଥିଲେ । କୌରବଙ୍କ ଏ ପରାଜୟରେ ଭୀଷ୍ମ ପାଣ୍ଡବ ସେନାଙ୍କ ପାଇଁ ଆତଙ୍କ ସୃଷ୍ଟି କଲେ । ଯୁଦ୍ଧର ଗତି ପାଣ୍ଡବଙ୍କ ବିପକ୍ଷରେ ଯାଉଥିବାର ଲକ୍ଷ୍ୟ କରି ସାରଥି ଶ୍ରୀକୃଷ୍ଣ ଅସ୍ତ୍ର ଧାରଣ କରିଥିଲେ ଯାହା ଅର୍ଜୁନଙ୍କ ଅନୁରୋଧରେ ପରିହିତ ହୋଇଥିଲା । ମୂଳ ଗ୍ରନ୍ଥର ଏ ଯୁଦ୍ଧ ବିବରଣୀ ସାରଳା ଦାସ ଗ୍ରହଣ କରିନାହାନ୍ତି । ବିରାଟ ସୁତ ଶ୍ୱେତଙ୍କୁ ସେ ପାଣ୍ଡବ ପକ୍ଷର ସେନାପତି ରୂପେ ବରଣ କରାଇଛନ୍ତି । ସମଧର୍ମୀ ବୀରମାନଙ୍କ ମଧ୍ୟରେ ଭୀଷଣ ଯୁଦ୍ଧ ହୋଇ ଚତୁର୍ଥ ଦିନରେ ଶ୍ୱେତ ଏବଂ କୃଷ୍ଣ ହତାହତ ହୋଇଛନ୍ତି । କୌରବ ପକ୍ଷର ପରାଜୟରେ ଦୁର୍ଯୋଧନ ଦ୍ରୋଣଙ୍କୁ ଆକ୍ଷେପ କରିଛି ।

ପଞ୍ଚମ ଦିନ ଯୁଦ୍ଧରେ ଭୀଷ୍ମ ମକର ବ୍ୟୂହରେ କୌରବ ସେନାଙ୍କୁ ସଜାଇ ଦେଇଛନ୍ତି । ଭୀମ ସହ ଯୁଦ୍ଧ କଲାବେଳେ ଅର୍ଜୁନ ଅଗ୍ରଜଙ୍କୁ ସାହାଯ୍ୟ କରିଛନ୍ତି, ଦ୍ରୋଣ ମଧ୍ୟ ଭୀଷ୍ମଙ୍କୁ ସାହାଯ୍ୟ କରିବା ପାଇଁ ଆଗଭର ହୋଇପଡ଼ିଛନ୍ତି । ପରଦିନ ଯୁଦ୍ଧରେ ମଧ୍ୟ ଭୀଷ୍ମ ବହୁପ୍ରକାର ନୂତନ ବ୍ୟୂହମାନ ସୃଷ୍ଟି କରି ପାଣ୍ଡବ ପକ୍ଷକୁ ଧ୍ୱସ୍ତ କରି ଚାଲିଛନ୍ତି । ଷଷ୍ଠ ଦିବସରେ ଭୀମ ବହୁ ରଥ ମହାରଥ ନିହତ କରିଥିଲା ବେଳେ ସପ୍ତମ ଦିବସରେ ଭୀଷ୍ମଙ୍କର ମଣ୍ଡଳ ବ୍ୟୂହ ସତ୍ତ୍ୱେ ବହୁ କୌରବ ସେନାନୀ କ୍ଷତ ବିକ୍ଷତ । ଭୀଷ୍ମଙ୍କ ପ୍ରଭାବ ପ୍ରତିହତ ପାଇଁ ଶିଖଣ୍ଡି ପଞ୍ଚମ ଦିନ ଯୁଦ୍ଧରେ ଲକ୍ଷ୍ୟ ପ୍ରଦାନ କରିଛନ୍ତି, ତାପର ଦିନ ନକୁଳ ପୁତ୍ର ଶତାନୀକ ପ୍ରଭୃତି ନିଧନ ହୋଇଛନ୍ତି ଏବଂ ସପ୍ତମ ଦିନ ଦ୍ରୋଣଙ୍କ ଦ୍ୱାରା ବିରାଟ ପୁତ୍ର ଶଙ୍ଖ ନିହତ । ଓଡ଼ିଆ ମହାଭାରତରେ ଏ ମଧ୍ୟରେ ଭୀଷ୍ମ କର୍ଣ୍ଣ ଆଦିଙ୍କର ପ୍ରବଳ ଯୁଦ୍ଧ ସମ୍ପର୍କରେ ବର୍ଣ୍ଣନା କରାଯାଇଥିଲେ ମଧ୍ୟ ସାରଳାଦାସ କୌଣସି ବ୍ୟୂହ ବା ରଥ ମହାରଥଙ୍କର ନାମ ଦେଇନାହାନ୍ତି । ମୂଳ ଗ୍ରନ୍ଥରେ ପ୍ରଥମ ଦିନରୁ ନିହତ ହୋଇଥିବା ବିରାଟ ପୁତ୍ର ଶ୍ୱେତ ଏଠି ପଞ୍ଚମ ଦିନରେ ଭୀଷ୍ମଙ୍କର ବ୍ରହ୍ମାସ୍ତ୍ର ଦ୍ୱାରା ହତ ହୋଇଛି । ଷଷ୍ଠ ଦିବସରେ ଅର୍ଜୁନ ଶରଜାଳରେ ବ୍ୟଥିତ ହୋଇ ଭୀଷ୍ମ ଅବାରଣୀ ଶକ୍ତି ପ୍ରୟୋଗ କରିଥିରେ ଯାହାକୁ ଶ୍ରୀକୃଷ୍ଣ ପରୋକ୍ଷରେ ଚକ୍ରପେଶି ନାଶ କରାଇଥିଲେ । ଏଠି ସୁଦର୍ଶନ ଶ୍ରୀକୃଷ୍ଣଙ୍କ ହସ୍ତରେ ଅର୍ପିଦେଇ ତାଙ୍କର ପ୍ରତିଜ୍ଞା ଭଙ୍ଗ ଯୋଗୁ ଭୀଷ୍ମଙ୍କୁ ଯୁଦ୍ଧ ବିମୁଖ କରେଇଛନ୍ତି । ବଳରାମଙ୍କର ଆଗମନରେ ଭୀଷ୍ମ କିନ୍ତୁ ଶ୍ରୀକୃଷ୍ଣଙ୍କର ଦୋଷକୁ ପ୍ରମାଣ କରାଇ ପାରିନାହାନ୍ତି । ବସ୍ତୁତଃରେ ବଳରାମ ମହାଭାରତ ଯୁଦ୍ଧ ପୂର୍ବରୁ ତୀର୍ଥ କରିବାକୁ ଯାଇଥିଲେ ମଧ୍ୟ ସାରଳା ଦାସ ତାଙ୍କୁ ଷଷ୍ଠ ଦିବସ ଯୁଦ୍ଧ ଶେଷ ହେବା ପର୍ଯ୍ୟନ୍ତ ଅଟକେଇ ରଖିଛନ୍ତି । ତାପରେ ଅବଶ୍ୟ ବଳରାମ ବୃଦ୍ଧ ହୋଇ ତୀର୍ଥ ଯାତ୍ରାରେ ବାହାରି ଯାଇଛନ୍ତି ।

ଅଷ୍ଟମ ଦିନ କୌରବ ପକ୍ଷରୁ ସାଗର ବ୍ୟୂହ ବିରୁଦ୍ଧରେ ପାଣ୍ଡବ ପକ୍ଷରେ ଧୃଷ୍ଟଦ୍ୟୁମ୍ନ ଶୃଙ୍ଗାଟକ ବ୍ୟୂହ ରଚନା କରିଛନ୍ତି । ସେଦିନ ଭୀମ ଦୁର୍ଯ୍ୟୋଧନଙ୍କ ଭ୍ରାତାମାନଙ୍କୁ ହତ୍ୟା କରିଛନ୍ତି । ତାଛଡ଼ା ଶକୁନି ଭ୍ରାତା ଏବଂ ଅମ୍ବାଳୁଷ ମଧ୍ୟ ପାଣ୍ଡବ ଯୋଦ୍ଧାଙ୍କ ଦ୍ୱାରା ନିହତ ହୋଇଛନ୍ତି । ନବମ ଦିନରେ ପାଣ୍ଡବମାନଙ୍କର ମହାବ୍ୟୂହ ଗଠନ କରା ଯାଇଛି । ଫାଲଗୁନି ପୁତ୍ର ଅଭିମନ୍ୟୁ କୌରବ ବ୍ୟୂହ ମଧ୍ୟରେ ପ୍ରବେଶ କରି ବହୁ କୌରବ ରଥୀଙ୍କୁ ବିପର୍ଯ୍ୟସ୍ତ କରି ପକାଇଛନ୍ତି । ଗାଙ୍ଗେୟଙ୍କର କଠୋରତା ଏବଂ ଅର୍ଜୁନଙ୍କର ନିଷ୍କ୍ରିୟତା ଲକ୍ଷ୍ୟକରି ବାସୁଦେବ ଶ୍ରୀକୃଷ୍ଣ ପୁଣିଥରେ ଚକ୍ର ହସ୍ତରେ ଭୀଷ୍ମ ନାଶ ପାଇଁ ଉଦ୍ୟତ ହୋଇଛନ୍ତି ଯାହା ଅର୍ଜୁନଙ୍କୁ ସଚେତ କରିଛି । ଭୀଷ୍ମଙ୍କର ପ୍ରତିହିଂସା ପରାୟଣତା ଲକ୍ଷ୍ୟ କରି ତାଙ୍କ ମୃତ୍ୟୁଭେଦ ଜାଣିବା ପାଇଁ ପାଣ୍ଡବମାନେ ଚେଷ୍ଟା କରିଥିଲେ । ସାରଳା ଦାସ ଏ ଦୁଇ ଦିନ ଯୁଦ୍ଧକୁ ମୂଳ ଯୁଦ୍ଧର ଅନୁରୂପ କରିଥିଲେ ମଧ୍ୟ ଶିଖଣ୍ଡିର ଆରମ୍ଭ ବର୍ଣ୍ଣନାରେ

ମୁଖର ହୋଇପଡ଼ିଛନ୍ତି । ଭୀଷ୍ମଙ୍କଠାରୁ ମୃତ୍ୟୁବାଣ ଆଣିବା ପାଇଁ ଏଠି ପାଣ୍ଡବ ମାନେ କପଟ ଛଳନାର ଆଶ୍ରୟ ନେଇଛନ୍ତି । ଅର୍ଜୁନ ଦୁର୍ଯ୍ୟୋଧନର ବେଶ ପରିଧାନ କରି ଭୀଷ୍ମଙ୍କୁ ପ୍ରତାରିତ କରିଛନ୍ତି । ଏ ସମସ୍ତ ଛଳନା ସୃଷ୍ଟିର ନାୟକ ହୋଇଛନ୍ତି ଶ୍ରୀକୃଷ୍ଣ ଅଟେ ।

ଦଶମ ଦିବସରେ ମହାବୀର ଭୀଷ୍ମଙ୍କର ସବୁ ଶକ୍ତି ପ୍ରଦର୍ଶନ ଏବଂ ପାଞ୍ଚ ଲକ୍ଷର ମାନଙ୍କୁ ଦଳନ । ପାଣ୍ଡବ ପକ୍ଷରୁ ୨୪ କୌରବ ସେନାଙ୍କର ହତାହତ ପାଇ ଚେଷ୍ଟା କରାଯାଇଛି । ଶିଖଣ୍ଡିକୁ ସେନାପତି କରି ବ୍ରହ୍ମଚାରୀ ଭୀଷ୍ମଙ୍କ ସହିତ ଯୁଦ୍ଧ ପାଇଁ ପ୍ରେରଣ କରାଯାଇଛି, ଯାହା ଫଳରେ ସେ ଅସ୍ତ୍ର ତ୍ୟାଗ କରିଛନ୍ତି । ଭୀଷ୍ମଙ୍କର ପତନ ପରେ ସେ ଶରଶଯ୍ୟାରେ ରହି ଅବଶିଷ୍ଟ ଆଠଦିନର ଯୁଦ୍ଧ ଦେଖିବାର ଇଚ୍ଛା ପ୍ରକାଶ କରିଛନ୍ତି । ଓଡ଼ିଆରେ ଏ ଯୁଦ୍ଧର ପରିବେଶ ଅଧିକ ବୈଚିତ୍ର୍ୟ ପୂର୍ଣ୍ଣ । ମଧ୍ୟମ ପାଣ୍ଡବ ନିଧନ ପାଇଁ ଭୀଷ୍ମ ଏଠି ଭୈରବାସ୍ତ୍ର ପ୍ରୟୋଗ କରିଛନ୍ତି, ଯାହାର ତେଜରୁ ରକ୍ଷା କରିବା ପାଇଁ କୃଷ୍ଣଙ୍କ ପାଇ ହନୁମାନ ନନ୍ଦିଘୋଷ ରଥକୁ ପାତାଳରେ ଚାପି ଦେଇଛନ୍ତି ଏବଂ ଶସ୍ତ୍ରଶକ୍ତି ଖର୍ବ ହେଲା ପରେ ପୁଣି ତାକୁ ଉତ୍ତୋଳନ କରିଛନ୍ତି । ସେହିପରି ନପୁଂସକ ଶିଖଣ୍ଡିକୁ ଦର୍ଶନ କରି ବ୍ରହ୍ମଚାରୀ ଭୀଷ୍ମ ଅମ୍ବାଙ୍କ କଥା ସ୍ମରଣ କରିଛନ୍ତି ଏବଂ ତାଙ୍କର ପତନ ଘଟିଛି ।

—ଗ—

ସାରଳା ଦାସ ଓଡ଼ିଆରେ ମହାଭାରତ ଲେଖିଥିଲେ । ବ୍ୟାସ ପ୍ରଦର୍ଶିତ ପଥରେ ଅନ୍ଧଭାବରେ ଚାଲି ନଯାଇ ସମସାମୟିକ ସମାଜର ଚାହିଦା ପୂରଣ ଥିଲା ତାଙ୍କର ଲକ୍ଷ୍ୟ । ସେଥିପାଇଁ ଏହାକୁ ସେ ମୌଳିକ ସୃଷ୍ଟିରେ ପରିଣତ କରିଥିଲେ । ସଂସ୍କୃତ ମହାଭାରତର କଙ୍କାଳକୁ ନେଇ ତା'କୁ ପରିପୁଷ୍ଟ କରି ଜୀବନ୍ୟାସ ଦେଇଥିଲେ । ପ୍ରାୟ ଏକସହସ୍ର ବର୍ଷ ପୂର୍ବର ଧୂଳିଧୂସର ସମାଜକୁ ନ ନେଇ ସେ ତାଙ୍କ ସମୟର ସାମାଜିକ ଜୀବନ ହିଁ ବର୍ଣ୍ଣନା କରିଛନ୍ତି । ଚରିତ୍ରମାନେ ତେଣୁ ସେଥିରେ ତାଙ୍କର ଦୃଷ୍ଟିରେ ଚଳ ପ୍ରଚଳ ହୋଇଥିବା ବନ୍ଧୁ, ପରିଜନ ପଣ୍ଡିତ, ମୂର୍ଖ ଆଦି ନରନାରୀ । କାହାଣୀ ଗୁଡ଼ିକ ତାଙ୍କ ଚାରିପାଖେ ଘଟିଯାଇଛି । ଆଉ ସେଥି ପାଇଁ ତାଙ୍କର ଏ ସୃଷ୍ଟି ଜୀବନ୍ତ ।

ଯୁଦ୍ଧ ବର୍ଣ୍ଣନାର ଆଦ୍ୟ କାଣ୍ଡ ଭୀଷ୍ମ ପର୍ବରେ ସେ ମହାଭାରତର ଯୁଦ୍ଧକୁ ଓଡ଼ିଶୀ ଯୁଦ୍ଧରେ ପରିଣତ କରିଛନ୍ତି । ଓଡ଼ିଶାରେ ସେତେବେଳେ ସୂର୍ଯ୍ୟବଂଶର ଗଜପତି କପିଳେନ୍ଦ୍ରଦେବଙ୍କ ରାଜତ୍ୱ । ଓଡ଼ିଆ ପାଇକମାନେ ଯୁଦ୍ଧ ପ୍ରିୟ ଜାତିଭାବରେ ରାଜ୍ୟବିସ୍ତାରରେ ଲାଗିଥିଲେ । ଯୁଦ୍ଧର ପରିବେଶ ତେଣୁ ତାଙ୍କ ପାଇଁ ଅଜ୍ଞାତ ନଥିଲା, ମୂଳ

ମହାଭାରତରୁ କେବଳ ବୀର ନାମଗୁଡ଼ିକ ନେଇ ସେ ଯେପରି କ୍ରମରେ ଯୁଦ୍ଧକୁ ବର୍ଣ୍ଣନା କରିଛନ୍ତି ପ୍ରତ୍ୟକ୍ଷ ଅଭିଜ୍ଞତା ନଥାଇ ତାହା ସମ୍ଭବ ହୋଇ ପାରିବ ନାହିଁ । ସେଥିପାଇଁ ଆଲୋଚକ ସୁରେନ୍ଦ୍ର, ମହାନ୍ତି ସାରଳାଦାସଙ୍କୁ ଆଦ୍ୟ ଜୀବନରେ ଜଣେ ସୈନିକ ଥାଇ ଦକ୍ଷିଣର ବିଭିନ୍ନ ରଣ କ୍ଷେତ୍ରରେ ଯୁଦ୍ଧ କରିଥିବା କଥାର ସୂଚନା ଦେଇଛନ୍ତି । ବିଭିନ୍ନ ଅସ୍ତ୍ରଶସ୍ତ୍ର ରଣ କୌଶଳର ଜ୍ଞାନକୁ ନେଇ ସେ କୌରବ ଓ ପାଣ୍ଡବଙ୍କ ଯୁଦ୍ଧରେ ଜୀବନ୍ତ ଭାବରେ ଥୋଇ ପାରିଛନ୍ତି । (ଓଡ଼ିଆ ସାହିତ୍ୟର ଆଦିପର୍ବ ପୃ ୧୯୩) ଭୀଷ୍ମ ପର୍ବରେ ଭୀଷ୍ମ ଏବଂ ଅର୍ଜ୍ଜୁନଙ୍କ ମଧ୍ୟରେ ଯୁଦ୍ଧ ହେଉଥିଲାବେଳେ କିମ୍ବା ଭୀମ ଦୁଃଶାସନକୁ ଆକ୍ରମଣ କଲାବେଳେ କିମ୍ବା ଶିଖଣ୍ଡୀ କର୍ଣ୍ଣର ରଥକୁ କୃନ୍ତ ମୂନରେ ବୁଲାଇଲା ବେଳେ ମନେ ହୋଇଥାଏ ସେ ଯୁଦ୍ଧଗୁଡ଼ିକ ଆଖିରେ ଦେଖି ତାର ଧାରାବିବରଣୀ ପ୍ରତ୍ୟକ୍ଷ ଭାବରେ କରିଛନ୍ତି ।

ଚରିତ୍ର ସୃଷ୍ଟି କଲାବେଳେ ତାକୁ ଆଦର୍ଶବାନ କରି ଅବିଶ୍ୱାସ୍ୟ ନ କରି ଆବଶ୍ୟକତାନୁସାରେ ତାକୁ ଦୋଷ ଦୁର୍ବଳତା ଦେଇ ସାଧାରଣ ଗାଉଁଲି ମଣିଷ କରି ତୋଳିଛନ୍ତି । ଖଳ ଚରିତ୍ରକୁ ଖଳତର କରିବା ପାଇଁ ତାର ମନ୍ଦ ଗୁଣକୁ ଯେପରି ସେ ପ୍ରସ୍ଫୁଟିତ କରିଛନ୍ତି, ଉତ୍ତମ ଚରିତ୍ରକୁ ବିଶ୍ୱାସ ଯୋଗ୍ୟ କରିବାପାଇଁ ସେଥିରେ ଗୁଣାବଳୀ ଖଞ୍ଜି ଦେବାରେ କାର୍ପଣ୍ୟ ଦେଖାଇ ନାହାନ୍ତି । ବାସୁଦେବ ଶ୍ରୀକୃଷ୍ଣ ସାରଳାଦାସଙ୍କ ଦୃଷ୍ଟିରେ ବ୍ୟାସଙ୍କ ସମ୍ମାନ ଲାଭ କରି ନାହାନ୍ତି । କୂଟନୀତିଜ୍ଞ ପ୍ରବୀଣ ହେଲେ ମଧ୍ୟ ବ୍ୟାସଙ୍କ କୃଷ୍ଣ ପଣ୍ଡିତ, ନ୍ୟାୟବନ୍ତ, ଧୈର୍ଯ୍ୟଶୀଳ, ଯେ ପାଣ୍ଡବମାନଙ୍କୁ ଧର୍ମମାର୍ଗରେ ପରିଚାଳିତ କରିଆସିଛନ୍ତି । ଅସ୍ତ୍ରତ୍ୟାଗୀ ଅର୍ଜ୍ଜୁନକୁ ସେ ଭଗବତ୍ ଗୀତା କହି ଧର୍ମ ଯୁଦ୍ଧରେ ଅଗ୍ରସର କରିଛନ୍ତି । ସାରଳା କିନ୍ତୁ ଶ୍ରୀକୃଷ୍ଣଙ୍କୁ ଖଳ ପ୍ରପଞ୍ଚ ମିଥ୍ୟାବାଦୀ, କୁଟିଳ ଲମ୍ପଟ ମଣିଷ ଭାବରେ ଚିତ୍ରଣ କରିଛନ୍ତି । ନିଜର ସ୍ୱାର୍ଥ ସିଦ୍ଧି ପାଇଁ ସେ କୌଣସି କାର୍ଯ୍ୟକୁ ହେୟ ମଣି ନାହାନ୍ତି । ଅସ୍ତ୍ର ଧାରଣ କରିବେ ନାହିଁ ବୋଲି ଶପଥ ନେଇଥିଲେ ମଧ୍ୟ ତୃତୀୟ ଏବଂ ନବମ ଦିନ ଯୁଦ୍ଧରେ ଭୀଷ୍ମଙ୍କୁ ହତ୍ୟା କରିବାପାଇଁ ଅସ୍ତ୍ରଧରି ଗୋଡ଼ାଇଛନ୍ତି । ଷଷ୍ଠ ଦିନ ଯୁଦ୍ଧରେ ଭୀଷ୍ମଙ୍କର ଅସ୍ତ୍ରକୁ ଚକ୍ରପେଶି ପରାହତ କରିଥିଲେ ମଧ୍ୟ ବଳରାମଙ୍କ ସମ୍ମୁଖରେ ଅସ୍ତ୍ରଧାରଣ କରିନାହାଁନ୍ତି ବୋଲି ପ୍ରମାଣିତ କରିଦେଇଛନ୍ତି । ସାହାଯ୍ୟ ଦେବାକୁ ଆସିଥିବା ଶବର ବୀର ଜାରାତସେନକୁ ପାଣ୍ଡବମାନେ ନିରାଶରେ ଫେରାଇ ଦେଲାବେଳେ ସିଏ କାଳେ ଭବିଷ୍ୟତରେ ପାଣ୍ଡବ ବଧର କାରଣ ହେବ ସେଥିପାଇଁ ତାକୁ କପଟତା ସହିତ ହତ୍ୟା କରିଛନ୍ତି । ବ୍ରହ୍ମଚାରୀ ଭୀଷ୍ମଙ୍କୁ ଯୁଦ୍ଧରୁ ନିରସ୍ତ କରିବା ପାଇଁ ସେ ନପୁଂସକ ଶିଖଣ୍ଡିକୁ ପାଣ୍ଡବ ପକ୍ଷର ସେନାପତି ପଦରେ ବରଣ କରାଇଛନ୍ତି । ଭୀଷ୍ମ ପର୍ବରେ ତେଣୁ ଭୀଷ୍ମ ନୁହନ୍ତି ଶ୍ରୀକୃଷ୍ଣ ହିଁ ନାୟକର ରୂପ ଗ୍ରହଣ କରିଛନ୍ତି । ମଧ୍ୟମ ପାଣ୍ଡବ ଅର୍ଜ୍ଜୁନକୁ ସମ୍ମୁଖରେ ରଖି

ସାରଳାଦାସଙ୍କ ଶ୍ରୀକୃଷ୍ଣ ଏଠି ଯୁଦ୍ଧ ପରିଚାଳନା କରିଛନ୍ତି । ଧର୍ମରାଜ ଯୁଧିଷ୍ଠିରଙ୍କୁ ଆଦର୍ଶସ୍ଥାନୀୟ କରିବା ପାଇଁ ମଧ୍ୟ ପରିବେଶ ସୃଷ୍ଟି କରିଛନ୍ତି । ଗୁରୁଜନଙ୍କର ବାଧ୍ୟସନ୍ତାନ ସ୍ୱରୂପରେ ଯୁଦ୍ଧ ଆରମ୍ଭର ଅବ୍ୟବହିତ ପୂର୍ବରୁ ମଧ୍ୟ ତାଙ୍କ ଯୁଧିଷ୍ଠିର ପୁରୁଣା ପ୍ରାର୍ଥନା ନେଇ ମାନଗୋବିନ୍ଦ ଦୁର୍ଯ୍ୟୋଧନଙ୍କୁ ଭେଟିଛନ୍ତି । ଭୀଷ୍ମ, ଦ୍ରୋଣ, ଶଲ୍ୟ, ମଦ୍ର ପ୍ରଭୃତିଙ୍କ ଆଶୀର୍ବାଦ ଭିକ୍ଷା କରି ସମସ୍ତଙ୍କୁ ପାଣ୍ଡବ ବିରୁଦ୍ଧରେ ଯୁଦ୍ଧ ନ କରିବାର ଶପଥ କରାଇ ନେଇଛନ୍ତି । ସମସ୍ତଙ୍କ ଠାରୁ ପାଣ୍ଡବ ବିଜୟର ଆଶୀର୍ବାଦ ନେଇ ସେ ଦୁର୍ଯ୍ୟୋଧନଙ୍କୁ ଅଯଥା ରକ୍ତପାତରୁ ବିରତ ହେବାକୁ କହିଛନ୍ତି, ଏପରିକି ପାଞ୍ଚଖଣ୍ଡି ପଡ଼ାରୁ ଖଣ୍ଡିଏ ପଡ଼ାରେ ସନ୍ତୁଷ୍ଟ ହେବ ବୋଲି ମଧ୍ୟ ପ୍ରତିଶ୍ରୁତି ଦେଇଛନ୍ତି ।

"ତୋହର ମୋହର ଯେବେ ହୋଇବ ବିବାଦ
ଅଦୋଷୀ ଲୋକଙ୍କୁ କର୍ମେ ସମରେ ହାଦେ ଛେଦ
ତୁମେ ଶତେ ଭ୍ରାତ ଈଶ୍ୱର କୁରୁପତି
ଆମ୍ଭେ ଯେ ପଞ୍ଚୁଭାଇ ହେଉ ଏକ ମୂର୍ତ୍ତି
ଆବର ବନ୍ଧୁ ଲୋକଙ୍କୁ ନାଶିବା କିସ ଅର୍ଥେ
ସେତେ ଲୋକ ନାଶଂଗତ ହୋଇବେ କେମନ୍ତେ
ତୋହର ମୋହର ଯେବେ ଜିଣିମା ସଂଗ୍ରାମ
ଜାଣିମା ପାପପୁଣ୍ୟ କାହାର ଉଦିତ ଧର୍ମେ ।"

(ଶା.ମ. ଭୀ.ପ:—୧୧୬-୧୧୭)

ପାଣ୍ଡବ ପକ୍ଷକୁ ନ୍ୟାୟ ଏବଂ ଧର୍ମ ଦେଇ କୌରବ ପକ୍ଷକୁ ଅନ୍ୟାୟ ଏବଂ ଅଧର୍ମର ପକ୍ଷପାତି କରିବା ପାଇଁ ତାଙ୍କର ଏ ଚେଷ୍ଟା । ମାନଗୋବିନ୍ଦ ଦୁର୍ଯ୍ୟୋଧନ ଅହଙ୍କାରୀ, ଗର୍ବୀ, ଧରାକୁ ସରା ଜ୍ଞାନ କରନ୍ତି, ତେଣୁ ତାର ବ୍ୟବହାରରେ ସେଇ ଦୃପ୍ତ ଅହଙ୍କାର । ଭୀଷ୍ମ, ବ୍ରହ୍ମଚାରୀ, ସତ୍ୟନିଷ୍ଠ ଏ ଯୁଦ୍ଧ ପାଇଁ ଆଗ୍ରହୀ ନୁହନ୍ତି କିନ୍ତୁ ଯେହେତୁ ସେ କୌରବ ଅନ୍ନରେ ପ୍ରତିପାଳିତ ତେଣୁ ଏ ଅନ୍ୟାୟ ଯୁଦ୍ଧରେ ସେ ନିଜର ଶରୀରକୁ ଦାନ କରିଛନ୍ତି ଆତ୍ମାକୁ ନୁହେଁ, ହୃଦୟକୁ ନୁହେଁ, । ସାରଳା-ଦାସଙ୍କ ଭାରତ ସମର ଏକ ଅଦ୍ଭୁତ ଯୁଦ୍ଧ ଏଠି ନ୍ୟାୟ ଅନ୍ୟାୟ ନାହିଁ, ସତ ଅସତ ନାହିଁ ଧର୍ମ ଅଧର୍ମ ନାହିଁ' କଳେବଳେ ବିଜୟ ହିଁ ଏକମାତ୍ର କାମ୍ୟ ।

ସାରଳାଦାସଙ୍କ ବିରୁଦ୍ଧରେ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମାଙ୍କର ଅଭିଯୋଗ ହେଲା, "ବିସ୍ତୃତ ପ୍ରିୟ କଳ୍ପନକ କଥା ପ୍ରବୀଣ ସେହି ଦାସ କବି ମହୋଦୟ ଏସବୁ ପରିବର୍ତ୍ତନ କରି ଇତସ୍ତତଃ ସମାନୀତ, ସ୍ୱକଳ୍ପନା ପ୍ରସୂତ, ସ୍ଥାନେ ସ୍ଥାନେ ଅସଙ୍ଗତିପୂର୍ଣ୍ଣ ବହୁବିଧ ଅତିରିକ୍ତ ଚରିତ ଲେଖି ପର୍ବର କଳେବର ବଢ଼ାଇ ଅଛନ୍ତି ।" (ଶ୍ରୀଭାରତ ଦର୍ପଣ ପୃ ୧୪୯) ନିଜର କାହାଣୀକୁ ବିଶ୍ୱାସଯୋଗ୍ୟ ଏବଂ ଚରିତ୍ରକୁ ବଳିଷ୍ଠ କରିବା

ପାଇଁ ସେ ଅନେକ କାଳ୍ପନିକ ପ୍ରକରଣ ସୃଷ୍ଟି କରିଛନ୍ତି । ତାଙ୍କ ଗ୍ରନ୍ଥକୁ ସ୍ଥାନୀୟତାର ସ୍ୱରୂପ ଦେବାରେ ତାହା ସାହାଯ୍ୟ କରିଛି । ପୂର୍ବ ବର୍ଣ୍ଣିତ ଶବର ଜାଗତସେନ କଥା, ତାଗାକ୍ଷୀ ପକ୍ଷୀ ବିବରଣ ଏବଂ ଶୁକରାଜ କଥା, ଶ୍ୱେତକଲ୍ପ ରାଜା ଉପାଖ୍ୟାନ, କାଉଁରି ନଗର କାମଦେବ ରାଜାଙ୍କର ପୂର୍ବ ଜନ୍ମ ବୃତ୍ତାନ୍ତ, ପ୍ରହ୍ଲାଦ ଉପାଖ୍ୟାନ, ଦୁର୍ଦ୍ଦକ୍ଷ ଶରଣ ପ୍ରଭୃତିର ଉଦାହରଣ ଏଥିପାଇଁ ଦିଆଯାଇପାରେ । ସେହିପରି ଯୁଦ୍ଧ କାଳରେ ଅର୍ଜ୍ଜୁନ ରଥରେ ପବନ ସୁତ ହନୁମାନ ସ୍ଥାପନ, ବଳରାମ ଆଗମନ, ଦୁର୍ଯ୍ୟୋଧନର ଛଦ୍ମବେଶରେ ଅର୍ଜ୍ଜୁନଙ୍କର ଭୀଷ୍ମଙ୍କଠାରୁ ନୀଳବାଣ ଭୁଜବାଣ ହରଣ, ଶିଖଣ୍ଡୀ ପରାକ୍ରମର ବିଭିନ୍ନ ବିବରଣୀ ପ୍ରଭୃତି ମୂଳ ଗ୍ରନ୍ଥରେ ନଥିଲେ ମଧ୍ୟ ସାରଳା ଦାସ ସେଗୁଡ଼ିକୁ ସଂଯୋଜିତ କରିଛନ୍ତି । ସ୍ୱୀୟ କଳ୍ପନା ବଳରେ । ସମାଲୋଚକ ପଣ୍ଡିତ ନିନ୍ଦ ସେଗୁଡ଼ିକୁ ଅସଙ୍ଗତିଯୁକ୍ତ ବୋଲି ଯେତେ ସହଜରେ ଘୋଷଣା କରିଦେଇଛନ୍ତି ବିଚାର କରି ଦେଖିଲେ ତାହା ପ୍ରକୃତରେ ସତ୍ୟ ନୁହେଁ । ଯେ କୌଣସି ସ୍ରଷ୍ଟା ନିଜର ସୃଷ୍ଟିକୁ ଯଦି ଜୀବନ୍ତ କରିପାରିଲା, ଏବଂ ବିଶ୍ୱାସଯୋଗ୍ୟ ଭାବରେ ଉପାଖ୍ୟାନ ଗୁଡ଼ିକୁ ସଂଯୋଜିତ କରିପାରିଲା ତେବେ ତାହାହିଁ ତାର ସଫଳତା ।ବର୍ତ୍ତମାନ ଛଦ୍ମ ବେଶରେ ଅର୍ଜ୍ଜୁନଙ୍କର ନୀଳବାଣ ଭୁଜବାଣ ହରଣ ପ୍ରସଙ୍ଗକୁ ନିଆଯାଉ । ପାଣ୍ଡବଙ୍କ ପ୍ରତି ଭୀଷ୍ମଙ୍କର ଯେତେ ଦୁର୍ବଳତା ଥିଲେ ମଧ୍ୟ ସେ କୌରବ ମାନଙ୍କର ସେନାପତି, ସେମାନଙ୍କର ସମ୍ମାନ କେବଳ ନୁହେଁ ନିଜର ପଦ ମର୍ଯ୍ୟାଦା ଦୃଷ୍ଟିରୁ ମଧ୍ୟ ବିଚାର କରି ଦେଖିଲେ ସାଧାରଣ ଭାବରେ ନିଜର ଜୀବନ ନାଟିକା ଦେଇ ସେ ପାଣ୍ଡବଙ୍କ ପାଖରେ ପରାଜୟ ବରଣ କରିନଥାନ୍ତେ । ତାଛଡ଼ା ପୂର୍ବରୁ ସେ ଯୁଧିଷ୍ଠିରଙ୍କୁ ନିଜର ମୃତ୍ୟୁ ଭେଦ କହି ସାରିଥିଲେ ସେଥିପାଇଁ ଗୋଟିଏ ଛଦ୍ମ ବେଶର ଆବଶ୍ୟକତା ଥିଲା । ମୂଳ ମହାଭାରତରେ ଯାଦବବୀର ବଳରାମ ଭାରତ ଯୁଦ୍ଧ ପୂର୍ବରୁ ତୀର୍ଥ ଯାତ୍ରାରେ ବାହାରି ଯାଇଥିଲେ, ସାରଳା ଦାସ କିନ୍ତୁ ତାଙ୍କୁ ଯୁଦ୍ଧ ହେବାର ଛ'ଦିନ ପର୍ଯ୍ୟନ୍ତ ଅପେକ୍ଷା କରାଇଛନ୍ତି । ଶ୍ରୀକୃଷ୍ଣଙ୍କ ମିଥ୍ୟାବାଦିତ୍ୱର ପ୍ରମାଣ ଦେବାପାଇଁ । ମଧ୍ୟମ ପାଣ୍ଡବ ଅର୍ଜ୍ଜୁନର ବିନାଶପାଇଁ ସେନାପତି ଭୀଷ୍ମ ଶକ୍ତି ନିବାରଣୀ ଶର ପ୍ରୟୋଗ କରିଛନ୍ତି । ସଖାର ବିପଦ କାଳରେ ଶ୍ରୀକୃଷ୍ଣ ତାହା ଖଣ୍ଡନ କରିଛନ୍ତି କିନ୍ତୁ ବଳରାମଙ୍କ ପାଖରେ ତାହା ପ୍ରମାଣିତ ହୋଇପାରିନାହିଁ । ସେଥିପାଇଁ ବଳରାମ ଭୀଷ୍ମଙ୍କ ଉପରେ କ୍ରୁଧହୋଇ ତୀର୍ଥ ଦର୍ଶନ ନିମନ୍ତେ ଚାଲିଯାଇଛନ୍ତି । ଯୁଦ୍ଧ, ରାଜନୀତିରେ ପ୍ରଥମେ ସତ୍ୟକୁହିଁ ବଳୀ ଦିଆଯାଇଥାଏ । ନିଜର ସୁରକ୍ଷା ପାଇଁ ତେଣୁ ଶ୍ରୀକୃଷ୍ଣଙ୍କର ପଦକ୍ଷେପ ପାଣ୍ଡବଙ୍କ ମଙ୍ଗଳ ପାଇଁ ଯାହା ଆପାତତଃ ଦୋଷାବହ ନୁହେଁ । ସମସ୍ତ ଦୋଷ, ଦୁର୍ବଳତା ସତ୍ତ୍ୱେ ଶ୍ରୀକୃଷ୍ଣ ଦେବତା, ନାରାୟଣ ଅଂଶରେ ଜନ୍ମ ତେଣୁ ମହିମା ବର୍ଣ୍ଣନା ପାଇଁ 'ନୃସିଂହାବତାର' କଥାବି ମଧ୍ୟ ଯୁକ୍ତିଯୁକ୍ତ । ନପୁଂସକ ଶିଖଣ୍ଡିକୁ ମୂଳ ଅପେକ୍ଷା ଓଡ଼ିଆ ମହାଭାରତର ଭୀଷ୍ମ ପର୍ବରେ ଅଧିକ ପ୍ରାଧାନ୍ୟ ଦିଆଯାଇଛି ।

ତାର ପଗ୍ରକ୍ରମ ବର୍ଣ୍ଣନାରେ ସାରଳା ଦାସ ଅଧିକ ସଚେତନ । ଭୀଷ୍ମଙ୍କ ପରି ଜଣେ ବଜ୍ରବଜସ୍ୱୀ ବୀରଙ୍କର ପତନର କାରଣ ଯିଏ ହୋଇଥିଲେ ସେ ଶିଖଣ୍ଡି ନପୁଂସକ ହେଲେ ମଧ୍ୟ ଜଣେ ବୀର । ତାଙ୍କୁ ପାଣ୍ଡବ ପକ୍ଷରେ ସେନାପତିକୁ ଦିଆଯାଇଛୁ । ତେଣୁ ତାଙ୍କ ସମ୍ପର୍କରେ କଳ୍ପିତ ବିବରଣୀ ଅପ୍ରସଙ୍ଗ ନୁହେଁ । ସେହିପରି ଭୀଷ୍ମଙ୍କର ସେନାପତି ପଦରେ ବରଣ ଫଳରେ ଅଶ୍ୱତ୍ଥାମାଙ୍କ ବିବାହ କମ୍ପା ଯୁଦ୍ଧ ପୂର୍ବରୁ ଦୁର୍ଯ୍ୟୋଧନ, ଭୀଷ୍ମଆଦି ବୀରମାନଙ୍କର ଖଡ୍ଗ ଉତ୍ତୋଳନ ପରୀକ୍ଷା ଯେକୌଣସି ଯୁଦ୍ଧରେ ମଧ୍ୟ ସ୍ୱାଭାବିକ କଥା । ଏଇ ସ୍ୱାଭାବିକ ମନେ ହେଉଥିବା କଥା ଗୁଡ଼ିକର ସଂଯୋଜନାରେ କ୍ଷୁବ୍ଧ ହେବାର କାରଣ ନାହିଁ । ତାଛଡ଼ା ଯେଉଁ ସମୟରେ ସାରଳା ନିଜର ମହାଭାରତ ଲେଖିଥିଲେ ସେତେବେଳେ ସେ ଯଦି ତାକୁ ପରିବେଶର ଅନୁରୂପ କରି ନଥାନ୍ତେ ତେବେ ତାହା ଆଦୃତ ହୋଇନଥାନ୍ତା । ପାଣ୍ଡିତ୍ୟ ଦୃଷ୍ଟିରେ ସହସ୍ରାଧିକ ବର୍ଷର ପୁରୁଣା ମହାଭାରତକୁ ଧ୍ରୁବ ସତ୍ୟରୂପେ ଗ୍ରହଣ କରିନେଇ ସାରଳାଙ୍କ ଗ୍ରନ୍ଥରେ ତାକୁ ଖୋଜିବାର ଯେଉଁ ପ୍ରଚେଷ୍ଟା ତାହାହିଁ ତାଙ୍କୁ ନିରାଶ କରିଛି । "ସାରଳା ଦାସ ମୂଳର ବହୁ ପ୍ରସଙ୍ଗରେ କପୋଳକଳ୍ପିତ ବିଷୟ ଯୋଡ଼ିଦେଇ ପ୍ରସଙ୍ଗର ବର୍ଣ୍ଣନା ବଢ଼ାଇ ଦେଇଛନ୍ତି । ଏହାଦ୍ୱାରା ମୂଳ ଗ୍ରନ୍ଥ ଅପେକ୍ଷା ଏଇ ବିଷୟର ଚର୍ଚ୍ଚା ଅଧିକ ସୁନ୍ଦର ହୋଇଛି ।" (ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ଓଡ଼ିଆ ସାହିତ୍ୟର ଇତିହାସ-୧ମ ଭାଗ ପୃ—୨୮୪

ବର୍ଣ୍ଣନା ପ୍ରସଙ୍ଗରେ ମଧ୍ୟ ସାରଳା ଦାସ ସ୍ଥାନର ଆବଶ୍ୟକତା ବୁଝି ଭାଷା ପ୍ରୟୋଗ କରିଛନ୍ତି । ତାଙ୍କ ଭାଷାରେ ଆଦି ରସ ବା ଶୃଙ୍ଗାର, ବିଭତ୍ସ ଏବଂ ବୀର ରସ ପ୍ରଚ୍ଛନ୍ନ ହୋଇ ରହିଥିବାର ଦେଖାଯାଏ । ଭୀଷ୍ମ ପର୍ବଟି ଯୁଦ୍ଧ ପ୍ରକରଣ ହୋଇଥିବାରୁ ସେଥିରେ ବୀର ରସ ପ୍ରାଧାନ୍ୟ ଲାଭ କରିଛି । ସମର ବର୍ଣ୍ଣନାରେ ଏ ରସ ତେଣୁ ତାଙ୍କୁ ଅନନ୍ୟ କରି ତୋଳିଛି । ବୀରମାନଙ୍କର କ୍ରୋଧ ବର୍ଣ୍ଣନା କଲାବେଳେ ସେଥିରେ ଯେଉଁ ଶବ୍ଦ ସଂଯୋଜିତ ହୋଇଥାଏ, ବିଭିନ୍ନ ଯୁଦ୍ଧର ବର୍ଣ୍ଣନା ଏବଂ ବୀର ରଣାଙ୍ଗଣରେ ଯୁଦ୍ଧ ଚିତ୍ର ପ୍ରକାଶରେ କବିଙ୍କର ସଫଳତା ଅନ୍ୟ କମ କ୍ଷେତ୍ରରେ ଦୃଷ୍ଟ ହୋଇଥାଏ ।

"ଧରାଧର ପଡ଼ାପଡ଼ି ଆଉ ମରାମରି ।
ପଦାଘାତେ କମ୍ପମାନ ହେଲା ବସୁଧରୀ ॥
ମୁଖେ ମୁଖେ ପଡ଼ି ତାନ ହୁଅନ୍ତେଣ ବେନି ।
ଗଗନେ ଥାଇ କମ୍ପିଲେ ନାଥ ସଞ୍ଚିବଜୀ ।"

ଭୀଷ୍ମ-ଅର୍ଜ୍ଜୁନ, ଭୀମ, ଦୁଃଶାସନ, ଦୁର୍ଦ୍ଦକ୍ଷ ଦୁକର୍ଣ୍ଣ ପ୍ରଭୃତି ବୀର ମାନଙ୍କର ଏହିପରି ହାନ ଯୁଦ୍ଧର ଭୂରି ଭୂରି ଉଦାହରଣ ଭୀଷ୍ମ ପର୍ବରୁ ଦିଆଯାଇପାରେ । ବୀର ରସର ଆନୁସଙ୍ଗିକ ରୂପେ ବିଭତ୍ସ ରସର ବର୍ଣ୍ଣନା ମଧ୍ୟ ଏ ପର୍ବରେ ରହିଛି । ଯେ କୌଣସି

ଢନର ସୂକ୍ଷ୍ମଶେଷରେ ଦିଆଯାଇଥିବା କ୍ଷେତ୍ରର ବର୍ଣ୍ଣନା ଯେପରି ବିଭତ୍ସ ସେହିପରି ଜ୍ଞାନଦର୍ପଣକାରୀ । ବୀର ରସ ଛଡ଼ା ସାରଳା ଲେଖନୀ ଅଦ୍ଭୁତ ରସ ଉପସ୍ଥାପନାରେ ଅତ୍ୟଧିକ ସ୍ୱଭାବେ ହିତାହିତ ଜ୍ଞାନ ଶୂନ୍ୟ । ଭୀଷ୍ମ ଜନର ଜନ୍ମବୃତ୍ତାନ୍ତ ବର୍ଣ୍ଣନା କଲାବେଳେ ପିତା ଶାନ୍ତନୁ ଏବଂ ମାତା ଗଙ୍ଗାଙ୍କ ମିଳନର ଯେଉଁ ଚିତ୍ର ପ୍ରଦାନ କରିଛନ୍ତି ତାହା ଅଶ୍ଳୀଳତା ଦୋଷ ଦୁଷ୍ଟ । ସେହିପରି ତାପସୀ ପକ୍ଷୀ ଏବଂ ଶୁକରାଜ, ବଦରଣୀ ପତ୍ର ସ୍ଥାନରେ ମଧ୍ୟ ଅଦ୍ଭୁତ ରସର ପ୍ରାବଲ୍ୟ ସଂପ୍ରତି ରୁଚିହୀନ ଯଦିଓ ଏ ତାହା କିନ୍ତୁ ସେତେବେଳକାର ସହଜିଆ ବୈଷ୍ଣବୀ ସାହିତ୍ୟର ଅନୁରୂପ ବୋଲି ସୁରେନ୍ଦ୍ର ମହାନ୍ତି ବର୍ଣ୍ଣନା କରିଛନ୍ତି । (ଓ. ସା. ଆ. ପୃ ୮୦)

ସାରଳା ଦାସ ମହା କାବ୍ୟରଚକ, ଓଡ଼ିଆ କାବ୍ୟ ପରମ୍ପରାର ଆଦି ନୃପତି । ସମର ପ୍ରଧାନ ଭୀଷ୍ମ ପର୍ବକୁ ମଧ୍ୟ ସେ ଜନର ଯାଦୁକରୀ ସ୍ପର୍ଶରେ ମୂଳଠାରୁ ଉତ୍ତମ କରି ତୋଳିଛନ୍ତି । ବିଷୟ ସତ୍ତାରେ ସେ ଯେପରି ଅନନ୍ୟ, ଶବ୍ଦ ବିନ୍ୟାସରେ ସେପରି ଚିର ନୂତନ । ଆଉ ଏ ଅନନ୍ୟତା ଏବଂ ନୂତନତା ତାଙ୍କର ସମସ୍ତ ମହାଭାରତ ପରି ଭୀଷ୍ମ ପର୍ବରେ ମଧ୍ୟ ପ୍ରତିଫଳିତ ।



ସହାୟକ ଗ୍ରନ୍ଥ—

ଗୋବିନ୍ଦଚନ୍ଦ୍ର ମହାପାତ୍ର (୧୯୬୪) ମହାଭାରତ : ଭୀଷ୍ମପର୍ବ (ସଂ: ଅନୁବାଦ) ସାହିତ୍ୟ ଏକାଡେମୀ ।

ଆର୍ତ୍ତବଲ୍ଲଭ ମହାନ୍ତି (୧୯୬୫) ସାରଳା ମହାଭାରତ : ଭୀଷ୍ମପର୍ବ-ସାତ୍ତ୍ୱିକ ବ୍ୟାପାର ବିଭାଗ, ଓଡ଼ିଶା

ଗୋପୀନାଥ ନନ୍ଦ ଶର୍ମା (୧୯୬୪) ଶ୍ରୀ ଭାରତ ଦର୍ପଣ-ସାହିତ୍ୟ ଏକାଡେମୀ ।

ସୁରେନ୍ଦ୍ର ମହାନ୍ତି (୧୯୭୧) ଓଡ଼ିଆ ସାହିତ୍ୟର ଆଦିପର୍ବ ।

ସୂର୍ଯ୍ୟନାରାୟଣ ଦାସ (୧୯୬୮) ଓଡ଼ିଆ ସାହିତ୍ୟର ଇତିହାସ-ପ୍ରଥମ ଖଣ୍ଡ ।

ସାରଳା ସ୍ମାରକ (୧୯୭୯) ସାରଳା ସମୀକ୍ଷା ।

ସାରଳା ସାହିତ୍ୟ ସଂସଦ (୧୯୮୩) ସାରଳା ସାହିତ୍ୟ ସମୀକ୍ଷା ।

— ——

ଠିକଣା : ଆକାଶବାଣୀ,
ସମ୍ବଲପୁର

# ଦ୍ରୋଣ ପର୍ବ

ଅଧ୍ୟାପକ ଡକ୍ଟର ଦୀନବନ୍ଧୁ ରଥ

---

ମହାକବି ସାରଳା ଦାସ ବ୍ୟାସଦେବଙ୍କ ସଂସ୍କୃତ ମହାଭାରତର ଅନୁବାଦ ନ କରି, ସ୍ୱୀୟ ଅଲୌକିକ ମନୀଷା ଓ କଳ୍ପନା ଶକ୍ତିର ବିନିଯୋଗରେ ଗଢ଼ିଛନ୍ତି ଏକ ନୂତନ ସାହିତ୍ୟ-ସୌଧ । ଓଡ଼ିଆ ମହାଭାରତର ଛତ୍ରେ ଛତ୍ରେ କବିଙ୍କ ନିଜ ସ୍ୱର ମୁଦ୍ରାଙ୍କ ନିହିତ ଅଛି । ବିଷୟ ବସ୍ତୁ, ସାମାଜିକ ଚେତନା, ଚରିତ୍ରଚିତ୍ରଣ, ଜୀବନ-ସମ୍ବନ୍ଧୀୟ ଆଭିମୁଖ୍ୟ, ସାହିତ୍ୟିକ କୃତିତ୍ୱ ଆଦି ବିଭିନ୍ନ ଦିଗରେ ସାରଳା ଦାସଙ୍କ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ । ସମଗ୍ର ଓଡ଼ିଆ ମହାଭାରତ ପ୍ରତି ଏହି ଉକ୍ତି ଯେଉଁଳି ପ୍ରଯୁଜ୍ୟ, ପ୍ରତି ପର୍ବ ପ୍ରତି ମଧ୍ୟ ସେହିଭଳି ପ୍ରଯୁଜ୍ୟ । ଆଲୋଚ୍ୟ ପ୍ରବନ୍ଧରେ ବିଷୟ ବସ୍ତୁଗତ ତୁଳନାତ୍ମକ ଅଧ୍ୟୟନ କେତେକ ମୁଖ୍ୟ ଘଟଣାକୁ ଭିତ୍ତି କରି କରାଯିବ ।

ବିଷୟବସ୍ତୁଗତ ତୁଳନାକୁ ମୁଖ୍ୟତଃ ପାଞ୍ଚଗୋଟି ଭାଗରେ ବିଭକ୍ତ କରାଯାଇ ପାରେ । ଯଥା :– ସାମ୍ୟ ଓ ବୈଷମ୍ୟ, ମୂଳ ପ୍ରସଙ୍ଗର ପରିହାର, ନୂତନ ପ୍ରସଙ୍ଗର ଯୋଗ, ମୂଳ ପ୍ରସଙ୍ଗର ସଂକ୍ଷିପ୍ତିକରଣ, ବିସ୍ତୃତିକରଣ, ଘଟଣାମାନଙ୍କର କ୍ରମରେ ପରିବର୍ତ୍ତନ ।

## (କ) ବିଷୟଗତ ସାମ୍ୟ-ବୈଷମ୍ୟ :—

ସଂସ୍କୃତ ମହାଭାରତ-ବର୍ଣ୍ଣିତ ଘଟଣା ବା ପ୍ରସଙ୍ଗକୁ ପରିବେଷଣ କଲାବେଳେ ସାରଳା ଦାସ ବହୁ ପରିବର୍ତ୍ତନ ଘଟାଇଛନ୍ତି । ଏଠାରେ ତାହାର କେତେକ ଦୃଷ୍ଟାନ୍ତ ଦିଆଯାଇପାରେ ।

### (୧) ଦ୍ରୋଣଙ୍କ ସେନାପତି ପଦ ପ୍ରାପ୍ତି :—

ବ୍ୟାସକୃତ ମହାଭାରତରେ ଅଛି ଯେ, ପିତାମହ ଭୀଷ୍ମ ଶରଶଯ୍ୟା ଗ୍ରହଣ କରିବାରୁ କୌରବ ସେନା ମଧ୍ୟରେ ମହାନ୍ ଭୟ ଦେଖାଦେଲା । ସମସ୍ତେ ବିକଳ ଭାବରେ କର୍ଣ୍ଣଙ୍କୁ ସ୍ମରଣ କଲେ । (୨, ୧ଅ) କର୍ଣ୍ଣ ଏହି ସମ୍ବାଦ ଲାଭ କଲାପରେ ଯୋଦ୍ଧୃବେଶ ଧାରଣ କରି, ସୁସଜ୍ଜିତ ରଥରେ ବସି ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେଲେ ଓ ଦୁର୍ଯୋଧନଙ୍କ ନିକଟକୁ ଗଲେ । (୨ଅ) କୌରବମାନଙ୍କ ସହ ଯୁଦ୍ଧକ୍ଷେତ୍ରରେ ଅଗ୍ରସର ହେଉଥିବା ସମୟରେ ଧରାଶାୟୀ ଭୀଷ୍ମ ପିତାମହଙ୍କୁ ଦେଖି ସେ ରଥରୁ

ଅବତରଣ କଲେ । ସେ ଅର୍ଜୁନଙ୍କୁ ବଧ କରିବା ନିମିତ୍ତ ଭୀଷ୍ମଙ୍କର ଅନୁମତି ଚାହିଁଲେ । (୩ଅ) ଭୀଷ୍ମ କର୍ଣ୍ଣଙ୍କୁ ଆଶୀର୍ବାଦ କରି ଯୁଦ୍ଧ ପାଇଁ ପ୍ରୋତ୍ସାହିତ ଦେଲେ । (୪ଅ) କର୍ଣ୍ଣ ଦୁର୍ଯ୍ୟୋଧନଙ୍କୁ ପରାମର୍ଶ ଦେଲେ- ଗୁରୁଦ୍ରୋଣଙ୍କୁ ସେନାପତି ପଦରେ ଅଭିଷେକ କର । (୫ଅ) ତଦନୁସାରେ ଦୁର୍ଯ୍ୟୋଧନ ଦ୍ରୋଣଙ୍କ ନିକଟରେ ଉପସ୍ଥିତ ହୋଇ ସେନାପତି ପଦ ଗ୍ରହଣ କରିବା ପାଇଁ ତାଙ୍କୁ ଅନୁରୋଧ କଲେ । (୬ଅ) ଦ୍ରୋଣାଚାର୍ଯ୍ୟ ଦୁର୍ଯ୍ୟୋଧନଙ୍କ ନିବେଦନକୁ ଗ୍ରହଣ କରି କହିଥିଲେ ଯେ, ସେ ଧୃଷ୍ଟଦ୍ୟୁମ୍ନଙ୍କୁ ବଧ କରିବେନାହିଁ । କାରଣ ତାଙ୍କର ଜନ୍ମ ଦ୍ରୋଣଙ୍କ ବଧ ପାଇଁ ଉଦ୍ଦିଷ୍ଟ । ଦୁର୍ଯ୍ୟୋଧନ ତାଙ୍କୁ ଶାସ୍ତ୍ରୀୟ ବିଧିରେ ସେନାପତି ପଦରେ ଅଭିଷିକ୍ତ କଲେ । ବାଦ୍ୟ ଘୋଷ, ଶଙ୍ଖ ଧ୍ୱନି, ପୁଣ୍ୟାହ ବାଚନ, ସୂତ, ମାଗଧ ଓ ବନ୍ଦୀଙ୍କ ସ୍ତୁତିଗାନ, ଗୀତ, ବ୍ରାହ୍ମଣମାନଙ୍କ ଜୟଧ୍ୱନି, ନାରୀମାନଙ୍କର ନୃତ୍ୟ ସହ ଦ୍ରୋଣଙ୍କର ଅଭିଷେକ କରାଗଲା । (୭ଅ)

ସାରଳା ଦାସଙ୍କ ମହାଭାରତରେ ଭୀଷ୍ମଙ୍କ ଶରଶଯ୍ୟା ଗ୍ରହଣ ପରେ ଦ୍ରୋଣାଚାର୍ଯ୍ୟ ସେନାପତି ପଦ ଲାଭ କରିଥିବା ବୃତ୍ତାନ୍ତ ରହିଛି । ସେଠାରେ ଅଛି— ଭୀଷ୍ମ ଶରଶଯ୍ୟା ଗ୍ରହଣ କଲାପରେ ରାଜା ଦୁର୍ଯ୍ୟୋଧନ ପାଗଳ ଭଳି ହେଲେ । ସେ ବିଗମ୍ବର ହୋଇ ଇତସ୍ତତଃ ଭ୍ରମଣ କରିବାକୁ ଲାଗିଲେ । ଦ୍ରୋଣଙ୍କ ସହ ତାଙ୍କର ସାକ୍ଷାତ୍ ହେଲା ଦୁର୍ଯ୍ୟୋଧନ କହିଲେ – ପିତାମହ ଭୀଷ୍ମଙ୍କ ଯୋଗୁଁ ଆଜି ମୋର ଏ ଅବସ୍ଥା । ଦ୍ରୋଣ କିଛି ପ୍ରତିକାର କରିବେ ବୋଲି ଆଶ୍ୱାସନା ଦେଲେ ଏବଂ ତାଙ୍କୁ ଅନ୍ତଃପୁରକୁ ଯିବା ପାଇଁ କହିଲେ । ଦୁର୍ଯ୍ୟୋଧନ ଇତସ୍ତତଃ ଭ୍ରମଣ କରୁ କରୁ ନୈଋତ ନାମକ ପର୍ବତରେ ପହଞ୍ଚିଗଲେ । ସେଠାରେ ମ୍ଳେଚ୍ଛ ଦେଶର ରାଜା ମସ୍ୟ ନାମକ ଅସୁର ସହ ତାଙ୍କର ବନ୍ଧୁତ୍ୱ ହେଲା । ଅସୁର ରାଜ ଦୁର୍ଯ୍ୟୋଧନଙ୍କୁ ପରାମର୍ଶ ଦେଲେ – ରାଜ୍ୟକୁ ଫେରିଯାଇ ଗୁରୁ ଦ୍ରୋଣଙ୍କୁ ସେନାପତି କର । ମୁଁ ଜାଳନ୍ଧର ବ୍ୟୂହ ରଚନା କରିବି । ଅର୍ଜୁନ ଓ ଶ୍ରୀକୃଷ୍ଣ ଏଠାକୁ ଆସିଲେ ମୁଁ ତାଙ୍କୁ ପରାଜିତ କରିପାରିବି । ତୁମେ ଅକ୍ଳେଶରେ ଅନ୍ୟ ଚାରି ଭାଇଙ୍କୁ ଜୟକରିବ । ମସ୍ୟାସୁର ଯମୁନା ନଦୀ ତଟରେ, ମଣିନାଗ ପର୍ବତର ଦକ୍ଷିଣ ଦିଗରେ ପଞ୍ଚବିଂଶ ଯୋଜନ ବ୍ୟାପି ଏକ ସୁ ବୃହତ୍ ବ୍ୟୂହ ରଚନା କରି ଦୁର୍ଯ୍ୟୋଧନଙ୍କୁ ଦେଖାଇଲେ । ଦୁର୍ଯ୍ୟୋଧନ ଆନନ୍ଦ ମନରେ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରି ଦ୍ରୋଣଙ୍କୁ ସେନାପତି କଲେ । ଦୁର୍ଯ୍ୟୋଧନ ରଥ, ହାତୀ, ଅଶ୍ୱ ଓ ପଦାତିକ ବାହିନୀ ସର୍ଜିତ କଲେ । ବିଭିନ୍ନ ବାଦ୍ୟ ବାଜଣା ବାଜି ଉଠିଲା । ଛତ୍ର ଓ ଚାମର ଆଦି ଟେକାଗଲା ଦୁର୍ଯ୍ୟୋଧନ ନିଜେ ଅର୍ଘ୍ୟଦେଇ ଦ୍ରୋଣଙ୍କ ମସ୍ତକରେ କର୍ଣ୍ଣ, ଅଶ୍ୱତ୍ଥମା, ଭୁରିଶ୍ରବା ଆଦି ଯୋଦ୍ଧାମାନଙ୍କ ସମକ୍ଷରେ ରତ୍ନମୁକୁଟ ବାନ୍ଧିଲେ । ମକର ମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥିରେ ଆର୍ଦ୍ରାନାମକ ନକ୍ଷତ୍ରର ବର୍ତ୍ତମାନ କାଳରେ ଏହି ଅଭିଷେକ କରାଯାଇଥିଲା ।

(ସା, ପୃ ୪-୮)

ଉଭୟ ବର୍ଣ୍ଣନାରେ ବହୁ ପାର୍ଥକ୍ୟ ରହିଛି । ମୂଳ ଗ୍ରନ୍ଥରେ କୌରବ ସେନାର କର୍ଣ୍ଣ-ସ୍ମରଣ, କର୍ଣ୍ଣଙ୍କର ଭୀଷ୍ମଙ୍କ ସହ ସାକ୍ଷାତ୍, କର୍ଣ୍ଣଙ୍କର ଦୁର୍ଯ୍ୟୋଧନଙ୍କୁ ପରାମର୍ଶ, ଦୁର୍ଯ୍ୟୋଧନଙ୍କର ଦ୍ରୋଣଙ୍କୁ ସେନାପତି ହେବାପାଇଁ ନିବେଦନ, ବାଦ୍ୟ ଘୋଷ ଆଦି ମଧ୍ୟରେ ପୁଣ୍ୟାହବାଚନ ସହ ଦ୍ରୋଣଙ୍କ ଅଭିଷେକ ଆଦର ବର୍ଣ୍ଣନା ସାରଳା ଦାସ ଦେଇନାହାନ୍ତି । ସେ ମ୍ଳେଚ୍ଛ ରାଜାଙ୍କ କଥାଟି ଏଠାରେ ନୂତନ ଭାବରେ ଯୋଗ କରିଛନ୍ତି । ଦୁର୍ଯ୍ୟୋଧନଙ୍କ ଦ୍ୱାରା ଦ୍ରୋଣଙ୍କର ଅଭିଷେକ ବର୍ଣ୍ଣନା ମୂଳଗ୍ରନ୍ଥର ବର୍ଣ୍ଣନାଠାରୁ ସାରଳା ମହାଭାରତରେ ପୃଥକ୍ ହୋଇଅଛି ।

(୬) ଚକ୍ରବ୍ୟୂହ ଗଠନ :-

ଉଭୟ ଗ୍ରନ୍ଥରେ ଦ୍ରୋଣାଚାର୍ଯ୍ୟ ଚକ୍ରବ୍ୟୂହ ଗଠନ କରିଥିବା ବୃତ୍ତାନ୍ତ ଦେଖାଯାଏ । ଏହି ପ୍ରସଙ୍ଗରେ ବ୍ୟାସଦେବ ଲେଖିଛନ୍ତି— ଚକ୍ରବ୍ୟୂହରେ କୌରବ ପକ୍ଷୀୟ ସମସ୍ତ ରାଜା ଅବସ୍ଥାପିତ ହୋଇଥିଲେ । ଚକ୍ରର ଅରମାନଙ୍କରେ ମଧ୍ୟ ରାଜକୁମାର ମାନେ ରହିଥିଲେ । ସେମାନେ ସମସ୍ତେ ଲାଲ ରଙ୍ଗର ବସ୍ତ୍ର ଓ ଆଭୂଷଣ ପରିଧାନ କରିଥିଲେ, ସେମାନଙ୍କର ଧ୍ୱଜା ସୁବର୍ଣ୍ଣମୟ ଓ ପତାକା ଲାଲ ରଙ୍ଗର ଥିଲା । ସମସ୍ତଙ୍କ ଗଳାରେ ସୁବର୍ଣ୍ଣ ନିର୍ମିତ ହାର ଓ ପୁଷ୍ପମାଳା ଶୋଭା ପାଉଥିଲା । ସେମାନଙ୍କ ଦେହରେ ଚନ୍ଦନ ଓ ଅଗୁରୁର ପ୍ରଲେପ ଥିଲା ଓ ସେମାନେ ସୂକ୍ଷ୍ମବସ୍ତ୍ର ପରିଧାନ କରିଥିଲେ । ବ୍ୟୂହରେ ଦଶହଜାର ଧନୁର୍ଦ୍ଧାରୀ ସେନା ଉପସ୍ଥିତ ଥିଲେ । (୩୬ ଅ)

ସାରଳା ଦାସ ଏହି ପ୍ରସଙ୍ଗରେ ଲେଖିଛନ୍ତି— ଗୁରୁ ଦ୍ରୋଣ ଚକ୍ରାକାରରେ ଯେଉଁ ବ୍ୟୂହ ରଚନା କରିଥିଲେ, ସେଥିରେ ନାଗବନ୍ଧ ଓ ବରଣ ଗୋଟି ଦ୍ୱାର ରହିଥିଲା । ପ୍ରଥମ ଦ୍ୱାରରେ ଦ୍ରୋଣାଚାର୍ଯ୍ୟ ନଅ ଲକ୍ଷ ରଥୀ, ପଚାଶ ଲକ୍ଷ ହସ୍ତୀ, ପଞ୍ଚସ୍ତରିଶ ଲକ୍ଷ ଅଶ୍ୱ ନଅ ଷହୁରୀ ପଦାତିକ ସୈନ୍ୟ ସହ ଉପସ୍ଥିତ ଥିଲେ । ସାରଳା ଦାସ ଏହିପରି ଆହି ଦଶଗୋଟି ଦ୍ୱାରର ବର୍ଣ୍ଣନା କରିଛନ୍ତି ।

ଦୁଇଟି ଯାକ ବର୍ଣ୍ଣନା ଯେ ବହୁ ଭାବରେ ପୃଥକ୍, ତାହା ପାଠକମାନେ ଜଣାଯାଏ । ମୂଳରେ ଏଗାର ଗୋଟି ଦ୍ୱାରର ରକ୍ଷକ ଓ ରଥୀ, ରଥ, ଅଶ୍ୱ, ପଦାତିକ ସେନାଙ୍କର ସୁସ୍ପଷ୍ଟ ବିବରଣ ଆଦୌ ମିଳେ ନାହିଁ । କିନ୍ତୁ ସାରଳାଦାସ ତାହା ବିସ୍ତୃତ ଭାବରେ ଦେଇଛନ୍ତି । ମୂଳରେ ବୀରମାନଙ୍କର ବେଶଭୂଷା ଓ ଅଂଗାଗରାଦିର ଯେଉଁ ଚିତ୍ର ମିଳେ, ତାହା ସାରଳା ମହାଭାରତରେ ନାହିଁ । ଚକ୍ରର ଅର ମାନଙ୍କରେ ରାଜକୁମାରଗଣ ଥିବା କଥା ଯାହା ବ୍ୟାସଦେବ ଲେଖିଛନ୍ତି, ତାହା ସାରଳା ଦେଇନାହାନ୍ତି । ଚକ୍ରର ଅଗ୍ରଭାଗରେ ଦ୍ରୋଣାଚାର୍ଯ୍ୟ ଅବସ୍ଥିତ ଥିବା କଥା ଉଭୟ ଗ୍ରନ୍ଥରେ ରହିଅଛି ।

ଏଠାରେ ଉଲ୍ଲେଖ ଯୋଗ୍ୟ ଏହି ଯେ, ସାରଳା ଦାସ ବ୍ୟୂହର ବର୍ଣ୍ଣନା ଗୋଟି ଦ୍ୱାର ଥିବା କହିଥିଲେ ହେଁ, ଏଗାର ଗୋଟି ଦ୍ୱାରର ରକ୍ଷକ ତଥା ସୈନ୍ୟ ସଜ୍ଜାର ବିବରଣ ଦେଇଅଛନ୍ତି ।

## (୩) ଚକ୍ରବ୍ୟୂହ ଭେଦ ସମୟରେ ଅର୍ଜ୍ଜୁନଙ୍କ ଅନୁପସ୍ଥିତିର କାରଣ :-

ଉଭୟ ମହାଭାରତରେ କଥିତ ହୋଇଅଛି ଯେ, ଅଭିମନ୍ୟୁ ଚକ୍ରବ୍ୟୂହ ଭେଦ କରିବା ଓ ନିହତ ହେବା ବେଳେ ଅର୍ଜ୍ଜୁନ ଓ ଶ୍ରୀକୃଷ୍ଣ ସେଠାରେ ଉପସ୍ଥିତ ନ ଥିଲେ । ଏହି ଅନୁପସ୍ଥିତିର କାରଣ ସ୍ୱରୂପ ମୂଳ ଗ୍ରନ୍ଥରେ କୁହାଯାଇଅଛି ଯେ, ତ୍ରିଗର୍ତ୍ତ ଦେଶର ରାଜା ସୁଶର୍ମା ଅର୍ଜ୍ଜୁନଙ୍କୁ ରଣକ୍ଷେତ୍ରର ଦୂରବର୍ତ୍ତୀ ସ୍ଥାନକୁ ନେଇ ଯାଇ ବଧ କରିବେ ବୋଲି ପ୍ରତିଜ୍ଞା କରିଥିଲେ । (ସଂ ୧୭ ଅ) ଅର୍ଜ୍ଜୁନ ଓ ଶ୍ରୀକୃଷ୍ଣ ସୁଶର୍ମା ଓ ତାଙ୍କର ସଂଶପ୍ତକ ବାହିନୀ ସହ ଘୋର ସମରରେ ବ୍ୟାପୃତ ଥିଲେ । ୧୮-୨୦ଅ)

ସାରଳା ମହାଭାରତରେ ଅଛି ଯେ, ଅଭିମନ୍ୟୁ ଚକ୍ରବ୍ୟୂହ ଭେଦ କରୁଥିବା ସମୟରେ ଅର୍ଜ୍ଜୁନ ଓ ଶ୍ରୀକୃଷ୍ଣ ମ୍ଳେଚ୍ଛ ଦେଶର ରାଜା ମୟ ନାମକ ଅସୁରଦ୍ୱାରା ରଚିତ ଜଳନ୍ଧର ବ୍ୟୂହ ଭେଦ କରିବାରେ ନିଯୁକ୍ତ ଥିଲେ । ଏହି ବ୍ୟୂହ ସରସ୍ୱତୀ ନଦୀକୂଳରେ ନିର୍ମିତ ହୋଇଥିଲା । ପାଣ୍ଡବମାନେ ଚକ୍ରବ୍ୟୂହର କଥା ଚିନ୍ତା କରୁଥିବାବେଳେ ଦୂତ ସମ୍ବାଦ ଦେଲା ଯେ, ଅର୍ଜ୍ଜୁନ ଚକ୍ରବ୍ୟୂହ ଭେଦ କରିବାକୁ ଗଲେ ମୟାସୁର ଜମ୍ବୁନାକୁ ଆକ୍ରମଣ କରି ଧ୍ୱଂସ କରିବ । ତେଣୁ ଅର୍ଜ୍ଜୁନ ଚକ୍ରବ୍ୟୂହ ଭେଦର ଦାୟିତ୍ୱ ଭାଇମାନଙ୍କୁ ଦେଇ ଜଳନ୍ଧର ବ୍ୟୂହ ଭେଦ କରିବାପାଇଁ ସରସ୍ୱତୀ ନଦୀକୂଳକୁ ଯାଇଥିଲେ । ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନ ଉଭୟେ ଜଳନ୍ଧର ବ୍ୟୂହ ମଧ୍ୟରେ ବନ୍ଦୀ ହୋଇପଡ଼ିଥିଲେ । (ସା, ୧୯-୪୯ପୃ) ଏହାହିଁ ସେମାନଙ୍କର ଚକ୍ରବ୍ୟୂହ ଭେଦ ବେଳେ ଅନୁପସ୍ଥିତ ହେବାର କାରଣ ।

ସାରଳା ଓ ବ୍ୟାସ ଅଭିମନ୍ୟୁଙ୍କର ଚକ୍ରବ୍ୟୂହ ଭେଦ କାଳରେ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କର ଅନୁପସ୍ଥିତିର କାରଣ ଭିନ୍ନ ଭିନ୍ନ ରୂପରେ ଜଣାଇଥିବା ବିଷୟ ଉପରୋକ୍ତ ବର୍ଣ୍ଣନାରୁ ପ୍ରତିପନ୍ନ ହେଉଅଛି ।

## (୪) ଚକ୍ରବ୍ୟୂହଭେଦ ପାଇଁ ଅଭିମନ୍ୟୁଙ୍କ ନିଯୁକ୍ତି ।

ଯୁଧିଷ୍ଠିର ଅଭିମନ୍ୟୁଙ୍କୁ ଚକ୍ରବ୍ୟୂହ ଭେଦ କରିବା ପାଇଁ ନିର୍ଦ୍ଦେଶ ଦେବା କଥା ଉଭୟ ଗ୍ରନ୍ଥରେ ପ୍ରଦର୍ଶିତ । ଏହି ପ୍ରସଙ୍ଗରେ ବ୍ୟାସ ଲେଖିଛନ୍ତି ଯେ, ଦ୍ରୋଣାଚାର୍ଯ୍ୟ କ୍ରୋଧାନ୍ୱିତ ହୋଇ ପ୍ରବଳ ବେଗରେ ସୈନ୍ୟସଂହାର କରି ଯୁଦ୍ଧଭୂମିରେ ଅଗ୍ରସର ହେଉଥିବାର ଦେଖି ଯୁଧିଷ୍ଠିର ଅଭିମନ୍ୟୁଙ୍କୁ କହିଥିଲେ-ତୁମେ ଅର୍ଜ୍ଜୁନ, ଶ୍ରୀକୃଷ୍ଣ, ଓ ପ୍ରଦ୍ୟୁମ୍ନ କେବଳ ଚକ୍ରବ୍ୟୂହର ଭେଦ ଜାଣ । ଅର୍ଜ୍ଜୁନ ସଂଶପ୍ତକ ସେନା ସଂହାର କରି ଆସିଲେ ଯେପରି ଆମର ନିନ୍ଦା ନ ହୁଏ ତାହା ବୁଝି କାର୍ଯ୍ୟ କରିବା ଉଚିତ୍ । ତୁମେ

ଶୀଘ୍ର ଅସ୍ତ୍ର ଧାରଣ କରି ଦ୍ରୋଣଙ୍କ ସୈନ୍ୟଙ୍କୁ ବିନାଶ କର । ଅଭିମନ୍ୟୁ ସମ୍ମତ ହୋଇ କହିଥିଲେ ଯେ ସେ ପିତାଙ୍କଠାରୁ ବ୍ୟୂହ-ପ୍ରବେଶର କୌଶଳ ଶିକ୍ଷା କରିଛନ୍ତି, କିନ୍ତୁ ବିପତ୍ତି ବେଳେ ସେଥି ମଧ୍ୟରୁ ବାହାରି ଆସିବାର ବିଧି ଜାଣନ୍ତି ନାହିଁ । ଯୁଧିଷ୍ଠିର, ଭୀମ ପ୍ରମୁଖ ଅଭିମନ୍ୟୁ ବ୍ୟୂହ ଭିତରକୁ ବାଟ ଫିଟାଇବା ପରେ ସେହି ବାଟରେ ଯିବାର ସ୍ଥିର ହେଲା । ସମସ୍ତେ ଅଭିମନ୍ୟୁଙ୍କୁ ରକ୍ଷା କରିବେ ବୋଲି କହିଲେ । ଅଭିମନ୍ୟୁଙ୍କ ପଛେ ପଛେ ଯାଇ ବ୍ୟୂହକୁ ଭାଙ୍ଗି ମୁଖ୍ୟ ଯୋଦ୍ଧାମାନଙ୍କୁ ବଧ କରିବା ପାଇଁ ପାଣ୍ଡବମାନେ ସ୍ଥିର କଲେ । ଅଭିମନ୍ୟୁ ବ୍ୟୂହ ପ୍ରବେଶ ପାଇଁ ଆଗ୍ରହ ପ୍ରକାଶ କରିଥିଲେ । (ସଂ, ୩୫ ଅ)

ସାରଳା ମହାଭାରତରେ ମଧ୍ୟ ଯୁଧିଷ୍ଠିର ଚକ୍ରବ୍ୟୂହଭେଦର ଦାୟିତ୍ୱ ଅଭିମନ୍ୟୁଙ୍କୁ ଦେବା କଥା ରହିଅଛି । ସାରଳା ଲେଖିଛନ୍ତି-ଦ୍ରୋଣଙ୍କ ଚକ୍ରବ୍ୟୂହ ଗଠନର ସମ୍ବାଦ ପାଇ ଯୁଧିଷ୍ଠିର ଭୀମ, ନକୁଳ ଓ ସହଦେବଙ୍କୁ ସେ ବିଷୟରେ ପଚାରିଲେ । ସମସ୍ତେ ଚକ୍ରବ୍ୟୂହ-ଭେଦର କୌଶଳ ଅବଗତ ନୁହନ୍ତି ବୋଲି ଜଣାଇବାରୁ ଯୁଧିଷ୍ଠିର ଅଭିମନ୍ୟୁଙ୍କୁ କୋଳରେ ଧରି କହିଲେ-କେହିତ ଚକ୍ରବ୍ୟୂହ ଭେଦ ବିଷୟରେ ଜାଣନ୍ତି ନାହିଁ, ବଡ଼ ବିଷମ ପରିସ୍ଥିତି ପଡ଼ିଲା । ତାଙ୍କର ଚିନ୍ତା ଦେଖି ଅଭିମନ୍ୟୁ କହିଲେ-ମୋ ମସ୍ତକରେ ମୁକୁଟ ବାନ୍ଧି ଦିଅନ୍ତୁ, ମୁଁ ଆଜି ଚକ୍ରବୂହ ଭେଦ କରିବି, ମୋ ସଙ୍ଗରେ ତୁମେ ଚାରିଜଣ ରହିଥିବ । ଯୁଧିଷ୍ଠିର ବିସ୍ମିତ ହୋଇ ପଚାରିଲେ-ତୁମେ ଚଉଦବର୍ଷର ବାଳକ ହୋଇ କିପରି ବ୍ୟୂହଭେଦ ବିଷୟ ଜାଣିଲ ? ଅଭିମନ୍ୟୁ ଉତ୍ତର ଦେଲେ-ମୁଁ ମାତୃଗର୍ଭରେ ଥିବା ବେଳେ ପିତା ମାତାଙ୍କ ଆଗରେ ଚକ୍ରବ୍ୟୂହ-ଭେଦ ବିଷୟ ବର୍ଣ୍ଣନା କରୁଥିଲେ । ମୁଁ ତାହା ଶୁଣିଥିଲି । କିନ୍ତୁ ଶେଷ ତୃତୀୟ ପ୍ରହରରେ ମାତା ନିଦ୍ରିତା ହେଲେ । ଫଳରେ ମୁଁ ମଧ୍ୟ ଶୟନ କଲି । ତେଣୁ ବ୍ୟୂହରୁ ବାହାରି ଆସିବାର କୌଶଳ ଜାଣି ପାରିନି ନାହିଁ । ଭୀମ ତାଙ୍କୁ କହିଲେ-ସେଥିପାଇଁ ଚିନ୍ତା କରନାହିଁ । ଆମେ ଚାରିଜଣ ତୁମ ସହିତ ସର୍ବଦା ରହିଥିବୁ, ତୁମେ ଆମକୁ ଛାଡ଼ି ଭିତରକୁ ଯିବ ନାହିଁ । ପ୍ରଥମ ଦ୍ୱାରରେ ଆମ୍ଭେମାନେ ଯୁଦ୍ଧ ଲଗାଇ ରହିବା ଏବଂ ସେହି ସମୟ ମଧ୍ୟରେ ଅର୍ଜୁନ ଫେରି ଆସିବେ । (ସା, ପୃ ୪୯-୫୦)

ମୂଳ ଗ୍ରନ୍ଥରେ ଅଭିମନ୍ୟୁ ଗର୍ଭରେ ଥିବା ସମୟରେ ଚକ୍ର ବ୍ୟୂହଭେଦର କଥା ଶୁଣିଥିଲେ ବୋଲି ଲେଖାନାହିଁ । ସେଠାରେ ମଧ୍ୟ ଅଭିମନ୍ୟୁଙ୍କ ବୟସର ଉଲ୍ଲେଖ ମିଳେ ନାହିଁ । ଯୁଧିଷ୍ଠିର ଭାଇମାନଙ୍କୁ ବ୍ୟୂହଭେଦ ସମ୍ବନ୍ଧରେ ପଚାରିବା ବିଷୟ ମଧ୍ୟ ମୂଳରେ ଦିଆଯାଇନାହିଁ । ମୂଳରେ ଯୁଧିଷ୍ଠିର ଅଭିମନ୍ୟୁଙ୍କୁ ବ୍ୟୂହଭେଦ ପାଇଁ ଆଦେଶ ଦେଇଛନ୍ତି । କିନ୍ତୁ ସାରଳାଙ୍କ ଲେଖାରେ ଅଛି ଯେ, ଅଭିମନ୍ୟୁ ସ୍ୱତଃପ୍ରବୃତ୍ତ ହୋଇ ବ୍ୟୂହଭେଦ କରିବାକୁ ଯୁଧିଷ୍ଠିରଙ୍କୁ କହିଛନ୍ତି । ମୂଳରେ

ଅଛୁ ଯେ, ବ୍ୟୂହ ମଧ୍ୟରେ ପଶି ମୁଖ୍ୟ ଯୋଦ୍ଧାଙ୍କୁ ବଧ କରିବା ଥିଲା ପାଣ୍ଡବଙ୍କ ଅଭିପ୍ରାୟ । କିନ୍ତୁ ମୁଖ୍ୟ ଦ୍ୱାରରେ ଅର୍ଜ୍ଜୁନ ଫେରିବା ପର୍ଯ୍ୟନ୍ତ ଯୁଦ୍ଧ ଲଗାଇ ରଖିବା ପାଣ୍ଡବଙ୍କ ଅଭିପ୍ରାୟ ଥିଲା ବୋଲି ସାରଳା ଦର୍ଶାଇଛନ୍ତି ।

**(୫) ଚକ୍ରବ୍ୟୂହ-ଭେଦ ବେଳେ ଅର୍ଜ୍ଜୁନଙ୍କୁ ଦୂରକୁ ନେବାର ଉଦ୍ଦେଶ୍ୟ—**

ଏହି ଉଦ୍ଦେଶ୍ୟ ସମ୍ବନ୍ଧରେ ସଂସ୍କୃତ ମହାଭାରତରେ ଉକ୍ତ ଅଛି-ଦ୍ରୋଣାଚାର୍ଯ୍ୟ ଦୁର୍ଯ୍ୟୋଧନଙ୍କୁ କହିଥିଲେ ଯେ, ଯଦି ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କୁ ରଣକ୍ଷେତ୍ରର ଦୂରକୁ ନିଆଯିବ, ତେବେ ସେ ନିଶ୍ଚିତଭାବେ ଯୁଧିଷ୍ଠିରଙ୍କୁ ବନ୍ଦୀ କରି ଆଣିଦେବେ । (ସଂ' ୧୬ ଅ)

ସାରଳା ମହାଭାରତରେ ଏହି କଥା ରହିଛି । ନିମ୍ନୋକ୍ତରୁ ତାହା ସ୍ପଷ୍ଟ ।

"ଦ୍ରୋଣ ଯେ ଚକ୍ରଭୂଅ କପଟ କୂଟ କଲେ
ଅର୍ଜ୍ଜୁନ ନ ଥିଲେ ଯୁଧିଷ୍ଠିରଙ୍କ ଧରିନେବେ
ବୋଲି ବୋଇଲେ । (ସା, ପୃ ୪୯)

ସାରଳାଦାସ ଅର୍ଜ୍ଜୁନଙ୍କୁ ଦୂରକୁ ନେଇଯିବାର ଅନ୍ୟ ଏକ ଉଦ୍ଦେଶ୍ୟ ଦର୍ଶାଇଛନ୍ତି । ପୂର୍ବ ଜନ୍ମରେ ଅଭିମନ୍ୟୁଙ୍କ ନାମ ଥିଲା 'ଆହି' । ପୃଥିବୀର ଭାର ଉଣ୍ଣାସ କରିବାପାଇଁ ଶ୍ରୀକୃଷ୍ଣ ତାଙ୍କୁ ମର୍ତ୍ତ୍ୟକୁ ଆଣିଥିଲେ ଚଉଦବର୍ଷ ପାଇଁ । ଚଉଦବର୍ଷ ପୂରିଗଲେ ସେ ପିତା ଅର୍ଜ୍ଜୁନ ଓ ଶ୍ରୀକୃଷ୍ଣଙ୍କ ବଧ କରି ସ୍ୱର୍ଗକୁ ଚାଲିଯିବାର କଥା ଥିଲା । ଚକ୍ରବ୍ୟୂହ ଭେଦ କଲାବେଳେ ଅର୍ଜ୍ଜୁନ ଉପସ୍ଥିତ ଥିଲେ, ଅଭିମନ୍ୟୁଙ୍କୁ କେହି ବଧ କରି ପାରନ୍ତେ ନାହିଁ । ଅଭିମନ୍ୟୁ-ବଧ ହେଲେ ଦ୍ରୌପଦୀ କ୍ରୋଧାନ୍ୱିତା ହୋଇ ଅଭିଶାପ ଦେବେ ଏବଂ ତା' ଫଳରେ କୌରବଗଣ ଧ୍ୱଂସ ପାଇବେ । ଏଥିପାଇଁ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ମସ୍ତାପୁରର ଜଳନ୍ଧର ବ୍ୟୂହକୁ ଘେନି ଯାଇଥିଲେ । (ସା, ୧୯-୨୨ପୃ)

**(୬) ଅଭିମନ୍ୟୁଙ୍କ ବ୍ୟୂହଭେଦ ଓ ମୃତ୍ୟୁ :—**

ସଂସ୍କୃତ ମହାଭାରତରେ ଅଛି—ପ୍ରଥମେ ଅଭିମନ୍ୟୁ ଦ୍ରୋଣଙ୍କର ସମ୍ମୁଖୀନ ହେଲେ । ଦ୍ରୋଣାଚାର୍ଯ୍ୟଙ୍କୁ ଲଂଘନ କରି ସେ ବ୍ୟୂହ ଭାଙ୍ଗି ଭିତରକୁ ଗଲେ । ଅଭିମନ୍ୟୁ ଭିତରେ ପଶି କୌରବଙ୍କର ଚତୁରଙ୍ଗିଣୀ ସେନାଙ୍କୁ ସଂହାର କଲେ । ଏହାପରେ ତାଙ୍କର ଯୁଦ୍ଧ ଦୁର୍ଯ୍ୟୋଧନଙ୍କ ସହିତ ହେଲା । ଦ୍ରୋଣଙ୍କ ନିର୍ଦ୍ଦେଶରେ ସମସ୍ତ ରଥୀ ଦୁର୍ଯ୍ୟୋଧନଙ୍କୁ ଅଭିମନ୍ୟୁଙ୍କ ଆକ୍ରମଣରୁ ରକ୍ଷା କରିବା ପାଇଁ ଗଲେ । ଦ୍ରୋଣ, ଅଶ୍ୱତ୍ଥାମା, କର୍ଣ୍ଣ, ଶକୁନି, ବୃହଦ୍‌ବଳ, ଶାଲ୍ୟ, ପୌରବ, ଶଲ୍ୟ, ଭୂରି, କୃପାଚାର୍ଯ୍ୟ,

ଭୂରିଶ୍ରବା ଓ ବୃଷସେନ ଏକତ୍ର ହୋଇ ଅଭିମନ୍ୟୁଙ୍କ କବଳରୁ ଦୁର୍ଯ୍ୟୋଧନଙ୍କୁ ମୁକ୍ତ କଲେ । ସେମାନେ ସମସ୍ତେ ରଥସେନା ଦ୍ୱାରା ପରିବୃତ୍ତ ହୋଇ ଅଭିମନ୍ୟୁଙ୍କ ସହ ସମର କରିବାକୁ ଲାଗିଲେ । ତାଙ୍କ ଦ୍ୱାରା କୌରବ ପକ୍ଷୀୟ ବୀର ଅଶ୍ମକ ରାଜକୁମାର ନିହତ ହେଲେ, ଶଲ୍ୟ ମୂର୍ଚ୍ଛାଗଲେ, କର୍ଣ୍ଣଙ୍କ କବଚ ବିଦୀର୍ଣ୍ଣ ହୋଇଗଲା । ଅଭିମନ୍ୟୁ ପୁଣି କୌରବ ପକ୍ଷର ଯୋଦ୍ଧା ସୁଷେଣ, ଦୀର୍ଘ ଲୋଚନ, କୁଣ୍ଡ ଭେଦୀଙ୍କୁ ନିହତ କଲେ । ଯୁଦ୍ଧରେ ଅଭିମନ୍ୟୁଙ୍କ ଦ୍ୱାରା ଶଲ୍ୟଙ୍କ ଭ୍ରାତା ମୃତ୍ୟୁ ବରଣ କଲେ ଓ ଦ୍ରୋଣଙ୍କ ରଥ ସେନା ପଳାୟନ କଲେ ଦୁଃଶାସନ ଓ କର୍ଣ୍ଣ ପରାଜିତ ହେଲେ ଏବଂ କର୍ଣ୍ଣଙ୍କ ଭ୍ରାତା ମୃତ୍ୟୁ ମୁଖରେ ପଡ଼ିଲେ । ଅଭିମନ୍ୟୁଙ୍କୁ ଅନୁସରଣ କରୁଥିବା ପାଣ୍ଡବଗଣ ଜୟଦ୍ରଥଙ୍କ ଦ୍ୱାରା ପ୍ରତିହତ ହୋଇ ପଛରେ ରହିଗଲେ । ଅଭିମନ୍ୟୁ ଏକାକୀ ବ୍ୟୂହ ମଧ୍ୟକୁ ଗଲେ ଏବଂ କୌରବଙ୍କ ପକ୍ଷର ବସାତୀୟ, ସତ୍ୟଶ୍ରବା ଓ ରୁକ୍ମରଥଙ୍କୁ ବଧ କଲେ । ଦୁର୍ଯ୍ୟୋଧନ ପରାଜିତ ହେଲେ । ଦ୍ରୋଣ, କର୍ଣ୍ଣ, ଅଶ୍ୱତ୍ଥାମା, ବୃହଦ୍ବଳ, କୃତବର୍ମା, କୃପାଚାର୍ଯ୍ୟ, ଶକୁନି ଅଭିମନ୍ୟୁଙ୍କ ଦ୍ୱାରା ପରାଜିତ ହୋଇ ପଳାୟନ କଲେ । ତାଙ୍କୁ ଜୟଦ୍ରଥ, କଳିଙ୍ଗସେନା, ନିଷାଦଗଣ ଓ କ୍ରାଥ ପୁତ୍ର ଆକ୍ରମଣ କରିଥିଲେ । ଅଭିମନ୍ୟୁ କ୍ରାଥ ପୁତ୍ରଙ୍କୁ ବଧ କଲେ । କୌରବ ପକ୍ଷର ଛ' ଜଣ ମହାରଥୀ ଯୁଦ୍ଧ କରିବାକୁ ଲାଗିଲେ । ଅଭିମନ୍ୟୁ ବୃନ୍ଦାରକ, ବୃହଦ୍ ବଳ, କର୍ଣ୍ଣଙ୍କ ଛଅ ଜଣ ମନ୍ତ୍ରୀ, ଅଶ୍ୱକେତୁ ଭୋଜ, ଶତ୍ରୁଞ୍ଜୟ, ଚନ୍ଦ୍ରକେତୁ, ମେଘାବେଗ, ସୁବର୍ଚ୍ଚା, ସୂର୍ଯ୍ୟାଭାସ ପ୍ରଭୃତି ବୀରଙ୍କୁ ବିନାଶ କଲେ । ଦ୍ରୋଣଙ୍କ ପରାମର୍ଶ କ୍ରମେ ମହାରଥୀଗଣ ଅଭିମନ୍ୟୁଙ୍କୁ ଏକତ୍ର ଆକ୍ରମଣ କରି ତାଙ୍କର ଧନୁ, ଅଶ୍ୱ, ରଥ, ଖଡ୍ଗ ଚକ୍ରକୁ ବିନଷ୍ଟ କରିଦେଲେ । ଅଭିମନ୍ୟୁ ଗଦା ଯୁଦ୍ଧରେ ଅଶ୍ୱତ୍ଥାମାଙ୍କୁ ପଛକୁ ହଟାଇ ଦେଲେ ଓ କାଳକେୟ, ବସାତି ତଥା କୈକେୟ ବୀର ମାନଙ୍କୁ ବଧ କଲେ । ଦୁଃଶାସନଙ୍କ ପୁତ୍ର ଓ ଅଭିମନ୍ୟୁ ପରସ୍ପର ଗଦା ଯୁଦ୍ଧରେ ବ୍ୟାପୃତ ହେଲେ । ଉଭୟେ ଆଘାତ ପାଇ ମୂର୍ଚ୍ଛିତ ହୋଇ ପଡ଼ିଲେ । କିନ୍ତୁ ଦୁଃଶାସନଙ୍କ ପୁତ୍ର ପ୍ରଥମେ ଉଠି ଗଦାରେ ଆଘାତ କରିବାରୁ ଅଭିମନ୍ୟୁ ଅଚେତ ହୋଇ ଭୂତଳଶାୟୀ ହେଲେ । ଛଅ ଜଣ ମହାରଥୀ ମିଳିତହୋଇ ତାଙ୍କୁ ବଧ କରିଥିଲେ । (ଦ, ୩୬-୪୯ ଅ)

ସାରଳା ମହାଭାରତ ଅନୁସାରେ ଅଭିମନ୍ୟୁଙ୍କ ପ୍ରଥମ ଯୁଦ୍ଧ ହୁଏ ପ୍ରଥମ ଦ୍ୱାର-ରକ୍ଷକ ଦ୍ରୋଣଙ୍କ ସହ । ଅଭିମନ୍ୟୁଙ୍କ ଆକ୍ରମଣରେ ଦ୍ରୋଣ ମୂର୍ଚ୍ଛିତ ହେଲେ । ନିଜ ପିତାଙ୍କର ଗୁରୁ ହୋଇଥିବାରୁ ସେ ତାଙ୍କୁ ବଧ କଲେନାହିଁ । ଭୀମସେନ ମଧ୍ୟ ଅଭିମନ୍ୟୁଙ୍କ ପଛେ ପଛେ ବ୍ୟୂହ ମଧ୍ୟରେ ପ୍ରବେଶ କରିଥିଲେ । ଭୀମସେନ ବୃନ୍ଦାରକ ଦେଶର ରାଜା ମଦନ ସେନଙ୍କୁ ବଧ କଲେ । ଦ୍ୱିତୀୟ ଦ୍ୱାରରେ ଅଭିମନ୍ୟୁ ଜୟଦ୍ରଥଙ୍କର ସମ୍ମୁଖୀନ ହେଲେ । ଭୀମ, ନକୁଳ ଓ ସହଦେବ ମଧ୍ୟ ତାଙ୍କ ସହ ରହିଥିଲେ ।

ସହଦେବ ଶାକଲ ଦେଶର ରାଜା ମନ୍ମଥଙ୍କୁ ନିହତ କରିଥିଲେ । ଜୟଦ୍ରଥଙ୍କୁ ପରାସ୍ତ କରି ଅଭିମନ୍ୟୁ ଦ୍ୱିତୀୟ ଦ୍ୱାର ଅତିକ୍ରମ କରିଗଲେ । ଜୟଦ୍ରଥ ବାଧା ଦେବାରୁ ପାଣ୍ଡବ ଗଣ ଆଉ ଅଗ୍ରଗତି କରିପାରିଲେ ନାହିଁ । ଜୟଦ୍ରଥ ରୁଦ୍ରଶର ପ୍ରୟୋଗ କରିବାରୁ ଭୀମ ସହଦେବଙ୍କ ପରାମର୍ଶ କ୍ରମେ ଯୁଦ୍ଧରୁ କ୍ଷାନ୍ତ ହେଲେ । ଅଭିମନ୍ୟୁ ତୃତୀୟ ଦ୍ୱାରରେ କର୍ଣ୍ଣ, ଚତୁର୍ଥ ଦ୍ୱାରରେ ଶଲ୍ୟ ଓ କୃପଙ୍କୁ ପରାଜିତ କରି ପଞ୍ଚମ ଦ୍ୱାରରେ ପହଞ୍ଚିଲେ । ଏହି ଦ୍ୱାରରେ ଥିଲେ ଭୂରିଶ୍ରବା ଓ ଜାନୁଘଣ୍ଟ । କର୍ଣ୍ଣାଟ ରାଜା ଜାନୁଘଣ୍ଟ ନିହତ ହେଲେ ଓ ଭୂରିଶ୍ରବା ମୂର୍ଚ୍ଛିତ ହୋଇ ପଡ଼ିଲେ । ଷଷ୍ଠ ଦ୍ୱାରରେ କୃପାଚାର୍ଯ୍ୟ ପରାସ୍ତ ହେଲେ ଓ ସପ୍ତମ ଦ୍ୱାରରେ ଅଶ୍ୱତ୍ଥାମା ମୂର୍ଚ୍ଛା ଗଲେ । ଅଷ୍ଟମ ଦ୍ୱାରରେ ସୋମଦତ୍ତ ଭୂତଳଶାୟୀ ହେଲେ ଓ ନବମ ଦ୍ୱାରରେ ଦୁଃଶାସନ ତଥା ଅଳମ୍ବୁଷ ପରାସ୍ତ ହେଲେ । ଦଶମ ଦ୍ୱାରରେ ଅଭିମନ୍ୟୁଙ୍କର ସମର ଦୁର୍ଯ୍ୟୋଧନଙ୍କ ସହ ହେଲା । ଏଠାରେ ଲକ୍ଷ୍ମଣ କୁମର, ଦୁଃଶାସନ, ଦୁର୍ଜୟ ଆଦି ଏକତ୍ର ଯୁଦ୍ଧ କରି ପରାସ୍ତ ହେଲେ । ପଳାଇଯାଉଥିବା କୌରବ ସେନାଙ୍କୁ ଏକତ୍ରିତ କରି ଶକୁନି, ଦୁଃଶାସନ, ଦୁର୍ଜୟ, ଦୁର୍ମୁଖ, ଦୁରାକର୍ଣ୍ଣ, ଦୁର୍ମନ, ଦୁରାନ୍ତକ, ଦୁକର୍ଣ୍ଣ, ଦୁର୍ବାଳ, ଦୁର୍ବନ୍ଦ, ଦୂଷଣ ଦୁର୍ନାଳ, ଦୁରାନ୍ତକ ପ୍ରମୁଖ ଅଠାଶୋଇ କୌରବ ଭ୍ରାତା ଯୁଦ୍ଧାରମ୍ଭ କଲେ । ଏତିକି ବେଳେ ଦେବଦୂତ ପୁରୁଷମାନେ ଆସି କେତକ ସାରଥୀଙ୍କୁ ଇନ୍ଦ୍ରଙ୍କ ଆଦେଶ ଜଣାଇ କହିଲେ-ଉଦେକବନ୍ଧ ନାମକ ଅସୁର ସ୍ୱର୍ଗ ଆକ୍ରମଣ କରିଛି । ସେ କେବଳ ଅଭିମନ୍ୟୁଙ୍କ ହସ୍ତରେ ନିହତ ହେବ । ଶୀଘ୍ର ତାଙ୍କୁ ସ୍ୱର୍ଗକୁ ପ୍ରେରଣ କର । ଏଣେ ଅଭିମନ୍ୟୁ କୌରବ ପକ୍ଷୀୟ ସମସ୍ତ ବୀରଙ୍କୁ ପରାଭୂତ କରି ଏକାଦଶ ଦ୍ୱାରରେ ଉପନୀତ ହେଲେ । ଦ୍ୱାରରକ୍ଷକ ଅଶ୍ୱତ୍ଥାମା ଯୁଦ୍ଧରେ ଅଚେତ ହୋଇ ପଡ଼ିଲେ । ଦୁର୍ଯ୍ୟୋଧନ ଆଦେଶ ଦେଲେ – ସମସ୍ତେ ଏକାଠି ମିଶି, ଧର୍ମାଧର୍ମ ବିଚାର ନ କରି ଅଭିମନ୍ୟୁଙ୍କୁ ବଧ କର । ତେଣୁ ଦୁର୍ଜୟ, ଦୁର୍ମନ, ଅଳମ୍ବୁଷ, ଅଳାୟୁଧ, ଶକୁନି ଆଦି ଆକ୍ରମଣ କରି ତାଙ୍କର କୋଦଣ, ଧନୁ ଓ ଶରକୁ ନଷ୍ଟ କରିଦେଲେ । ଅଭିମନ୍ୟୁ ଖଡ଼୍ଗ ଧରି ରଥରୁ ଓହ୍ଲାଇ ଆସିଲେ । ଦୁର୍ମନ ଗୁରୁଜଦ୍ୱାରା ତାଙ୍କର ଖଡ଼୍ଗକୁ ଧ୍ୱଂସ କଲେ । ଅସ୍ତ୍ର ଶୂନ୍ୟ ହୋଇ ଅଭିମନ୍ୟୁ ମାଲଯୁଦ୍ଧରେ ବ୍ୟାପୃତ ହେଲେ । ଦୁଃଶାସନ ପଛରୁ ଆସି ତାଙ୍କର ମସ୍ତକରେ ଗଦାଘାତ କରିବାରୁ ସେ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ଦୁଃଶାସନ ପୁଣି ଥରେ ଗଦାଘାତ କରିବାରୁ ଅଭିମନ୍ୟୁଙ୍କର ଅସ୍ଥି, ଚର୍ମ ଓ ମାଂସ ଧୂଳିରେ ମିଶିଗଲା । (ପୃ ୫୭- ୧୯)

ଦୁଇଟି ଯାକ ବର୍ଣ୍ଣନାର ଧାରା ଯେ ପୃଥକ୍, ତାହା ସ୍ପଷ୍ଟ ଜଣାଯାଏ । ସାରଳା ଦାସ ଯେପରି କ୍ରମାନ୍ୱୟରେ ବାଇଶି ଦ୍ୱାରରେ ଯୁଦ୍ଧ ହେବା କଥା ଲେଖିଛନ୍ତି, ସେପରି କ୍ରମ ମୂଳଗ୍ରନ୍ଥରେ ଦେଖାଯାଏ ନାହିଁ । ପୁନଶ୍ଚ ସାରଳା ଦାସ ଦୁଃଶାସନଙ୍କ ଗଦାଘାତରେ ଅଭିମନ୍ୟୁଙ୍କର ବଧ ସମ୍ପାଦନ କରିଥିବା ସ୍ଥଳେ, ମୂଳରେ ତାହା ଦୁଃଶାସନଙ୍କ ପୁତ୍ର

ଦ୍ୱାରା ସଂପାଦତ ହୋଇଅଛି । ସାରଳାଙ୍କ ଲେଖାରେ ଅଭିମନ୍ୟୁଙ୍କ ସାରଥୀଙ୍କ ନାମ 'କେତନ' କିନ୍ତୁ ବ୍ୟାସଙ୍କ ଲେଖାରେ ସେହି ନାମ 'ସୁମିତ୍ର' । (ସଂ, ୩୫ ଅ) ସାରଳା ଦାସ ଯେଉଁ ବିଦ୍ୱାନ୍ ପୁରୁଷଙ୍କ ଆଗମନ ବୃତ୍ତାନ୍ତ ଦେଇଛନ୍ତି, ତାହା ବ୍ୟାସଙ୍କ ବର୍ଣ୍ଣନାରେ ଦେଖାଯାଏ ନାହିଁ । ଉଭୟ ଗ୍ରନ୍ଥରେ ଅଭିମନ୍ୟୁଙ୍କ ଯୁଦ୍ଧ ଦ୍ରୋଣ, ଦୁଃଶାସନ, ଦୁର୍ଯ୍ୟୋଧନ, କୃପ, ଶଲ୍ୟ, କର୍ଣ୍ଣ, ଭୂରିଶ୍ରବା, ଅଳମ୍ବୁଷ, ଜୟଦ୍ରଥ, ଅଶ୍ୱତ୍ଥାମା ଓ ଲକ୍ଷ୍ମଣ କୁମାରଙ୍କ ସହ ହେବା କଥା ଅଛି । ଉଭୟରେ ବହୁ ଯୋଦ୍ଧା ମିଳିତ ହୋଇ ଅଭିମନ୍ୟୁଙ୍କୁ ବଧ କରିଥିବା ବୃତ୍ତାନ୍ତ ଦିଆହୋଇଅଛି । ମୂଳରେ ଅଛି ଯେ, ଦ୍ରୋଣ ଅଭିମନ୍ୟୁଙ୍କୁ ନିରସ୍ତ୍ର ଓ ବିରଥୀ କରିବା ପାଇଁ ପରାମର୍ଶ ଦେଇଥିଲେ । ସାରଳାଦାସ ତାହା ଦର୍ଶାଇ ନାହାନ୍ତି । ମୂଳରେ ଥିବା କୃତବର୍ମା, ବୃହଦ୍ବଳ,ଭୂରି, ଶାଲ, ବୃଷସେନ, ଅଶ୍ମକକୁମାର କାଥପୁତ୍ର, ଶଲ୍ୟ ଓ କର୍ଣ୍ଣଙ୍କ ଭ୍ରାତା, ରୁକ୍ମରଥ, ଦୁଶାସନ ପୁତ୍ର, ମେଘାବେଗ, ସୁବର୍ଚ୍ଚା ସୋମଦତ୍ତ, ସୂର୍ଯ୍ୟଭାସ କାଲକେୟ, ପୌରବ, ବସାତୀୟ, ଅଶ୍ୱକେତୁ, ଶତ୍ରୁଞ୍ଜୟ, ଚନ୍ଦ୍ରକେତୁ ଆଦିଙ୍କ କଥା ସାରଳା ମହାଭାରତରେ ନାହିଁ । ମୂଳ ଗ୍ରନ୍ଥରେ ବୃନ୍ଦାରକ ନାମକ ବୀରଙ୍କୁ ଅଭିମନ୍ୟୁ ବଧ କରିଥିବା କଥା ଅଛି । ସଂ, ୪୬/ ୧୨) ସାରଳା ଦାସ କହନ୍ତି—ବୃନ୍ଦାରକ ଦେଶର ରାଜା ମଦନସେନଙ୍କୁ ବଧ କରିଥିଲେ । କର୍ଣ୍ଣାଟର ରାଜା କାଳୁଦଣ୍ଡ, ଅଠାଶୋଇଜଣ କୌରବ-ଭ୍ରାତାଙ୍କ ଯୁଦ୍ଧ ବିଷୟ ଯାହା ସାରଳା ଦାସ ବର୍ଣ୍ଣନା କରିଛନ୍ତି, ତାହା ବ୍ୟାସଙ୍କ ଲେଖାରେ ନାହିଁ । ସହଦେବଙ୍କ ଦ୍ୱାରା ଶାକଲ୍ୟ ଦେଶର ରାଜା ମନ୍ମଥଙ୍କ ବଧ ବିଷୟ ଯାହା ସାରଳା ମହାଭାରତରେ ଦେଖାଯାଏ, ତାହା ବ୍ୟାସଙ୍କ ମହାଭାରତରେ ଅଭାବ । ଭୀମ, ନକୁଳ ଓ ସହଦେବଙ୍କୁ ଅଗ୍ରଗତ କରିବା ଦଗରେ ଜୟଦ୍ରଥ ବାଧା ଦେବା ଏବଂ ଅଭିମନ୍ୟୁ ଏକାକୀ ବ୍ୟୂହ ମଧ୍ୟକୁ ଯିବା ବୃତ୍ତାନ୍ତ ଉଭୟ ଗ୍ରନ୍ଥରେ ପ୍ରଦର୍ଶିତ । ସାରଳା ଦାସ ଅଭିମନ୍ୟୁଙ୍କ ବ୍ୟୂହପ୍ରବେଶ ଓ ଯୁଦ୍ଧ ବର୍ଣ୍ଣନାରେ ମୂଳକୁ ଅନୁସରଣ କରିନାହାନ୍ତି କହିଲେ ଅଯଥାର୍ଥ ହେବ ନାହିଁ ।

## ଅଭିମନ୍ୟୁଙ୍କ ମୃତ୍ୟୁର କାରଣ ଓ ପୂର୍ବଜନ୍ମ :—

ସଂସ୍କୃତ ମହାଭାରତରେ ଉକ୍ତ ଅଛି—ବ୍ୟାସଦେବ ଯୁଧିଷ୍ଠିରଙ୍କୁ କହିଥିଲେ ଯେ ଅଭିମନ୍ୟୁ ପୂର୍ବ ଜନ୍ମରେ ଚନ୍ଦ୍ରମାଙ୍କର ପୁତ୍ର ଥିଲେ । ସେ ସମ୍ମୁଖ ଯୁଦ୍ଧରେ ନିହତ ହୋଇ ପୁନଃ ଚନ୍ଦ୍ରଲୋକକୁ ଗମନ କରିଛନ୍ତି । ସେଠାରେ ସେ ପୂର୍ବଭାବକୁ ପ୍ରାପ୍ତ ହୋଇ, ଚନ୍ଦ୍ରମାଠାରୁ ଉତ୍ପନ୍ନ ଦ୍ୱିତୀୟ ଶରୀର ଧାରଣ କରି ନିଜର ଅମୃତମୟ କିରଣଦ୍ୱାରା ରାଜା ସୋମଙ୍କ ପରି ପ୍ରକାଶିତ ହୋଇ ଅଛନ୍ତି । (ଦ, ୫୪/ ୫୩–୫୪)

ସାରଳା ମହାଭାରତରେ କୁହାଯାଇଅଛି— ସତ୍ୟଯୁଗରେ ଅଭିମନ୍ୟୁଙ୍କର ନାମ ଥିଲା ଥାଦ' । ସେହି ଅବତାରରେ ତାଙ୍କର ମାତାଥିଲେ ଉଗ୍ରତାରା ବା ଭୈରବୀ । ଉଗ୍ରତାରା ଦ୍ୱାପର ଯୁଗରେ ନନ୍ଦରାଜାଙ୍କ କନ୍ୟାରୂପରେ ଜାତ ହୋଇଥିଲେ । ତାଙ୍କୁ କଂସାସୁର

ପଥର ଉପରେ କସ୍ତୁରୀ ଦେଉଥିଲା । ଯୋଗଜ ମାତା ଓ ପୁତ୍ରଙ୍କୁ ଅନୁରୋଧ କଲେ – ତୁମ୍ଭେ ଦୁହେଁ ମୋ ପାଇଁ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୁଅ । ଆଉ କହିଲେ – ଆମର କାମ ତ ସ୍ୱର୍ଗ ରକ୍ଷା, ଆମେ ମର୍ତ୍ତ୍ୟରେ ରହିପାରିବୁ କେଉଁଠି ? ତେବେ ତୁମ କଥା ଆମେ ଟାଳି ପାରିବୁ ନାହିଁ । ତୁମ ପାଇଁ ମୁଁ ମର୍ତ୍ତ୍ୟରେ ଚଉଦ ବର୍ଷପର୍ଯ୍ୟନ୍ତ ରହିବ । ସେଥିରୁ ଦିନେ ଅଧିକ ହେଲେ ପିତା ଓ ତୁମକୁ ବଧ କରି ସ୍ୱର୍ଗକୁ ଫେରି ଆସିବ । ଭଗବାନ ଶ୍ରୀକୃଷ୍ଣ ସମ୍ମତ ହେବାରୁ ଉଗ୍ରତାରା ସୁଭଦ୍ରା ରୂପରେ ଓ ଆଉ ଅଭିମନ୍ୟୁ ରୂପରେ ଜାତ ହୋଇଥିଲେ । ( ସା, ୧୦୯ପୃ) ସହଦେବ ଯେଉଁ ପୂର୍ବ କଥା ଶ୍ରୀକୃଷ୍ଣଙ୍କୁ ସ୍ମରଣ କରାଇ କହିଥିଲେ—କାଲି ଅଭିମନ୍ୟୁଙ୍କ ଚଉଦବର୍ଷ ପୂର୍ଣ୍ଣ ହୋଇଛି । ତାଙ୍କୁ ସ୍ୱର୍ଗକୁ ନପଠାଇଲେ ସେ ତୁମଙ୍କୁ ଓ ଅର୍ଜୁନଙ୍କୁ ବଧ କରିବ । (ସା, ୨୦-୨୧ପୃ) ଅଭିମନ୍ୟୁ ଚକ୍ରବ୍ୟୂହରେ ପ୍ରବେଶ କରିଥିବା ବେଳେ ଇନ୍ଦ୍ର ବହ୍ନୀପୁରୁଷଙ୍କୁ ମର୍ତ୍ତ୍ୟକୁ ପ୍ରେରଣ କଲେ । କବନ୍ଧ ନାମକ ରାକ୍ଷସର ପୁତ୍ର ଉଦେକବନ୍ଧ ସ୍ୱର୍ଗ ଆକ୍ରମଣ କଲା । ଅଭିମନ୍ୟୁ କେବଳ ସେହି ଅସୁରକୁ ବଧ କରିବାର କଥା ଥିଲା । ତେଣୁ ଇନ୍ଦ୍ରଙ୍କ ଆଦେଶରେ ବହ୍ନୀ ପୁରୁଷମାନେ ମର୍ତ୍ତ୍ୟକୁ ଆସି 'କେତନ' ସାରଥୀକୁ କହିଲେ –ଶୀଘ୍ର ଅଭିମନ୍ୟୁଙ୍କୁ ସ୍ୱର୍ଗକୁ ପଠାଇଦିଅ । ଅଭିମନ୍ୟୁ ବଞ୍ଚିରହିଲେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଜୀବନରେ ରଖି ପାରିବେ ନାହିଁ । ଅଭିମନ୍ୟୁ ନିହତ ହେଲେ, ଅର୍ଜୁନ ପୁତ୍ରକଷ୍ଟ ହେତୁ କ୍ରୋଧାନ୍ୱିତ ହୋଇ କୌରବମାନଙ୍କୁ ଧ୍ୱଂସ କରିବେ । କୌରବଗଣ ବିନଷ୍ଟ ହେଲେ ସ୍ୱର୍ଗ ଓ ମର୍ତ୍ତ୍ୟର ଭାର ହରଣ ହେବ । ଏହି ସମସ୍ତ କାରଣରୁ ଅଭିମନ୍ୟୁଙ୍କ ବଧ ଶ୍ରୀକୃଷ୍ଣଙ୍କ ଚକ୍ରାନ୍ତରେ ସମ୍ଭବ ହେଲା । (ସା,୧୦୦ -୧୧୨ପୃ) ଅଭିମନ୍ୟୁ ମୃତ୍ୟୁପରେ ସ୍ୱର୍ଗକୁ ଗମନ କରି, ଉଦେକବନ୍ଧ ଅସୁରକୁ ବଧ କଲେ ଓ ସ୍ୱର୍ଗ ରକ୍ଷା ହେଲା । (ସା, ୧୨୦ପୃ)

ଉଭୟ ମହାଭାରତରେ ଅଭିମନ୍ୟୁଙ୍କ ପୂର୍ବଜନ୍ମର ବୃତ୍ତାନ୍ତ ଭିନ୍ନ ଭିନ୍ନ ଅଟେ । ମୂଳଗ୍ରନ୍ଥରେ ଅଭିମନ୍ୟୁ-ବଧର କୌଣସି ଉଦ୍ଦେଶ୍ୟ ବର୍ଣ୍ଣିତ ହୋଇ ନାହିଁ । କିନ୍ତୁ ସାରଳା ମହାଭାରତରେ ତାହାର କାରଣ ହେଲା—ଆଉକୁ ଶ୍ରୀକୃଷ୍ଣ ଦେଇଥିବା ପ୍ରତିଶ୍ରୁତି ରକ୍ଷା, ଅର୍ଜୁନଙ୍କର ଜୀବନ ରକ୍ଷା ରାକ୍ଷସର ଆକ୍ରମଣରୁ ସ୍ୱର୍ଗରକ୍ଷା ।

## (୮) ଅର୍ଜୁନଙ୍କ ଜୟଦ୍ରଥ ବଧ ପ୍ରତିଜ୍ଞା:–

ମୂଳ ମହାଭାରତରେ ଅଛି ଯେ, ଅର୍ଜୁନ ସଂଶପ୍ତକ ସେନା ବଧ କରି ଆସିବା ବେଳେ ସହସା ବିକଳ ଓ ଭୟଭୀତ ହୋଇ ଉଠିଲେ । ଯୁଧିଷ୍ଠିରଙ୍କର ଅମଙ୍ଗଳ ଆଶଙ୍କା କରି ସେ ଉଦ୍‌ବିଗ୍ନ ହେଲେ । ଶିବିର ନିକଟକୁ ଆସି ସେ ବାଦ୍ୟବାଜଣା, ସ୍ତୁତିଗାନ ଆଦି ଶୁଣିଲେ ନାହିଁ । ସେ ଦେଖିଲେ ଯୋଦ୍ଧାମାନେ ମସ୍ତକ ନତ କରି ଚାଲିଯାଉଛନ୍ତି ଓ ଭ୍ରାତାମାନେ ଅଭିମନ୍ୟୁଙ୍କ ସହ ତାଙ୍କୁ ଅଭ୍ୟର୍ଥନା କରିବାକୁ ଆସୁନାହାନ୍ତି । ଚକ୍ରବ୍ୟୂହରେ ଅଭିମନ୍ୟୁ ନିହତ ହୋଇଥିବା ଆଶଙ୍କା କରି ଅର୍ଜୁନ ବ୍ୟସ୍ତ-ବିବ୍ରତ ହୋଇପଡ଼ିଲେ ।

ଯୁଧିଷ୍ଠିର ଓ ଭୀମଙ୍କୁ ନୀରବ ଦେଖି ସେ କହିଲେ—ଅଭିମନ୍ୟୁର ହତ୍ୟାକାରୀକୁ ମୁଁ ଖଣ୍ଡ ଖଣ୍ଡ କରିଦେବି । ସେ ଭ୍ରାତାଗଣଙ୍କୁ ଦୋଷ ଦେଇ କହିଥିଲେ – ତୁମ୍ଭେମାନେ ଜଣ୍ଡାର ସନ୍ଧ ଯୁଦ୍ଧ କରିଥିଲେ ଅଭିମନ୍ୟୁ ନିହତ ହୋଇ ନଥାନ୍ତା । ତୁମ୍ଭେମାନେ ବୃଥାରେ ନିଜକୁ ବୀର ବୋଲି କହୁଛ । ଅଳଙ୍କାର ପରି କବଚ ଧାରଣ କରିଛ । ତୁମ୍ଭମାନଙ୍କର ଜୀବନକୁ ଧିକ୍ ।

ଯୁଧିଷ୍ଠିର ଅଭିମନ୍ୟୁ ବଧର ସକଳ ବୃତ୍ତାନ୍ତ ପ୍ରକାଶ କଲେ । ଜୟଦ୍ରଥ ପଥ ବନ୍ଦ କରି ଦେବାରୁ ସେମାନେ ଅଭିମନ୍ୟୁଙ୍କ ସଙ୍ଗରେ ଯାଇ ତାଙ୍କୁ ରକ୍ଷା କରି ପାରିଲେ ନାହିଁ ବୋଲି ଜଣାଇଲେ । ଏହା ସବୁ ଶୁଣିଲାପରେ ଅର୍ଜୁନ ପ୍ରତିଜ୍ଞା କଲେ ଯେ, ସେ ପରଦିନ ସୂର୍ଯ୍ୟାସ୍ତ ପୂର୍ବରୁ ଜୟଦ୍ରଥଙ୍କୁ ବଧ କରିବେ, ନଚେତ୍ ଅଗ୍ନିରେ ପ୍ରବେଶ କରି ପ୍ରାଣତ୍ୟାଗ କରିବେ । (ସଂ, ୭୩ଅ)

ସାରଳା ମହାଭାରତରୁ ଜଣାଯାଏ ଯେ ଅର୍ଜୁନ ଜାଳନ୍ଧର ବୂହ୍ୟରୁ ଫେରିବା ପରେ ରଣାଙ୍ଗନରେ ରଥ, ଅଶ୍ୱ, ଗଜ ଓ ପଦାତିକ ସେନାଙ୍କ ଶରୀର ଖଣ୍ଡ ଖଣ୍ଡ ହୋଇ ପଡ଼ିଥିବାର ଦେଖିଲେ । ପ୍ରେତ ପିଶାଚ, ବ୍ୟାଘ୍ର, ଭଲ୍ଲୁକ, ଶୃଗାଳ, ଶାଗୁଣା ଓ ପେଚାଙ୍କର ଶବ୍ଦ ସେ ଶୁଣିଲେ । ଯୋଗିନୀ, କଙ୍କାଳୀ ଓ ବେତାଳୀଙ୍କର ନୃତ୍ୟ ସେ ଦେଖିବାକୁ ପାଇଲେ । ରଣକ୍ଷେତ୍ରରୁ ଶିବିରକୁ ଗଲାବେଳେ ନାନା ଅଶୁଭ ଲକ୍ଷଣ ଅର୍ଜୁନ ଦେଖିଲେ । ସେ କିଛି ଅଘଟଣ ଘଟିଛି ବୋଲି ଆଶଙ୍କା କଲେ । ସେ ଭ୍ରାତାମାନଙ୍କ ପାଖରେ ପହଞ୍ଚି ଚକ୍ରବୂହ୍ୟର କଥା ପଚାରିବାରୁ ଯୁଧିଷ୍ଠିର ଶୋକାଭିଭୂତ ହୋଇ ନୀରବ ରହିଲେ । ଭୀମ ସମସ୍ତ କଥା କହିଲେ । ଜୟଦ୍ରଥଙ୍କ ଯୋଗୁଁ ଅଭିମନ୍ୟୁ ନିହତ ହେଲେ ବୋଲି ଭୀମସେନ ପ୍ରକାଶ କଲେ । ଅଭିମନ୍ୟୁଙ୍କ ସାରଥୀ ମଧ୍ୟ ଅଭିମନ୍ୟୁଙ୍କୁ ଅନେକ ରାଜା ଏକତ୍ର ଆକ୍ରମଣ କରିବାର କଥା ଜଣାଇଲେ । ଅଣୀଲକ୍ଷ କୋଦ୍ରକାର ଏକତ୍ର ଚକ୍ରଭୂଷଣ୍ଡୀ ଓ ଯାଠିରେ ଆଘାତ କରିବା କଥା ସାରଥୀ ପ୍ରକାଶ କରିଥିଲେ । ସେ ସମସ୍ତ ଶୁଣି ଅର୍ଜୁନ ଶପଥ କଲେ ଯେ, ସେ ପରଦିନ ସୂର୍ଯ୍ୟାସ୍ତ ହେବା ପୂର୍ବରୁ ଜୟଦ୍ରଥଙ୍କୁ ବଧ ନ କଲେ ଅଗ୍ନିରେ ଝାସ ଦେଇ ମୃତ୍ୟୁବରଣ କରିବେ ।
(ସା,୧୭୧-୧୭୨ପୃ)

ଉଭୟ ବର୍ଣ୍ଣନାରେ ଜୟଦ୍ରଥଙ୍କୁ ଅଭିମନ୍ୟୁ ବଧର ମୁଖ୍ୟ କାରଣ ବୋଲି କୁହାଯାଇଛି । ଅର୍ଜୁନ ପୁତ୍ରର ମୃତ୍ୟୁ ସମ୍ବାଦ ନ ପାଇବା ପୂର୍ବରୁ ପଥ ମଧ୍ୟରେ ଅମଙ୍ଗଳ ଆଶଙ୍କା କରି ଶୋକାକୁଳ ହେବା କଥା ଯାହା ମୂଳ ଗ୍ରନ୍ଥରେ ରହିଛି ତାହା ସାରଳା ମହାଭାରତରେ ନାହିଁ । ମୂଳରେ ଅଭିମନ୍ୟୁଙ୍କ ବଧ ବୃତ୍ତାନ୍ତ ଯୁଧିଷ୍ଠିରଙ୍କ ମୁଖରେ ପ୍ରଦତ୍ତ ହୋଇଥିବାସ୍ଥଳେ, ସାରଳା ମହାଭାରତରେ ତାହା ଭୀମଙ୍କ ମୁଖରେ କଥିତ । ଅଭିମନ୍ୟୁ ବଧ ଆଶଙ୍କା କରି ଅର୍ଜୁନ ଭ୍ରାତାମାନଙ୍କୁ ଯେଉଁ ପ୍ରକାର ତିରସ୍କାର କରିବା

କଥା ବ୍ୟାସଦେବ ଲେଖିଛନ୍ତି, ତାହା ସାରଳା ଦାସ ଦେଇନାହାନ୍ତି । ମୂଳରେ ଥିବା ଅଭିମନ୍ୟୁ ବଧର ବୃତ୍ତାନ୍ତ ଠାରୁ ସାରଳାଙ୍କ ବର୍ଣ୍ଣନା ନାନା ଭାବରେ ଭିନ୍ନ ଅଟେ । ମୂଳ ଗ୍ରନ୍ଥରେ ଦୁଃଶାସନ ପୁତ୍ରଙ୍କ ଗଦାଘାତରେ ଅଭିମନ୍ୟୁ ବଧ ହେବା କଥା ଥିବା ବେଳେ, ସାରଳା ମହାଭାରତରେ ତାହା ଅଶୀଲକ୍ଷ କୋନ୍ତକାରଙ୍କର ଭୁଷଣ୍ଡୀ ଘାଠିରେ ସଂପାଦତ ହୋଇଥିଲା ବୋଲି ଉକ୍ତ ହୋଇଅଛି । ଉଭୟ ବର୍ଣ୍ଣନାରେ ଅର୍ଜୁନଙ୍କର ଅଶୁଭ ଶଂଗୁନ ଦେଖିବା ଶୋକାକୁଳ ହେବା ଓ ଜୟଦ୍ରଥ ବଧ ପାଇଁ ପ୍ରତିଜ୍ଞା କରିବା କଥା ରହିଛି ।

## (୯) ଶକଟ-ବ୍ୟୁହ ଗଠନ କଥା :

ଅର୍ଜୁନଙ୍କ ପ୍ରତିଜ୍ଞା କଥା ଶୁଣି ଜୟଦ୍ରଥ ରାଜାମାନଙ୍କ ସମକ୍ଷରେ କ୍ରନ୍ଦନ କଲେ-ତୁମ୍ଭେମାନେ ମୋତେ ରକ୍ଷା ନକଲେ ମୁଁ ଏଠାରୁ ଚାଲିଯିବି । ଜୟଦ୍ରଥଙ୍କ ଭୀତତ୍ରସ୍ତ ହେବା ଦେଖି ଦୁର୍ଯ୍ୟୋଧନ ତାଙ୍କୁ ଅଭୟ ପ୍ରଦାନ କରି କହିଲେ ମୁଁ କର୍ଣ୍ଣ, ଚିତ୍ରସେନ, ବିବିଂଶତି, ଭୁରିଶ୍ରବା, ଶଳ, ଶଲ୍ୟ, ବୃଷସେନ, ପୁରୁମିତ୍ର, ଜୟ, ଭୋଜ, କାମ୍ବୋଜ, ସୁଦକ୍ଷିଣ ଆଦି ତୁମକୁ ରକ୍ଷା କରିବୁ । ତା'ପରେ ସେମାନେ ଦ୍ରୋଣଙ୍କ ପାଖକୁ ଗଲେ । ଦ୍ରୋଣ ମଧ୍ୟ ଅଭୟ ଦେଇ କହିଲେ—ମୁଁ ଜୟଦ୍ରଥଙ୍କୁ ନିଃସନ୍ଦେହ ଭାବରେ ରକ୍ଷା କରିବି । (ଦ, ୭୪ ଅ) ଦ୍ରୋଣାଚାର୍ଯ୍ୟ ଜୟଦ୍ରଥଙ୍କୁ ରକ୍ଷା କରିବା ପାଇଁ ଚକ୍ର-ଶକଟ ନାମକ ବ୍ୟୁହ ରଚନା କଲେ ।

ସାରଳା ମହାଭାରତରେ ଅଛି – ଅର୍ଜୁନଙ୍କ ପ୍ରତିଜ୍ଞା କଥା ଶୁଣି ଦୁର୍ଯ୍ୟୋଧନାଦି ଜୟଦ୍ରଥଙ୍କୁ ନେଇ ଦ୍ରୋଣଙ୍କ ପାଖକୁ ଗଲେ । ଦୁର୍ଯ୍ୟୋଧନ କହିଲେ-ଜୟଦ୍ରଥ ପଳାୟନ କରି ଜୀବନ ରକ୍ଷା କରୁ । ଦ୍ରୋଣ କହିଲେ— ଶ୍ରୀକୃଷ୍ଣ ଶହ ଶହ ଅର୍ଜୁନଙ୍କ ସହ ଆସିଲେ ବି, ମୁଁ ଜୟଦ୍ରଥକୁ ରକ୍ଷା କରିବି । ସାତଦିନ ଯୁଦ୍ଧ ଲାଗିଲେ, ତିନି ଲୋକ ଏକାଠି ହେଲେ ମଧ୍ୟ ଜୟଦ୍ରଥଙ୍କୁ କେହି ବଧ କରି ପାରିବେ ନାହିଁ । ଜୟଦ୍ରଥ ବଞ୍ଚି ରହିଲେ, ଅର୍ଜୁନ ବିନାଶ ପାଇବ । ଅର୍ଜୁନ ନିହତ ହେଲେ ଶ୍ରୀକୃଷ୍ଣ ତଥା ପାଣ୍ଡବଗଣ ଜୀବନ ଧରିବେ ନାହିଁ । ଦୁର୍ଯ୍ୟୋଧନ ଏକାଙ୍ଗ ଚକ୍ରବର୍ତ୍ତୀ ହେବେ । କୃପ ଓ ଅଶ୍ୱତ୍ଥାମା ପରାମର୍ଶ ଦେଲେ ଅର୍ଜୁନ ନିହତ ହେଲେ ଶ୍ରୀକୃଷ୍ଣ ନିଶ୍ଚୟ ଚକ୍ରରେ ଜୟଦ୍ରଥଙ୍କୁ ବଧ କରିବେ । ତେଣୁ ସେ ଅନ୍ୟତ୍ର ପଳାୟନ କରି ଜୀବନ ରକ୍ଷା କରନ୍ତୁ । କିନ୍ତୁ ଦ୍ରୋଣ ଏହି ପରାମର୍ଶ ଗ୍ରହଣ ନକରି ଯୁଦ୍ଧ ପାଇଁ ସଜବାଜ ହେବାକୁ ଆଦେଶ ଦେଲେ । (ସା, ୧୭୦-୧୮୭ ପୃ) ଜୟଦ୍ରଥଙ୍କୁ ରକ୍ଷା କରିବା ନିମିତ୍ତ ଦ୍ରୋଣ ଶକଟ ବ୍ୟୁହ ଗଠନ କଲେ ।

ଉଭୟ ବର୍ଣ୍ଣନାରେ ଅର୍ଜ୍ଜୁନଙ୍କ ପ୍ରତିଜ୍ଞା ବୃତ୍ତାନ୍ତ ଶୁଣିବା ପରେ ଦୁର୍ଯ୍ୟୋଧନ ଜୟଦ୍ରଥଙ୍କୁ ନେଇ ଦ୍ରୋଣଙ୍କ ପାଖକୁ ଯିବା କଥା ଅଛି । ଉଭୟ କବି କହନ୍ତି ଯେ, ଦ୍ରୋଣ ଜୟଦ୍ରଥଙ୍କୁ ରକ୍ଷା କରିବାର ପ୍ରତିଶ୍ରୁତି ଦେଇଥିଲେ । ବ୍ୟାସ ଦେବ ଓ ସାରଳା ଦାସ ଉଭୟେ ଜୟଦ୍ରଥଙ୍କ ରକ୍ଷାପାଇଁ ଦ୍ରୋଣ ପଦ୍ମ-ଶକଟ ଓ ସୂଚୀ ବ୍ୟୂହ ଗଠନ କରିବା ବୃତ୍ତାନ୍ତ ଦେଇଛନ୍ତି । କିନ୍ତୁ ବର୍ଣ୍ଣନା ଦୁଇଟି ଯେ ନାନା ସ୍ତରରେ ପରସ୍ପରଠାରୁ ପୃଥକ୍ ତାହା ପାଠ କଲେ ଜଣାଯାଏ । ମୂଳରେ ଅଛି ଯେ, ରାଜାମାନଙ୍କ ଆଗରେ ଜୟଦ୍ରଥ ରୋଦନ କରିଥିଲେ । ସାରଳା ମହାଭାରତରେ ତାହା ନାହିଁ । ମୂଳରେ ଦ୍ରୋଣଙ୍କର ଯେଉଁ ଉକ୍ତି ଜୟଦ୍ରଥ ଓ ଦୁର୍ଯ୍ୟୋଧନଙ୍କ ପ୍ରତି ରହିଛି, ସାରଳାଙ୍କ ଗ୍ରନ୍ଥରେ ତାହା ଭିନ୍ନ । ତେବେ ଉଭୟର ସାରମର୍ମ ଏକ, ଅର୍ଥାତ୍ ଜୟଦ୍ରଥଙ୍କ ସୁରକ୍ଷାର ପ୍ରତିଶ୍ରୁତି ପ୍ରଦାନ । ମୂଳ ଗ୍ରନ୍ଥରେ ଦଶଟୋଟି ଦ୍ୱାରର ସନ୍ନିବେଶ ବୃତ୍ତାନ୍ତ ନଥିବା ସ୍ଥଳେ ସାରଳା ଦାସ ସେସବୁ ନିଜ କଳ୍ପନାରୁ ପ୍ରଦାନ କରିଛନ୍ତି । ମୂଳରେ ବ୍ୟୂହ ମଧ୍ୟରେ ଭୂରିଶ୍ରବା, କର୍ଣ୍ଣ, ଅଶ୍ୱତ୍ଥାମା, ଶକୁନି, ଶଲ୍ୟ, କୃପ, କୃତବର୍ମା, ଦୁର୍ଯ୍ୟୋଧନ, କାମ୍ବୋଜରାଜ ଓ ଜଳସନ୍ଧ ଥିବା କଥା ଅଛି । ସାରଳା କେଉଁଠି ହେଲେ କୃତବର୍ମା, କାମ୍ବୋଜରାଜ ଓ ଜଳସଂନ୍ଧଙ୍କ ସ୍ଥିତି ଦେଖାଇ ନାହାନ୍ତି । ଉଭୟ ଗ୍ରନ୍ଥରେ ବ୍ୟୂହର ମୁଖ ଦେଶରେ ଦ୍ରୋଣଙ୍କ ଅବସ୍ଥିତି ପ୍ରଦର୍ଶିତ ହେଲେହେଁ ଶକଟ ବ୍ୟୂହର ଟିକିନିଖି ରୂପାୟନରେ ସାରଳା ଦାସ ସ୍ୱତନ୍ତ୍ରତା ରକ୍ଷା କରିଥିବାର ଦେଖାଯାଏ ।

## (୧୦) ଅର୍ଜୁନଙ୍କ ଶକଟ-ବ୍ୟୂହ ପ୍ରବେଶ :—

ଅର୍ଜ୍ଜୁନ ପ୍ରଥମେ ଧୃତରାଷ୍ଟ୍ରଙ୍କ ପୁତ୍ର ଦୁର୍ମର୍ଷଣଙ୍କୁ ପରାସ୍ତ କଲେ । ଦୁଃଶାସନଙ୍କୁ ପରାଭୂତ କରି ସେ ଦ୍ରୋଣଙ୍କ ସହ ଯୁଦ୍ଧ କଲେ । ଦ୍ରୋଣଙ୍କୁ ଉପେକ୍ଷା କରି ସେ ଅଗ୍ରସର ହେଲେ । (ସ, ୮୯-୯୦) ତା'ପରେ କୃତବର୍ମାଙ୍କୁ ମୋହ କରାଇ ଦେଇ ସେ ଶ୍ରୁତା-ୟୁଧଙ୍କୁ ନିଧନ କଲେ । ଅର୍ଜ୍ଜୁନଙ୍କ ହସ୍ତରେ କୌରବ ପକ୍ଷର କାମ୍ବୋଜ-ରାଜପୁତ୍ର, ସୁଦକ୍ଷିଣ, ଶ୍ରୁତାୟୁ ଅଖ୍ୟୁତାୟୁ ଦୀର୍ଘାୟୁ, ଅମ୍ବଷ୍ଠ ଓ ମ୍ଲେଚ୍ଛସେନା ନିହତ ହେଲେ । (ସ, ୯୧-୯୩) ସେ ପୁଣି ଦ୍ରୋଣ ଓ କୃତବର୍ମାଙ୍କୁ ଅତିକ୍ରମ କରି ଅଗ୍ରସର ହେଉଥିବାର ଦେଖି ଦୁର୍ଯ୍ୟୋଧନ ଚିନ୍ତିତ ହୋଇପଡ଼ିଲେ । ଦ୍ରୋଣ ତାଙ୍କୁ ଅଭେଦ୍ୟ ସୁବର୍ଣ୍ଣ-କବଚ ଦେଇ ଯୁଦ୍ଧ ପାଇଁ ପଠାଇଲେ । (୯୪ଅ) ବିନ୍ଦ ଓ ଅନୁବିନ୍ଦ ନାମକ ଦୁଇଜଣ କୌରବ ପକ୍ଷୀୟ ବୀରଙ୍କୁ ଅର୍ଜ୍ଜୁନ ବଧ କଲେ । କ୍ଲାନ୍ତ ଶ୍ରାନ୍ତ ଅଶ୍ୱମାନଙ୍କ ପାଇଁ ଶର ମାରି ସେ ଏକ ଅଦ୍ଭୁତ ଜଳାଶୟ ସୃଷ୍ଟି କରିଦେବାରୁ ଶ୍ରୀକୃଷ୍ଣ ତାଙ୍କ ଅଶ୍ୱମାନଙ୍କର ପରିଚର୍ଯ୍ୟା କରିବାକୁ ଲାଗିଲେ । ସେତେବେଳେ ଅର୍ଜ୍ଜୁନ ରଥରୁ ଅବତରଣ କରି ଭୂମି ଉପରେ ରହି ଯୁଦ୍ଧ କଲେ । (୯୯-୧୦୦ଅ) ଦୁର୍ଯ୍ୟୋଧନଙ୍କ ନଖ ମଧ୍ୟସ୍ଥ ମାଂସକୁ ଆଘାତ

କରିବାରୁ ସେ ପଳାୟନ କଲେ । (୧୦୩ଅ) ଅର୍ଜୁନ ଏକାକୀ ଭୂରିଶ୍ରବା, ଶଳ, ବୃଷସେନ, ଜୟଦ୍ରଥ, କୃପ, ଶଲ୍ୟ ଓ ଅଶ୍ୱତ୍ଥାମାଙ୍କ ସହ ଯୁଦ୍ଧ କରିଥିଲେ (୧୦୪-୦୦୫ଅ) ।

ଯେଉଁ ସମୟରେ ଅର୍ଜୁନ ଶକଟ-ବ୍ୟୂହରେ ପ୍ରବେଶ କରିବା କଥା ମୂଳରେ କଥିତ ହୋଇଅଛୁ, ସେହି ସମୟ ଶାରଳା ଦାସ ଗ୍ରହଣ କରିନାହାନ୍ତି । ମୂଳ ଗ୍ରନ୍ଥରେ ଅଛୁ ଯେ, ଅର୍ଜୁନ ପ୍ରଥମେ ଦୁର୍ମର୍ଷଣଙ୍କ ସହ ଯୁଦ୍ଧ କରିଥିଲେ । ସାରଳାଙ୍କ ଅନୁସାରେ ପ୍ରଥମେ ଅର୍ଜୁନ ଦୁଃଶାସନଙ୍କ ସହ ଯୁଦ୍ଧକଲେ । ଅବଶ୍ୟ ଦ୍ୱିତୀୟ ପର୍ଯ୍ୟାୟରେ ତାଙ୍କର ଯୁଦ୍ଧ ଦ୍ରୋଣଙ୍କ ସହ ହେବା ବିଷୟ ଉଭୟ କବି ଲେଖିଛନ୍ତି । ଦୁର୍ଯ୍ୟୋଧନଙ୍କର ଦ୍ରୋଣଙ୍କଠାରୁ ସୁବର୍ଣ୍ଣ-କବଚ ପ୍ରାପ୍ତି ଓ ଅର୍ଜୁନଙ୍କ ସହ ତାଙ୍କର ସମର, କୃତବର୍ମାଙ୍କ ସମର ଓ ମୋହ, ଶ୍ରୁତାୟୁଧ ବୃଗ୍ରାନ୍ତ, କାମ୍ବୋଜ ଓ ସୁଦକ୍ଷିଣ ପ୍ରମୁଖଙ୍କ ବିନାଶ, ଶ୍ରୀକୃଷ୍ଣଙ୍କର ଅଶ୍ୱ-ପରିଚର୍ଯ୍ୟା, ବିନ୍ଦ ଓ ଅନୁବିନ୍ଦଙ୍କ ବିନାଶ ଆଦି ବହୁ ବିଷୟ ସାରଳା ଦାସ ଦେଇନାହାନ୍ତି । ଉଭୟ ବର୍ଣ୍ଣନାରେ ଅର୍ଜୁନ ଶର ମାରି ଜଳ ସୃଷ୍ଟି କରିବା କଥା ଅଛୁ । କିନ୍ତୁ ମୂଳ ବର୍ଣ୍ଣନାଠାରୁ ସାରଳାଙ୍କ ବର୍ଣ୍ଣନା କିଞ୍ଚିତ ଭିନ୍ନ । ମୂଳ ମହାଭାରତ କହେ -- ହଂସ-କାରଣ୍ଡବ ଶୋଭିତ ଓ ପଦ୍ମପୂର୍ଣ୍ଣ ସମନ୍ୱିତ ଏକ ଦୀର୍ଘ ସରୋବର ଅର୍ଜୁନ ବାଣ ଦ୍ୱାରା ସର୍ଜନା କରିଥିଲେ । (ସ, ୯୯ଅ) ସାରଳା କହନ୍ତି—ଅର୍ଜୁନଙ୍କ ବାଣରେ କ୍ଷୀରରୁ ପାଞ୍ଚଗୋଟି ଧାରାରେ ଜଳ ନିର୍ଗତ ହେଲା । (ସା, ପୃ ୬୧୧)

## (୧୧) ସାତ୍ୟକିଙ୍କ ଶକଟ-ବ୍ୟୂହରେ ଯୁଦ୍ଧ ଓ ଭୂରିଶ୍ରବାଙ୍କ ବଧ :

ସଂସ୍କୃତ ମହାଭାରତରେ ଉକ୍ତ ଅଛି ଯେ, ଯୁଧିଷ୍ଠିର ଅର୍ଜୁନଙ୍କୁ ସାହାଯ୍ୟ କରିବା ପାଇଁ ସାତ୍ୟକିଙ୍କୁ ପ୍ରେରଣ କରିଥିଲେ । ସାତ୍ୟକି ଶକଟ-ବ୍ୟୂହ ମଧ୍ୟରେ ପ୍ରବେଶ କରି ଦ୍ରୋଣ ଓ କୃତବର୍ମାଙ୍କ ସହ ସମର କଲେ । କାମ୍ବୋଜ ସେନାଙ୍କ ସହ ମଧ୍ୟ ତାଙ୍କର ଯୁଦ୍ଧ ହେଲା । ତାଙ୍କ ଦ୍ୱାରା କୃତବର୍ମା ପରାସ୍ତ ହେଲେ, ତ୍ରିଗର୍ତ୍ତର ଗଜସେନା ଓ ଜଳସନ୍ଧ ନିହତ ହେଲେ, ଦ୍ରୋଣ ଓ ଦୁର୍ଯ୍ୟୋଧନ ମଧ୍ୟ ପରାଭୂତ ହେଲେ । ସେ ସୁଦର୍ଶନଙ୍କୁ ବଧ କରିବା ସଙ୍ଗେ ସଙ୍ଗେ କାମ୍ବୋଜ ଓ ଯବନସେନାଙ୍କୁ ପରାଭୂତ କରିଦେଲେ । ଦୁର୍ଯ୍ୟୋଧନ ନିଜର ଭ୍ରାତାଗଣଙ୍କ ସହ ପଳାୟନ କଲେ । ସାତ୍ୟକି ପୁଣି ପାଷାଣଯୋଧୀ ନାମକ ବୀର, ମ୍ଳେଚ୍ଛସେନାଙ୍କୁ ପରାଜିତ କରି ସଂହାର କରିଥିଲେ । ଅଳମ୍ବୁଷ ନାମକ ରାକ୍ଷସ ତାଙ୍କ ହସ୍ତରେ ନିହତ ହୋଇଥିଲେ, ଦୁଃଶାସନ ପରାସ୍ତ ହୋଇ ପଳାୟନ କରିଥିଲେ, ତ୍ରିଗର୍ତ୍ତ ତଥା କଳିଙ୍ଗ ଦେଶର ସେନାବାହିନୀ ଧ୍ୱଂସ ପାଇଥିଲେ । ଭୂରିଶ୍ରବା ତାଙ୍କର ପଶ୍ଚାଦ୍ଧାବନ କରିବାରୁ ତାଙ୍କ ସହ ଯୁଦ୍ଧ ସଂଘଟିତ ହେଲା । ସାତ୍ୟକି ଭୂରିଶ୍ରବାଙ୍କ ଦ୍ୱାରା ସମ୍ପୂର୍ଣ୍ଣ ଭାବେ ପରାଭୂତ ହେଲେ । ରଥୀ ସାତ୍ୟକିଙ୍କ କେଶ ଧରି ସେ ତାଙ୍କର ବକ୍ଷସ୍ଥଳକୁ ପାଦରେ ଆଘାତ କଲେ ଓ ଶିରଚ୍ଛେଦ

ନମିତ୍ତ ଉଦ୍ୟତ ହେଲେ । ଶ୍ରୀକୃଷ୍ଣ ଏହା ଦେଖିପାରିଲେ ଓ ତାଙ୍କର ନିର୍ଦ୍ଦେଶରେ ଅର୍ଜ୍ଜୁନ ଏକ ତୀକ୍ଷ୍ଣ ଶର ପ୍ରୟୋଗ କରିବାରୁ ଭୂରିଶ୍ରବାଙ୍କ ବାହୁ ହସ୍ତ ଛିନ୍ନ ହୋଇଗଲା । ଭୂରିଶ୍ରବା ଆମରଣ ଅନଶନ କରି ଯୋଗସ୍ଥ ହେଲେ । ସମସ୍ତଙ୍କ ବାରଣ ସତ୍ତ୍ୱେ ସାତ୍ୟକି ତାଙ୍କର ଶିରଚ୍ଛେଦ କଲେ । (ଦ୍ର, ୧୧୦-୧୪୩ଅ) ।

ସାରଳା ମହାଭାରତରେ ଅଛି—ଯୁଧିଷ୍ଠିର ଅର୍ଜ୍ଜୁନଙ୍କ ସମ୍ବାଦ ଆଣିବା ପାଇଁ ସାତ୍ୟକିଙ୍କୁ ପଠାଇଲେ । ପ୍ରଥମ ଦ୍ୱାରରେ ସେ ଦୁଃଶାସନଙ୍କୁ ପରାସ୍ତ କଲେ । ଦ୍ୱିତୀୟ ଦ୍ୱାରରେ ବିରଥୀ ଦ୍ରୋଣ ଅନ୍ୟ ରଥ ଆରୋହଣ କରୁଥିବା ସମୟରେ ସାତ୍ୟକି ସେହି ଦ୍ୱାର ଭେଦ କରିଗଲେ । ତାଙ୍କ ଦ୍ୱାରା କୃପାଚାର୍ଯ୍ୟ ସଂଜ୍ଞାଶୂନ୍ୟ ହେଲେ, ଶଲ୍ୟ ଓ ଅଶ୍ୱତ୍ଥାମା ପରାଭୂତ ହେଲେ । ତା ପର ଯୁଦ୍ଧ ତାଙ୍କର ଭୂରିଶ୍ରବାଙ୍କ ସହ ହୋଇଥିଲା । ଭୂରିଶ୍ରବା ବିରଥ ଓ ନିରସ୍ତ୍ର ସାତ୍ୟକିଙ୍କ କେଶାକର୍ଷଣ କରି ତାଙ୍କର ଶିରଚ୍ଛେଦ କରିବାକୁ ଉଦ୍ୟତ ହେଲେ । ସାତ୍ୟକି ଡାକ ଦେଲେ—'ଚକ୍ରପାଣି ମୋତେ ରଖ' । କପିକେତନରେ ଥିବା ହନୁମାନ ଏହି କଥା ଶ୍ରୀକୃଷ୍ଣଙ୍କୁ ଜଣାଇଲେ । ପୁଣି ଥରେ ସାତ୍ୟକି ଡାକ ଦେଲେ—'ଅର୍ଜ୍ଜୁନ ମୋତେ ରଖ ।' ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଲେ—କାହାର ଡାକ ଶୁଣା ଯାଉଛି, କେହି କାହାକୁ ପରାଭବ ଦେଉଛି, ଅନ୍ତାଗ୍ରସ୍ତର ହାତ କାଟି ଦିଅ । ଅର୍ଜ୍ଜୁନ ଶର ପ୍ରୟୋଗ କରି ଭୂରିଶ୍ରବାଙ୍କର ଦୁଇହାତକୁ କାଟି ପକାଇଲେ । ସାତ୍ୟକି ଭୂରିଶ୍ରବାଙ୍କର ମସ୍ତକ ଛେଦନ କଲେ । ( ସା, ୨୩୦-୨୪୦ ପୃ ) ।

ଉଭୟ ବର୍ଣ୍ଣନାରେ ଯୁଧିଷ୍ଠିରଙ୍କ ଆଦେଶରେ ସାତ୍ୟକିଙ୍କ ଶକଟବ୍ୟୂହ ପ୍ରବେଶ, ତାଙ୍କର ଦ୍ରୋଣ ଓ ଦୁଃଶାସନଙ୍କ ସହ ଯୁଦ୍ଧ, ଭୂରିଶ୍ରବାଙ୍କ ହସ୍ତରେ ତାଙ୍କର ପରାଭବ, ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ଅର୍ଜ୍ଜୁନଙ୍କ ଶର ପ୍ରୟୋଗ ଓ ଭୂରିଶ୍ରବାଙ୍କ ହସ୍ତଦ୍ୱୟର ଛେଦନ, ସାତ୍ୟକିଙ୍କ ଦ୍ୱାରା ଭୂରିଶ୍ରବା ବଧ ବୃତ୍ତାନ୍ତ ନିହିତ ଅଛି । ମୂଳରେ ଥିବା ସାତ୍ୟକି-କୃତବର୍ମା ଯୁଦ୍ଧ, ସୁଦର୍ଶନ ଓ ପାଷାଣଯୋଧୀ ବଧ, ମ୍ଲେଚ୍ଛସେନା ସଂହାର, ଜଳସନ୍ଧ ବଧ, ତ୍ରିଗର୍ତ୍ତ ତଥା କଳିଙ୍ଗସେନାଙ୍କ ଧ୍ୱଂସ ଆଦି ବିଷୟ ସାରଳା ଦାସ ଦେଇନାହାନ୍ତି । ମୂଳରେ ଭୂରିଶ୍ରବାଙ୍କ ଆମରଣ ଅନଶନ ଓ ଯୋଗସ୍ଥ ହେବା କଥା ରହିଥିଲେହେଁ, ସାରଳା ଦାସ ତାହା ଲେଖି ନାହାନ୍ତି । କୃପାଚାର୍ଯ୍ୟ, ଶଲ୍ୟ ଓ ଅଶ୍ୱତ୍ଥାମାଙ୍କ ସହ ସାତ୍ୟକିଙ୍କ ସମର ହେବା ବୃତ୍ତାନ୍ତ, ସାତ୍ୟକିଙ୍କର 'ଚକ୍ରପାଣି ରଖ' ଓ 'ଅର୍ଜ୍ଜୁନ ରଖ' ଆହ୍ୱାନ ଆଦି ବିଷୟ ସାରଳାଙ୍କ ନିଜସ୍ୱ ସୃଷ୍ଟି ।

## (୧୧) ଶକଟ-ବ୍ୟୂହରେ ଭୀମ ଓ କର୍ଣ୍ଣଙ୍କ ସମର :

ମୂଳ ଗ୍ରନ୍ଥରେ ରହିଛି ଯେ, ଯୁଧିଷ୍ଠିର ସାତ୍ୟକିଙ୍କ ଅର୍ଜ୍ଜୁନଙ୍କ ସାହାଯ୍ୟ ପାଇଁ ପ୍ରଥମେ ପ୍ରେରଣ କଲେ । ସେ ତା'ପରେ ପୁଣି ସାତ୍ୟକି ତଥା ଅର୍ଜ୍ଜୁନ ଉଭୟଙ୍କ

ସାହାଯ୍ୟ ନିମିତ୍ତ ଭୀମସେନଙ୍କୁ ପ୍ରେରଣ କରିଥିଲେ । ଭୀମ ଦ୍ରୋଣଙ୍କୁ ପରାଭୂତ କଲେ ଓ ତାଙ୍କ ଦ୍ୱାରା ଧୃତରାଷ୍ଟ୍ରଙ୍କର ଏଗାର ଜଣ ପୁତ୍ର ନିହତ ହେଲେ । ଦ୍ୱିତୀୟ ବାର ସମରରେ ମଧ୍ୟ ଦ୍ରୋଣ ରଥଶୂନ୍ୟ ହୋଇ ପରାସ୍ତ ହୋଇଥିଲେ । ଏହାପରେ କର୍ଣ୍ଣଙ୍କ ସହ ଭୀମଙ୍କର ସମର ହୁଏ । ଏହି ସମର କାଳରେ ଭୀମ ଧୃତରାଷ୍ଟ୍ରଙ୍କର ପୁତ୍ର ଦୁଃସହ, ଦୁର୍ଜୟ ଓ ଦୁର୍ମୁଖଙ୍କୁ ହତ୍ୟା କରନ୍ତି । ପୁନଶ୍ଚ ତାଙ୍କ ହସ୍ତରେ ଅନ୍ୟ ସାତଜଣ କୌରବ ବିନଷ୍ଟ ହୁଅନ୍ତି । (ସା, ୧୨୬-୧୩୭ଅ) ।

ପରବର୍ତ୍ତୀ ସମୟରେ ଭୀମ କର୍ଣ୍ଣଙ୍କୁ ବଧ କରିବେ ବୋଲି ଇଚ୍ଛା କରିଥିଲେ ହେଁ, ଅର୍ଜୁନଙ୍କ କର୍ଣ୍ଣବଧର ପ୍ରତିଜ୍ଞା କଥା ସ୍ମରଣ କରି ତାହା କଲେ ନାହିଁ । କର୍ଣ୍ଣ ଶର ବର୍ଷଣ କରି ଭୀମଙ୍କୁ ମୂର୍ଚ୍ଛିତ କରିଦେଲେ । ସେ ତାଙ୍କୁ ବଧ କଲେ ନାହିଁ । କାରଣ ମାତା କୁନ୍ତୀଙ୍କୁ ସେ ସେହିପରି କଥା ଦେଇଥିଲେ । କର୍ଣ୍ଣ କେବଳ ଧନୁର ଅଗ୍ରଭାଗ ଦ୍ୱାରା ଭୀମଙ୍କର ଶରୀର ସ୍ପର୍ଶ କରିଥିଲେ ଓ ନାନା ଭାବରେ ତାଙ୍କୁ ତିରସ୍କାର କରିଥିଲେ । (ସ, ୧୩୯ଅ) ।

ସାରଳା ମହାଭାରତରେ ଭୀମସେନ ଯୁଧିଷ୍ଠିରଙ୍କ ଆଦେଶରେ ଶକଟ-ବ୍ୟୂହ ମଧ୍ୟକୁ ପ୍ରବେଶ କରିବା କଥା ରହିଛି । ଭୀମ ପ୍ରଥମ ଦ୍ୱାରରେ ଦୁଃଶାସନଙ୍କୁ ପରାସ୍ତ କରି ଦ୍ୱିତୀୟ ଦ୍ୱାରରେ ଉପସ୍ଥିତ ହେଲେ । ଦ୍ୱିତୀୟ ଦ୍ୱାରରେ ଦ୍ରୋଣଙ୍କ ସହ ତାଙ୍କର ସମର ହୋଇଥିଲା । ଭୀମ କ୍ରମେ ଶଲ୍ୟ, କୃପ ଓ ଅଶ୍ୱତ୍ଥାମାଙ୍କୁ ପରାଭୂତ କରି ସପ୍ତ ବ୍ୟୂହ ମଧ୍ୟରେ ପ୍ରବେଶ କଲେ । ସେତେବେଳେ ତାଙ୍କର ସମର କର୍ଣ୍ଣଙ୍କ ସହ ହେଲା । ଯୁଦ୍ଧରେ ଭୀମସେନ ଅସାବଧାନ ହୋଇ ପଡ଼ିଲେ । କର୍ଣ୍ଣ ତାଙ୍କର କେଶାକର୍ଷଣ କରି ଶିରଚ୍ଛେଦ କରିବାକୁ ଉଦ୍ୟତ ହେବାରୁ ସେ ମାତା କୁନ୍ତୀଙ୍କ ନାମ ନେଲେ । ମାତା କୁନ୍ତୀଙ୍କୁ ଦେଇଥିବା କଥାକୁ ସ୍ମରଣ କରି କର୍ଣ୍ଣ ଭୀମଙ୍କର କେଶ ଛାଡ଼ି ଦେଲେ । ଭୀମ ମୁକ୍ତ ହେଲା ପରେ କାଳାନ୍ତକ ରୂପ ଧରି କର୍ଣ୍ଣଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ କଲେ । କର୍ଣ୍ଣ ଭୟରେ ବ୍ୟୂହ-ଦ୍ୱାର ପରିତ୍ୟାଗ କରି ପଳାୟନ କରିଥିଲେ । (ସା, ୨୭୩-୨୯୦)

ମୂଳଗ୍ରନ୍ଥର ବର୍ଣ୍ଣନାରେ କର୍ଣ୍ଣଙ୍କ ସହ ଭୀମଙ୍କର ବାରମ୍ବାର ସମର କଥା ରହିଅଛି । ସେଠାରେ ଭୀମଙ୍କ ହସ୍ତରେ ଧୃତରାଷ୍ଟ୍ରଙ୍କର ପୁତ୍ରମାନଙ୍କର ମୃତ୍ୟୁ କଥା ଅଛି । ସେ ସମସ୍ତ ବର୍ଣ୍ଣନା ସାରଳା ମହାଭାରତରେ ନାହିଁ । କର୍ଣ୍ଣ ଓ ଭୀମଙ୍କର ସମର-ବର୍ଣ୍ଣନା ଯେ ଉଭୟ ଗ୍ରନ୍ଥରେ ଭିନ୍ନ ତାହା ଉପରୋକ୍ତ ବର୍ଣ୍ଣନାରୁ ପ୍ରତିପନ୍ନ ହେବ । କୁନ୍ତୀଙ୍କୁ କର୍ଣ୍ଣ ଦେଇଥିବା ବଚନ କଥା ସ୍ମରଣ କରି ସେ ଭୀମଙ୍କୁ ବଧ ନ କରିବା ବିଷୟ ଉଭୟ ଚରିତରେ ନିହିତ । ମୂଳରେ କର୍ଣ୍ଣ ଭୀମଙ୍କ ଦେହରେ ଧନୁ ହୁଳ ସ୍ପର୍ଶ କରାଇବା ବିଷୟ ରହିଥିଲେ ହେଁ, ସାରଳା ତାହା ଦେଇ ନାହାନ୍ତି । ଉଭୟ ଚରିତରେ ଭୀମ କର୍ଣ୍ଣଙ୍କୁ ଯୁଦ୍ଧ ପାଇଁ ପୁନର୍ବାର ଆହ୍ୱାନ କରିବା ବର୍ଣ୍ଣନା ଅଛି ।

**(୧୬) ଜୟଦ୍ରଥ ବଧ :—**

ଏହି ପ୍ରସଙ୍ଗରେ ବ୍ୟାସଦେବ ଲେଖିଛନ୍ତି – ଅର୍ଜୁନ ଭୂରିଶ୍ରବାଙ୍କ ମୃତ୍ୟୁପରେ ଜୟଦ୍ରଥଙ୍କର ସମ୍ମୁଖକୁ ଗଲେ । ତାହାଦେଖି ଦୁର୍ଯ୍ୟୋଧନ, ଶଲ୍ୟ, ବୃଷସେନ, କୃପ ଅଶ୍ୱତ୍ଥାମା ପ୍ରମୁଖ ବୀରଗଣ ଅର୍ଜୁନଙ୍କର ପ୍ରତିରୋଧ କଲେ । ଜୟଦ୍ରଥଙ୍କ ସମୀପରେ ଅର୍ଜୁନଙ୍କ ଦେଖି ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ କହିଲେ—ସୂର୍ଯ୍ୟାସ୍ତ ହେବାକୁ ଅଳ୍ପ ସମୟ ଅବଶିଷ୍ଟ ଅଛି । ଯୁଦ୍ଧରେ ଏହି କାଳ ଅତିବାହିତ କଲେ ଜୟଦ୍ରଥଙ୍କ ପ୍ରାଣରକ୍ଷା ହେବ ଓ ଅର୍ଜୁନ ଅଗ୍ନି-ପ୍ରବେଶ କରିବେ । ଏହି ଅଭିପ୍ରାୟ ରଖି କୌରବ ପକ୍ଷୀୟ ରଥୀମାନେ ଅର୍ଜୁନଙ୍କ ସହ ଯୁଦ୍ଧ କଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଲେ – ଜୟଦ୍ରଥ ରଥୀଗଣଙ୍କ ମଧ୍ୟରେ ଅଛନ୍ତି । ସେମାନଙ୍କୁ ପରାଜିତ ନ କଲେ ତୁମେ ଜୟଦ୍ରଥଙ୍କୁ ବଧ କରିପାରିବ ନାହିଁ । ମୁଁ ମାୟାବଳରେ କୌରବଙ୍କ ବ୍ୟୂହ ଭାଙ୍ଗିଦେବ ଓ ଜୟଦ୍ରଥ ବ୍ୟୂହ ମଧ୍ୟରୁ ବାହାରକୁ ଆସିଯିବେ । ତୁମେ ସୂର୍ଯ୍ୟଙ୍କ ପ୍ରତି ଲକ୍ଷ୍ୟ ନ ରଖି ସଙ୍ଗେ ସଙ୍ଗେ ତାଙ୍କୁ ବଧ କରିବ । ଶ୍ରୀକୃଷ୍ଣ ମାୟା ବଳରେ ଅନ୍ଧକାର ସୃଷ୍ଟି କଲେ । କୌରବ-ଗଣଙ୍କ ସହ ଜୟଦ୍ରଥ ଅର୍ଜୁନଙ୍କର ଅଗ୍ନି ପ୍ରବେଶ ଓ ମୃତ୍ୟୁ ଦେଖିବା ପାଇଁ ବ୍ୟୂହ ମଧ୍ୟରୁ ବାହାର ପଡ଼ିଲେ । ଅର୍ଜୁନ ତାଙ୍କର ଶିରଚ୍ଛେଦ କଲେ । କର୍ଣ୍ଣ, ଶଲ୍ୟ ଓ ବୃଷସେନ ଆଦି ବୀରଗଣ ଅର୍ଜୁନଙ୍କ ଶରରେ ଆହତ ହୋଇ ଜୟଦ୍ରଥଙ୍କୁ ଏକାକୀ ରଖି ଯୁଦ୍ଧକ୍ଷେତ୍ରରୁ ପଳାୟନ କରିଥିଲେ । ଶ୍ରୀକୃଷ୍ଣଙ୍କ ପରାମର୍ଶ କ୍ରମେ ଅର୍ଜୁନ ଶରଦ୍ୱାରା ଜୟଦ୍ରଥଙ୍କ ମସ୍ତକକୁ ଆକାଶ ମାର୍ଗରେ ନେଇଗଲେ ଏବଂ ତାଙ୍କର ବୃଦ୍ଧ ପିତା ବୃଦ୍ଧକ୍ଷତ୍ରଙ୍କ କୋଡ଼ରେ ସ୍ଥାପନ କଲେ । ସେତେବେଳେ ବୃଦ୍ଧକ୍ଷତ୍ର ଉପାସୀନ ଥିଲେ । ସେ ଉଠି ଠିଆ ହେବାକୁ ମୁଣ୍ଡଟି ତଳେ ପଡ଼ିଗଲା ଓ ବୃଦ୍ଧକ୍ଷତ୍ରଙ୍କ ମସ୍ତକ ଶତଧା ବିଦୀର୍ଣ୍ଣ ହୋଇଗଲା । (ଦ୍ର, ୧୦୫/୧୪୬ ଅ)

ସାରଳା ମହାଭାରତରେ ଅଛି—ଦୁର୍ଯ୍ୟୋଧନ ବହୁ ରାଜା ଓ ସେନାଙ୍କ ସହ ଅର୍ଜୁନଙ୍କୁ ଆକ୍ରମଣ କଲେ । ଶ୍ରୀକୃଷ୍ଣ ଓ ଅର୍ଜୁନ ଜୟଦ୍ରଥଙ୍କୁ ଦେଖିଲେ ନାହିଁ । ଶ୍ରୀକୃଷ୍ଣ ଧ୍ୱଜରେ ଥିବା ହନୁମାନଙ୍କୁ ପଚାରିଲେ— ତୁମେ ଜୟଦ୍ରଥଙ୍କୁ ଦେଖୁଛ କି ? ହନୁମାନ କହିଲେ ସୂଚୀ ବ୍ୟୂହରେ ମୁଁ ତାଙ୍କୁ ଦେଖିପାରୁନାହିଁ । ତୁମେ ଚକ୍ର ପ୍ରୟୋଗ କରି ତାଙ୍କର ଶିରଚ୍ଛେଦ କର । ଶ୍ରୀକୃଷ୍ଣ ଉତ୍ତର ଦେଲେ – ମୁଁ ବଡ଼ଭାଇ ବଳରାମଙ୍କ ନିକଟରେ ଅସ୍ତ୍ର ଧାରଣ କରିବି ନାହିଁ ବୋଲି ଶପଥ କରିଛି । ସେ ଅର୍ଜୁନଙ୍କ ଉଦ୍ଦୀପ୍ତ ସ୍ୱରରେ କାଳଚକ୍ରକୁ ଆଦେଶ ଦେଲେ ଆଦିତ୍ୟ ଦେବତାଙ୍କୁ ଘୂରି ଦଣ୍ଡ ପାଇଁ ଉହାଡ଼ରେ ରଖ । ଫଳରେ ଚତୁର୍ଦ୍ଦିଗରେ ଅନ୍ଧକାର ଘୋଟିଗଲା । କୌରବମାନେ ଅର୍ଜୁନର ପ୍ରତିଜ୍ଞା ଭଗ୍ନ ହେବାର ଦେଖି ଆନନ୍ଦରେ ବ୍ୟୂହ ମଧ୍ୟରୁ ବାହାରକୁ ଆସିଲେ । ଅର୍ଜୁନ ଅଗ୍ନିରେ ପ୍ରବେଶ କରିବା ପାଇଁ ପ୍ରସ୍ତୁତ ହେଲେ । ଶ୍ରୀକୃଷ୍ଣ କହିଲେ—ଧନ ଯାହାର, ରାତି ବି ତାହାର ।

ରାତ୍ରିଦିନ ମିଶି ଏକ ଦିବସ । ଅର୍ଜୁନ ରାତିରେ ଯୁଦ୍ଧ କରି ଜୟଦ୍ରଥଙ୍କୁ ବଧ କରି ପାରନ୍ତି । କୌରବ ଗଣ ଏଥିରେ ଘୋର ପ୍ରତିବାଦ କଲେ । ଅର୍ଜୁନଙ୍କ ଅନୁରୋଧକ୍ରମେ କୌରବମାନେ କାଠ ଜମା କଲେ ଓ ଦୁର୍ଯ୍ୟୋଧନ ତହିଁରେ ଅଗ୍ନି ସଂଯୋଗ କରାଇଲେ ଶକୁନି କହିଲେ—ଏବେ ଜୟଦ୍ରଥ ବ୍ୟୂହରୁ ଆସନ୍ତୁ ଓ ଅର୍ଜୁନଙ୍କର ମୁଖ ଦେଖନ୍ତୁ । ଜୟଦ୍ରଥ ବାହାରି ଆସିଲେ ଓ ଅର୍ଜୁନଙ୍କୁ କହିଲେ—ତୁମେ ମୋତେ ବିନା ଦୋଷରେ ବଧ କରିବାକୁ ଯାଉଥିଲ । ଏତିକି ବେଳେ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ କାଳଚକ୍ରର ଆବରଣ ଖୋଲିଗଲା ଓ ସୂର୍ଯ୍ୟ ଦେଖାଗଲା । ଦିନ ଆଉ ତିନିଦଣ୍ଡ ଥିବାର ଜଣାଗଲା । କୌରବଗଣ ଆପତ୍ତି କଲେ—ଏହା ଶ୍ରୀକୃଷ୍ଣଙ୍କର କପଟ । ଶ୍ରୀକୃଷ୍ଣ କହିଲେ—ଅସ୍ତ୍ର ଓ ଧୂଳିରେ ସୂର୍ଯ୍ୟ ଆବୃତ୍ତ ହୋଇ ପଡ଼ିଥିଲେ । ଯୁଦ୍ଧ ବନ୍ଦ ହେବାରୁ ଧୂଳି କମିଗଲା ଓ ସୂର୍ଯ୍ୟ ଦେଖାଦେଲେ । ଦୁର୍ଯ୍ୟୋଧନ ଜୟଦ୍ରଥଙ୍କୁ ପଳାୟନ କରି ଜୀବନ ରକ୍ଷା କର ବୋଲି ପରାମର୍ଶ ଦେଲେ । ଜୟଦ୍ରଥ ପଳାୟନ କରିବାରୁ ଭୀମ, ସାତ୍ୟକି ଅର୍ଜୁନ ତାଙ୍କର ପଶ୍ଚାଦ୍ ଧାବନ କଲେ । ଇନ୍ଦ୍ରପ୍ରସ୍ଥ ନାମକ ପର୍ବତ ତଳେ ଜୟଦ୍ରଥଙ୍କୁ ସେମାନେ ଭେଟିଲେ । ଅର୍ଜୁନ ନିରସ୍ତ୍ର ଓ ରଥଶୂନ୍ୟ ଜୟଦ୍ରଥଙ୍କୁ ବଧ କରିବାକୁ ଉଦ୍ୟତ ହେଲେ । ଜୟଦ୍ରଥ ଜୀବନ ଭିକ୍ଷା କଲେ । ଅର୍ଜୁନ ଦୟାପରବଶ ହୋଇ ତାଙ୍କୁ ବଧ କରିବେ ନାହିଁ ବୋଲି ଚିନ୍ତା କଲେ ଓ ଶ୍ରୀକୃଷ୍ଣଙ୍କର ପରାମର୍ଶ ଚାହିଁଲେ । ଶ୍ରୀକୃଷ୍ଣ ଜୟଦ୍ରଥଙ୍କୁ ବଧ ନ କଲେ କି ଭୟାବହ ପରିଣାମ ହେବ ତାହା ବୁଝାଇ ଦେବାରୁ ଅର୍ଜୁନ ଜୟଦ୍ରଥଙ୍କର ଶିରଚ୍ଛେଦ କଲେ । (ସା, ୨୭୫-୨୯୦) କିନ୍ତୁ ଗୋଟିଏ ମୁଣ୍ଡ କଟା ହେବା ପରେ ସେହି ସ୍ଥାନରେ ଆଉ ଗୋଟିଏ ମୁଣ୍ଡ ଦେଖାଗଲା । ସହଦେବ ଏହାର କାରଣ ପ୍ରକାଶ କଲେ । ତାଙ୍କର ପରାମର୍ଶ କ୍ରମେ ଅର୍ଜୁନ ପାଶୁପତ ଶର ପ୍ରୟୋଗ କରି ମୁଣ୍ଡ କାଟିଲେ ଓ ପବନାଶରରେ ତାକୁ ଉଡ଼ାଇ ନେଇ ସନ୍ଧ୍ୟା-ଉପାସନାରତ କୃତାଞ୍ଜଳି ହସ୍ତ ସୁରଥ ରାଜାଙ୍କ ଅଂଜଳିରେ ପକାଇଦେଲେ । ରାଜା 'ଭସ୍ମ ହେଉ' ବୋଲି କହି ମୁଣ୍ଡଟିକୁ ଅଂଜଳିରୁ ମୁକ୍ତ କରିଦେବାରୁ ତାହା ଜଳିଗଲା । (ପୃ ୨୯୨-୨୯୫)

ଉଭୟ ବର୍ଣ୍ଣନା ମଧ୍ୟରେ ବହୁ ପାର୍ଥକ୍ୟ ରହିଛି । ମୂଳରେ ଥିବା ଦୁର୍ଯ୍ୟୋଧନଙ୍କର କର୍ଣ୍ଣଙ୍କୁ ଯୁଦ୍ଧ ଲଗାଇ ରଖିବା ପାଇଁ ଅନୁରୋଧ କରିବା, ଅର୍ଜୁନ ଜୟଦ୍ରଥଙ୍କ ସମ୍ମୁଖୀନ ହେବା ଶ୍ରୀକୃଷ୍ଣଙ୍କର ଅର୍ଜୁନଙ୍କୁ ମାୟା କରିବା ପାଇଁ ଅଭିପ୍ରାୟ ବ୍ୟକ୍ତ କରିବା ଆଦି ବର୍ଣ୍ଣନା ଗୁଡ଼ିକ ସାରଳା ମହାଭାରତରେ ନାହିଁ । ଶ୍ରୀକୃଷ୍ଣ ଓ ଅର୍ଜୁନ ବ୍ୟୂହରେ ଜୟଦ୍ରଥଙ୍କୁ ନଦେଖିବା, ଶ୍ରୀକୃଷ୍ଣ ଓ ହନୁମାନଙ୍କ ଉକ୍ତି-ପ୍ରତ୍ୟୁକ୍ତି, ଅର୍ଜୁନଙ୍କ ଅଜ୍ଞାତସାରରେ ଶ୍ରୀକୃଷ୍ଣଙ୍କର କାଳଚକ୍ରକୁ ଆଦେଶ, ଅର୍ଜୁନଙ୍କର ଅଗ୍ନି ପ୍ରବେଶର ଆୟୋଜନ, ଶ୍ରୀକୃଷ୍ଣଙ୍କର ରାତ୍ରିଯୁଦ୍ଧ ସପକ୍ଷରେ ଯୁକ୍ତି ଓ କୌରବଙ୍କ ଆପତ୍ତି, ଶକୁନିର ପରାମର୍ଶରେ

ଜୟଦ୍ରଥଙ୍କର ବ୍ୟୂହ ମଧ୍ୟରୁ ବାହାରକୁ ଆସିବା ଓ ଅର୍ଜୁନଙ୍କୁ 'ମୋର ଦୋଷ ନାହିଁ ବୋଲି କହିବା, ଇନ୍ଦ୍ରପ୍ରସ୍ଥ ପର୍ବତ ତଳକୁ ଦୁର୍ଯ୍ୟୋଧନଙ୍କର ନିର୍ଦ୍ଦେଶକ୍ରମେ ଜୟଦ୍ରଥ ପଳାୟନ କରିବା, ଜୟଦ୍ରଥ ଅର୍ଜୁନଙ୍କ ନିକଟରେ ଜୀବନଦାନ ମାଗିବା, ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କର ଏହି ଉକ୍ତି ସମ୍ପର୍କରେ ବିସ୍ତରବିମର୍ଶ ଆଦି କଥା ସାରଳାଙ୍କ ନିଜସ୍ୱ କଳ୍ପନା ମୂଳରେ ଶ୍ରୀକୃଷ୍ଣଙ୍କ ପରାମର୍ଶରେ ଅର୍ଜୁନ ଜୟଦ୍ରଥଙ୍କ ମସ୍ତକକୁ ତାଙ୍କ ପିତାଙ୍କ କୋଳରେ ଭରିବା କଥା ଥିଲେହେଁ ସାରଳା ଦାସ ସହଦେବଙ୍କ ପରାମର୍ଶକ୍ରମେ ଅର୍ଜୁନ ମୁଣ୍ଡଟିକୁ ପିତାଙ୍କ ଅଂଜଳିରେ ପକାଇ ଦେବା କଥା ଲେଖିଛନ୍ତି । ମୂଳରେ ଜୟଦ୍ରଥଙ୍କ ପିତାଙ୍କ ନାମ ବୃଦ୍ଧକ୍ଷତ୍ର ଓ ସାରଳାଙ୍କ ଲେଖାରେ ସେହିନାମ 'ସୁରଥ' । ମୂଳରେ ଅଛି—ଜୟଦ୍ରଥଙ୍କ ମସ୍ତକ ତଳେ ପଡ଼ିବାରୁ ତାଙ୍କ ପିତାଙ୍କ ମସ୍ତକ ବିଦୀର୍ଣ୍ଣ ହୋଇଗଲା କିନ୍ତୁ ସାରଳା ମହାଭାରତରେ ଅଛି—ଜୟଦ୍ରଥଙ୍କ ମୁଣ୍ଡଟି ତଳେ ପଡ଼ି ଭସ୍ମ ହୋଇଗଲା ।

(୧୩) ଜୟଦ୍ରଥଙ୍କ ଇତିବୃତ୍ତ :—

ମୂଳ ମହାଭାରତ ଅନୁସାରେ ବୃଦ୍ଧକ୍ଷତ୍ର ରାଜା ବହୁ ବିଳମ୍ବରେ ଜୟଦ୍ରଥଙ୍କୁ ପୁତ୍ର ରୂପରେ ଲାଭ କରିଥିଲେ । ତାଙ୍କର ଜନ୍ମ ସମୟରେ ଆକାଶ ବାଣୀ ହେଲା—ଶତ୍ରୁ ଦ୍ୱାରା ଏହାର ଶିର ଛେଦ ହେବ । ସିନ୍ଧୁରାଜ ତାହା ଶୁଣି ଜ୍ଞାତିବନ୍ଧୁମାନଙ୍କୁ କହିଥିଲେ – ଯେଉଁବ୍ୟକ୍ତି ଏହାର ମସ୍ତକକୁ ତଳେ ପକାଇଦେବ, ତା'ର ମସ୍ତକ ଶତଧା ବିଦୀର୍ଣ୍ଣ ହୋଇଯିବ । ଯଥା କାଳରେ ସେ ପୁତ୍ରକୁ ରାଜ୍ୟ ଦେଇ 'ସମନ୍ତ ପଞ୍ଚକ' ନାମକ କ୍ଷେତ୍ରରେ ତପସ୍ୟାରତ ହେଲେ । ତେଣୁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ – ରାଜା ବୃଦ୍ଧକ୍ଷତ୍ର ବର୍ତ୍ତମାନ ତପସ୍ୟାରେ ଉପବିଷ୍ଟ । ତୁମେ ଶରଦ୍ୱାରା ଜୟଦ୍ରଥଙ୍କର ମୁଣ୍ଡଟିକୁ କାଟି ନେଇ ତାଙ୍କ ପିତାଙ୍କ କୋଳରେ ସ୍ଥାପନ କର । ଅର୍ଜୁନ ତାହା କରିବାରୁ ବୃଦ୍ଧକ୍ଷତ୍ର ଦଣ୍ଡାୟମାନ ହେବାମାତ୍ରେ ମୁଣ୍ଡଟି ତଳେ ପଡ଼ିଗଲା ଓ ତାଙ୍କର ମସ୍ତକ ଶତଧା ବିଦୀର୍ଣ୍ଣ ହୋଇଗଲା ।

(ସ°, ୧୪୬ଅ)

ସାରଳା ମହାଭାରତ ଅନୁସାରେ ଜୟଦ୍ରଥଙ୍କର ପିତାଙ୍କ ନାମ ସୁରଥ । ସୁରଥ 'ଉତ୍ପାତ' ବଂଶରେ ଇଥବର୍ଗରେ ଜାତ ହୋଇଥିଲେ । ତାଙ୍କ ପିତା ଥିଲେ ଭଗ୍ୟବର ରଥ । ସୁରଥଙ୍କ ରାଣୀଙ୍କ ନାମ କାନ୍ତାଙ୍ଗୀ । ତାଙ୍କର ଅନ୍ୟ ପୁତ୍ର ହେଲେ କୃପରଥ । କୃପରଥ କାଳଦମନ ନାମକ ଅସୁରର ସଖା ଥିଲେ । ତାଙ୍କୁ ଗୋମତ ଯୁଦ୍ଧରେ ବଳରାମ ବିନାଶ କରିଥିଲେ । ସୁରଥଙ୍କ ମନ୍ତ୍ରୀଙ୍କ ନାମ ଅଜରୁଦ୍ଧ । ରାଜା ସୁରଥ ନଅଶହ ହଜାର ବର୍ଷ ରାଜଗାଦି ଭୋଗ କଲେ । ଏକଦା ସେ ପୁତ୍ରଙ୍କୁ ପିତୃଶ୍ରାଦ୍ଧ ପାଇଁ ବନରୁ ଗଣ୍ଡାଜାବଟିଏ ଶିକାର କରି ଆଣିବାକୁ ଆଦେଶ ଦେଲେ । ଗଣ୍ଡାଜାତ ଚଲାଇ ଦେବା ପାଇଁ ମନ୍ତ୍ରୀ ମଧ୍ୟ ବଣକୁ ଗଲେ । ସେହି ମନ୍ତ୍ରୀଙ୍କ ନାମ

ଥିଲା ଭାନୁମନ୍ତ । ରଣ୍ଡାଜୀବ ନ ପାଇ କ୍ଳାନ୍ତ ହୋଇ ଉଭୟେ ଏକ ନିମ୍ବଗଛ ତଳେ ବିଶ୍ରାମ ନେଲେ । ସେତେବେଳେ ହଠାତ୍ ଜୟଦ୍ରଥ ମନ୍ତ୍ରୀଙ୍କର କେଶାକର୍ଷଣ କରି ଶିରଚ୍ଛେଦ କରିବାକୁ ଉଦ୍ୟତ ହେଲେ । ମନ୍ତ୍ରୀ କାରଣ ପଚାରିବାରୁ ସେ କହିଲେ— ପିତାଙ୍କୁ ହତ୍ୟା କରି ମୋତେ ରାଜପଦ ପ୍ରଦାନ କର । ମନ୍ତ୍ରୀ ସମ୍ମତ ହେଲେ । ଭାନୁମନ୍ତ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲା ପରେ ସମସ୍ତ ବୃତ୍ତାନ୍ତ ସୁରଥଙ୍କୁ ଜଣାଇ ଦେଲେ । ସୁରଥ ପୁତ୍ରକୁ ରାଜ୍ୟ ଦେଇ ଶ୍ରି ସ୍ୟାମଣ୍ଡଳରେ ଥିବା ଉଦ୍ଧିସରଙ୍କର ନଦୀକୂଳରେ ତପସ୍ୟାରତ ହେଲେ । ପୁତ୍ରର ମୁଁଖ ଦେଖିବେ ନାହିଁ ବୋଲି ଆଖି ବନ୍ଦ କରି ସେ ବସିଲେ । ସୂର୍ଯ୍ୟୋପାସନା କରୁଥିବା ବେଳେ ତାଙ୍କର ରାଜ୍ୟ କଥା ମନେ ପଡ଼ିଗଲା । ଉପବାସରେ ଥିବାହେତୁ ତାଙ୍କର ଶରୀର ବିକଳ ହେଉଥିଲା । ସେ କହିଲେ – ଜୟଦ୍ରଥର ମୁଖ-ପଙ୍କଜ କଟା ହେଉ । ଠିକ୍ ଏହି ସମୟରେ ଅର୍ଜୁନଙ୍କ ଦ୍ୱାରା କଟା ହୋଇଥିବା ମୁଣ୍ଡ ଆସି ତାଙ୍କ ହାତରେ ପଡ଼ିଲା । ସେ ଭସ୍ମ ହେଉ ବୋଲି କହି ମୁଣ୍ଡଟିକୁ ତଳେ ପକାଇ ଦେବାରୁ ଜୟଦ୍ରଥଙ୍କ ମୁଣ୍ଡଟି ଜଳିଗଲା । (ସା, ୨୯୪-୩୦୨ପୃ)

ଦୁଇଟିଯାକ ବର୍ଣ୍ଣନାରେ ଜୟଦ୍ରଥଙ୍କ ପିତା ତା ରାଜ୍ୟ ଦେଇ ବନକୁ ଗମନ କରିବା ଓ ତପସ୍ୟାରତ ହେବା ବୃତ୍ତାନ୍ତ ନିହିତ । ଜୟଦ୍ରଥଙ୍କ ଛିନ୍ନ ମୁଣ୍ଡଟି ତାଙ୍କର ପିତାଙ୍କ ନିକଟକୁ ଯିବା କଥା ଉଭୟ ଲେଖା ଅଛି । ଏତଦଭିନ୍ନ ଏହି ସମ୍ପର୍କୀୟ ସମସ୍ତ ବର୍ଣ୍ଣନା, ସାରଳା ଦାସ ମୂଳ ମହାଭାରତକୁ ଅନୁସରଣ ନ କରି ସ୍ୱତନ୍ତ୍ର ଭାବରେ କରିଥିବାର ପରିଦୃଷ୍ଟ ହୁଏ ।

## (୧୪) ରାତ୍ରି ଯୁଦ୍ଧରେ ପ୍ରଦୀପର ବ୍ୟବହାର :=

ସଂସ୍କୃତ ମହାଭାରତରେ ଉକ୍ତ ଅଛି ଯେ, ଜୟଦ୍ରଥଙ୍କ ବଧ ପରେ କୌରବ-ପାଣ୍ଡବଙ୍କ ଯୁଦ୍ଧ ରାତ୍ରିରେ ସଂଘଟିତ ହୋଇ ଥିଲା । (ସଂ,୧୫୪ ୧୫୫ଅ) ରାତ୍ରିର ଅନ୍ଧକାରକୁ ଦୂର କରିବା ନିମିତ୍ତ ଦୁର୍ଯ୍ୟୋଧନ ପ୍ରଦୀପର ବ୍ୟବସ୍ଥା କରିଥିଲେ । ତାଙ୍କର ଆଦେଶରେ ପଦାତିକ ସେନାଗଣ ପ୍ରତ୍ୟେକ ପ୍ରଦୀପ ଧାରଣ କଲେ । ଅଶ୍ୱ ହସ୍ତୀ ଓ ରଥମାନଙ୍କ ନିକଟରେ ପ୍ରଦୀପମାନ ରଖାଯାଇଥିଲା । ଏକ ରଥ ପାଖରେ ପାଞ୍ଚଗୋଟି, ଏକ ହସ୍ତୀ ନିକଟରେ ତିନିଗୋଟି ଏକ ଅଶ୍ୱ ନିକଟରେ ଗୋଟିଏ ମହାପ୍ରଦୀପର ବ୍ୟବସ୍ଥା ଥିଲା । ଏତଦ୍‌ଭିନ୍ନ ଆକାଶରେ ଦେବତା, ଋଷି, ଗନ୍ଧର୍ବ ଦେବର୍ଷି, ବିଦ୍ୟାଧର, ଅପ୍ସରା, ନାଗ ଯକ୍ଷ ସର୍ପ କିନ୍ନରଗଣ ଦଶାଧିଷ୍ଠାତ୍ରୀ ଦେବୀଗଣ ସୁଗନ୍ଧିତ ପ୍ରଦୀପ ଧାରଣ କରିଥିଲେ । ନାରଦ ଓ ପର୍ବତ ମୁନି ମଧ୍ୟ ପ୍ରଦୀପ ଜଳାଇଥିଲେ । ପାଣ୍ଡବମାନେ ମଧ୍ୟ କୌରବଙ୍କ ପଥ ଅନୁସରଣ କରି ପ୍ରଦୀପର ବ୍ୟବସ୍ଥା କଲେ । ପ୍ରତ୍ୟେକ ହସ୍ତୀ ନିକଟରେ ସାତଗୋଟି, ରଥ ସମୀପରେ ଦଶ ଗୋଟି, ଅଶ୍ୱର ପଛ ପାଖରେ ଦୁଇ ଗୋଟି ଲେଖାଏଁ ପ୍ରଦୀପ ରଖାଯାଇଥିଲା । (ସା, ୨୬୩ଅ)

ସାରଳା ଦାସ ମଧ୍ୟ ରାତ୍ରି ଯୁଦ୍ଧରେ ପ୍ରଦୀପର ବ୍ୟବସ୍ଥା ହେବା ବୃତ୍ତାନ୍ତ ବର୍ଣ୍ଣନା କରିଅଛନ୍ତି । ସେଠାରେ କୁହାଯାଇଛି – ଦ୍ରୋଣଙ୍କ ନିର୍ଦ୍ଦେଶରେ 'ଜଗୁଳ୍ପଳା ଲାଗିଲା । ପ୍ରତିଅରରେ ଶହେ, ପ୍ରତି ହସ୍ତୀ ନିକଟରେ ପଚିଶ ଓ ପ୍ରତି ଅଶ୍ୱ ତଥା ଯୋଦ୍ଧାଙ୍କ ପାଖରେ ପଚିଶ ଗୋଟି ହୁଳା ରଖାଯାଇଥିଲା । (ସା, ୩୦୮ ପୃ)

ମୂଳ ଗ୍ରନ୍ଥରେ ଦୁର୍ଯ୍ୟୋଧନଙ୍କ ଆଦେଶରେ ପ୍ରଦୀପମାନ ପଦାତିକସେନା ଧାରଣ କରିବା କଥା ଅଛି । ପୁଣି ଦେବଗଣ ଓ ଋଷିଗଣ ପ୍ରଦୀପ ଜଳାଇବା ବୃତ୍ତାନ୍ତ ସେଠାରେ ଅଛି । ସାରଳାଦାସ ଏ ସବୁ କଥା ଦେଇ ନାହାନ୍ତି । ମୂଳରେ ପ୍ରଦୀପର କଥା ଥିବା ବେଳେ, ସାରଳା ଦାସ 'ହୁଳା'ର ଉଲ୍ଲେଖ କରନ୍ତି । ମୂଳ ଗ୍ରନ୍ଥରେ ରଥ, ଗଜ ଓ ଅଶ୍ୱଙ୍କ ନିକଟରେ ଯେଉଁ ସଂଖ୍ୟାରେ ପ୍ରଦୀପ ରଖା ହୋଇଥିବାର ବର୍ଣ୍ଣନା ଅଛି ସାରଳା ଦାସ ତଦନୁରୂପ ବର୍ଣ୍ଣନା ଦେଇନାହାନ୍ତି ।

**(୧୬) ଦ୍ରୁପଦ ଓ ବିରାଟ ରାଜାଙ୍କ ନିଧନ :—**

ସଂସ୍କୃତ ମହାଭାରତରେ ଅଛି ଯେ, ଅରୁଣୋଦୟ ହେବାରୁ ସମସ୍ତେ ସନ୍ଧ୍ୟା ବନ୍ଦାପନାରେ ଲାଗିଲେ । ତତ୍ପରେ ଗୁରୁ ଦ୍ରୋଣ ସୋମକ, ପାଣ୍ଡବ ଓ ପାଞ୍ଚାଳଙ୍କ ଉପରେ ଆକ୍ରମଣ ଆରମ୍ଭ କଲେ । ରାଜା ଦ୍ରୁପଦ ଓ ବିରାଟ ଏକ ସଙ୍ଗେ ଦ୍ରୋଣଙ୍କର ପ୍ରତିରୋଧ କରିବାକୁ ଲାଗିଲେ ଦ୍ରୋଣଙ୍କ ହସ୍ତରେ ଚେଦି, କେକୟ, ସୃଞ୍ଜୟ ଓ ମତ୍ସ୍ୟଦେଶର ବୀରଗଣ ପରାଜିତ ହେଲେ ଏବଂ ଦ୍ରୁପଦ ରାଜାଙ୍କର ତିନି ଜଣ ପୌତ୍ର ନିହତ ହେଲେ । ତେଣୁ କ୍ରୋଧାନ୍ୱିତ ହୋଇ ଦ୍ରୁପଦ ଓ ବିରାଟ ଦ୍ରୋଣଙ୍କୁ ପ୍ରବଳ ବେଗରେ ଆକ୍ରମଣ କଲେ । ଦ୍ରୋଣ ସେମାନଙ୍କର ତୋମର ବାଣ ଓ ଲୌହନିର୍ମିତ ସ୍ୱର୍ଣ୍ଣବିମଣ୍ଡିତ ଶକ୍ତିକୁ ବ୍ୟର୍ଥ କରି ଦେଇଥିଲେ । ଶେଷରେ ଦୁଇଟି ତୀକ୍ଷ୍ଣଭଲ୍ଲ ପ୍ରୟୋଗକରି ସେ ବିରାଟ ଓ ଦ୍ରୁପଦଙ୍କୁ ବଧ କରିଥିଲେ ।

ପିତାଙ୍କ ବଧ ହେବା ଦେଖି ଧୃଷ୍ଟଦ୍ୟୁମ୍ନ ପ୍ରତିଜ୍ଞା କରି କହିଲେ – 'ଆଜି ଯାହାର ହାତରୁ ଦ୍ରୋଣ ଜୀବିତ ହୋଇ ରହିଯିବେ, ଅଥବା ଯାହାକୁ ଦ୍ରୋଣ ପରାଜିତ କରିଦେବେ, ସେ ଯଜ୍ଞାନୁଷ୍ଠାନ କୂପଖନନ, ବୃକ୍ଷ ରୋପଣ ଭଳି ପୁଣ୍ୟରୁ ବଞ୍ଚିତ ହେବେ । କ୍ଷତ୍ରିୟତ୍ୱ ଓ ବ୍ରାହ୍ମଣତ୍ୱ ଧ୍ୱଂସ ପାଇବ'' (ସଂ, ୧୮୭ଅ)

ସାରଳା ଦାସ ମହାଭାରତରେ ଅଛି — ରାତ୍ରି ଯୁଦ୍ଧ ଚାଲିଥିବାବେଳେ ହଠାତ୍ ରାଜା ଦ୍ରୌପଦ ଦ୍ରୋଣାଚାର୍ଯ୍ୟଙ୍କର ସମ୍ମୁଖୀନ ହେଲେ । ଦ୍ରୋଣାଚାର୍ଯ୍ୟ ପାଞ୍ଚାଳ ସେନାଙ୍କୁ ଧ୍ୱସ୍ତବିଧ୍ୱସ୍ତ କରିଦେଲେ । ଦ୍ରୋଣ ଦ୍ରୁପଦଙ୍କ ସମରରେ ଦ୍ରୁପଦ ପରାଭୂତ ହେଲେ ଓ ତାଙ୍କର ହସ୍ତୀ ନିହତ ହେଲା । ଦ୍ରୁପଦଙ୍କ ଦେହ ଦ୍ରୋଣଙ୍କ କଟାରିରେ ଆଘାତ ପାଇ ଭାଙ୍ଗି ଗଲା । ଦ୍ରୋଣ କେଶାକର୍ଷଣ

କରି ଦ୍ରୁପଦ ରାଜାଙ୍କ ଶିରଚ୍ଛେଦ କଲେ । (ସା, ୩୧୯-୩୨୧ପୃ) ରାତିର ଅନ୍ଧକାର ମଧ୍ୟରେ ଦ୍ରୋଣ ଜାଣି ପାରିଲେ ନାହିଁ ଯେ, ସେ ନିଜର ମିତ୍ର ଦ୍ରୁପଦଙ୍କୁ ବଧ କରିଛନ୍ତି । ଛିନ୍ନ ମୁଣ୍ଡକୁ ଦେଖି ସେ ଦ୍ରୁପଦଙ୍କର ମୁଣ୍ଡ ବୋଲି ଜାଣିଲେ ଓ ଶୋକାକୁଳ ହେଲେ । କୃପାଚାର୍ଯ୍ୟ ତାହାଙ୍କୁ ସାନ୍ତ୍ୱନା ଦେଇଥିଲେ । (ସା, [illegible] ୧) ଦ୍ରୋଣ ଦ୍ରୁପଦଙ୍କ ଶରୀରକୁ ନିଜ ରଥ ଉପରେ ଗୋଟିଏ ମଧୁକୁମ୍ଭ ମଧ୍ୟରେ ରଖିଲେ । ଯୁଦ୍ଧ ଶେଷ ହେବା ପରେ ପ୍ରୟାଗ ତୀର୍ଥରେ ଶବକୁ ପକାଇ ମିତ୍ରଦ୍ରୋହ ଜନିତ ପାପକୁ କ୍ଷାଳନ କରିବା ପାଇଁ ସେ ମନସ୍ଥ କରିଥିଲେ । ଧୃଷ୍ଟଦ୍ୟୁମ୍ନ ଅନ୍ୟତ୍ର ଯୁଦ୍ଧରେ ବ୍ୟାପୃତ ଥାଇ ପିତାଙ୍କ ମୃତ୍ୟୁ-କଥା ଜାଣିପାରି ନ ଥିଲେ । (ସା, ୩୮୦ପୃ) ଦ୍ରୋପଦଙ୍କ ମୃତ୍ୟୁର ବହୁ ସମୟ ପରେ କର୍ଣ୍ଣଙ୍କଠାରୁ ଧୃଷ୍ଟଦ୍ୟୁମ୍ନ ସମ୍ବାଦ ପାଇଲେ ଯେ, ପରିଘଟଣା ଡଳେ ତାଙ୍କ ପିତାଙ୍କର ଶିରଚ୍ଛେଦ ହୋଇଅଛି । ସେ ଦ୍ରୋଣଙ୍କ ନିକଟକୁ ଗମନ କରି ଶପଥ କଲେ ଯେ, ତାଙ୍କୁ ବଧ ନ କରି ପାଞ୍ଚାଳ ଦେଶକୁ ପ୍ରତ୍ୟାବର୍ତ୍ତନ କରିବେ ନାହିଁ । (ସା, ୩୮୫-୩୮୭ପୃ)

ସାରଳା ମହାଭାରତରେ ଅଛି ଯେ, ରାତି ଯୁଦ୍ଧ କାଳରେ କର୍ଣ୍ଣ ଓ ବିରାଟ-ରାଜାଙ୍କର ସମର ହୋଇଥିଲା । କର୍ଣ୍ଣ ବିରାଟଙ୍କ ରଥ, ଧନୁ ଓ ହସ୍ତୀକୁ ବଧ କରିଥିଲେ । ଶେଷରେ ଶରମାରି ସେ ବିରାଟରାଜାଙ୍କୁ ବଧ କଲେ । (ସା, ପୃ ୩୭୬-୩୭୦)

ଦୁଇଟି ଯାକ ବର୍ଣ୍ଣନାରେ ଦ୍ରୋଣଙ୍କ ଦ୍ୱାରା ଦ୍ରୁପଦଙ୍କ ବଧ ବୃତ୍ତାନ୍ତ ଅଛି । ମୂଳଗ୍ରନ୍ଥ ଅନୁସାରେ ଦ୍ରୁପଦଙ୍କ ମୃତ୍ୟୁ ପ୍ରଭାତରେ ହୋଇଥିଲା, କିନ୍ତୁ ସାରଳା ମହାଭାରତ ଅନୁସାରେ ତାହା ରାତି କାଳରେ ଘଟିଥିଲା । ମୂଳରେ ଅଛି—ବିରାଟ ଓ ଦ୍ରୁପଦ ଏକ ସମୟରେ ନିହତ ହେଲେ । ସାରଳାଦାସ ଦର୍ଶାଇଛନ୍ତି ଯେ, ଦ୍ରୋଣ ଦ୍ରୁପଦଙ୍କୁ ବଧ କରିଥିଲେ ଏବଂ କର୍ଣ୍ଣ ବିରାଟଙ୍କୁ ଅନ୍ୟ ସମୟରେ ବଧ କଲେ । ମୂଳଗ୍ରନ୍ଥ ଅନୁସାରେ, ଦ୍ରୋଣ ଜ୍ଞାତସାରରେ ଦ୍ରୁପଦଙ୍କୁ ବଧ କରିଥିଲେ । ସାରଳା କହନ୍ତି ଯେ, ତାହା ତାଙ୍କର ଅଜ୍ଞାତସାରରେ ହୋଇଥିଲା । ପରେ ମସ୍ତକକୁ ଦେଖି ସେ ମିତ୍ରବଧ କରିଛନ୍ତି ବୋଲି ଅବଗତ ହେଲେ । ମୂଳରେ କୃପଙ୍କ ଆଶ୍ୱାସନା ଓ ଦ୍ରୋଣଙ୍କ ଦ୍ୱାରା ଦ୍ରୁପଦଙ୍କ ମୃତପିଣ୍ଡ-ରକ୍ଷା ଆଦି ବିଷୟ ନାହିଁ । ପୁନଶ୍ଚ ବିଳମ୍ବରେ ଧୃଷ୍ଟଦ୍ୟୁମ୍ନ ପିତାଙ୍କର ମୃତ୍ୟୁ ସମ୍ବାଦ କର୍ଣ୍ଣଙ୍କଠାରୁ ପ୍ରାପ୍ତ ହେବା ବର୍ଣ୍ଣନା ମଧ୍ୟ ମୂଳଗ୍ରନ୍ଥରେ ଅଭାବ । ଉଭୟ ଗ୍ରନ୍ଥରେ ଧୃଷ୍ଟଦ୍ୟୁମ୍ନଙ୍କ ପ୍ରତିକାର ସ୍ୱରୂପ ମଧ୍ୟ ଭିନ୍ନ ଅଟେ ।

**(୧୭) ଅଳମ୍ବୁଷ ବଧ ବୃତ୍ତାନ୍ତ :—**

ବ୍ୟାସକୃତ ମହାଭାରତରେ ଅଛି ଯେ, ଭୀମଙ୍କ ପୁତ୍ର ଘଟୋତ୍କଚଙ୍କ ସହ କର୍ଣ୍ଣଙ୍କଙ୍କର ଯୁଦ୍ଧ ଚାଲିଥିବାବେଳେ ଦୁର୍ଯ୍ୟୋଧନଙ୍କ ନିକଟରେ ଜଟାସୁର ନାମକ

ରାକ୍ଷସର ପୁତ୍ର ଅଳମ୍ବୁଷ ଉପସ୍ଥିତ ହେଲା । ଅଳମ୍ବୁଷ କହିଲା—ପାଣ୍ଡବମାନେ ମୋର ପିତାଙ୍କୁ ହତ୍ୟା କରିଥିଲେ । ମୋତେ ଆଜ୍ଞା ଦେଲେ, ମୁଁ ସେମାନଙ୍କୁ ବଧ କରି ପିତୃଋଣ ପରିଶୋଧ କରିବି । ଦୁର୍ଯ୍ୟୋଧନ ତାଙ୍କୁ ଆଦେଶ ଦେଲେ--ଯାଅ, ଘଟୋତ୍କଚର ପ୍ରତିରୋଧ କର । ଘଟୋତ୍କଚ ଓ ଅଳମ୍ବୁଷ ପଥରେ ଧନୁଶର ଧରି ଯୁଦ୍ଧ କଲେ ଓ ପରେ ମୁଷ୍ଟି ଯୁଦ୍ଧରେ ବ୍ୟାପୃତ ହେଲେ । ଶେଷରେ ଘଟୋତ୍କଚ ଅଳମ୍ବୁଷ ରାକ୍ଷସକୁ ବଧକଲେ । ତ ଦ୍ଵାରା ଛିନ୍ନ ମସ୍ତକକୁ ନେଇ ଦୁର୍ଯ୍ୟୋଧନଙ୍କ ରଥ ଉପରେ ରଖିଦେଇ ସେ କହିଲେ— ଏହିପରି ଭାବରେ ତୁମର ଓ କର୍ଣ୍ଣଙ୍କର ଶିରଚ୍ଛେଦ ହେବ । (ସ, ୧୭୪ ଅ)

ସାରଳା ମହାଭାରତରେ ଅଛି – ଅଳମ୍ବୁଷ ନାମକ ରାକ୍ଷସ ଘଟୋତ୍କଚର ପୁତ୍ର ଘଟ୍ଟକାକୁ ବଧ କଲାପରେ ରାକ୍ଷସବଳ ପୃଷ୍ଠଭଙ୍ଗ ଦେଲେ । ତାହା ଦେଖି ଘଟୋତ୍କଚ ଅଳମ୍ବୁଷକୁ ବୃକ୍ଷଦ୍ଵାରା ଆକ୍ରମଣ କଲେ । ଅଳମ୍ବୁଷ ଶରୀରରେ ବୃକ୍ଷ ଆଘାତ ପାଇ ଭାଙ୍ଗି ଯିବାରୁ ଘଟୋତ୍କଚ ମୁଷ୍ଟିଯୁଦ୍ଧ ଆରମ୍ଭ କରିଥିଲେ । ପ୍ରଥମେ ଅଳମ୍ବୁଷ ଘଟୋତ୍କଚକୁ ତଳେ ପକାଇ ଦେଇ ତାକୁ ବଧ କରିବାକୁ ଚେଷ୍ଟିତ ହେଲେ । କିନ୍ତୁ ପରେ ଘଟୋତ୍କଚ ଅଳମ୍ବୁଷକୁ ତଳେ ପକାଇ ଦେଇ ଦଶ ନଖରେ ବିଦାରଣ କରିବାକୁ ଲାଗିଲେ । ଅଳମ୍ବୁଷକୁ ରକ୍ଷା କରିବା ପାଇଁ ଶଲ୍ୟ କର୍ଣ୍ଣଙ୍କୁ ଅନୁରୋଧ କରିଥିଲେ । କିନ୍ତୁ କେହି ମହାବୀର ଘଟୋତ୍କଚଙ୍କ କବଳରୁ ଅଳମ୍ବୁଷକୁ ରକ୍ଷା କରିପାରିଲେ ନାହିଁ । ଘଟୋତ୍କଚ ତାକୁ ବଧ କଲେ । (ସା, ୩୪୨-୩୪୫ ପୃ)

ଉଭୟ ଗ୍ରନ୍ଥରେ ଅଛି ଯେ, ଘଟୋତ୍କଚ ଅଳମ୍ବୁଷ ରାକ୍ଷସକୁ ବଧ କରିଥିଲେ । ମୂଳରେ ଘଟୋତ୍କଚ ଓ କର୍ଣ୍ଣଙ୍କ ଯୁଦ୍ଧ ଚାଲିଥିବାବେଳେ ଅଳମ୍ବୁଷ ଦୁର୍ଯ୍ୟୋଧନଙ୍କ ନିକଟକୁ ଆଗମନ କରିବା, ଯୁଦ୍ଧପାଇଁ ଅନୁମତି ନେବା ଆଦି କଥା ରହିଥିବା ସ୍ଥଳେ, ସାରଳା ସେ ସମସ୍ତ କଥା ଦେଇନାହାନ୍ତି । ସାରଳା କହନ୍ତି—ଘଟ୍ଟକାର ମୃତ୍ୟୁପରେ ରାକ୍ଷସବଳଙ୍କ ପୃଷ୍ଠଭଙ୍ଗ ଦେଖି ଘଟୋତ୍କଚ ଅଳମ୍ବୁଷ ସହ ଯୁଦ୍ଧରେ ପ୍ରବୃତ୍ତ ହେଲେ । ପୁନଶ୍ଚ ମୂଳରେ ଘଟୋତ୍କଚ ଅଳମ୍ବୁଷର ମୁଣ୍ଡକୁ ନେଇ ଦୁର୍ଯ୍ୟୋଧନଙ୍କ ରଥରେ ରଖିବା କଥା ରହିଥିଲେ ହେଁ, ସାରଳା ତାହା ପରିହାର କରିଛନ୍ତି । ଉଭୟ ବର୍ଣ୍ଣନାରେ ଅସୁରଦ୍ଵୟଙ୍କର ମୁଷ୍ଟି ଯୁଦ୍ଧ ବୃତ୍ତାନ୍ତ ରହିଛି ।

## (୧୭) ଅଳାୟୁଧ ବଧ :—

ସଂସ୍କୃତ ମହାଭାରତରେ ବର୍ଣ୍ଣିତ ଅଛି ଯେ, କର୍ଣ୍ଣ ଓ ଘଟୋତ୍କଚ ସମର ବେଳେ ଘଟୋତ୍କଚ ମାୟାଯୁଦ୍ଧ କରିଥିଲେ । ଏହି ଯୁଦ୍ଧ ଚାଲିଥିବା ବେଳେ ଅଳାୟୁଧ ନାମକ ରାକ୍ଷସରାଜ ବହୁ ରାକ୍ଷସଙ୍କୁ ସଙ୍ଗରେ ଆଣି ଦୁର୍ଯ୍ୟୋଧନଙ୍କ ସମୀପରେ ଉପସ୍ଥିତ ହେଲା । ସେ କହିଲା ଭୀମ ମୋର ଜ୍ଞାତିଗଣଙ୍କୁ ବଧ କରିଛନ୍ତି । କର୍ମୀର, ବକ ଓ ହିଡ଼ିମ୍ବ

ରାକ୍ଷସଙ୍କର ସେ ବଧକାରୀ । ସେ ପୁଣି ହିଡ଼ିମ୍ବିକାକୁ ବଳତ୍କାର ହରଣ କରିଛି । ତୁମେ ଆଦେଶ ଦେଲେ ମୁଁ ଭୀମଙ୍କୁ ସଖା ଓ ବନ୍ଧୁଙ୍କ ସହ ବଧ କରିବି । ଘଟୋତ୍କଚ ଭୀମର ପୁତ୍ର । ସେ ବର୍ତ୍ତମାନ ତୁମ୍ଭମାନଙ୍କ ସହ ଯୁଦ୍ଧ କରୁଅଛି । ମୁଁ ତାକୁ ହତ୍ୟା କରି ଘରକୁ ଫେରିଯିବି । ଦୁର୍ଯ୍ୟୋଧନ ପ୍ରମୁଖ କୌରବଗଣ ଅଳାୟୁଧକୁ ଆଗରେ ରଖି ଯୁଦ୍ଧରେ ମାତିଲେ । ଦୁର୍ଯ୍ୟୋଧନ ଅଳାୟୁଧକୁ ଆଦେଶ ଦେଲେ-ତୁମେ ଘଟୋତ୍କଚ ହସ୍ତରୁ କର୍ଣ୍ଣଙ୍କୁ ରକ୍ଷା କର । ଫଳରେ ଘଟୋତ୍କଚ ସହ ଅଳାୟୁଧର ଯୁଦ୍ଧ ହେଲା । ଏହା ଦେଖି ଭୀମସେନ ଘଟୋତ୍କଚଙ୍କୁ ସାହାଯ୍ୟ ଦେବା କାମନାରେ ଅଳାୟୁଧକୁ ଆକ୍ରମଣ କଲେ । ଅଳାୟୁଧ ଓ ଭୀମଙ୍କ ସମର ସଂଘଟିତ ହେଲା । ଶ୍ରୀକୃଷ୍ଣ କର୍ଣ୍ଣଙ୍କ ସହ ଯୁଦ୍ଧରତ ଘଟୋତ୍କଚଙ୍କୁ ଭୀମଙ୍କ ସାହାଯ୍ୟ କରିବା ଆଦେଶ ଦେଲେ । ଘଟୋତ୍କଚଙ୍କୁ ଅଳାୟୁଧ ପରିଘ ଦ୍ୱାରା ସଜ୍ଞାହୀନ କରିଦେଲେ । ପରେ ସେ ସଂଜ୍ଞା ଲାଭ କରି ଅଳାୟୁଧ ସହ ମାୟା ଯୁଦ୍ଧ କଲେ । ଶେଷରେ ଘଟୋତ୍କଚ ଅଳାୟୁଧର ଶିର ଛେଦ କଲେ ଓ ମୁଣ୍ଡଟିକୁ ନେଇ ଦୁର୍ଯ୍ୟୋଧନଙ୍କ ଆଡକୁ ପକାଇ ଦେଲେ । (ସଂ, ୧୭୭-୧୭୮ଅ)

## (୧୮) ଘଟୁକା-ବଧ :—

ମୂଳଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି ଯେ, ଅଶ୍ୱତ୍ଥାମାଙ୍କ ସହିତ ଘଟୋତ୍କଚ ପୁତ୍ର ଅଞ୍ଜନପର୍ବଙ୍କର ଯୁଦ୍ଧ ହୋଇଥିଲା । ଅଶ୍ୱତ୍ଥାମା ତାଙ୍କ ଆଡକୁ ଅଗ୍ରସର ହେଉଥିବାର ଦେଖି ସେ ପ୍ରବଳ ବେଗରେ ତାହାଙ୍କୁ ବାଧା ଦେଇଥିଲେ । ଅଶ୍ୱତ୍ଥାମା ଅଂଜନପର୍ବାଙ୍କର ଧ୍ୱଜକୁ କାଟି ଦେଇ ସାରଥୀ ଓ ଅଶ୍ୱମାନଙ୍କୁ ବଧ କଲେ । ତା'ପରେ ଉଭୟଙ୍କ ମଧ୍ୟରେ ଗଦାଯୁଦ୍ଧ ହେଲା ଓ ଅଞ୍ଜନପର୍ବା ଆହତ ହୋଇ ଭୂତଳଶାୟୀ ହେଲେ । ଅଞ୍ଜନପର୍ବା ମାୟାଯୁଦ୍ଧ ଆଚରଣ କଲେ ଓ ଆକାଶରୁ ବୃକ୍ଷମାନ ବୃଷ୍ଟି ହେଲା, ଅଶ୍ୱତ୍ଥାମା ମଧ୍ୟ ଆକାଶମାର୍ଗରେ ତାକୁ ଆହତ କଲେ । ଅସୁରକୁମାର ପୁଣି ଭୂତଳକୁ ଆସି ସମର କଲେ । ଏହାପରେ ଅଶ୍ୱତ୍ଥାମା ଅଞ୍ଜନପର୍ବାଙ୍କୁ ବଧ କଲେ । (ଘ,୧୫୬ ଅ)

ସାରଳା ମହାଭାରତରେ ଅଛି—କୌରବଗଣ ଘଟୁକା ଉପରକୁ ଯେତେ ଶର ବୃଷ୍ଟି କଲେ, ସେ ସମସ୍ତ ଶରକୁ ଗର୍ଭଗତ କରିଦେଲା । ଘଟୁକା କୌରବସେନାଙ୍କୁ ଧ୍ୱଂସ କରିବା ଦେଖି ଶକୁନି ଅଳାୟୁଧକୁ କହିଲେ —ତୁମେ ଘଟୁକା ସହ ଯୁଦ୍ଧ କରି କୌରବଦଳକୁ ରକ୍ଷା କର ଅଳାୟୁଧ ଘଟୁକା ଏକ ଚୋଦାଳରେ ଆଘାତ କରିବାରୁ ସେ ଦୁଇଫାଳ ହୋଇ ପ୍ରାଣତ୍ୟାଗ କଲା । ଶକୁନି ପୁଣି ଅଳମ୍ବୁଷକୁ କହିଲେ -- ଅସୁରଦଳକୁ ଘଟୁକା ଧ୍ୱଂସ କରୁଅଛି । ତୁମପୁତ୍ର ଅଳାୟୁଧ ତା' ହାତେ ବିନାଶପ୍ରାପ୍ତ ହେଲାଣି । ତୁମେ ଘଟୁକା ସହ ଯୁଦ୍ଧ କର । ଅଳମ୍ବୁଷ ହେଉଛି— କିଙ୍କାର ନାତି । ସେ ହସ୍ତୀ ଉପରେ ବସି ଯୁଦ୍ଧ କଲା । ଘଟୁକା ସେହି ହସ୍ତୀକୁ ବଧ କରିଦେଲା । ଘଟୁକା ଲୌହରଥରେ ବସି ଯୁଦ୍ଧ କରୁଥିଲା । ଅଳମ୍ବୁଷ

ଗଦାଘାତ କରି ସେହି ରଥକୁ ଧ୍ୱଂସ କଲା ତାହାପରେ ସେ କୁଠାରଦ୍ୱାରା ଆଘାତ କରି ଘଣ୍ଟୁକାକୁ ଦୁଇଫାଳ କରିଦେବାରୁ ସେ ପ୍ରାଣତ୍ୟାଗ କଲା । (ସା, ୭.୩୮-୩୪୧)

ଉଭୟ ବର୍ଣ୍ଣନାକୁ ତୁଳନା କଲେ ଜଣାଯିବ ଯେ ମୂଳଗ୍ରନ୍ଥରେ ଘଟୋତ୍କଚ-ପୁତ୍ରର ନାମ ଅଞ୍ଜନପର୍ବା ଓ ସାରଳା ମହାଭାରତରେ ଘଣ୍ଟୁକା । ମୂଳଗ୍ରନ୍ଥରେ ଅଶ୍ୱତ୍ଥାମା ଘଣ୍ଟୁକର ବଧକାରୀ, କିନ୍ତୁ ସାରଳା ମହାଭାରତରେ ତାହାର ବଧକାରୀ ହେଲେ ଅଳମ୍ବୁଷ ରାକ୍ଷସ । ମୂଳ ମହାଭାରତ ଅନୁସାରେ ଅଳମ୍ବୁଷ ଜଟାସୁରର ପୁତ୍ର, କିନ୍ତୁ ସାରଳା ମହାଭାରତ ଅନୁସାରେ ତ୍ରିଜଟାର ନାତି । ମୂଳ-ବର୍ଣ୍ଣିତ ଅଞ୍ଜନପର୍ବାର ମାୟାଯୁଦ୍ଧ ବିଷୟ ସାରଳାଙ୍କ ଗ୍ରନ୍ଥରେ ନାହିଁ । ସ୍ଥୂଳତଃ ଘଟୋତ୍କଚ ପୁତ୍ରର ବଧ ଘଟଣାଟିକୁ ସାରଳାଦାସ ମୂଳଠାରୁ ଭିନ୍ନକରି ଚିତ୍ରଣ କରିଛନ୍ତି ।

**(୧୯) ଘଟୋତ୍କଚ ବଧ !—**

ସଂସ୍କୃତ ମହାଭାରତରେ ରହିଛି ଯେ, ଅଳାୟୁଧ ବଧ ହେବା ପରେ ଘଟୋତ୍କଚଙ୍କ ସହ କର୍ଣ୍ଣଙ୍କର ଯୁଦ୍ଧ ସଂଘଟିତ ହେଲା । କର୍ଣ୍ଣ ତାଙ୍କର ରଥ ଓ ଅଶ୍ୱକୁ ଧ୍ୱଂସ କରିଦେଲେ । ଘଟୋତ୍କଚ ଅଦୃଶ ହେଲେ ଓ ଶୂନ୍ୟରେ ଥାଇ ମାୟାଯୁଦ୍ଧ କଲେ । ଗଗନମାର୍ଗରେ ନାଲି ମେଘ ଦେଖାଦେଲା, ବିଜୁଳି ନୃତ୍ୟ କଲା, ବଜ୍ରନାଦ ଶୁଣାଗଲା, ଶସ୍ତ୍ର ଓ ମୂଷଳ ପ୍ରଭୃତି ବୃଷ୍ଟି ହେଲା । କୌରବ ସେନା ବହୁ ସଂଖ୍ୟାରେ ନିହତ ହେଲେ ଓ ଅବଶିଷ୍ଟ ସେନା ପଳାୟନ କଲେ । କୌରବଗଣ ବିକଳରେ କର୍ଣ୍ଣଙ୍କୁ କହିଲେ—ଶକ୍ତି-ପ୍ରୟୋଗ କରି ଘଟୋତ୍କଚଙ୍କ କବଳରୁ ଆମ୍ଭମାନଙ୍କୁ ରକ୍ଷା କର । ପୂର୍ବେ ଇନ୍ଦ୍ର କର୍ଣ୍ଣଙ୍କଠାରୁ କବଚ ଓ କୁଣ୍ଡଳ ନେବାବେଳେ ତାଙ୍କୁ ନିଜର ଶକ୍ତି ପ୍ରଦାନ କରିଥିଲେ । ଇନ୍ଦ୍ରଙ୍କ ନିର୍ଦ୍ଦେଶ ଥିଲା ଯେ, ଶକ୍ତିଟି ଜଣେ ବୀରଙ୍କୁ ବଧକରି ସ୍ୱସ୍ଥାନକୁ ପ୍ରତ୍ୟାବୃତ୍ତ ହେବ । କର୍ଣ୍ଣ ସେହି ଇନ୍ଦ୍ରଶକ୍ତିକୁ ପ୍ରୟୋଗ କରିବାରୁ ଘଟୋତ୍କଚ ନିଜର ଶରୀରକୁ ପର୍ବତାକାର କରିଦେଲା । ଶକ୍ତିଟି ତାହାର ହୃଦଦେଶକୁ ଭେଦ କରି, ଊର୍ଦ୍ଧ୍ୱଗାମୀ ହୋଇ ମହାଶୂନ୍ୟରେ ବିଲୀନ ହୋଇଗଲା । ଘଟୋତ୍କଚର ବିଶାଳ ଦେହ ଭୂତଳରେ ପଡ଼ିରହିଲା । (ସଂ, '୭୯ଅ)

ଘଟୋତ୍କଚଙ୍କ ବଧରେ ପାଣ୍ଡବଗଣ ଶୋକାକୁଳ ହୋଇଥିଲେ, କିନ୍ତୁ ଶ୍ରୀକୃଷ୍ଣ ପ୍ରସନ୍ନ ଥିଲେ । ଅର୍ଜ୍ଜୁନ ଏହାର କାରଣ ଜିଜ୍ଞାସା କରିବାରୁ ସେ ଦର୍ଶାଇଲେ—ଇନ୍ଦ୍ର ଯଦି କର୍ଣ୍ଣଙ୍କଠାରୁ କବଚ ଓ କୁଣ୍ଡଳ ନେଇ ନ ଥାନ୍ତେ ତେବେ ସେ ତ୍ରିଲୋକରେ ଅଜେୟ ହୋଇଥାନ୍ତେ । ଇନ୍ଦ୍ରଶକ୍ତି ତାଙ୍କ ପାଖରେ ଥିଲେ ସେ ମଧ୍ୟ ଅଜେୟ ହୁଅନ୍ତେ । ତାହା ଗୋଟିଏ ବୀରର ନିଧନ ପାଇଁ ଉଦ୍ଦିଷ୍ଟ ଥିଲା ଘଟୋତ୍କଚଙ୍କ ପ୍ରତି ପ୍ରୟୋଗ କରିବା ଫଳରେ ଏବେ କର୍ଣ୍ଣ ସେହି ଇନ୍ଦ୍ରଶକ୍ତିକୁ ହରାଇଲେ ଏବଂ ଶକ୍ତିହୀନ ହେଲେ । ବର୍ତ୍ତମାନ ତାଙ୍କୁ ସହଜରେ ବଧ କରାଯାଇପାରିବ । (ସଂ, ୧୮୦ଅ)

ସାରଳାଦାସ ଏହି ପ୍ରସଙ୍ଗରେ ଲେଖିଛନ୍ତି—ରାତ୍ରି ଯୁଦ୍ଧରେ ବିରାଟଙ୍କ ମୃତ୍ୟୁ ହେବା ସମ୍ବାଦ ପାଇ ଅର୍ଜ୍ଜୁନ ଅତ୍ୟନ୍ତ ନିଦାରୁଣ ଭାବରେ କର୍ଣ୍ଣଙ୍କ ସହ ସମର କଲେ । କୌରବସେନା ବହୁ ସଂଖ୍ୟାରେ ମୃତାହତ ହେବାରୁ ଶଲ୍ୟ କର୍ଣ୍ଣଙ୍କୁ ଇନ୍ଦ୍ରପ୍ରଦତ୍ତ ଶକ୍ତି ପ୍ରୟୋଗ କରିବା ପାଇଁ ଅନୁରୋଧ ଜଣାଇଲେ । ଶଲ୍ୟ ଓ କର୍ଣ୍ଣ କଥୋପକଥନ କରୁଥିବା ବେଳେ ଘଟୋତ୍କଚ ଉଭୟ ଅଦ୍ଭୁତ ରଥ ଭଗ୍ନପ୍ରାୟ କରିଦେଲେ । ଭୀମ ଓ ଦ୍ରୁପଦ ମିଳିତ ହୋଇ ବହୁ କୌରବସେନା ବିନାଶ କଲେ । ଶକୁନିଙ୍କଠାରୁ ଏହି ସମ୍ବାଦ ପ୍ରାପ୍ତ ହୋଇ ଦୁର୍ଯୋଧନ ସାହାଯ୍ୟ ଦେବାକୁ ଆସିଲେ । କର୍ଣ୍ଣ ଇନ୍ଦ୍ରଶକ୍ତି ପ୍ରୟୋଗ କରିବାକୁ ଉଦ୍ୟତ ହେବାର ଦେଖି ଶ୍ରୀକୃଷ୍ଣ ଘଟୋତ୍କଚଙ୍କୁ କହିଲେ—ତୁମକୁ ଦ୍ରୌପଦୀ ଅଭିଶାପ ଦେଇଛନ୍ତି ଯେ ତୁମ ଉପରେ ବିନା ଯୁଦ୍ଧରେ ବଜ୍ରପାତ ହେବ । ତୁମେ ଏବେ ନନ୍ଦିଘୋଷ ପଛପଟେ ଲୁଚି ରହ । ଏଣେ ସେ କପିକେତନ ଧ୍ୱଜାରେ ଥିବା ହନୁମାନଙ୍କୁ ନିର୍ଦ୍ଦେଶ ଦେଲେ—କର୍ଣ୍ଣ ବଜ୍ରଶକ୍ତି ପ୍ରୟୋଗ କଲେ ତୁମେ ନନ୍ଦିଘୋଷ ରଥକୁ ପାତାଳରେ ଚାପିଦେବ । ଇନ୍ଦ୍ରଶକ୍ତି ଯାହାକୁ ଇଚ୍ଛା ତାହାକୁ ବଧ କରି ଇନ୍ଦ୍ରଙ୍କ ନିକଟକୁ ଫେରିଯିବ । କର୍ଣ୍ଣ ବଜ୍ରଶକ୍ତି ପ୍ରୟୋଗ କରିବାରୁ ହନୁମାନ ରଥକୁ ପାତାଳଗାମୀ କରାଇଲେ । ରଥର ପଛପଟରେ ଲୁଚି ରହିଥିବା ବେଳେ ଘଟୋତ୍କଚ ବଜ୍ରଶକ୍ତିର ଆଘାତ ପାଇ ବିନାଶପ୍ରାପ୍ତ ହେଲେ ଶ୍ରୀକୃଷ୍ଣ ଆନନ୍ଦିତ ହେଲେ । (ସା, ମୃ ୩୨୯-୩୦୩)

ଉଭୟ ଗ୍ରନ୍ଥକାର କହନ୍ତି ଯେ କର୍ଣ୍ଣ ଇନ୍ଦ୍ରପ୍ରଦତ୍ତ ଶକ୍ତି ପ୍ରୟୋଗକରି ଘଟୋତ୍କଚଙ୍କୁ ବଧ କରିଥିଲେ । ମୂଳରେ ଅଛି—ଅଳାୟୁଧ ବଧ ହେବାପରେ ଘଟୋତ୍କଚ କର୍ଣ୍ଣଙ୍କ ସହ ସମର କରି ନିହତ ହେଲେ । ସାରଳା କହୁଛନ୍ତି—ବିରାଟଙ୍କ ମୃତ୍ୟୁପରେ ଅର୍ଜ୍ଜୁନ ଓ କର୍ଣ୍ଣଙ୍କ ସମର ବେଳେ ଘଟୋତ୍କଚ ନିହତ ହୋଇଥିଲେ । ସାରଳାଙ୍କ ବର୍ଣ୍ଣନା ଥିବା ଦ୍ରୌପଦୀଙ୍କରଘଟୋତ୍କଚଙ୍କ ପ୍ରତି ଅଭିଶାପ, ଶ୍ରୀକୃଷ୍ଣଙ୍କର ତାଙ୍କ ପ୍ରତି ରଥ ପଛରେ ଲୁଚି ରହିବା ପାଇଁ ନିର୍ଦ୍ଦେଶ, ହନୁମାନ ଦ୍ୱାରା ରଥ ପାତଳଗାମୀ ହେବା କଥାମାନ ମୂଳଗ୍ରନ୍ଥରେ ନାହିଁ । ଘଟୋତ୍କଚ-ବଧରେ ଶ୍ରୀକୃଷ୍ଣଙ୍କ ପ୍ରସନ୍ନତା ଉଭୟ ଚରିତରେ ଥିଲେ ହେଁ, ମୂଳଗ୍ରନ୍ଥ ପରି ସାରଳାଦାସ ପ୍ରସନ୍ନତାର କାରଣ ନିର୍ଦ୍ଦେଶ କରିନାହାନ୍ତି ।

## (୨୦) ଅଶ୍ୱତ୍‌ଥମା ହସ୍ତୀର ବଧଃ—

ବ୍ୟାସଙ୍କ ମୂଳଗ୍ରନ୍ଥରେ ରହିଛି ଯେ ପାଣ୍ଡବଗଣ ଦ୍ରୋଣଙ୍କ ଶରଦ୍ୱାରା ନିପୀଡ଼ିତ ହେବାର ଦେଖି ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଲେ—ଦ୍ରୋଣଙ୍କ ହସ୍ତରେ ଧନୁଶର ଥିବା ପର୍ଯ୍ୟନ୍ତ କେହି ତାଙ୍କୁ ବଧ କରିପାରିବେ ନାହିଁ । ଯୁଦ୍ଧବେଳେ ଯଦି ଅସ୍ତ୍ରଶସ୍ତ୍ର ତ୍ୟାଗ କରିବେ, ତେବେ ମଣିଷ ଦ୍ୱାରା ସେ ସହଜରେ ନିହତ ହୋଇପାରିବେ । ଅଶ୍ୱତ୍‌ଥମା ମୃତ ବୋଲି

ଜାଣିଲେ ଦ୍ରୋଣ ଯୁଦ୍ଧ ନକରି ଅସ୍ତ୍ର ପରିତ୍ୟାଗ କରିବେ । କେହି ଜଣେ ଯାଇ ତାଙ୍କୁ କୁହ ଯେ ଅଶ୍ୱତ୍ଥମା ସଂଗ୍ରାମରେ ନିହତ । ଅର୍ଜ୍ଜୁନ ଏଭଳି ପ୍ରସ୍ତାବକୁ ପସନ୍ଦ କରି ନଥିଲେ ମଧ୍ୟ, ଅନ୍ୟମାନଙ୍କ ଯୁକ୍ତିକୁ ଗ୍ରହଣ କରି ନେଇଥିଲେ । ଯୁଧିଷ୍ଠିର ବହୁ କଷ୍ଟରେ ଏହି ପ୍ରସ୍ତାବରେ ସମ୍ମତ ହେଲେ । ଭୀମସେନ ସ୍ୱପକ୍ଷୀୟ ମାଳବରାଜ ଇନ୍ଦ୍ରବର୍ମାଙ୍କର ଅଶ୍ୱତ୍ଥମା ନାମକ ବିରାଟ ହସ୍ତୀକୁ ବଧ କଲେ । (ସଂ,୧୯୦ଅ)

ସାରଳା ମହାଭାରତରେ ଅଛି—ମାଳବର ରାଜା କୃତବର୍ମା ଅଶ୍ୱତ୍ଥମା ନାମକ ମହାନାଗ ଉପରେ ବସି ଭୀମଙ୍କୁ ଆକ୍ରମଣ କଲେ । ମାଳବର ସୈନ୍ୟମାନେ ପରାଭୂତ ହେଲେ । ତାହା ଦେଖି ମାଳବରାଜ ଅଶ୍ୱତ୍ଥମା ହସ୍ତୀକୁ ଆଣି ଭୀମଙ୍କ ସମକ୍ଷରେ ରଖିଦେଲେ । ଏହି ହସ୍ତୀ ଯେପରି ବିରାଟକାୟ, ସେହିପରି ମହାବଳଶାଳୀ ଥିଲା । ସିନ୍ଧୁମନ୍ଥନରୁ ଜାତ ଐରାବତ ହସ୍ତୀର ବଂଶରେ ତାହାର ଜନ୍ମ । ଗିରିଜା ନାମକ ହସ୍ତୀର ସେ ସନ୍ତାନ । ଭୀମସେନ ହସ୍ତୀର କୁମ୍ଭସ୍ଥଳରେ ଗଦା ପ୍ରହାର କରିବାରୁ ସେ ନିହତ ହେଲା । (ସା,୩୭୧-୩୮୨ ପୃ)

ଉଭୟ ଗ୍ରନ୍ଥରେ ମାଳବରାଜାଙ୍କ ହସ୍ତୀ ଅଶ୍ୱତ୍ଥମାଙ୍କୁ ଭୀମ ବଧ କରିବା କଥା ଅଛି । ମୂଳଗ୍ରନ୍ଥ ଅନୁସାରେ ମାଳବରାଜାଙ୍କ ନାମ ଇନ୍ଦ୍ରବର୍ମା, କିନ୍ତୁ ସାରଳା ମହାଭାରତରେ ନାମଟି କୃତବର୍ମା । ମୂଳରେ ଅଶ୍ୱତ୍ଥମା ହସ୍ତୀର ବଧ ପଛରେ ଯେଉଁ ଉଦ୍ଦେଶ୍ୟ ଥିବା କଥା ବର୍ଣ୍ଣନା କରାଯାଇଅଛି । ତାହା ସାରଳା ମହାଭାରତରେ ନାହିଁ । ମୂଳରେ ମାଳବରାଜ ପାଣ୍ଡବ ପକ୍ଷୀୟ, କିନ୍ତୁ ସାରଳାଙ୍କ ଗ୍ରନ୍ଥରେ ସେ କୌରବପକ୍ଷୀୟ ବୀର । ପ୍ରକୃତ ପକ୍ଷରେ କୃତବର୍ମା କୌରବପକ୍ଷୀୟ ରାଜା ଅଟନ୍ତି । ସାରଳା 'ଇନ୍ଦ୍ରବର୍ମା' ନାମଟିକୁ ପରିବର୍ତ୍ତନ କରି 'କୃତବର୍ମା' ଲେଖିଥିବାରୁ ଭ୍ରମ ସୃଷ୍ଟି ହୋଇଅଛି । ମୂଳ ମହାଭାରତରେ ଅଶ୍ୱତ୍ଥମା ହସ୍ତୀର ବଂଶ ପରମ୍ପରାର ବର୍ଣ୍ଣନା ଦେଖାଯାଏ ନାହିଁ । କିନ୍ତୁ ସାରଳାଦାସ ତାହା ପ୍ରଦାନ କରିଛନ୍ତି ।

## (୬୧) ଦ୍ରୋଣ ବଧ :-

ଏହି ପ୍ରସଙ୍ଗର ବର୍ଣ୍ଣନା କରି ବ୍ୟାସଦେବ ଲେଖିଛନ୍ତି—ଭୀମସେନ ଅଶ୍ୱତ୍ଥମା ହସ୍ତୀକୁ ବଧ କଲା ପରେ ଦ୍ରୋଣଙ୍କ ନିକଟକୁ ଯାଇ କହିଲେ ଯେ ଅଶ୍ୱତ୍ଥମା ନିହତ ହେଲେ । ଦ୍ରୋଣ ଶୋକ କଲେ, କିନ୍ତୁ ପୁତ୍ରର ବଳବିକ୍ରମ କଥା ସ୍ମରଣ କରି ସେ କଥାଟିକୁ ବିଶ୍ୱାସ କଲେ ନାହିଁ । ସେ ବସୁଦାନ ନାମକ ବୀରଙ୍କ ସମେତ ବହୁ ଯୋଦ୍ଧାଙ୍କୁ ବଧକଲେ । ଏହି ସମୟରେ ଅଗ୍ନିଦେବତାଙ୍କୁ ଆଗରେ ରଖି ଋଷିଗଣ ଯୁଦ୍ଧ କ୍ଷେତ୍ରରେ ଉପନୀତ ହେଲେ । ସେମାନେ ଦ୍ରୋଣଙ୍କୁ କହିଲେ—ତୁମେ ବହୁ ଅଧର୍ମ ଯୁଦ୍ଧ କଲଣି । ଏବେ ଅସ୍ତ୍ରଶସ୍ତ୍ର ତ୍ୟାଗକର । ଆଜି ତୁମର ଇହଲୀଳା ଶେଷ

ହେବ । ତାଙ୍କର ଭୀମସେନଙ୍କ କଥା ସ୍ମରଣକୁ ଆସିଲା । ତେଣୁ ଅଶ୍ୱତ୍ଥମାଙ୍କ ମୃତ୍ୟୁର ସତ୍ୟତା ଜାଣିବାପାଇଁ ସେ ସତ୍ୟବାଦୀ ଯୁଧିଷ୍ଠିରଙ୍କ ସମୀପକୁ ଯିବେ ବୋଲି ଚିନ୍ତା କଲେ । ଏହା ଜାଣିପାରି ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ପରାମର୍ଶ ଦେଲେ—ଦ୍ରୋଣ ଆଉ ଅର୍ଦ୍ଧେକ ଦିବସ ଯୁଦ୍ଧ କଲେ ପାଣ୍ଡବସେନା ଧ୍ୱଂସ ପାଇଯିବେ । ପ୍ରାଣ ରକ୍ଷା ପାଇଁ ମିଥ୍ୟା କହିବା ପାପ ନୁହେଁ । ତୁମେ ଦ୍ରୋଣଙ୍କୁ କହିବ ଯେ ଅଶ୍ୱତ୍ଥମା ମୃତ । ଭୀମ ମଧ୍ୟ ଏପରି ମିଥ୍ୟା କହିବା ପାଇଁ ଯୁଧିଷ୍ଠିରଙ୍କୁ ଅନୁରୋଧ କଲେ । ଯୁଧିଷ୍ଠିର ସେମାନଙ୍କ ଯୁକ୍ତିରେ ପ୍ରଭାବିତ ହୋଇ ମିଥ୍ୟା କହିବା ପାଇଁ ପ୍ରସ୍ତୁତ ହୋଇଥିଲେ । ତାଙ୍କ ମନରେ ଅସତ୍ୟ ଭାଷଣର ଭୟଭାବ ସହିତ ବିଜୟଲାଭପ୍ରତି ଆସକ୍ତି ଭାବ ଜାତ ହେଲା । ସେ ତେଣୁ ଉଚ୍ଚସ୍ୱରରେ କହିଲେ – 'ଅଶ୍ୱତ୍ଥମା ହତ' ଓ ଧୀରସ୍ୱରରେ କହିଲେ 'ହସ୍ତୀର ବଧ ହୋଇ ଅଛି ।'' ସେହି ମୁହୂର୍ତ୍ତରେ ଯୁଧିଷ୍ଠିରଙ୍କ ରଥ ଭୂମିକୁ ସ୍ପର୍ଶ କରି ଗତିକଲା ପୂର୍ବରୁ ତାହା ଭୂମିଠାରୁ ଚାରି ଅଙ୍ଗୁଳି ଉପରେ ରହି ଗତିକରୁଥିଲା । ସ,୧୯୦ଅ) ଦ୍ରୋଣ ଓ ଧୃଷ୍ଟଦ୍ୟୁମ୍ନଙ୍କର ସମର ସଂଘଟିତ ହେଲା । କିନ୍ତୁ ଦ୍ରୋଣ ପୂର୍ବପରି ଯୁଦ୍ଧ କରିପାରିଲେ ନାହିଁ । ତାଙ୍କଠାରେ ଦିବ୍ୟାସ୍ତ୍ରମାନ ପ୍ରକଟ ହେଲେହେଁ, ଭୀମ ପୁଣିଥରେ ଦ୍ରୋଣଙ୍କୁ ସ୍ମରଣ କରାଇଦେଲେ ଯେ ଅଶ୍ୱତ୍ଥମା ନିହତ ହୋଇଛନ୍ତି । ଦ୍ରୋଣ ଅସ୍ତ୍ରଶସ୍ତ୍ର ତ୍ୟାଗ କରି ରଥର ପଶ୍ଚାଦ୍ ଭାଗରେ ସମାଧିମଗ୍ନ ହେଲେ, ପରମାତ୍ମାଙ୍କ ଚିନ୍ତନ କରୁ କରୁ ସେ ଜ୍ୟୋତିରୂପ ହୋଇଗଲେ । ସେହି ଜ୍ୟୋତି ଶୂନ୍ୟକୁ ଯାଇ ବ୍ରହ୍ମଲୋକକୁ ଗଲା । ଏତିକିବେଳେ ଧୃଷ୍ଟଦ୍ୟୁମ୍ନ ତାଙ୍କର କେଶାକର୍ଷଣ କରି ଶିରଚ୍ଛେଦନ କଲେ । ଦ୍ରୋଣ ନକ୍ଷତ୍ରପଥରେ ପ୍ରବିଷ୍ଟ ହେଲେ ଓ ତାଙ୍କ ଶରୀର ଆଉ ମିଳିଲା ନାହିଁ । (ସଂ,୧୯୨ଅ)

ସାରଳା ମହାଭାରତରେ ଅଛି—କର୍ଣ୍ଣଙ୍କ ଠାରୁ ପିତାଙ୍କ ମୃତ୍ୟୁ ସମ୍ବାଦ ପାଇ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ସହ ଯୁଦ୍ଧ କଲେ । ରାତି ହୋଇଯିବାରୁ ଅର୍ଜୁନ ଯୁଦ୍ଧ ବନ୍ଦ କରାଇଲେ । ରାତି ଶେଷ ହେବାରୁ ଶଂଖଧ୍ୱନି ଶୁଣାଗଲା । ସେ ଶୂନ୍ୟରୁ ଶବ୍ଦ ଶୁଣିଲେ – ଅଶ୍ୱତ୍ଥମା ହତ । ସେ ରାତି ଅର୍ଦ୍ଧରୁ ତାଙ୍କୁ ଦେଖି ନ ଥିଲେ । ଶବ ସବୁକୁ ଓଲଟାଇ ଦ୍ରୋଣ ପୁତ୍ରର ଶବ ଖୋଜିବାକୁ ଲାଗିଲେ, କିନ୍ତୁ ପାଇଲେ ନାହିଁ । ପୁଣି ଶବ୍ଦ ହେଲା—ଅଶ୍ୱତ୍ଥମା ହତ । ଦ୍ରୋଣ କର୍ଣ୍ଣ, ଶଲ୍ୟ ଓ ଶକୁନିଙ୍କୁ ଏ ବିଷୟରେ ପଚାରିବାରୁ ସମସ୍ତେ କହିଲେ-ଅଶ୍ୱତ୍ଥମା ନିହତ ହୋଇଛନ୍ତି । ଦୁର୍ଯ୍ୟୋଧନ ମଧ୍ୟ କହିଲେ ଯେ, ଅଶ୍ୱତ୍ଥମା ନିହତ ହୋଇଛନ୍ତି । ଦ୍ରୋଣ ଧନୁର୍ବାଣ ରଖି ଦେଇ ଯୁଧିଷ୍ଠିରଙ୍କ ନିକଟକୁ ଗଲେ । ତା' ପୂର୍ବରୁ ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ପରାମର୍ଶ ଦେଇଥିଲେ---ତୁମେ 'ଅଶ୍ୱତ୍ଥମା ହତ' ବୋଲି କହିଦେବ । ସେ ଗୁରୁଙ୍କ ସମକ୍ଷରେ ମିଥ୍ୟା କହିବା ନିମିତ୍ତ ଅସମ୍ମତି ପ୍ରକାଶ କରିବାରୁ ଶ୍ରୀକୃଷ୍ଣ କହିଲେ—ଅଶ୍ୱତ୍ଥମା ନାମକ ହସ୍ତୀର ବଧ ତ ଜାଣିଛ । 'ନର କି ଗୁଞ୍ଜର ଅଶ୍ୱତ୍ଥମାର ମରଣ' ବୋଲି କହିବା ସମୟରେ 'ଗୁଞ୍ଜର'

ଶବଟିକୁ ଧୀର ସ୍ୱରରେ କହିବେ । ଦ୍ରୋଣ ଯୁଧିଷ୍ଠିରଙ୍କୁ ଅଶ୍ୱତ୍ଥାମାଙ୍କ ବିଷୟରେ ପଚାରିବାରୁ ସେ କହିଲେ – " ନର କି କୁଞ୍ଜର ଯେ ଅଶ୍ୱତ୍ଥାମା ହତ ।" ଏହା ଶୁଣି ଦ୍ରୋଣାଚାର୍ଯ୍ୟ ଟଡ଼୍‌ଚ ଗୁଣ୍ଠ ଦେଇ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ଧୃଷ୍ଟଦ୍ୟୁମ୍ନ ତାଙ୍କ ପଛରେ ଛିଡ଼ାଥିଲେ । ଶ୍ରୀକୃଷ୍ଣ ସଙ୍କେତ ଦେଇ କହିଲେ—ଦ୍ରୋଣ ତୁମ ପିତାଙ୍କର ଶତ୍ରୁ । ଖଡ଼୍‌ଗରେ ତାଙ୍କୁ ଏହି କ୍ଷଣି ହାଣି ଦିଅ । ଧୃଷ୍ଟଦ୍ୟୁମ୍ନ ଖଣ୍ଡାରେ ଗୁରୁଙ୍କ ବକ୍ଷକୁ ଆଘାତ କରିବାରୁ, ଶରୀର ଦୁଇଖଣ୍ଡ ହୋଇଗଲା । ଏକ ଅଗ୍ନିଶିଖା ବାହାରି ଆକାଶକୁ ଉଠିଗଲା (ସା, ୩୮୫-୩୯୫ ପୃ)

ଉଭୟ ବର୍ଣ୍ଣନାରେ ଅଛି ଯେ, ଅଶ୍ୱତ୍ଥାମାଙ୍କ ମୃତ୍ୟୁ ହେବା କଥା ଦ୍ରୋଣଙ୍କୁ ବିଚଳିତ କରିଥିଲା । ଯୁଧିଷ୍ଠିରଙ୍କ ଠାରୁ ଅଶ୍ୱତ୍ଥାମା ହତ ବୋଲି ଯଥାର୍ଥ ଭାବେ ଜାଣିବା ପରେ ସେ ଅସ୍ତ୍ରତ୍ୟାଗ କଲେ ଓ ତାଙ୍କୁ ଧୃଷ୍ଟଦ୍ୟୁମ୍ନ ବଧ କଲେ । ଏହି ସାମ୍ୟ ସତ୍ତ୍ୱେ ଉଭୟଙ୍କରେ ବୈଷମ୍ୟ ପ୍ରଭୂତ । ମୂଳରେ 'ଅଶ୍ୱତ୍ଥାମା ହତ' କଥାଟି ବାରମ୍ବାର ଭୀମଙ୍କ ଦ୍ୱାରା ଉକ୍ତ ହେବା କଥା ଅଛି । ସାରଳା ଦାସ କହନ୍ତି—ଦ୍ରୋଣ ତାହା ଶୂନ୍ୟବାଣୀରୁ ଶୁଣିଲେ । ମୂଳରେ ଅଛି--ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ମୁଣ୍ଡ କାଟି ଦୁର୍ଯ୍ୟୋଧନଙ୍କ ସମକ୍ଷରେ ପକାଇ ଦେଲେ ଓ ଶରୀର ମିଳିଲା ନାହିଁ । ସାରଳା ତାହା ଦେଇନାହାନ୍ତି । ମୂଳରେ ଅଛି ଯେ, ପୁତ୍ରବଧର ବାର୍ତ୍ତାରେ ଗୁରୁ ଦ୍ରୋଣ ସମାଧିସ୍ଥ ହେଲେ । ସାରଳା ଦାସ କହନ୍ତି ଯେ ସେ ମୂର୍ଚ୍ଛିତ ହୋଇ ପଡ଼ିଲେ । ସଂସ୍କୃତ ମହାଭାରତରେ ଅଛି ଯେ, ଦ୍ରୋଣଙ୍କ ଶରୀରରୁ ଜ୍ୟୋତି ନିର୍ଗତ ହୋଇ ବ୍ରହ୍ମଲୋକକୁ ଗଲା ଓ ସେ ନକ୍ଷତ୍ରପଥରେ ପ୍ରବିଷ୍ଟ ହେଲେ । ସାରଳା ଦାସ ସଂକ୍ଷେପରେ ଲେଖିଛନ୍ତି—ଏକ ଅଗ୍ନିଶିଖା ନିର୍ଗତହୋଇ ଆକାଶକୁ ଉଠିଗଲା । ବ୍ୟାସଦେବଙ୍କ ଲେଖାରେ ଥିବା ବସୁଦାନ ବଧ, ଋଷିଙ୍କ ଆଗମନ ଆଦି ବୃତ୍ତାନ୍ତ ସାରଳା ବର୍ଣ୍ଣନାରେ ନାହିଁ । ଯୁଧିଷ୍ଠିରଙ୍କ ମିଥ୍ୟାଭାଷଣ ହେତୁ ତାଙ୍କର ରଥ ଭୂମି ସ୍ପର୍ଶ କରିବା ବୃତ୍ତାନ୍ତ ଯାହା ମୂଳ ମହାଭାରତରେ ରହିଛି, ତାହା ସାରଳା ମହାଭାରତରେ ଅନୁକ୍ତ । ବ୍ୟାସଦେବ କହନ୍ତି ଯେ, ଧୃଷ୍ଟଦ୍ୟୁମ୍ନ ସ୍ୱତଃପ୍ରବୃତ୍ତ ହୋଇ ଦ୍ରୋଣ ଶିରଚ୍ଛେଦ କରିଥିଲେ । ସାରଳା ଦାସ ଲେଖିଛନ୍ତି—ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ସେ ଗୁରୁଙ୍କ ବକ୍ଷସ୍ଥଳରେ ଆଘାତ କରି ତାଙ୍କ ଶରୀରକୁ ଦୁଇ ଖଣ୍ଡ କରି ଦେଇଥିଲେ ।

## (୨୨) ପିତୃବଧରେ ଅଶ୍ୱତ୍ଥାମାଙ୍କ ପ୍ରତିକ୍ରିୟା :-

ଏହି ପ୍ରସଙ୍ଗରେ ସଂସ୍କୃତ ମହାଭାରତରେ ଲେଖାଅଛି—ଅଶ୍ୱତ୍ଥାମା କୃପାଚାର୍ଯ୍ୟଙ୍କ ଠାରୁ ପିତୃବଧର ବାର୍ତ୍ତା ପାଇଥିଲେ । ସେ ଶୋକ ଓ କ୍ରୋଧରେ ଜର୍ଜରିତ ହୋଇ ଯୁଧିଷ୍ଠିର ଓ ଧୃଷ୍ଟଦ୍ୟୁମ୍ନଙ୍କ ସହିତ ସମସ୍ତ ପାଞ୍ଚାଳସେନାଙ୍କୁ ବଧ କରିବେ ବୋଲି ପ୍ରତିଜ୍ଞାବଦ୍ଧ ହେଲେ । ସେ ନାରାୟଣାସ୍ତ୍ର ପ୍ରୟୋଗ କରିବାକୁ ମନସ୍ଥ କଲେ । ସେ ପ୍ରକାଶ କରିଥିଲେ —ପୂର୍ବକାଳରେ ମୋର ପିତା ଭଗବାନ ନାରାୟଣଙ୍କୁ ବୈଦିକ ମନ୍ତ୍ରରେ ସ୍ତୁତି କରି

ସନ୍ତୋଷ କଲେ । ନାରାୟଣ ସଦେହରେ ଉପସ୍ଥିତ ହୋଇ ବର ରୂପରେ ନାରାୟଣାସ୍ତ୍ର ପ୍ରଦାନ କରିଥିଲେ । ଭଗବାନ କହିଥିଲେ ଯେ, ଯେଉଁ ବ୍ୟକ୍ତି ଅସ୍ତ୍ରଶସ୍ତ୍ର ତ୍ୟାଗ କରି ନାରାୟଣାସ୍ତ୍ରର ଶରଣାପନ୍ନ ହେବ ତାକୁ ତାହା ବଧ କରିବ ନାହିଁ । ମୁଁ ସେହି ଅସ୍ତ୍ରର ପ୍ରୟୋଗ ବିଧି ପିତାଙ୍କଠାରୁ ଶିକ୍ଷା କରିଅଛି । (ସଂ. ୧୯୫ ଅ) ଅଶ୍ୱତ୍ଥାମା ମନ୍ତ୍ରୋଚ୍ଚାରଣ ସହ ନାରାୟଣାସ୍ତ୍ର ପ୍ରୟୋଗ କଲେ । ପାଣ୍ଡବ ସେନାଙ୍କ ମଧ୍ୟରେ ମହାଭୟ ଉପସ୍ଥିତ ହେବା ଦେଖି ଶ୍ରୀକୃଷ୍ଣ ପରାମର୍ଶ ଦେଲେ—ସମସ୍ତେ ନିଜ ନିଜ ଯାନବାହନରୁ ଅବତରଣ କରି ଓ ଅସ୍ତ୍ରଶସ୍ତ୍ର ତ୍ୟାଗ କର । ସମସ୍ତେ ସେପରି କରି ନାରାୟଣାସ୍ତ୍ରର କବଳରୁ ମୁକ୍ତ ହେଲେ । କିନ୍ତୁ ଭୀମସେନ ମାନିଲେ ନାହିଁ । ଫଳରେ ନାରାୟଣାସ୍ତ୍ର ତାଙ୍କ ଉପରେ ପ୍ରବଳ ଆକ୍ରମଣ କଲା । ଅସ୍ତ୍ରର ପ୍ରଚଣ୍ଡ ଜ୍ୱାଳାରୁ ରକ୍ଷା କରିବା ପାଇଁ ଅର୍ଜୁନ ବାରୁଣାସ୍ତ୍ର ପ୍ରୟୋଗ କଲେ । ଭୀମ ମୃତ ପ୍ରାୟ ହେବାରୁ ଶ୍ରୀକୃଷ୍ଣ ଓ ଅର୍ଜୁନ ନିଜ ରଥରୁ ଅବତରଣ କରି ଭୀମଙ୍କ ନିକଟକୁ ଗଲେ । ଭୀମଙ୍କ ଅସ୍ତ୍ରଶସ୍ତ୍ର ବଳ ପ୍ରୟୋଗ କରି ତଳେ ପକାଇ ଦିଆଗଲା ଓ ତାଙ୍କୁ ରଥରୁ ତଳକୁ ଅଣାଗଲା । ନାରାୟଣାସ୍ତ୍ର ତାପରେ ଶାନ୍ତ ହୋଇଗଲା । ଦୁର୍ଯୋଧନ ପୁନର୍ବାର ଏହି ଅସ୍ତ୍ର ପ୍ରୟୋଗ କରିବା ନିମିତ୍ତ ଅଶ୍ୱତ୍ଥାମାଙ୍କୁ ଅନୁରୋଧ କଲେ । କାରଣ, ଦ୍ୱିତୀୟ ଥର ପାଇଁ ପ୍ରୟୋଗ କରାଗଲେ ଅସ୍ତ୍ରଟି ପ୍ରୟୋଗକାରୀକୁ ସଂହାର କରିବ ବୋଲି ନାରାୟଣଙ୍କର ନିର୍ଦ୍ଦେଶ ଥିଲା । ଅଶ୍ୱତ୍ଥାମା ଧୃଷ୍ଟଦ୍ୟୁମ୍ନ, ଭୀମ ଓ ସାତ୍ୟକିଙ୍କୁ ପରାଭୂତ କଲେ । ସେ ପୁଣି ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ଉପରେ ଆଗ୍ନେୟାସ୍ତ୍ର ପ୍ରୟୋଗ କରିଥିଲେ । ଅର୍ଜୁନ ବ୍ରହ୍ମାସ୍ତ୍ର ପ୍ରୟୋଗ କରି ତାକୁ ପ୍ରତିହତ କଲେ । ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ଉପରେ ଆଗ୍ନେୟାସ୍ତ୍ର ପ୍ରଭାବ ନ ପକାଇବା ଦେଖି ଅଶ୍ୱତ୍ଥାମା ଦୁଃଖ ଓ ନୈରାଶ୍ୟରେ ନିମଗ୍ନ ହେଲେ ଏବଂ ଯୁଦ୍ଧଭୂମି ତ୍ୟାଗ କଲେ । ସହସା ବ୍ୟାସଦେବ ଆବିର୍ଭୂତ ହୋଇ କହିଲେ—ଏକଦା ବିଶ୍ୱନିୟନ୍ତା ନାରାୟଣ ହିମାଳୟ ତଳେ ଉପବିଷ୍ଟ ହୋଇ କଠୋର ତପସ୍ୟା କଲେ ଓ ସେଥିରେ ସନ୍ତୁଷ୍ଟ ହୋଇ ବିଶ୍ୱେଶ୍ୱର ରୁଦ୍ର ତାଙ୍କ ସମ୍ମୁଖକୁ ଆସିଲେ । ରୁଦ୍ରଦେବତା ନାରାୟଣଙ୍କୁ ବହୁ ବର ଦେଲେ । ନାରାୟଣଙ୍କ ତପସ୍ୟାରୁ 'ନର' ନାମକ ଋଷି ଜାତ ହୋଇଥିଲେ । ତୁମେ ଓ ଅର୍ଜୁନ ସେହି ନର ଋଷିଙ୍କ ଅବତାର । ନାରାୟଣ ସ୍ୱୟଂ ଶ୍ରୀକୃଷ୍ଣ । ତୁମେ ପୂର୍ବ ଜନ୍ମରେ ଭଗବାନ ଶଙ୍କରଙ୍କ ଭକ୍ତ ଥିଲ । ସ୍ୱୟଂ ଶ୍ରୀକୃଷ୍ଣ ମଧ୍ୟ ଶଙ୍କରଙ୍କ ଭକ୍ତ । ଅଶ୍ୱତ୍ଥାମା ମୁନିଙ୍କଠାରୁ ନିଜ ପୂର୍ବଜନ୍ମ କଥା, ଶ୍ରୀକୃଷ୍ଣ ଓ ଶଙ୍କରଙ୍କ ମହିମା ଶ୍ରବଣ କଲେ । ସେ ଶ୍ରୀକୃଷ୍ଣ ଓ ଶଙ୍କରଙ୍କ ମହତ୍ତ୍ୱକୁ ସ୍ୱୀକାର କରି ଶିବିରକୁ ଗଲେ । (ସଂ, ୧୯୯-୨୦୦ ଅ)

ସାରଳା ମହାଭାରତ ଅନୁସାରେ ଅଶ୍ୱତ୍ଥାମା କୃପଙ୍କଠାରୁ ପିତୃବଧର ବୃତ୍ତାନ୍ତ ଶ୍ରବଣ କରି କ୍ରୋଧ ଜର୍ଜରିତ ହେଲେ । ସେ ବ୍ରହ୍ମାସ୍ତ୍ର ପ୍ରୟୋଗ କରି କହିଲେ—ପାଣ୍ଡବଙ୍କ ସହ ଧୃଷ୍ଟଦ୍ୟୁମ୍ନଙ୍କୁ ବଧ କର । ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ଅର୍ଜୁନ ନାରାୟଣାସ୍ତ୍ର ପ୍ରୟୋଗ କଲେ । ଗଗନ ମାର୍ଗରେ ଅସ୍ତ୍ର ଦ୍ୱୟର ସଂଘର୍ଷ ହେଲା । ଉଭୟରେ ପାଣ୍ଡବମାନେ

ଇନ୍ଦ୍ରପ୍ରସ୍ଥକୁ ଓ କୌରବମାନେ ହସ୍ତିନାକୁ ପଳାୟନ କଲେ । ଉଭୟସେନା ତରଣ ଯୋଜନା ମଧ୍ୟକୁ ହଟିଗଲେ । ଯୁଦ୍ଧଭୂମିରେ କେବଳ ରହିଲେ—ଶ୍ରୀକୃଷ୍ଣ, ଅର୍ଜ୍ଜୁନ, କୃପାଚାର୍ଯ୍ୟ ଓ ଅଶ୍ୱତ୍ଥାମା । ବ୍ରହ୍ମା ଆବିର୍ଭୂତ ହୋଇ ଅଶ୍ୱତ୍ଥାମାଙ୍କୁ ଶାନ୍ତ କଲେ । ବ୍ରହ୍ମାସ୍ତ୍ରକୁ ସ୍ତମ୍ଭିତ କରିବାରୁ ସେ ଦୁହେଁ ଶାନ୍ତ ହେଲେ । ବ୍ରହ୍ମାସ୍ତ୍ରକୁ ସେ ନିଜେ ଓ ନାରାୟଣାସ୍ତ୍ରକୁ ଶ୍ରୀକୃଷ୍ଣ ଧାରଣ କଲେ । (ସା, ପୃ ୪୩୪-୪୩୬) ଅଶ୍ୱତ୍ଥାମା ଓ କୃପ ଯୁଦ୍ଧକ୍ଷେତ୍ରରୁ ଦ୍ରୋଣଙ୍କ ଶବକୁ ନେଇ ସରସ୍ୱତୀ ନଦୀକୂଳରେ ଦାହ କଲେ । ସେ ହସ୍ତିନାକୁ ଆସି ଦୁର୍ଯ୍ୟୋଧନଙ୍କୁ ନିବେଦନ କଲେ—ମୋତେ ସେନାପତି କର । ମୁଁ ପାଣ୍ଡବ, ଧୃଷ୍ଟଦ୍ୟୁମ୍ନ ଓ ଶ୍ରୀକୃଷ୍ଣଙ୍କୁ ବିନାଶ କରିବି । ଦୁର୍ଯ୍ୟୋଧନ ନାସ୍ତି କରି କହିଲେ—ତୁମେ ମରଣକୁ ଭୟ କରି ଚିରଞ୍ଜୀବୀ ହେବାକୁ ବର ମାଗିଛ । ତେଣୁ ତୁମକୁ ମୁଁ ସେନାପତି ପଦ ଦେଇ ପାରିବି ନାହିଁ । ସେ କ୍ରୋଧାନ୍ୱିତ ହୋଇ ଅଶ୍ୱତ୍ଥାମାଙ୍କୁ ସେଠାରୁ ଚାଲି ଯିବାକୁ ଆଦେଶ ଦେଲେ । (ସା, ପୃ ୪୩୬-୪୩୭)

ଅଶ୍ୱତ୍ଥାମା ସମର ପ୍ରତି ବୀତସ୍ପୃହ ହୋଇ, ଅସ୍ତ୍ରଶସ୍ତ୍ର ତ୍ୟାଗକରି ଯୋଗୀ ହେବେ ବୋଲି ମନସ୍ଥ କଲେ । ସେ ନିଜର ସମସ୍ତ ଅସ୍ତ୍ରଶସ୍ତ୍ର ଦାନ କରିବେ ବୋଲି ପ୍ରକାଶ କଲେ । ଶ୍ରୀକୃଷ୍ଣ ଏହା ସହଦେବଙ୍କଠାରୁ ଅବଗତ ହୋଇ, ବ୍ରାହ୍ମଣ ବେଶ ଧରି ଗଙ୍ଗାନଦୀ କୂଳକୁ ଆସିଲେ ଏବଂ ଦାନ ଗ୍ରହଣ କଲେ । ସେ ସେହି ଅସ୍ତ୍ରସ୍ତ୍ରମାନ ଭୀମଙ୍କୁ ପ୍ରଦାନ କଲେ । ଅଶ୍ୱତ୍ଥାମା ଯୋଗୀ ବେଶଧରି ତୀର୍ଥବାସୀ ହେଲେ ଓ ଫଲ୍‌ଗୁ ନଦୀରେ ପିତୃଶ୍ରାଦ୍ଧ ସମ୍ପନ୍ନ କରିଥିଲେ । ସେ ତପସ୍ୱୀ ବେଶରେ ପୁନଃ ଦୁର୍ଯ୍ୟୋଧନଙ୍କ ନିକଟକୁ ଆଗମନ କଲେ । ସେଠାରେ ଶକୁନି ତାଙ୍କୁ କହିଲେ—ପିତୃହନ୍ତାକୁ ତ ବଧ କରି ପାରିଲ ନାହିଁ । ତୁମର କଣ ଧର୍ମ ରହିଲା ? ତୁମଠାରୁ ଶ୍ରୀକୃଷ୍ଣ ମାୟାବେଶ ଧରି ସମସ୍ତ ଅସ୍ତ୍ରଶସ୍ତ୍ର ନେଲେ, ତାହା ତୁମକୁ ଜଣାନାହିଁ । ଅଶ୍ୱତ୍ଥାମା କହିଲେ—ମୋତେ ଶ୍ରୀକୃଷ୍ଣ ତାହା ସବୁ ପରଶୁରାମ ଅବତାରରେ ଦେଇଥିଲେ ଏବଂ ଏବେ ତାଙ୍କ ଅସ୍ତ୍ର ସେ ନେଇଗଲେ । ଅଶ୍ୱତ୍ଥାମା ଦୁର୍ଯ୍ୟୋଧନଙ୍କୁ ପରାମର୍ଶ ଦେଲେ—ପାଣ୍ଡବଙ୍କୁ ଗ୍ରାମ ଦାନ କରି ଯୁଦ୍ଧ ବନ୍ଦକରି ଓ ଆନନ୍ଦରେ ରହ । କର୍ଣ୍ଣ ଏହା ଶୁଣି କ୍ରୋଧାନ୍ୱିତ ହୋଇ କହିଲେ—ମୁଁ ପାଞ୍ଚ ଦିନ ମଧ୍ୟରେ ପାଣ୍ଡବଙ୍କର ଶିରଚ୍ଛେଦ କରିବି । ଅଶ୍ୱତ୍ଥାମା କହିଥିଲେ-ମୁଁ ପ୍ରୟାଗ ତୀର୍ଥକୁ ଯାଇଥାନ୍ତି, ଆଉ ଚଉଦଦିନ ଅପେକ୍ଷା କରି ତୁମର କ୍ଷେମପଣ ଦେଖିବି । (ସା, ୪୪୦-୪୪୬ ପୃ)

ଦୁଇଟିଯାକ ବର୍ଣ୍ଣନା ଯେ ପରସ୍ପରଠାରୁ ଭିନ୍ନ ତାହା ପାଠକଙ୍କ ମାନେ ଅବଧାରିତ ହୁଏ । ଏଠାରେ ମୁଖ୍ୟ ଭେଦ ହେଲା ଯେ, ମୂଳ ମହାଭାରତରେ ଅଶ୍ୱତ୍ଥାମା ପ୍ରଥମେ ନାରାୟଣାସ୍ତ୍ର ପ୍ରୟୋଗ କରିବା କଥା ଉକ୍ତ ଅଛି, କିନ୍ତୁ ସାରଳା ମହାଭାରତରେ ସେ ବ୍ରାହ୍ମାସ୍ତ୍ର ପ୍ରୟୋଗ କରିବା କଥା ବର୍ଣ୍ଣିତ । ମୂଳଗ୍ରନ୍ଥ ଅନୁସାରେ ଅଶ୍ୱତ୍ଥାମା

ଦ୍ୱିତୀୟ ଥର ପାଇଁ ଆଗ୍ନେୟାସ୍ତ୍ର ପ୍ରୟୋଗ କରିଥିଲେ । ସାରଳା ମହାଭାରତରେ ତାହା ଦିଆଯାଇନାହିଁ । ସାରଳା କହନ୍ତି ଯେ ଅର୍ଜ୍ଜୁନ ଅଶ୍ୱତ୍ଥାମାଙ୍କ ବ୍ରହ୍ମାସ୍ତ୍ରକୁ ନାରାୟଣାସ୍ତ୍ର ଦ୍ୱାରା ପ୍ରତିରୋଧ କରିଥିଲେ । ବ୍ୟାସଙ୍କ ଲେଖାରେ ଥିବା ବ୍ୟାସଙ୍କ ଆଗମନ, ଶଙ୍କର ଓ ଶ୍ରୀକୃଷ୍ଣଙ୍କ ମହିମା କଥନ, ଅଶ୍ୱତ୍ଥାମାଙ୍କ ପୂର୍ବଜନ୍ମ ବର୍ଣ୍ଣନା ଆଦି କଥାମାନ ସାରଳାଙ୍କ ଲେଖାରେ ନାହିଁ । ସାରଳା-ବର୍ଣ୍ଣିତ ବ୍ରହ୍ମାଙ୍କ ଆଗମନ, ନାରାୟଣାସ୍ତ୍ର ତଥା ବ୍ରହ୍ମାସ୍ତ୍ରଙ୍କ ତାଙ୍କର ସ୍ତୁତି, ଉଭୟ ଅସ୍ତ୍ରର ପ୍ରତିସଂହାର, ଅଶ୍ୱତ୍ଥାମାଙ୍କ ପିତୃଶବ ଦହନ, ତାଙ୍କର ତପସ୍ୱୀବେଶ ଧାରଣ, ଅସ୍ତ୍ରଶସ୍ତ୍ର ଦାନ, କପଟ ବେଶରେ ଶ୍ରୀକୃଷ୍ଣଙ୍କ ଦାନ ଗ୍ରହଣ, ଅଶ୍ୱତ୍ଥାମାଙ୍କର ଫଲ୍‌ଗୁରେ ପିଣ୍ଡଦାନ, ଦୁର୍ଯ୍ୟୋଧନଙ୍କୁ ସେନାପତି ପଦ ପାଇଁ ତାଙ୍କର ନିବେଦନ, ଦୁର୍ଯ୍ୟୋଧନଙ୍କ ପ୍ରତ୍ୟାଖ୍ୟାନ, ଦୁର୍ଯ୍ୟୋଧନଙ୍କୁ ତାଙ୍କର ପରାମର୍ଶ, କର୍ଣ୍ଣଙ୍କର ପାଣ୍ଡବବଧ ପ୍ରତିଜ୍ଞା, ଅଶ୍ୱତ୍ଥାମାଙ୍କର ବିନାଶର ଅପେକ୍ଷା ଆଦି ବୃତ୍ତାନ୍ତମାନ ମୂଳ ମହାଭାରତରେ ଆଦୌ ନାହିଁ ।

## (୨୩) ଭଗଦତ୍ତ ଓ ସୁପ୍ରତୀକ ହସ୍ତୀ ବଧ :—

ବ୍ୟାସଙ୍କ ମହାଭାରତ ଅନୁସାରେ ଭଗଦତ୍ତ ପ୍ରାଗ୍‌ଜ୍ୟୋତିଷପୁରର ରାଜା ଓ ତାଙ୍କର ହସ୍ତୀର ନାମ ସୁପ୍ରତୀକ । ସୁପ୍ରତୀକ ଏକ ବିରାଟକାୟ ଓ ମହାପରାକ୍ରମଶାଳୀ ହସ୍ତୀ । ତାର ଜନ୍ମ ଐରାବତ ହସ୍ତୀର ବଂଶରେ ହୋଇଥିଲା । ଭଗଦତ୍ତ ସେହି ହସ୍ତୀ ଉପରେ ବସି ଭୀମଙ୍କୁ ଆକ୍ରମଣ କଲେ । ଭୀମ 'ଅଞ୍ଜଳିକାବେଧ' ପ୍ରୟୋଗ କରି ହସ୍ତୀକୁ ଜର୍ଜର କରିବା ପାଇଁ ଚେଷ୍ଟିତ ହୋଇଥିଲେ । ତଥାପି ହସ୍ତୀ ତାଙ୍କୁ ହତ୍ୟା କରିବାପାଇଁ ବହୁ ପ୍ରକାର ଉଦ୍ୟମ କଲା ଓ ଶେଷରେ ଭୀମ ପଳାୟନ କଲେ । ଯୁଧିଷ୍ଠିର ଭୀମ ନିହତ ହୋଇଛନ୍ତି ବୋଲି ଭାବି ଭଗଦତ୍ତଙ୍କ ପ୍ରତିରୋଧ କଲେ । ଭଗଦତ୍ତ ଦଶାର୍ଣ୍ଣ ରାଜାଙ୍କୁ ବଧ କରି ସାତ୍ୟକିଙ୍କ ନିକଟକୁ ଗଲେ । ହସ୍ତୀଟି ତାଙ୍କ ରଥକୁ ଫିଙ୍ଗିଦେଲା । ସାତ୍ୟକି ପଳାୟନ କଲେ । ଭୀମ ପୁନଶ୍ଚ ହସ୍ତୀକୁ ଆକ୍ରମଣ କଲେ । ହସ୍ତୀ ଶୁଣ୍ଢରୁ ଜଳ ବୃଷ୍ଟି କରିବାକୁ ଲାଗିଲା । ଭଗଦତ୍ତ ରୁଚିପର୍ବାଙ୍କୁ ବିନାଶ କଲେ । (ଦ୍ର, ୨୬ ଅ) ଅର୍ଜ୍ଜୁନ ସଂଶପ୍ତକ ବାହିନୀ ସହ ଯୁଦ୍ଧ କଲାପରେ ଭଗଦତ୍ତଙ୍କ ସମ୍ମୁଖୀନ ହେଲେ । (ଦ୍ର, ୨୮ଅ) ସେ ହସ୍ତୀର କବଚକୁ କାଟି ଦେବାରୁ ସେ ତାଙ୍କ ଶରରେ ଆହତ ହେଲା । ଭଗଦତ୍ତ ବୈଷ୍ଣବାସ୍ତ୍ର ପ୍ରୟୋଗ କଲେ । ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କ ଆଗରେ ଦଣ୍ଡାୟମାନ ହେଲେ ଓ ଅସ୍ତ୍ରଟି ତାଙ୍କ ଗଳାରେ ବୈଜୟନ୍ତୀ ମାଳାପରି ଶୋଭା ପାଇଲା । ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଲେ-"ମୋର ଗୋଟିଏ ରୂପ ନରନାରାୟଣ ଋଷି । ଦ୍ୱିତୀୟ ରୂପ ପରମାତ୍ମସ୍ୱରୂପ । ସେ ରୂପରେ ମୁଁ ଶୁଭାଶୁଭ କର୍ମ କରୁଥିବା ଜଗତର ସାକ୍ଷୀ । ତୃତୀୟ ରୂପ ମୁଁ ନିଜେ । ଚତୁର୍ଥ ରୂପରେ ମୁଁ ସହସ୍ର ଯୁଗ ପର୍ଯ୍ୟନ୍ତ ଏକାର୍ଣ୍ଣବ ଜଳରେ ଶୟନ କରେ । ଶୟନରୁ ଉଠିଲେ ଜଣେ ଶ୍ରେଷ୍ଠ ଭକ୍ତଙ୍କୁ ବର ଦିଏ । ଏକଦା ପୃଥ୍ୱୀଦେବୀ ମୋଠାରୁ

ନିଜ ପୁତ୍ର ନରକାସୁର ପାଇଁ ବୈଷ୍ଣବାସ୍ତ୍ରକୁ ବର ରୂପରେ ମାଗି ନେଇଥିଲେ । ଏହି ଅସ୍ତ୍ର ନରକାସୁରକୁ ରକ୍ଷା କରୁଥିଲା । ନରକାସୁରଠାରୁ ଭଗଦତ୍ତ ଏହା ପାଇଥିଲେ । ସେଥିପାଇଁ ସେ ଅବଧ୍ୟ ଥିଲେ । ବର୍ତ୍ତମାନ ମୁଁ ତୁମ ନିମିତ୍ତ ସେହି ଅସ୍ତ୍ରକୁ ଅନ୍ୟ ଉପାୟରେ ନିଜ ପାଖକୁ ଫେରାଇ ଆଣିଛି । ଏବେ ସେ ବଧ ହେବେ । ମୁଁ ନରକାସୁରକୁ ବଧ କଲା ପରି ତୁମେ ଏହି ଅସୁରକୁ ବଧ କର । ସେ ତୁମର ତଥା ଦେବତାମାନଙ୍କର ଶତ୍ରୁ" । ଅର୍ଜୁନ ହସ୍ତୀର କୁମ୍ଭସ୍ଥଳକୁ ଶର ମାରିବାରୁ ସେ ନିହତ ହେଲା । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ପରାମର୍ଶ ଦେଲେ-ଭଗଦତ୍ତ ଅତି ବୃଦ୍ଧ ହୋଇଥିବାରୁ, ତାଙ୍କ ଆଖି ଉପରକୁ ଚମଡ଼ା ଝୁଲିପଡ଼େ । ତେଣୁ ସେ ତାକୁ ଟେକି ଏକ କନାପଟିରେ ବାନ୍ଧିଛନ୍ତି । ତୁମେ ସେହି ପଟି କାଟି ଦେଲେ ଚମଡ଼ା ପୁଣି ଝୁଲିପଡ଼ି ତାଙ୍କ ଆଖି ବନ୍ଦ କରିଦେବ । ସେ ଆଉ ଦେଖି ପାରିବେ ନାହିଁ । ଅର୍ଜୁନ ବାଣରେ ପଟିକୁ କାଟି ଦେଲେ ଓ ଚନ୍ଦ୍ରାକାର ଶର ପ୍ରୟୋଗ କରି ଭଗଦତ୍ତଙ୍କୁ ବଧ କଲେ । (ଘ, ୨୯ଅ)

ସାରଳା ଦାସ ଏହି ପ୍ରସଙ୍ଗରେ ଲେଖିଛନ୍ତି—ଦ୍ରୋଣଙ୍କ ସହ ସୋମଦତ୍ତ ନିହତ ହେବାପରେ ତାଙ୍କ ପୁତ୍ର ଉଦେପୁରର ରାଜା ଯୁଦ୍ଧ ନିମିତ୍ତ ରାଜା ଦୁର୍ଯ୍ୟୋଧନଙ୍କ ଅନୁମତି ଭିକ୍ଷା କଲେ । ତାଙ୍କର ସୁହସ୍ତା ନାମରେ ଏକ ବିରାଟକାୟ ହସ୍ତୀ ଥିଲା । ତା'ର ଦେହରେ ଚଉଷଠି ଘଣ୍ଟି ଲାଗିଥିଲା ଓ ସେ ନାନା ରତ୍ନାଳଙ୍କାରରେ ଭୂଷିତ ହୋଇଥିଲା । ହୈହୟ ବଂଶର କୃଷ୍ଣଦତ୍ତ ରାଜାଙ୍କ ବଂଶରେ ସୋମଦତ୍ତ ଜନ୍ମ ହୋଇଥିଲେ । ଗାନ୍ଧାରସେନ ରାଜାଙ୍କ କନ୍ୟା ଭଗବନ୍ତୀ ତାଙ୍କର ରାଣୀଥିଲେ । କେଶୀ ରାକ୍ଷସ ଭଗଦତ୍ତଙ୍କର ପିତୃବ୍ୟ ଥିଲେ ଓ ଶ୍ରୀକୃଷ୍ଣ ତାଙ୍କୁ ବଧ କରିଥିଲେ । ଭଗଦତ୍ତ ଶିବଭକ୍ତ ଥିଲେ ଓ ତପସ୍ୱୀ ବେଶ ଧାରଣ କରିଥିଲେ । ତେଣୁ ଦୁର୍ଯ୍ୟୋଧନ ତାଙ୍କୁ ଯୁଦ୍ଧପାଇଁ ଅନୁମତି ଦେଲେ ନାହିଁ । କାରଣ ଭଗଦତ୍ତ ମରଣକୁ ଭୟ କରି ଯତି ହୋଇଥିଲେ । ସେ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରୁଥିବା ବେଳେ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ସୁହସ୍ତା ହସ୍ତୀକୁ ଗଦା ଦ୍ୱାରା ଆଘାତ କଲେ । ସେହି ହସ୍ତୀ ଐରାବତ ବଂଶରେ ଜାତ ହୋଇଥିଲା । ହସ୍ତୀଟି ଭୀମକୁ ବହୁ ଦୂରକୁ ଫିଙ୍ଗିଦେଲା ଓ ଭୀମ ଯମୁନା ଜଳରେ ପଡ଼ିଲେ । ତା'ପରେ ଅର୍ଜୁନ ସହଦେବଙ୍କ ପରାମର୍ଶ ଅନୁସାରେ ହସ୍ତୀର ଶରୀରରେ ଥିବା ଖଣ୍ଡାମାନଙ୍କର ଦଣ୍ଡଗୁଡ଼ିକୁ ଶର ଦ୍ୱାରା ଛିନ୍ନ କଲେ । ଖଣ୍ଡା ଉପରେ ଅଠରଲକ୍ଷ ଜଣ ଯୋଦ୍ଧା ବସିଥିଲେ । ସେମାନେ ତଳକୁ ଖସିପଡ଼ିଲେ । ଖଣ୍ଡାମାନ ଖସିବାରୁ ହସ୍ତୀଟି ଶରରେ ଆହତ ହେଲା । ତାହା ଦେଖି ଭଗଦତ୍ତ ଅନଳ ନୟନରେ ଚାହିଁ ଦେବାରୁ ବହୁ ସୈନ୍ୟ, ରଥ, ଗଜ, ଓ ଅଶ୍ୱ ଜଳିଗଲେ । ହସ୍ତୀର କୁମ୍ଭତଳେ ନନ୍ଦିଘୋଷ ରଥ ରହିଗଲା । ସହଦେବ ଜଣାଇଲେ—ଶିବ ଭଗଦତ୍ତଙ୍କୁ ବର ଦେଇଛନ୍ତି ଯେ ସେ କ୍ରୋଧରେ ଚାହିଁଲେ ସମସ୍ତ ଜଳିଯିବ । ହସ୍ତୀ ଜୀବିତ ଥିବା

ପର୍ଯ୍ୟନ୍ତ ସେ ମରିବ ନାହିଁ । ଅର୍ଜୁନ ତେଣୁ ସହଦେବଙ୍କ ପରାମର୍ଶରେ ହସ୍ତୀର ତଳାକୁ ଶର ପ୍ରୟୋଗ କଲେ । ଶରଟି ହସ୍ତୀର ଗର୍ଭଭେଦ କରି ବାହାରିଗଲା ଓ ସେ ନିହତ ହେଲା । ସହଦେବ ପୁନଶ୍ଚ କହିଲେ ଭଗଦତ୍ତ ବୃଦ୍ଧ ହେତୁ କପାଳର ମାଂସଖଣ୍ଡ ତାହାଙ୍କର ଚକ୍ଷୁ ବନ୍ଦ କରିଦିଏ । ତେଣୁ ସେ ମାଂସଖଣ୍ଡକୁ ଉପରକୁ ଉଠାଇ ମଥାରେ ପାଗରେ ବାନ୍ଧି ରଖିଛନ୍ତି । ପାଗଟି ଖସିଗଲେ ମାଂସଖଣ୍ଡ ଝୁଲିପଡ଼ି ତାଙ୍କ ଚକ୍ଷୁକୁ ବନ୍ଦ କରିଦେବ । ସେତେବେଳେ ଶର ପ୍ରୟୋଗ କଲେ ସେ ନିହତ ହେବେ । ଅର୍ଜୁନ ସେହିପରି କରିବାରୁ ଭଗଦତ୍ତ ବଧ ହେଲେ । (ସା, ୪୦୬-୪୧୨ପୃ)

ସାରଳା ଦାସ ଏହି ପ୍ରସଙ୍ଗରେ ବର୍ଣ୍ଣନା ସମୟରେ ଭଗଦତ୍ତଙ୍କ ପୂର୍ବ ଚରିତ ଲେଖିଛନ୍ତି । ସେ କହିଛନ୍ତି ଯେ ଉଦେପୁର ରାଜା ସୋମଦତ୍ତ ନିଃସନ୍ତାନ ଥିଲେ । ତାଙ୍କର ଆଦେଶରେ ରାଣୀ ଭଗବନ୍ତୀ ପାଞ୍ଚମାସ କାଳ ଉପବାସରେ ରହି ଶିବଙ୍କୁ ଆରାଧନା କଲେ । ଶିବ ପାର୍ବତୀଙ୍କୁ କହିଲେ—ଭଗବନ୍ତୀଙ୍କୁ ତୃପ୍ତକର । ପାର୍ବତୀ ଭଗବନ୍ତୀଙ୍କ କଥା ଶୁଣିବା ପରେ ତାଙ୍କୁ ବୁଝାଇଲେ—ଉପାସ୍ୟ କଲେ ସନ୍ତାନ ହୁଏ, ଶିବଙ୍କ ସେବାରେ ହୁଏ ନାହିଁ । ଭଗବନ୍ତୀ ଦଉଡ଼ି—କଣ୍ଟୁରି ଗଳାରେ ଲଗାଇ ଆତ୍ମହତ୍ୟା କରିବାକୁ ଉଦ୍ୟତ ହେଲେ । ପାର୍ବତୀ ତାଙ୍କୁ ଆଶ୍ୱାସନା ଦେଲେ ଓ ଜଣାଇଲେ ଯେ ପୁତ୍ର ପ୍ରାପ୍ତି ହେବ ନାହିଁ । ତଥାପି ସେ ଶିବଙ୍କୁ ସବୁ ବୃତ୍ତାନ୍ତ ଜଣାଇଲେ । ଶିବ କହିଲେ— ତାହାର କର୍ମରେ ପୁତ୍ର ନାହିଁ । ସେ ନିଜ ଶରୀରର ମଳକୁଟିକୁ ନେଇ ଏକ ପିତୁଳା ଗଢ଼ି ଜୀବନ୍ୟାସ କଲେ । ତାଙ୍କ ଆଦେଶରେ ପାର୍ବତୀ ସେହି ପୁତ୍ରଟିକୁ ନେଇ ଭଗବନ୍ତୀଙ୍କୁ ଦେଲେ । ଦେବୀ ପୁତ୍ରର ନାମ 'ଭଗଦତ୍ତ' ରଖିଥିଲେ । ସେ ବର ଦେଲେ ଯେ, କୋପରେ ପୁତ୍ରଟି ଯାହାକୁ ଚାହିଁବ ସେ ଜଳିଯିବ । ଭଗଦତ୍ତ ବଡ଼ ହେବା ପରେ, ଦିନେ ସୋମଦତ୍ତ ମନ୍ମଥ ମନ୍ତ୍ରୀଙ୍କୁ କହିଲେ—ପୁତ୍ରକୁ ନେଇ ବନକୁ ଯାଅ ଓ ପୁତ୍ର ଋଷିଙ୍କ ଯଜ୍ଞ ରକ୍ଷା କରୁ । ବଣରେ ଶ୍ରମ ପାଇଁ ଉଭୟେ ଏକ ଶିଂଶପା ବୃକ୍ଷ ତଳେ ବିଶ୍ରାମ କରୁଥିଲେ । ହଠାତ୍ ଭଗଦତ୍ତ ମନ୍ତ୍ରୀଙ୍କର ଶିରଚ୍ଛେଦ ପାଇଁ ଉଦ୍ୟମ କଲେ । ମନ୍ତ୍ରୀ ଶରଣାପନ୍ନ ହେବାରୁ ସେ କହିଲେ— ମୋତେ ତୁମେ ରାଜପଦ ଦିଅ । ମନ୍ତ୍ରୀ କହିଲେ - ତୁମେ ପିତାଙ୍କୁ ବଧ କଲେ ମୁଁ ତୁମକୁ ରାଜଗାଦି ଦେବି । ବନଭୂମିରୁ ଫେରିବା ପରେ ମନ୍ତ୍ରୀ ସମସ୍ତ କଥା ରାଜାଙ୍କୁ ଜଣାଇଲେ ରାଜା ସୋମଦତ୍ତ ପୁତ୍ରକୁ ରାଜପଦ ଦେଇ ହସ୍ତିନାକୁ ଗଲେ ଓ ଦୁର୍ଯ୍ୟୋଧନଙ୍କ ଆଶ୍ରା କରି ରହିଲେ । ମହାଭାରତ ଯୁଦ୍ଧରେ ସେ ନିହତ ହୋଇଥିଲେ ।
(ସା, ୪୦୬-୪୧୨ପୃ)

ଉକ୍ତ ବର୍ଣ୍ଣନାରେ ଅଛି ଯେ, ଭଗଦତ୍ତ ଓ ତାଙ୍କର ହସ୍ତୀ ଅର୍ଜୁନଙ୍କ ଦ୍ୱାରା ନିହତ ହୋଇଥିଲେ । ହସ୍ତୀଟି ଐରାବତଙ୍କ ବଂଶରେ ଜାତ ହୋଇଥିଲା । ଭଗଦତ୍ତ ଆଖି

ଉପରର ଚମଡ଼ାକୁ ବାନ୍ଧି ରଖିଥିଲେ ଓ ତାକୁ କାଟିବା ପରେ ସେ ବଧ ହେଲେ । ଭୀମଙ୍କ ସହ ସୁହସ୍ତୀର ଯୁଦ୍ଧ ହୋଇଥିଲା । ହସ୍ତୀର ଝଞ୍ଜା ବା କବଚ କାଟି ଦେବା ପରେ ସେ ନିହତ ହୋଇ ପାରିଲା । ଏତଦ୍‌ଭିନ୍ନ ଉଭୟ ବର୍ଣ୍ଣନାରେ ଯାହା ସବୁ ଅଛି, ସେ ସମସ୍ତ ପରସ୍ପରଠାରୁ ଭିନ୍ନ ଅଟେ । ମୂଳଗ୍ରନ୍ଥରେ ହସ୍ତୀର ନାମ ନ ଥିବା ସ୍ଥଳେ, ସାରଳା ମହାଭାରତରେ ତାହାର ନାମ 'ସୁହସ୍ତୀ' ରଖାଯାଇଅଛି । ସାରଳା ହସ୍ତୀର ଘଣ୍ଟି, ରତ୍ନାଳଙ୍କାର, ଖଣ୍ଡାମାନ ଓ ଖଣ୍ଡା ଉପରେ ବସିଥିବା ଯୋଦ୍ଧାଙ୍କର ଯେଉଁ ଉଲ୍ଲେଖ କରିଛନ୍ତି ତାହାସବୁ ମୂଳ ମହାଭାରତରେ ନାହିଁ । ବ୍ୟାସଙ୍କ ଅନୁସାରେ ଭଗଦତ୍ତ ପ୍ରାଗ୍‌ଜ୍ୟୋତିଷପୁରର ରାଜା, କିନ୍ତୁ ସାରଳାଙ୍କ ଅନୁସାରେ ସେ ଉଦେପୁରର ରାଜା । ଭଗଦତ୍ତଙ୍କ ଶିବଭକ୍ତି ଓ ତପସ୍ୱୀବେଶ ଧାରଣ, ଯୁଦ୍ଧପାଇଁ ଦୁର୍ଯ୍ୟୋଧନଙ୍କ ନିକଟରେ ଅନୁମତି ଭିକ୍ଷା, ଦୁର୍ଯ୍ୟୋଧନଙ୍କ ନାସ୍ତିବାଣୀ, ସହଦେବଙ୍କର ହସ୍ତୀ ଓ ଭଗଦତ୍ତଙ୍କ ବଧର କୌଶଳ ନିର୍ଦ୍ଦେଶ ଭଗଦତ୍ତଙ୍କ ବଂଶାବଳୀ ଆଦି ବର୍ଣ୍ଣନା, ଯାହା ସାରଳାଦାସ ଦେଇଛନ୍ତି, ସେ ସମସ୍ତ ବ୍ୟାସଙ୍କ ଲେଖାରେ ନାହିଁ । ସାରଳା ଦାସ ଭଗଦତ୍ତଙ୍କ ଜନ୍ମ ଓ ରାଜ୍ୟପ୍ରାପ୍ତି ପାଇଁ ତାଙ୍କର ପ୍ରୟାସ ଆଦିର ଯେଉଁ ଚିତ୍ର ଦେଇଛନ୍ତି, ସେ ସମସ୍ତ ମୂଳଗ୍ରନ୍ଥରେ ଦେଖାଯାଏ ନାହିଁ । ବ୍ୟାସଙ୍କ ଲେଖାରେ ସୋମଦତ୍ତଙ୍କୁ ଭଗଦତ୍ତଙ୍କର ପିତା ଏବଂ ସୋମଦତ୍ତଙ୍କ ପତ୍ନୀ ଗାନ୍ଧାରସେନଙ୍କ କନ୍ୟା ଭଗବତୀ ବୋଲି ବୁଝାଯାଇନାହିଁ । ମୂଳରେ ଭଗଦତ୍ତଙ୍କର ବୈଷ୍ଣବାସ୍ତ୍ର ପ୍ରାପ୍ତିର ଯେଉଁ ବର୍ଣ୍ଣନା ଶ୍ରୀକୃଷ୍ଣଙ୍କ ମୁଖରେ ଦିଆଯାଇଅଛି । ତାହା ସାରଳା ମହାଭାରତରେ ନାହିଁ । ସଂସ୍କୃତ ମହାଭାରତରେ ଭଗଦତ୍ତ ନାରାୟଣାସ୍ତ୍ର ପ୍ରୟୋଗ କରିବାର ଯେଉଁ ବୃତ୍ତାନ୍ତ ଅଛି, ତାହା ମଧ୍ୟ ସାରଳାଙ୍କ ଲେଖାରେ ଦେଖାଯାଏ ନାହିଁ ।

**(ଖ) ପ୍ରସଙ୍ଗ-ପରିହାର :—**

ସଂସ୍କୃତ ମହାଭାରତର ବହୁ ପ୍ରସଙ୍ଗ ଓ ଉପାଖ୍ୟାନ ସାରଳାଦାସ ପରିହାର କରିଥିବାର ଦେଖାଯାଏ । ନିମ୍ନଲିଖିତ ବୃତ୍ତାନ୍ତଗୁଡ଼ିକ ମୂଳ ଗ୍ରନ୍ଥରେ ରହିଥିଲେ ହେଁ, ସାରଳା ମହାଭାରତରେ ନାହିଁ । (୧) ଭୀଷ୍ମଙ୍କ ଶରଶଯ୍ୟାପରେ କୌରବସେନାର ଆର୍ତ୍ତନାଦ ଓ କର୍ଣ୍ଣ ସ୍ମରଣ (୨) କର୍ଣ୍ଣଙ୍କ ଯୋଦ୍ଧୃବେଶ ଧାରଣ, ରଥସଜ୍ଜା ଓ ଯୁଦ୍ଧକ୍ଷେତ୍ରକୁ ଆଗମନ (୩) ଶରଶଯ୍ୟାରେ ଶାୟିତ ଭୀଷ୍ମଙ୍କ ସହ କର୍ଣ୍ଣଙ୍କ କଥୋପକଥନ (୪) ଯୁଦ୍ଧ ନିମିତ୍ତ ଭୀଷ୍ମଙ୍କ ଠାରୁ କର୍ଣ୍ଣଙ୍କର ଅନୁମତି ଭିକ୍ଷା ଭୀଷ୍ମଙ୍କ ଦ୍ୱାରା କର୍ଣ୍ଣଙ୍କ ପରାକ୍ରମ ବର୍ଣ୍ଣନା (୬) ଭୀଷ୍ମଙ୍କର କର୍ଣ୍ଣଙ୍କୁ ପ୍ରୋତ୍ସାହନ ପ୍ରଦାନ ଓ ଆଶୀର୍ବାଦ (୭) ଦ୍ରୋଣଙ୍କୁ ସେନାପତି ପଦରେ ବରଣ କରିବା ପାଇଁ ଦୁର୍ଯ୍ୟୋଧନଙ୍କୁ କର୍ଣ୍ଣଙ୍କର ପରାମର୍ଶଦାନ (୮) ଦୁର୍ଯ୍ୟୋଧନଙ୍କର ଦ୍ରୋଣଙ୍କୁ ସେନାପତି ହେବା ପାଇଁ ନିବେଦନ (୯) ଦ୍ରୋଣଙ୍କର ସେନାପତିତ୍ୱ ଗ୍ରହଣ ଓ ଧୃଷ୍ଟଦ୍ୟୁମ୍ନଙ୍କୁ ବଧ

ନ କରିବା ପାଇଁ ଇଚ୍ଛା ପ୍ରକାଶ (୧୦) ଯୁଧିଷ୍ଠିରଙ୍କର କୌଞ୍ଚବ୍ୟୂହଗଠନ (୧୦) ଦ୍ରୋଣଙ୍କୁ ଦୁର୍ଯୋଧନର ବର ଭିକ୍ଷା (୧୧) ରଣକ୍ଷେତ୍ରର ଦୃଶ୍ୟ ବର୍ଣ୍ଣନା (୧୨) ସୁଶର୍ମା ଓ ସଂଶପ୍ତକ ବାହିନୀ ସହ ଅର୍ଜୁନଙ୍କ ସମର (୧୩) ଅର୍ଜୁନଙ୍କ ଦ୍ୱାରା ସୁଧନ୍ୱା ବଧ (୧୪) ଦ୍ରୋଣଙ୍କ ଗରୁଡ଼ ବ୍ୟୂହ ଗଠନ (୧୫) ଦ୍ରୋଣଙ୍କ ହସ୍ତରେ ସତ୍ୟଜିତ, ଶତାନୀକ, ଦୃଢ଼ସେନ, କ୍ଷେମ, ବସୁଦାନ, ଓ ପାଞ୍ଚାଳରାଜକୁମାରଙ୍କ ନିଧନ (୧୬) ଧୃଷ୍ଟଦ୍ୟୁମ୍ନଙ୍କ ସହ ଦୁର୍ମୁଖଙ୍କ ଯୁଦ୍ଧ (୧୭) ଭୀମ-ଦୁର୍ମର୍ଷଣ, ଜୟଦ୍ରଥ-କ୍ଷତ୍ରବର୍ମା, ଯୁଯୁତ୍ସୁ-ସୁବାହୁ, ବିରାଟ-ବିନ୍ଦ ଓ ଅନୁବିନ୍ଦ, ଭୀମରଥ-ଶଲ୍ୟ, ଶତାନୀକ-ଭୂତକର୍ମା, ସୁତସୋମ-ବିବିଂଶତି, ଶ୍ରୁତକର୍ମା-ଚିତ୍ରରଥ, ପ୍ରତିବିନ୍ଧ୍ୟ-ଅଶ୍ୱତ୍ଥାମା, ଶ୍ରୁତକୀର୍ତ୍ତି-ଦୁଃଶାସନଙ୍କ ପୁତ୍ର, ସମୁଦ୍ର ପ୍ରାନ୍ତରର ଅଧିପତି-ଲକ୍ଷ୍ମଣକୁମାର, ଶିଖଣ୍ଡୀ-ବିକର୍ଣ୍ଣ, ଉତ୍ତମୌଜା-ଅଙ୍ଗଦ ପୁରୁଜିତ ଦୁର୍ମୁଖ, ସାତ୍ୟକି-କ୍ଷେମଧୂର୍ତ୍ତି ଓ ବୃହନ୍ତ, ଅମ୍ବଷ୍ଠ-ଚେଦିରାଜ, ବାର୍ଦ୍ଧକ୍ଷେମୀ-କୃପ, ମଣିମାନ-ଭୂରିଶ୍ରବା, ପାଣ୍ଡ୍ୟ-ବୃଷସେନଙ୍କ ଦ୍ୱନ୍ଦ୍ୱ ଯୁଦ୍ଧ (୧୮) ନୀଳ, କାଶ୍ୟ ଓ ଜୟତ୍ସେନଙ୍କର ଦୁର୍ଜୟ, ଜୟ ଓ ବିଜୟଙ୍କ ସହ ସମର (୧୯) ଅର୍ଜୁନଙ୍କ ହସ୍ତରେ ବୃଷକ ଓ ଅଚଳକ ବଧ, (୨୦) ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ସହ ଶକୁନିର ମାୟାଯୁଦ୍ଧ (୨୧) ଅଶ୍ୱତ୍ଥାମାଙ୍କ ହସ୍ତରେ ରାଜା ନୀଳଙ୍କ ନିଧନ (୨୨) ପ୍ରତିଜ୍ଞା ପାଳନରେ ଅକ୍ଷମ ଦ୍ରୋଣଙ୍କ ପ୍ରତି ଦୁର୍ଯୋଧନଙ୍କ ଅପେକ୍ଷା (୨୩) ଅଭିମନ୍ୟୁଙ୍କ ଦ୍ୱାରା ଅଶ୍ମକ ପୁତ୍ର ବଧ (୨୪) ଅଭିମନ୍ୟୁଙ୍କ ହସ୍ତରେ ଶଲ୍ୟଙ୍କ ଭ୍ରାତା, କର୍ଣ୍ଣଙ୍କ ଭ୍ରାତା ବସାତୀୟ, ସତ୍ୟଶ୍ରବା, ରୁକ୍ମରଥ, କ୍ରାଥପୁତ୍ର, ବୃନ୍ଦାରକ ଓ ବୃହଦ୍‌ବଳଙ୍କ ନିଧନ (୨୫) ଅଭିମନ୍ୟୁବଧ-ପରେ ଯୁଧିଷ୍ଠିରଙ୍କୁ ବ୍ୟାସଦେବଙ୍କ ଆଶ୍ୱାସନା ପ୍ରଦାନ ଏବଂ ମୃତ୍ୟୁର ଉତ୍ପତ୍ତି ବୃତ୍ତାନ୍ତ ବର୍ଣ୍ଣନ (୨୬) ଅକମ୍ପନ ଓ ନାରଦ ସମ୍ବାଦ (୨୭) ସଞ୍ଜୟରାଜା ଓ ପର୍ବତ-ନାରଦ ଋଷି ଉପାଖ୍ୟାନ (୨୮) ନାରଦଙ୍କ ମରୁତରାଜା ବୃତ୍ତାନ୍ତ କଥନ (୨୯) ବ୍ୟାସଙ୍କର ସୁହୋତ୍ର, ପୌରବ ଶିବ, ଶ୍ରୀରାମ, ଭଗୀରଥ, ଦିଲୀପ, ମାନ୍ଧାତା, ଯଯାତି, ଅମ୍ବରୀଷ, ଶଶବିନ୍ଦୁ, ଗୟ, ରନ୍ତିଦେବ, ଭରତ, ପୃଥୁ, ପରଶୁରାମଙ୍କ ବୃତ୍ତାନ୍ତ ବର୍ଣ୍ଣନା ✳ (୩୦) ନାରଦଙ୍କ ଦ୍ୱାରା ସୃଞ୍ଜୟଙ୍କ ପୁତ୍ର ଜୀବିତ ହେବା ବୃତ୍ତାନ୍ତ ଓ ବ୍ୟାସଙ୍କ ଅନ୍ତର୍ଦ୍ଧାନ (୩୧) ଅର୍ଜୁନଙ୍କ ଶିବ ଓ ଶ୍ରୀକୃଷ୍ଣ ପୂଜନ (୩୨) ଅର୍ଜୁନଙ୍କ ପାଶୁପତ ଅସ୍ତ୍ରଲାଭ (୩୩) ଯୁଧିଷ୍ଠିରଙ୍କ ଶ୍ରୀକୃଷ୍ଣ ପୂଜନ (୩୩) ଅର୍ଜୁନଙ୍କର ଦୁର୍ମର୍ଷଣଙ୍କ ସହ ଯୁଦ୍ଧ (୩୪) ଅର୍ଜୁନ-କୃତବର୍ମା ଯୁଦ୍ଧ (୩୫) ଯୁଧାମନ୍ୟୁ ଓ ଉତ୍ତମୌଜାଙ୍କର ଚକ୍ରବ୍ୟୂହ ମଧ୍ୟରେ କୌରବସେନା ସହ ସମର (୩୬) ଅର୍ଜୁନଙ୍କର କାମ୍ବୋଜସେନା ଓ ଶ୍ରୁତାୟୁଧଙ୍କ ସହିତ ଯୁଦ୍ଧ (୩୭) ଶ୍ରୁତ ଯୁଧ ରାଜା ଚରିତ (୩୮) ଅର୍ଜୁନଙ୍କ ହସ୍ତରେ

✳ ଏହି ରାଜାମାନେ କପରି ମୃତ୍ୟୁର ଅଧୀନ ହେଲେ ତାହା ବର୍ଣ୍ଣନା କରି ବ୍ୟାସଦେବ ଯୁଧିଷ୍ଠିରଙ୍କୁ ମୃତ୍ୟୁ କପରି ଅଲଙ୍ଘନୀୟ ତାହା ବୁଝାଇଥିଲେ ।

(ଦ୍ରୋ, ୫୧-୭୦)

ସୁଦକ୍ଷିଣଂକ ବଧ (୩୯) ଦୁର୍ଯ୍ୟୋଧନଙ୍କୁ ଦ୍ରୋଣଂକର ସୁବର୍ଣ୍ଣ-କବଚ ଦାନ (୪୦) ବୃତ୍ରାସୁର ଚରିତ (୪୧) ଭୀମ-ଚିତ୍ରସେନ, ଶଲ୍ୟ-ଯୁଧିଷ୍ଠିର, ବାହ୍ଲିକ-ଶ୍ରୀଖଣ୍ଡୀ, କ୍ଷତ୍ରଦେବ-ଅଲମ୍ବୁଷ, ଚିତ୍ର-ଚେଦି ଓ ଅନୁବିନ୍ଦ; ଶୈବ୍ୟ-କାଶୀରାଜକୁମାର, ବାହ୍ଲିକ -ଦ୍ରୋପଦୀପୁତ୍ରଗଣ, ମାଦ୍ରୀସୁତ-ଶକୁନି, କୃତବର୍ମା-ଯୁଧିଷ୍ଠିରଂକ ଯୁଦ୍ଧ (୪୨) ବିନ୍ଦ ଅନୁବିନ୍ଦ ବଧ (୪୩) ଚକ୍ରବ୍ୟୂହ ମଧ୍ୟରେ ଅଭିମନ୍ୟୁଂକ ଶଲ୍ୟ ଓ ବୃଷସେନଂକ ସହ ସମର (୪୪) ବୃଦ୍ଧକ୍ଷତ୍ର ଓ କ୍ଷେମଧୂର୍ତ୍ତି ଯୁଦ୍ଧ (୪୫) ବିକର୍ଣ୍ଣ ଓ ନକୁଳ ଯୁଦ୍ଧ (୪୬) ଦୁର୍ମୁଖ ଓ ସହଦେବ ଯୁଦ୍ଧ (୪୭) ସାତ୍ୟକି-ବ୍ୟାଘ୍ରଦତ୍ତ ଯୁଦ୍ଧ (୪୮) କ୍ଷେମଧୂର୍ତ୍ତି, ବୀରଧନ୍ୱା ଓ ବ୍ୟାଘ୍ରଦତ୍ତଙ୍କ ନିଧନ (୪୯) ଦ୍ରୋପଦୀ ପୁତ୍ରଙ୍କ ଦ୍ୱାରା ଶଲଙ୍କ ବଧ (୫୦) ସାତ୍ୟକି-କୃତବର୍ମା, ଭୀମ କୃତବର୍ମା ଯୁଦ୍ଧ (୫୧) ସାତ୍ୟକି-ଭୂରିରଥ ଯୁଦ୍ଧ (୫୨) ଜଳସନ୍ଧଙ୍କ ନିଧନ (୫୩) ସାତ୍ୟକିଙ୍କ ସୁଦର୍ଶନ ବଧ ଓ କାମ୍ବୋଜ, ଯବନ, ମ୍ଳେଚ୍ଛ ସେନା ସଂହାର (୫୪) ଦ୍ରୋଣଙ୍କ ଦ୍ୱାରା ବୃହତ୍‌କ୍ଷତ୍ର, ଧୃଷ୍ଟକେତୁ ଓ ଜରାସନ୍ଧଙ୍କ ପୁତ୍ର ସହଦେବଙ୍କ ନିଧନ (୫୫) ଭୀମଙ୍କ ହସ୍ତରେ ଧୃତରାଷ୍ଟ୍ରଙ୍କ ଏଗାର ଜଣ ପୁତ୍ରଙ୍କ ନିଧନ (୫୬) ଦୁର୍ଯ୍ୟୋଧନ ଓ ଯୁଧାମନ୍ୟୁଙ୍କ ଯୁଦ୍ଧ (୫୭) ଦୁର୍ଜୟ, ଦୁର୍ମୁଖଙ୍କ ବଧ (୫୮) ଭୀମଙ୍କ ହସ୍ତରେ ଅନ୍ୟ ସାତ ଜଣ କୌରବ ଭ୍ରାତାଙ୍କ ନିଧନ (୫୯) ଭୀମଙ୍କ ହସ୍ତରେ ଅନ୍ୟ ପାଞ୍ଚ ଜଣ କୌରବଙ୍କ ବିନାଶ (୬୦) ସାତ୍ୟକି ଭୂରିଶ୍ରବାଙ୍କ ଦ୍ୱାରା ଅପମାନିତ ଓ ନିପୀଡ଼ିତ ହେବାର କାରଣ ବର୍ଣ୍ଣନା (୬୧) ରାତ୍ରି ଯୁଦ୍ଧ ବେଳେ ଦ୍ରୋଣଙ୍କର ଦୃଷ୍ଟଦ୍ୟୁମ୍ନ ଓ ଶିବିଙ୍କ ସହ ଯୁଦ୍ଧ (୬୨) କର୍ଣ୍ଣଙ୍କ ପ୍ରତି କୃପାଚାର୍ଯ୍ୟଙ୍କ କଟୂକ୍ତି (୬୩) କର୍ଣ୍ଣଙ୍କ ଦ୍ୱାରା କୃପଙ୍କ ଅପମାନ (୬୪) କର୍ଣ୍ଣଙ୍କୁ ବଧ କରିବା ପାଇଁ ଅଶ୍ୱତ୍ଥାମାଙ୍କ ଉଦ୍ୟମ ଓ ଦୁର୍ଯ୍ୟୋଧନଙ୍କ ଆଶ୍ୱାସନା (୬୫) ସାତ୍ୟକି ସୋମଦତ୍ତ ବଧ (୬୬) ସାତ୍ୟକିଙ୍କ ହସ୍ତରେ ଭୂରିଙ୍କ ବିନାଶ (୬୭) ଶତାନୀକଙ୍କ ଦ୍ୱାରା ଚିତ୍ରସେନଙ୍କ ପରାଜୟ (୬୭) କର୍ଣ୍ଣ ପୁତ୍ର ବୃଷସେନଙ୍କ ଦ୍ୱାରା ଦ୍ରୁପଦଙ୍କ ପରାଜୟ (୬୮) ଅର୍ଜୁନଙ୍କ ଦ୍ୱାରା ଶକୁନି ଓ ତାଙ୍କପୁତ୍ର ଉଲୂକଙ୍କର ପରାଜୟ (୬୯) ଶ୍ରୀକୃଷ୍ଣଙ୍କର ଦ୍ୱାରା ଜରାସନ୍ଧ, ଏକଲବ୍ୟ ଓ ଶିଶୁପାଳ ବୃତ୍ତାନ୍ତ କଥନ (୭୦) ଘଟୋତ୍କଚ ବଧରେ ବ୍ୟାସଙ୍କର ଯୁଧିଷ୍ଠିରଙ୍କୁ ସାନ୍ତ୍ୱନା ପ୍ରଦାନ (୭୧) ଦ୍ରୋଣଙ୍କର ବସୁଧାନ ବଧ (୭୨) ସାତ୍ୟକି ଓ ଧୃଷ୍ଟଦ୍ୟୁମ୍ନଙ୍କର ଦ୍ରୋଣବଧ ବିଷୟରେ ବାଦାନୁବାଦ ଓ ସମର (୭୩) ଦ୍ରୋଣବଧ ପରେ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ଉପରେ ଅଶ୍ୱତ୍ଥାମାଙ୍କ ଆଗ୍ନେୟାସ୍ତ୍ର ପ୍ରୟୋଗ (୭୪) ଆଗ୍ନେୟାସ୍ତ୍ରକୁ ବ୍ରହ୍ମାସ୍ତ୍ର ଦ୍ୱାରା ଅର୍ଜୁନଙ୍କର ପ୍ରତିରୋଧ (୭୫) ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ଉପରେ ଆଗ୍ନେୟାସ୍ତ୍ର ପ୍ରଭାବ ଶୂନ୍ୟ ହେବାରୁ ଅଶ୍ୱତ୍ଥାମାଙ୍କ ଚିନ୍ତା (୭୬) ବ୍ୟାସଦେବଙ୍କ ଆଗମନ ଓ ଅଶ୍ୱତ୍ଥାମାଙ୍କୁ ଶାନ୍ତ କରିବା ପାଇଁ ଶିବ ତଥା ଶ୍ରୀକୃଷ୍ଣଙ୍କ ମହିମା କଥନ ଆଦି ବୃତ୍ତାନ୍ତ (୭୭) ଭଗଦତ୍ତ ରାଜାଙ୍କର ନାରାୟଣାସ୍ତ୍ର ଲାଭ କରିବା ବୃତ୍ତାନ୍ତ (୭୮) ଭଗଦତ୍ତଙ୍କ ଅର୍ଜୁନଙ୍କ ପ୍ରତି ନାରାୟଣାସ୍ତ୍ର ପ୍ରୟୋଗ ବୃତ୍ତାନ୍ତ (୭୯) ଦ୍ରୋଣ ବଧ ପୂର୍ବରୁ ଅଗ୍ନି ଓ

ଋଷିମାନଙ୍କର ଯୁଦ୍ଧକ୍ଷେତ୍ରକୁ ଆଗମନ ଓ ଦ୍ରୋଣଙ୍କ ପ୍ରତି ସେମାନଙ୍କ ବାଣୀ ( ୭) ଅଶ୍ୱତ୍ଥାମାଙ୍କର ନାରାୟଣାସ୍ତ୍ର ପ୍ରାପ୍ତି ବୃତ୍ତାନ୍ତ କଥନ (୮) ଭୀମଙ୍କ ଉପରେ ଅଶ୍ୱତ୍ଥାମା ନାରାୟଣାସ୍ତ୍ରର ଘୋର ପ୍ରଭାବ ଓ ଶ୍ରୀକୃଷ୍ଣଙ୍କ ଦ୍ୱାରା ଭୀମଙ୍କ ପ୍ରାଣରକ୍ଷା ବୃତ୍ତାନ୍ତ ।

ଉପରୋକ୍ତ ପ୍ରସଙ୍ଗମାନଙ୍କ ଭିନ୍ନ ବହୁ ଯୁଦ୍ଧ କଥା ସାରଳା ଦାସ ପରିହାର କରିଥିବାର ଦେଖାଯାଏ ।

## (ଗ) ନୂତନ ପ୍ରସଙ୍ଗର ପରିଚର୍ଯ୍ୟା ।

ମହାକବି ସାରଳା ଦାସ ଯେପରି ମୂଳର ଶତାଧିକ ପ୍ରସଙ୍ଗ ପରିତ୍ୟାଗ କରିଛନ୍ତି, ସେହିପରି ଶତାଧିକ ପ୍ରସଙ୍ଗର ଯୋଗ ମଧ୍ୟ କରିଛନ୍ତି । ସେଥିମଧ୍ୟରୁ କେତେକ ବିଭିନ୍ନ ଶାସ୍ତ୍ର- ପୁରାଣରୁ ଆନୀତ ଓ ଅନ୍ୟ କେତେକ କବିଙ୍କର ନିଜସ୍ୱ କଳ୍ପନା । ଅନ୍ୟ ପର୍ବରେ ବର୍ଣ୍ଣିତ ବିଷୟକୁ ଆଣି ସେ ଏହି ପର୍ବରେ କେତେକ ସ୍ଥଳରେ ସନ୍ନିବେଶ ମଧ୍ୟ କରିଦେଇଛନ୍ତି । ସେହି ସମସ୍ତ ନୂତନ ପ୍ରସଙ୍ଗ ଓ ଉପାଖ୍ୟାନ ମାନଙ୍କ ମଧ୍ୟରୁ ଏଠାରେ କେତେକର ଉଲ୍ଲେଖ କରାଯାଇପାରେ । ଯଥା :—(୧) ମ୍ଳେଚ୍ଛରାଜା ମୟୂରାସୁରଙ୍କ ସହ ଦୁର୍ଯ୍ୟୋଧନଙ୍କ ବନ୍ଧୁତ୍ୱ (୨) ମୟୂରାସୁରର ଜାଳନ୍ଧର ବ୍ୟୂହ ଗଠନ ଓ ଦୁର୍ଯ୍ୟୋଧନଙ୍କର ବ୍ୟୂହ-ଦର୍ଶନ (୩) ସହଦେବଙ୍କ ଦ୍ୱାରା ଅଭିମନ୍ୟୁଙ୍କ ପୂର୍ବଜନ୍ମର ବିବରଣ ବର୍ଣ୍ଣନା ଓ ଚକ୍ରବ୍ୟୂହ ସୃଷ୍ଟିର ଉଦ୍ଦେଶ୍ୟ ପ୍ରଖ୍ୟାପନ (୪) ସରସ୍ୱତୀ ନଦୀ କୂଳରେ ମୟୂରାସୁରର ଜାଳନ୍ଧର ବ୍ୟୂହ ଗଠନ ଓ ଜୟନ୍ତାଗଡ଼ ଆକ୍ରମଣର ଯୋଜନା (୫) ମୟୂରାସୁରର ଅଭିପ୍ରାୟ ଅବଗତ ହୋଇ ଶ୍ରୀକୃଷ୍ଣ ଓ ଅର୍ଜ୍ଜୁନଙ୍କର ଜାଳନ୍ଧର ବ୍ୟୂହ ଭେଦ ପାଇଁ ଯାତ୍ରା (୬) ମାତୃଗର୍ଭରେ ଥିବା ବେଳେ ଅଭିମନ୍ୟୁଙ୍କର ଚକ୍ରବ୍ୟୂହ-ସମ୍ପର୍କୀୟ ଜ୍ଞାନ ଲାଭ (୭) ଯୁଦ୍ଧ କ୍ଷେତ୍ରକୁ ବହ୍ନା ପୁରୁଷଙ୍କ ଆଗମନ ଓ ସାରଥୀଙ୍କୁ ଅଭିମନ୍ୟୁଙ୍କୁ ଶୀଘ୍ର ସ୍ୱର୍ଗକୁ ପ୍ରେରଣ କରିବା ପାଇଁ ନିର୍ଦ୍ଦେଶ (୮) ଇନ୍ଦ୍ର ସ୍ୱର୍ଗକୁ ଅଭିମନ୍ୟୁଙ୍କୁ ନେବାର କାରଣ ବର୍ଣ୍ଣନା (୯) ଇନ୍ଦ୍ରଙ୍କ ଆଦେଶକ୍ରମେ ମାତଳୀ ରଥରେ ଅଭିମନ୍ୟୁଙ୍କୁ ସ୍ୱର୍ଗକୁ ନେବା, ଅଭିମନ୍ୟୁଙ୍କର ଇନ୍ଦ୍ରଙ୍କ ସହ ଭେଟ, ହୃଦେକବନ୍ଧ ରାକ୍ଷସ କଥା (୧୦) ପାଣ୍ଡବଙ୍କୁ ସମ୍ବାଦ ଦେବା ପାଇଁ ଇନ୍ଦ୍ରଙ୍କ ଆଦେଶରେ 'କେତନ' ସାରଥୀର ମର୍ତ୍ତ୍ୟକୁ ଆଗମନ ବୃତ୍ତାନ୍ତ (୧୧) ଜାଳନ୍ଧର ବ୍ୟୂହ ମଧ୍ୟରେ ଶ୍ରୀକୃଷ୍ଣ ଅର୍ଜ୍ଜୁନ ବନ୍ଦୀ ହେବା କଥା (୧୨) ଅଭିମନ୍ୟୁ ବଧ ପରେ ଅର୍ଜ୍ଜୁନଙ୍କର ଭ୍ରାତାମାନଙ୍କ ଉପରେ କ୍ରୋଧ ପ୍ରକାଶ ଓ ସେମାନଙ୍କୁ ବଧ କରିବା ପାଇଁ ଧମକ (୧୩) ଶ୍ରୀକୃଷ୍ଣଙ୍କର ଅଭିମନ୍ୟୁଙ୍କ ମୃତ୍ୟୁର ରହସ୍ୟ ପ୍ରକାଶ, ଶ୍ରୀକୃଷ୍ଣଙ୍କ ସହ ଅର୍ଜ୍ଜୁନଙ୍କର ସ୍ୱର୍ଗଗମନ ଓ ଅଭିମନ୍ୟୁଙ୍କ ସହ ସାକ୍ଷାତ୍ ବୃତ୍ତାନ୍ତ ବର୍ଣ୍ଣନା (୧୪) ଅଭିମନ୍ୟୁ-ବଧରେ କୁନ୍ତୀ ଓ ଦ୍ରୌପଦୀଙ୍କ ଶୋକ (୧୫) ଜୟଦ୍ରଥ-ବଧ ପୂର୍ବରୁ ହନୁମାନ ଓ ଶ୍ରୀକୃଷ୍ଣଙ୍କ କଥୋପକଥନ (୧୬) ରାତ୍ରିଯୁଦ୍ଧ ପୂର୍ବରୁ

ଦ୍ରୋଣଙ୍କ ପ୍ରତି ଶକୁନି ଓ କୃପଙ୍କର ତାଚ୍ଛଲ୍ୟ ପ୍ରଦର୍ଶନ (୧୭) ଦ୍ରୋଣଙ୍କ ପ୍ରତି କୃପଙ୍କ ଆକ୍ଷେପ, ଦ୍ରୋଣଙ୍କ କ୍ରୋଧ ଓ ଦୁର୍ଯ୍ୟୋଧନଙ୍କ ସାନ୍ତ୍ୱନା ପ୍ରଦାନ (୧୮) ଦ୍ରୋଣଙ୍କର ଶୁଭ୍ରବ୍ରହ୍ମ ଉପରକୁ ଯାଇ ପାଣ୍ଡବଙ୍କୁ ଯୁଦ୍ଧ ପାଇଁ ଆହ୍ୱାନ (୧୯) ଦୁର୍ଦ୍ଧର୍ଷଙ୍କ ହସ୍ତରେ ମରୁତସେନ ଓ ଅଭିମନ୍ୟୁଙ୍କ ପୁତ୍ର ରକ୍ଷ-ଭକ୍ଷଙ୍କ ନିଧନ (୨୦) ଦ୍ରୁପଦ ରାଜାଙ୍କୁ ବଧ କରିଥିବାରୁ ଦ୍ରୋଣଙ୍କ ଶୋକ ଓ ପୂର୍ବ ଘଟଣାମାନଙ୍କର ସ୍ମରଣ (୨୧) ଚନ୍ଦ୍ରସରା ଓ ଅର୍କ ଦୈତ୍ୟ ବୃତ୍ତାନ୍ତ (୨୨) ଦ୍ରୋଣଙ୍କ ଦ୍ୱାରା ଦ୍ରୁପଦଙ୍କ ମୃତ ଦେହର ସୁରକ୍ଷା (୨୩) ଯୁଦ୍ଧ କାଳରେ କର୍ଣ୍ଣଙ୍କର ଇନ୍ଦ୍ରଙ୍କୁ ବଜ୍ରଶକ୍ତି ଭିକ୍ଷା, ଇନ୍ଦ୍ରଙ୍କର ବୃହସ୍ପତିଙ୍କ ସହ ପରାମର୍ଶ ଆଦି ବୃତ୍ତାନ୍ତ (୨୪) କର୍ଣ୍ଣଙ୍କ ଇନ୍ଦ୍ରଶକ୍ତି ପ୍ରୟୋଗ ବେଳେ ଶ୍ରୀକୃଷ୍ଣଙ୍କ ନିକଟକୁ ଇନ୍ଦ୍ରଙ୍କର ଆଗମନ ବୃତ୍ତାନ୍ତ (୨୫) କର୍ଣ୍ଣଙ୍କ ଶକ୍ତି ପ୍ରୟୋଗ ବେଳେ, ଶ୍ରୀକୃଷ୍ଣ ଘଟୋତ୍କଚଙ୍କୁ ନନ୍ଦିଘୋଷ ପଛ ପଟେ ରହିବା ପାଇଁ ପରାମର୍ଶ ଦେବା କଥା (୨୬) କର୍ଣ୍ଣଙ୍କ ଶକ୍ତି ପ୍ରୟୋଗ ବେଳେ ହନୁମାନ ରଥକୁ ପାତାଳକୁ ଚାପିଦେବା ବିଷୟ (୨୭) କର୍ଣ୍ଣଙ୍କ ଶକ୍ତିଦ୍ୱାରା ଘଟୋତ୍କଚଙ୍କ ନିଧନ (୨୮) ଘଟୋତ୍କଚଙ୍କ ପ୍ରତି ଦ୍ରୌପଦୀଙ୍କ ପୂର୍ବ ଶାପର ବିବରଣ (୨୯) ଭୀମଙ୍କ ଦ୍ୱାରା ଅଶ୍ୱତ୍ଥାମାଙ୍କ ରଥ ଓ କରଚରଣ ଭଙ୍ଗ (୩୦) ଦ୍ରୋଣଙ୍କ ଦ୍ୱାରା କାଶୀରାଜଙ୍କ ନିଧନ (୩୧) ଦ୍ରୋଣଙ୍କ ହସ୍ତରେ ଶ୍ୱେତରାଜ ମନସିଜ, କୌଶିକରାଜ କଳ୍ପପାକ୍ଷ, କନୌଜ-ରାଜ ଶତମନ୍ୟୁ, ବିରାଜ ଦେଶର ରାଜା କଳନ୍ଦମାଳିଙ୍କ ବଧ (୩୨) କର୍ଣ୍ଣ ନକୁଳଙ୍କ ଶିରଚ୍ଛେଦ କରିବାକୁ ଯିବା, ଦୁର୍ଦ୍ଧର୍ଷ କର୍ଣ୍ଣଙ୍କୁ ସଙ୍ଗସ୍ମନ କରି ନକୁଳଙ୍କୁ ରକ୍ଷା କରିବା ବୃତ୍ତାନ୍ତ (୩୩) କର୍ଣ୍ଣ ଧୃଷ୍ଟଦ୍ୟୁମ୍ନଙ୍କୁ ଦ୍ରୁପଦଙ୍କ ନିଧନ ସମ୍ବାଦ ଦେବା କଥା (୩୪) ଅର୍ଜୁନ ଅଗ୍ନିବାଣ ପ୍ରୟୋଗ କରି କୁହୁଡ଼ି ଓ ଶୈତ୍ୟ ଦୂର କରିବା ବୃତ୍ତାନ୍ତ (୩୫) ଯୁଦ୍ଧରେ ଜୟଦ୍ରଥଙ୍କ ଭ୍ରାତା ଦଇରଥ, ଦାଶରଥ ଓ ହରିରଥଙ୍କ ନିଧନ (୩୬) ଚଣ୍ଡୀହର ଦେଶର ରାଜା କୃତକେଶୀଙ୍କ ସହ ରାତ୍ରିକାଳରେ ଘଟୋତ୍କଚର ଯୁଦ୍ଧ (୩୭) ରାତିରେ ଭୀମଙ୍କ ଦ୍ୱାରା ପାଣ୍ଡବ ପକ୍ଷୀୟ ବଧୃତ, ନରାୟୁଧ, ବିରଜସେନ ଓ ଧନୁର୍ଦ୍ଧ୍ୱଜ ନାମକ ରାଜାମାନଙ୍କ ନିଧନ (୩୮) ଉଜାଣି ଦେଶର ରାଜା ସତ୍ୟବର, ନୈଋତ ଦେଶର ରାଜା ଶିବ, ଉତ୍ତଙ୍ଗ ଦେଶର ରାଜା ନର୍ମଳେଶ୍ୱର, ବଙ୍ଗ ଦେଶର ରାଜା ନରକେଶରୀଙ୍କ ସହିତ ଚହୁଡ଼, କୀର, କାଉଁରୀ, ବଙ୍ଗାଳ ଆଦି ଦେଶର ରାଜାଙ୍କର ରାତ୍ରିଯୁଦ୍ଧରେ ମୃତ୍ୟୁବରଣ (୩୯) ଦ୍ରୋଣଙ୍କର ଅଶ୍ୱତ୍ଥାମା ମୃତ ବୋଲି ଶୂନ୍ୟବାଣୀ ଶୁଣି ତାଙ୍କର ମୃତଦେହ ଅନ୍ୱେଷଣ କରିବା ବୃତ୍ତାନ୍ତ (୪୦) ଦ୍ରୋଣଙ୍କର ଅଶ୍ୱତ୍ଥାମାଙ୍କ କୁଶଳ ବିଷୟରେ କର୍ଣ୍ଣ, ଶଲ୍ୟ, ଶକୁନି ଓ ଦୁର୍ଯ୍ୟୋଧନଙ୍କୁ ପ୍ରଶ୍ନ (୪୧) ଶ୍ରୀକୃଷ୍ଣଙ୍କ ମୁଖରେ ଅଙ୍ଗଦର ପିତୃଋଣ ପରିଶୋଧ ବୃତ୍ତାନ୍ତ ବର୍ଣ୍ଣନ (୪୨) ଯୁଦ୍ଧ ପାଇଁ ଉଦେପୁରର ନରପତି ଭଗଦତ୍ତଙ୍କର ଦୁର୍ଯ୍ୟୋଧନ ନିକଟରେ ଅନୁମତି ଭିକ୍ଷା ଓ ଦୁର୍ଯ୍ୟୋଧନଙ୍କର ନାସ୍ତି ବାଣୀ (୪୩) ସୋମଦତ୍ତ ଓ ଭଗଦତ୍ତଙ୍କ ଚରିତ (୪୪) ଅଶ୍ୱତ୍ଥାମା ହସ୍ତୀର ବଂଶାନୁକ୍ରମ ବର୍ଣ୍ଣନା (୪୫) ସୁହସ୍ତା

ହସ୍ତୀଦ୍ୱାରା ଭୀମସେନ ଯମୁନା କୂଳରେ ପ୍ରକ୍ଷିପ୍ତ ହେବା ବୃତ୍ତାନ୍ତ (୪୬) ଭଗଦତ୍ତଙ୍କ ଅନଳ ନୟନର ଦୃଷ୍ଟିପାତରେ ପାଣ୍ଡବସେନାର ଧ୍ୱଂସ (୪୭) ପ୍ରାଣେଶ୍ୱର ଭଗଦତ୍ତଙ୍କର ପୂର୍ବବତ୍ ଶରପ୍ରେଷଣ ଓ ନର୍କବ ସୁହସ୍ତୀର ପୂର୍ବବତ୍ ଦଣ୍ଡାୟମାନ ରହିବା ବୃତ୍ତାନ୍ତ (୪୮) ସୁହସ୍ତୀ ହସ୍ତୀର ବଂଶାନୁକ୍ରମ (୪୯) ବ୍ରହ୍ମାଙ୍କର ଯୁଦ୍ଧକ୍ଷେତ୍ରକୁ ଆଗମନ ଓ ବସ୍ତ୍ରଶର ତଥା ବ୍ରହ୍ମଶରଙ୍କୁ ତାଙ୍କର ସ୍ତୁତି (୫୦) ଗଙ୍ଗାକୂଳରେ ଦ୍ରୋଣଙ୍କ ଶବଦାହ (୫୧) ଅଶ୍ୱତ୍ଥାମାଙ୍କର ସେନାପତି ପଦ ପାଇଁ ଦୁର୍ଯ୍ୟୋଧନଙ୍କୁ ନିବେଦନ ଓ ଦୁର୍ଯ୍ୟୋଧନଙ୍କ ନାସ୍ତିବାଣୀ (୫୨) ଅଶ୍ୱତ୍ଥାମାଙ୍କ ବୈରାଗ୍ୟ ଓ ଅସ୍ତ୍ର ଶସ୍ତ୍ର ଦାନ ପାଇଁ ନିଷ୍ପତ୍ତି, ସହଦେବଙ୍କ ପରାମର୍ଶରେ ଶ୍ରୀକୃଷ୍ଣଙ୍କର କପଟ ବ୍ରାହ୍ମଣବେଶ ଧାରଣ ଓ ଦାନଗ୍ରହଣ ବୃତ୍ତାନ୍ତ (୫୩) ଅଶ୍ୱତ୍ଥାମାଙ୍କର ତୀର୍ଥବାସ ଓ ଫଲ୍‌ଗୁତୀର୍ଥରେ ପିଣ୍ଡଦାନ (୫୪) ଅଶ୍ୱତ୍ଥାମାଙ୍କର ଦୁର୍ଯ୍ୟୋଧନଙ୍କ ପାଣ୍ଡବଙ୍କ ପାଇଁ ଗ୍ରାମ ଦାନ କରିବାକୁ ଉପଦେଶ ଦାନ ଓ କର୍ଣ୍ଣଙ୍କ ପାଣ୍ଡବବଧ ପ୍ରତିଜ୍ଞା ଇ.ତି ବୃତ୍ତାନ୍ତ ।

ସାରଳା ମହାଭାରତରେ ବିଭିନ୍ନ ସ୍ଥଳରେ ଗଣେଶ, ସାରଳା ଚଣ୍ଡୀ, ଶ୍ରୀକୃଷ୍ଣ ସୂର୍ଯ୍ୟଙ୍କର ଯେଉଁ ସ୍ତୁତିମାନ ଦେଖାଯାଏ, ସେ ସମସ୍ତ ମୂଳ ଗ୍ରନ୍ଥରେ ନାହିଁ । ସଂସ୍କୃତ ମହାଭାରତରେ ଶିବଙ୍କ ସ୍ତୁତି ଅଛି । ସେଠାରେ ଉକ୍ତ ଅଛି ଯେ, ଜୟଦ୍ରଥ-ବଧ ନିମିତ୍ତ ଯୁଦ୍ଧାଭିଯାନ କରିବା ପୂର୍ବରୁ ଅର୍ଜୁନ ଶିବଙ୍କୁ ସ୍ତୁତି କରିଥିଲେ । (ସଂ,୮୦ଅ) ଦ୍ରୋଣପର୍ବର ଶେଷଭାଗରେ ଶିବଙ୍କ ମହିମା ପ୍ରଦର୍ଶିତ ହୋଇଅଛି ଏବଂ ଏଠାରେ ସ୍ୱୟଂ ନାରାୟଣ ତାଙ୍କୁ ସ୍ତୁତି କରିଥିବା କଥା ବର୍ଣ୍ଣିତ ହୋଇଛି । (ସଂ,୨୦୦-୨୦୧ଅ)

## (ଘ) ସଂକ୍ଷିପ୍ତ ବର୍ଣ୍ଣନା ।

ସାରଳାଦାସ ଅନେକ ସ୍ଥଳରେ ମୂଳ ମହାଭାରତରେ ଥିବା ପ୍ରସଙ୍ଗ ଓ ଉପାଖ୍ୟାନକୁ ସଂକ୍ଷେପ କରିଅଛନ୍ତି । ତାହାର କେତେକ ଦୃଷ୍ଟାନ୍ତ ଏଠାରେ ଦିଆଯାଇପାରେ ।

(୧) ସଂସ୍କୃତ ମହାଭାରତରେ ଅଛି ଯେ, ସେନାପତି ହେବା ପରେ ଦ୍ରୋଣାଚାର୍ଯ୍ୟ ଦୁର୍ଯ୍ୟୋଧନଙ୍କୁ ବର ମାଗି ନେବାକୁ ନିର୍ଦ୍ଦେଶ ଦେଇଥିଲେ । ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କୁ ଜୀବିତ ବନ୍ଦୀକରି ଆଣିବାକୁ ବର ମାଗିଥିଲେ । ଏହି ବୃତ୍ତାନ୍ତଟି ସେଠାରେ ବିସ୍ତୃତ ଭାବରେ ବର୍ଣ୍ଣିତ । (୧୨ଅ) ସାରଳା ଗୋଟିଏ ପଦରେ ତାହାର ସୂଚନା ଦେଇଛନ୍ତି ।

> "ଦ୍ରୋଣ ଯେ ଚକ୍ରବ୍ୟୂହ କପଟ କୂଟ କଲେ
> ଅର୍ଜୁନ ନ ଥିଲେ ଯୁଧିଷ୍ଠିରଙ୍କ ଧରିନେବେ ବୋଲି ବୋଇଲେ ।"
>
> (ସା, ପୃ-୪୯)

(୨) ଦ୍ରୋଣାଚାର୍ଯ୍ୟଙ୍କ ଦେହତ୍ୟାଗ ଓ ଧୃଷ୍ଟଦ୍ୟୁମ୍ନଙ୍କ ଖଡ଼୍‌ଗାଘାତ ବୃତ୍ତାନ୍ତଟି ଗ୍ରନ୍ଥରେ ସୁବିସ୍ତୃତ ହୋଇଥିବାର ଦେଖାଯାଏ । (ସଂ, ୧୯୨,୪୯-୮୪) କିନ୍ତୁ ସାରଳାଦାସ ତାକୁ କେତୋଗୋଟି ପଦରେ ମାତ୍ର ପ୍ରକାଶ କରିଛନ୍ତି ।

(୩) ରାତ୍ରି ଯୁଦ୍ଧରେ ଯେଉଁ ପ୍ରଦୀପର ବନ୍ଦୋବସ୍ତ କରାଗଲା, ତାହାର ବର୍ଣ୍ଣନା ବ୍ୟାସ ବହୁ ଶ୍ଳୋକରେ ବିସ୍ତାରିତ କରି ଲେଖିଛନ୍ତି । (ସଂ,୧୬୩,୧୨-୩୭) । ଏହି ପ୍ରସଙ୍ଗରେ ବର୍ଣ୍ଣନା ସାରଳାଙ୍କ ଲେଖାରେ ସଂକ୍ଷିପ୍ତ ।

(୪) ଚକ୍ରବ୍ୟୂହ ପ୍ରବେଶ କରିବାକୁ ଅଭିମନ୍ୟୁ ଆଗମନ କଲା ସମୟ, ଦ୍ରୋଣାଚାର୍ଯ୍ୟ ତାଙ୍କର ପରାକ୍ରମ ବର୍ଣ୍ଣନା କରିଥିବା କଥା ମୂଳଗ୍ରନ୍ଥରେ ପ୍ରାୟ ସାତଗୋଟି ଶ୍ଳୋକରେ ପ୍ରଦର୍ଶିତ । (ସଂ, ୧୯୦,୧୧-୧୭) ସାରଳା ଦାସ ସଂକ୍ଷେପରେ ଏହା ଦେଇଛନ୍ତି ।

"ଅଦ୍‌ଭୁତେ ଦେଖିଣ ପଚାରନ୍ତ ଦ୍ରୋଣେ
ପାଣ୍ଡବଙ୍କ ଅସମସ୍ତେ କି ବଳେ କଲେ ମସାଣେ ।"
"ଅର୍ଜୁନର ତେଜରୁ ସେ ଦ୍ୱିଗୁଣ ଗରୁହଂସୀ
ଭରଦ୍ୱାଜଙ୍କ ନନ୍ଦନ ବହୁତ ପରଶଂସି ।" (ସା,୫୮ପୃ)

ଏତଦ୍‌ଭିନ୍ନ ମୂଳ ମହାଭାରତରେ ଥିବା ଭଗଦତ୍ତଙ୍କ ହସ୍ତୀସହ ଭୀମଙ୍କ ସମର (ସଂ,୨୬,୧୫-୩୧), ସାତ୍ୟକିଙ୍କ ଭୂରିଶ୍ରବା ବଧ (ସଂ,୧୪୨,୧୪୩ଅ), କର୍ଣ୍ଣଙ୍କ ବଜ୍ରଶକ୍ତି ପ୍ରୟୋଗରେ ଘଟୋତ୍କଚଙ୍କ ନିଧନ (ସଂ,୧୭୯ଅ) ଅର୍ଜୁନଙ୍କ ସଂଶପ୍ତକ ସେନା ସଂହାର ପରେ ଅଶୁଭ ଶକୁନ ଦେଖିବା ଓ ଶୋକାକୁଳ ହେବା ପ୍ରସଙ୍ଗ (ସଂ,୭୨ଅ), ଯୁଧିଷ୍ଠିର ଅର୍ଜୁନଙ୍କ ନିକଟକୁ ଶକଟ ବ୍ୟୂହ ଭେଦ କାଳରେ ଭୀମଙ୍କୁ ପ୍ରେରଣ କରିବା ବୃତ୍ତାନ୍ତ (ସଂ,୧୨୭ଅ) ଦ୍ରୋଣଙ୍କ ସେନାପତି ପଦରେ ଅଭିଷେକ ଓ ଚକ୍ରବ୍ୟୂହ ନିର୍ମାଣ (ସଂ,୭-୩୪ଅ), ଅଭିମନ୍ୟୁଙ୍କ ଚକ୍ରବ୍ୟୂହ-ପ୍ରବେଶ ଓ ବଧ (ସଂ,୩୬-୪୯ଅ) ଜୟଦ୍ରଥଙ୍କ ବଧ (ସଂ; ୮୫-୧୫୦), ଯୁଧିଷ୍ଠିର ଶକଟ ବ୍ୟୂହ ମଧ୍ୟରେ ଅର୍ଜୁନ ଥିବାବେଳେ ତାଙ୍କ ସାହାଯ୍ୟ ନିମିତ୍ତ ସାତ୍ୟକିଙ୍କ ପ୍ରେରଣ କରିବା ପ୍ରସଙ୍ଗ (ସଂ,୧୧୦,୧୧୨ଅ) ଶକଟ ବ୍ୟୂହରେ ସାତ୍ୟକିଙ୍କ ସହ ଦୁଃଶାସନଙ୍କ ସମର (ସଂ,୧୨୩ଅ,୧୨୧,୩୦-୫୮), ଅଭିମନ୍ୟୁ ବଧ ପରେ ଯୁଧିଷ୍ଠିରଙ୍କ ବିଳାପ ଓ ବ୍ୟାସଙ୍କ ସାନ୍ତ୍ୱନା ପ୍ରଦାନ (ସଂ, ୫୧-୭୩ ଅ) ତଥା ଅପର ବର୍ଣ୍ଣନା ସାରଳା ମହାଭାରତରେ ସଂକ୍ଷେପ କରାଯାଇଥିବାର ଦେଖାଯାଏ । ଅଧିକନ୍ତୁ, ସାରଳା ଦାସ ମୂଳ ଗ୍ରନ୍ଥରେ ଥିବା ସଞ୍ଜୟ ଓ ଧୃତରାଷ୍ଟ୍ରଙ୍କର ସଂଳାପ ଗୁଡ଼ିକୁ ସର୍ବତ୍ର ସଂକ୍ଷେପ କରି ଦେଇଅଛନ୍ତି ।

## (ଙ) ବର୍ଣ୍ଣନା-ବିସ୍ତାର ।

କେତେକ ସ୍ଥଳରେ ସାରଳା ମୂଳ ମହାଭାରତରେ ଥିବା ପ୍ରସଙ୍ଗ ଓ ଘଟଣାର ବର୍ଣ୍ଣନାକୁ ବିସ୍ତାରିତ ଭାବରେ ପ୍ରଦର୍ଶନ କରିଛନ୍ତି । ଏଠାରେ ତାହାର କେତେକ ଦୃଷ୍ଟାନ୍ତ ଦିଆଯାଇପାରେ । ସେଗୁଡ଼ିକ ହେଲା—(୧) ଜୟଦ୍ରଥଙ୍କ ଜନ୍ମ ବୃତ୍ତାନ୍ତ (ସ, ୧୪୩, ୧୦୩-୧୧୪), ଭୀମଙ୍କର ଅଶ୍ୱତ୍ଥାମା ହସ୍ତୀବଧ (ଦ, ୧୯୦, ୧୪-୧୫) ଅର୍ଜୁନଙ୍କ ଜୟଦ୍ରଥ ବଧର ପ୍ରତିଜ୍ଞା (ଦ, ୭୩, ୧୯-୪୯), ଜୟଦ୍ରଥଙ୍କ ଦ୍ରୌପଦୀହରଣ ବୃତ୍ତାନ୍ତ (ସଂ,୪୮ଅ, ୧୨), ଜୟଦ୍ରଥଙ୍କ ଅପମାନ ଓ ଶିବଙ୍କୁ ତପସ୍ୟା କରି ବର ଲାଭ କରିବା ପ୍ରସଙ୍ଗ (ସଂ, ୪୨, ୧୩-୧୯), ଘଟୋତ୍କଚଙ୍କ ଅଲମ୍ବୁଷ ବଧ ବୃତ୍ତାନ୍ତ (ସଂ, ୧୦୯, ୧-୩୦), ଜୟଦ୍ରଥ ବଧ ବୃତ୍ତାନ୍ତ (ସଂ, ୧୪୬,୭୨-୧୪୪)

କେତେକ ବିଷୟ ବ୍ୟାସଦେବ କେବଳ ସୂଚନା ଦେଇଥିଲେ ହେଁ, ସାରଳା ଦାସ ତାହାର ବିସ୍ତୃତ ବିବରଣ ଦେଇଅଛନ୍ତି । ଯଥା :—

(୧) ମୂଳ ମହାଭାରତରେ ଅଭିମନ୍ୟୁଙ୍କ ପତ୍ନୀ ଉତ୍ତରାଙ୍କର ବିଳାପ ମାତ୍ର ସୂଚିତ ହୋଇଅଛି । ଉକ୍ତ ଅଛି—"ଏବଂ ବିଲପତୀଂ ଦୀନାଂ ସୁଭଦ୍ରା ଶୋକକର୍ଶିତାମ୍ । ଅନ୍ୟପଦ୍ୟତ ପାଞ୍ଚାଳୀ ବୈରାଟୀସଂହିତାଂ ତଦା ।" (ଦ°, ୭୮, ୩୬) ସାରଳା ଦାସ ଉତ୍ତରାଙ୍କ ବିଳାପ ଓ ଶ୍ରୀକୃଷ୍ଣଙ୍କ ଆଶ୍ୱାସନା ପ୍ରଦାନ ବୃତ୍ତାନ୍ତକୁ ସୁବିସ୍ତାରିତ କରିଅଛନ୍ତି । (ସା, ୧୫୩-୧୫୮ ପୃ) (୨) ସଂସ୍କୃତ ମହାଭାରତରେ ଚକ୍ରବ୍ୟୂହ ଭେଦ ସମ୍ପର୍କୀୟ ଜ୍ଞାନ ଅଭିମନ୍ୟୁ ଲାଭ କରିଥିବା ପ୍ରସଙ୍ଗ ଅଛି । ସେଠାରେ କୁହାଯାଇଛି ଯେ, ଅଭିମନ୍ୟୁ ତାଙ୍କ ପିତାଙ୍କଠାରୁ ବ୍ୟୂହ ଭେଦର କୌଶଳ ଶିକ୍ଷା କରିଥିଲେ ହେଁ, ବିପଦ କାଳରେ ତନ୍ମଧ୍ୟରୁ ନିର୍ଗତ ହେବାର କୌଶଳ ଅବଗତ ହୋଇପାରି ନଥିଲେ । (ସଂ, ୩୫, ୧୯) ଏହି ସଂକ୍ଷିପ୍ତ ସୂଚନାକୁ ସାରଳା ସୁବିସ୍ତାରିତ କରିଦେଇଛନ୍ତି । ଅଭିମନ୍ୟୁ ମାତୃଗର୍ଭରେ ଥିବାବେଳେ ଅର୍ଜୁନ ସୁଭଦ୍ରାଙ୍କ ଆଗରେ ଚକ୍ରବ୍ୟୂହ-ଭେଦର ବିଧି ବର୍ଣ୍ଣନା କରିବା, ବ୍ୟୂହରୁ ବାହାରିବା ବିଷୟ ବୁଝାଇବା ସମୟରେ ସୁଭଦ୍ରା ନିଦ୍ରିତ ହେବା ଏବଂ ତାହାର ପରିଣାମରେ ସେ ବ୍ୟୂହରୁ ବାହାରି ଆସିବାର ବିଧି ଅବଗତ ନ ହୋଇଥିବା ଆଦି ବୃତ୍ତାନ୍ତ ସାରଳା ବର୍ଣ୍ଣନା କରିଛନ୍ତି । (ସା, ୫୨-୫୩ ପୃ)

## (ଚ) ଘଟଣାକ୍ରମରେ ପରିବର୍ତ୍ତନ ।

ସାରଳା ଦାସ ଘଟଣାର କ୍ରମ କେତେକ ସ୍ଥଳରେ ପରିବର୍ତ୍ତନ କରିଥିବାର ଦେଖାଯାଏ । ଏପରି ପରିବର୍ତ୍ତନର ବହୁ ଦୃଷ୍ଟାନ୍ତ ଦ୍ରୋଣପର୍ବରୁ ଦିଆଯାଇପାରେ । ଏଠାରେ କେବଳ କେତେଗୋଟି ଘଟଣାର ଉଲ୍ଲେଖ କରାଯାଉଛି । (୧) ସଂସ୍କୃତ ମହାଭାରତରେ ଚକ୍ରବ୍ୟୂହ ଗଠନ ଓ ଅଭିମନ୍ୟୁଙ୍କ ବଧ ଘଟଣାଟି ଦ୍ରୋଣଙ୍କ

ସେନାପତିତ୍ୱର ତୃତୀୟ ଦିବସର ଘଟଣା । କିନ୍ତୁ ସାରଳା ମହାଭାରତରେ ଚକ୍ରବ୍ୟୂହଟିର ନିର୍ମାଣ ଓ ଅଭିମନ୍ୟୁ-ବଧ ଦ୍ୱିତୀୟ ଦିବସର କଥା ।

"ଶ୍ରୀକୃଷ୍ଣ ଦଶଦିନେ ସମର କଲେ ଶରଶଯ୍ୟା
ଦ୍ରୋଣଙ୍କ ପ୍ରଥମ ସମରେ ପଡ଼ିଲେ ନବସହସ୍ର ରାଜା ।
ଦୁଇ ଦିନେ ଚକ୍ରଭୂମେ ନାଶଗଲା ଅଭିମନ୍ୟୁ
ତିନେ ଶକଟ ଭୂମେ ପଡ଼ିଲେ ସିନ୍ଧୁରାଜାର ତନୁ ।" (ସା,ପୃ ୪୧)

(୨) ମୂଳ ଗ୍ରନ୍ଥରେ ଜୟଦ୍ରଥଙ୍କ ବଧ ଓ ଶକଟବ୍ୟୂହ ବୃତ୍ତାନ୍ତ ଚତୁର୍ଥ ଦିବସର କଥା । କିନ୍ତୁ ସାରଳା ମହାଭାରତରେ ସେ ସବୁ ତୃତୀୟ ଦିବସର ଘଟଣା । ସାରଳାଙ୍କ 'ତିନେ ଶକଟ ଭୂମେ ପଡ଼ିଲେ ସିନ୍ଧୁରାଜାର ତନୁ' ଉକ୍ତିରୁ ଏହା ସ୍ପଷ୍ଟ ହୁଏ । (୩) ସୁଶର୍ମା ହସ୍ତୀ ଓ ଭଗଦତ୍ତ ରାଜାଙ୍କ ବଧ ବୃତ୍ତାନ୍ତଟି ବ୍ୟାସଙ୍କ ଲେଖାରେ ଦ୍ରୋଣଙ୍କ ସେନାପତିତ୍ୱର ଦ୍ୱିତୀୟ ଦିବସର ଘଟଣା । ସାରଳାଙ୍କ ଲେଖାରେ ଏହା ସବୁ ପଞ୍ଚମ ଦିବସର ଘଟଣା ଏବଂ ଦ୍ରୋଣବଧର ପର କଥା ।

(୪) ମୂଳ ଗ୍ରନ୍ଥ ଅନୁସାରେ ଦ୍ରୋଣ ଚତୁର୍ଥ ଦିନ ରାତ୍ରି ଯୁଦ୍ଧରେ ଦ୍ରୁପଦ ଓ ବିରାଟଙ୍କୁ ବଧ କରିଥିଲେ । (ପ°, ୧୮୬ଅ) କିନ୍ତୁ ସାରଳା ଦାସ ବିରାଟ ରାଜାଙ୍କ ମୃତ୍ୟୁକୁ ଦ୍ରୁପଦଙ୍କ ମୃତ୍ୟୁର ବହୁ ପରେ ପ୍ରଦର୍ଶନ କରିଛନ୍ତି । (ସା, ପୃ ୩୬୯-୩୭୦) ସଂସ୍କୃତ ମହାଭାରତରେ ବିରାଟଙ୍କ ନିଧନ ଘଟୋତ୍କଚଙ୍କ ମୃତ୍ୟୁର ପରେ ବର୍ଣ୍ଣିତ ହୋଇଅଛି । କିନ୍ତୁ ସାରଳାଙ୍କ ଗ୍ରନ୍ଥରେ ପ୍ରଥମେ ବିରାଟଙ୍କ ବଧ ବୃତ୍ତାନ୍ତ ପ୍ରଦର୍ଶିତ ହୋଇଛି ପରେ ଘଟୋତ୍କଚ-ବଧ ବର୍ଣ୍ଣନା କରାଯାଇଛି ।

ଉପରୋକ୍ତ ଆଲୋଚନାରୁ ପ୍ରତିପନ୍ନ ହୁଏ ଯେ, ସାରଳା ଦାସ ମୂଳଗ୍ରନ୍ଥର ବିଷୟବସ୍ତୁକୁ ସ୍ଥୂଳ ରୂପରେ ଗ୍ରହଣ କରିଥିଲେ ହେଁ, ବହୁ ମୌଳିକତା ରକ୍ଷା କରିଛନ୍ତି । ସଂସ୍କୃତ ମହାଭାରତ ବର୍ଣ୍ଣିତ କେତେକ ଘଟଣା ଓ ପ୍ରସଙ୍ଗର ବର୍ଣ୍ଣନାରେ କବି ପରିବର୍ତ୍ତନ ଆଣିଛନ୍ତି । କେତେକ ସ୍ଥଳରେ ମୂଳ ପ୍ରସଙ୍ଗର ପରିହାର କରାଯାଇଛି ଓ ନୂତନ ବୃତ୍ତାନ୍ତର ଯୋଗ ମଧ୍ୟ ହୋଇଅଛି । କୌଣସି କୌଣସି ସ୍ଥଳରେ ସାରଳା ମୂଳର ପ୍ରସଙ୍ଗକୁ ସଂକ୍ଷେପରେ ଲେଖିଛନ୍ତି, ଅଥବା ବିସ୍ତୃତ କରି ଦେଇଛନ୍ତି । କେତେକ ଘଟଣାର କ୍ରମ ମଧ୍ୟ ସେ ପରିବର୍ତ୍ତନ କରିଛନ୍ତି । କୌଣସି ସ୍ଥଳରେ କବି ମୂଳ ବର୍ଣ୍ଣନାର ଅନୁବାଦ କରି ନାହାନ୍ତି । ସ୍ୱାଧୀନ ଭାବରେ ପର୍ବଟିକୁ ସେ ଲେଖିଯାଇ ଅଛନ୍ତି । ସାରଳାଙ୍କ ମହାଭାରତ ଯେ ଏକ ମୌଳିକ ଓ ସ୍ୱତନ୍ତ୍ର ସୃଷ୍ଟି; ତାହା କେବଳ ଦ୍ରୋଣପର୍ବର ଅନୁଶୀଳନରୁ ମଧ୍ୟ ପ୍ରତିପାଦିତ ହୋଇପାରେ ।

—o—

# କର୍ଣ୍ଣପର୍ବ

ବୈଷ୍ଣବ ଚରଣ ସାମଲ

---

ମହାଭାରତର ଅଷ୍ଟାଦଶ ପର୍ବ ମଧ୍ୟରେ କର୍ଣ୍ଣପର୍ବ ସ୍ୱାଭିମାନ, ବୀରତ୍ୱ, ବିଶ୍ୱାସ ଓ ଆତ୍ମୋତ୍ସର୍ଗ ଦୃଷ୍ଟିରୁ ଏକ ଉଲ୍ଲେଖଯୋଗ୍ୟ ପର୍ବ । ଯୁଦ୍ଧ ପର୍ବ ରୂପେ ଭୀଷ୍ମପର୍ବ ଓ ଦ୍ରୋଣପର୍ବ ଉତ୍ତେଜକ, ସନ୍ଦେହ ନାହିଁ । ତତ୍ତ୍ୱ ଓ ଜିଜ୍ଞାସା ଦୃଷ୍ଟିରୁ ମଧ୍ୟ ଜ୍ଞାନବୋଧୀପକ । କିନ୍ତୁ କର୍ଣ୍ଣ ପର୍ବ ହିଁ ଅନେକ ଦୃଷ୍ଟିକୋଣରୁ ଶୀର୍ଷସ୍ଥାନୀୟ । ଭୀଷ୍ମ ଓ ଦ୍ରୋଣ ଉଭୟେ ମହାରଥୀ । ଉଭୟେ ମଧ୍ୟ ଅଭିଶପ୍ତ । ଭୀଷ୍ମ ଅଭିଶପ୍ତ ଅମ୍ବା କନ୍ୟା ଦ୍ୱାରା, ଦ୍ରୋଣ ଅଭିଶପ୍ତ ନିଜର ଜନକ ଭରଦ୍ୱାଜଙ୍କ ଦ୍ୱାରା । ତଥାପି ସେମାନଙ୍କ ହସ୍ତରେ ଅସ୍ତ୍ର ଥିଲା ପର୍ଯ୍ୟନ୍ତ ସେମାନେ ଅପରାଜେୟ । ଅଥଚ ସେମାନେ ମୃତ୍ୟୁ ବରଣ କଲେ । ସେମାନେ ମହାରଥୀ, ସନ୍ଦେହ ନାହିଁ । ଦୁର୍ଯ୍ୟୋଧନଙ୍କ ଅନ୍ନରେ ସେମାନେ ପ୍ରତିପାଳିତ । ତେଣୁ ଅନ୍ନ ଋଣ ପରିଶୋଧ ପାଇଁ, ଦୁର୍ଯ୍ୟୋଧନ ଅନ୍ୟାୟ କରୁଥିବା ଜାଣି ମଧ୍ୟ ତାଙ୍କର ସପକ୍ଷରେ ପ୍ରଧାନ ସେନାପତିତ୍ୱ ବରଣ କରି ନେଇଥିଲେ । ସେମାନଙ୍କର ଶରୀର କୌରବ ପକ୍ଷରେ ଥିଲେ ହେଁ ଆତ୍ମା ଓ ହୃଦୟ ଥିଲା ପାଣ୍ଡବଙ୍କ ପକ୍ଷରେ । ଅଥଚ କର୍ଣ୍ଣ ଥିଲେ ମହାଭାରତର ଋଜୁରେଖା । ସେ ମଧ୍ୟ ମହାରଥୀ । ସେ ସ୍ୱାଭିମାନୀ । ସେ ବୀର ବରେଣ୍ୟ । ଅବିବାହିତା କୁନ୍ତୀ-ଗର୍ଭ-ସଞ୍ଜାତ ପରିତ୍ୟକ୍ତ ରାଧା-ଅଧିରଥ ପାଳିତ କର୍ଣ୍ଣ ଆପଣାର ନିଷ୍ଠା-ଏକାଗ୍ରତା-ସାଧନା ବଳରେ ପରଶୁରାମଙ୍କ ଶିଷ୍ୟତ୍ୱ ଲାଭ କରିବାର ଗୌରବ ଲାଭ କରିଥିଲେ । କୌରବ-କୁଳ-ଶେଖର ଦୃପ୍ତି ନାଧିପତି ମହାମାନୀ ଦୁର୍ଯ୍ୟୋଧନଙ୍କର ଅନ୍ତରଙ୍ଗ ବନ୍ଧୁ ଭାବରେ ପ୍ରତିଷ୍ଠା ଅର୍ଜନ କରି ଅଙ୍ଗ ଦେଶର ଅଧୀଶ୍ୱର ହୋଇ ପାରିଥିଲେ । ସେହି ଥିଲେ ପ୍ରକୃତରେ ସୁଯୋଧନ ଦୁର୍ଯ୍ୟୋଧନଙ୍କର ପରମବନ୍ଧୁ । ଦୁର୍ଯ୍ୟୋଧନଙ୍କ ବିପଦବେଳେ ସେହି ପ୍ରକୃତରେ ଥିଲେ ଅକପଟ ସାହାଯ୍ୟକର୍ତ୍ତା । ଯେତେବେଳେ ସମସ୍ତେ ତାଙ୍କୁ ସୂତ ପୁତ୍ର ରୂପେ ଘୃଣା କରୁଥିଲେ ଓ ରାଜନ୍ୟମଣ୍ଡଳୀରେ ସ୍ଥାନ ଲାଭ କରିବା ତାଙ୍କ ପକ୍ଷରେ ଥିଲା ଅସମ୍ଭବ ସେତେବେଳେ ଦୁର୍ଯ୍ୟୋଧନହିଁ ତାଙ୍କୁ ଦେଇଥିଲେ ଉପଯୁକ୍ତ ବନ୍ଧୁର ସମ୍ମାନ । ସେହି କାରଣରୁ କର୍ଣ୍ଣଙ୍କର ତାଙ୍କ ପ୍ରତି ଥିଲା ଗଭୀର ଅନୁରକ୍ତି ଓ ବିଶ୍ୱାସ । ଏହି ଅନୁରକ୍ତି ଅନ୍ନଋଣୀ ଭୀଷ୍ମ ବା ଦ୍ରୋଣଙ୍କର ଅନୁରକ୍ତି ନୁହେଁ; ଏହା ଥିଲା ବନ୍ଧୁତା ଓ ଆନ୍ତରିକତାର ଅନୁରକ୍ତି, ଆତ୍ମମର୍ଯ୍ୟାଦା ଓ ଆତ୍ମ ବିଶ୍ୱାସର ଅନୁରକ୍ତି । ତାଙ୍କର ଦର୍ପିତ ପୌରୁଷର ଅଭିବ୍ୟକ୍ତି ଥିଲା,—

'ଦୈବାୟତ୍ତଂ କୁଳେଜନ୍ମ ମଦାୟତ୍ତଂ ତୁ ପୌରୁଷମ୍ ।'

— ୧ —

ଉପରୋକ୍ତ ଶସ୍ତ୍ରରୁ କର୍ଣ୍ଣପର୍ବ ବୈଶିଷ୍ଟ୍ୟପୂର୍ଣ୍ଣ । ବ୍ୟାସକୃତ ମହାଭାରତର କର୍ଣ୍ଣ ପର୍ବରେ ଦ୍ରୋଣଙ୍କ ନିଧନ ପରେ ଦୁର୍ଯ୍ୟୋଧନ କୌରବ ବାହିନୀର ପ୍ରଧାନ ସେନାପତି ରୂପେ କର୍ଣ୍ଣଙ୍କୁ ବରଣ କରିବାପାଇଁ ମନେ ମନେ ସ୍ଥିର କରିଥିଲେ । ମହାଭାରତ ଯୁଦ୍ଧର ଷୋଡ଼ଶ ଦିବସ ଆରମ୍ଭରୁ କର୍ଣ୍ଣ ହେଲେ କୌରବ ବାହିନୀର ପ୍ରଧାନ ସେନାପତି । ସଂସ୍କୃତ ମହାଭାରତର କର୍ଣ୍ଣ ପର୍ବର ଆରମ୍ଭରୁ ନଅଗୋଟି ଅଧ୍ୟାୟରେ କର୍ଣ୍ଣଙ୍କର ସଂକ୍ଷିପ୍ତ ବିବରଣୀ ଓ ମୃତ୍ୟୁ ସମ୍ପର୍କରେ ବୈଶଂପାୟନ ଓ ଜନ୍ମେଜୟ ଉବାଚ ମଧ୍ୟ ଦେଇ ବର୍ଣ୍ଣିତ । ଏହି ପ୍ରସଙ୍ଗରେ ଶୋକସନ୍ତପ୍ତ ଧୃତରାଷ୍ଟ୍ରଙ୍କୁ ସଞ୍ଜୟ କର୍ଣ୍ଣଙ୍କ ଯୁଦ୍ଧ ଓ ମୃତ୍ୟୁ ସମ୍ପର୍କରେ ଅବହିତ କରାଇ ଅଛନ୍ତି । ଏହି ପର୍ବର ପଞ୍ଚମ ଅଧ୍ୟାୟରୁ ନବମ ଅଧ୍ୟାୟ ଶେଷଯାଏ, ଅର୍ଥାତ୍ କର୍ଣ୍ଣଙ୍କ ମୃତ୍ୟୁଯାଏ ଉଭୟ ପକ୍ଷରୁ ଯେଉଁ ଯେଉଁ ବୀରମାନେ ମୃତ୍ୟୁ ବରଣ କରିଥିଲେ ସେ ବିଷୟରେ ଉଲ୍ଲେଖ ଅଛି । ଏହାପରେ କର୍ଣ୍ଣପର୍ବର ବିସ୍ତୃତ ବିବରଣୀ ଅନ୍ୟାନ୍ୟ ଅଧ୍ୟାୟ ମାନଙ୍କରେ ବର୍ଣ୍ଣିତ । କର୍ଣ୍ଣ ପ୍ରଧାନ ସେନାପତି ରୂପେ ଅଧିଷ୍ଠିତ ହେଲା ପରେ ଦୁର୍ଯ୍ୟୋଧନଙ୍କୁ ଆଶ୍ୱାସନା ଦେଲେ—

'ସେନାପତିର୍ଭବିଷ୍ୟାମି ତବାହଂ ନାତ୍ରସଂଶୟଃ
ସ୍ଥିରୋ ଭବ ମହାରାଜ ଜିତାନ୍‌ବିଦ୍ଧି ଚ ପାଣ୍ଡବାନ୍ ।'

କର୍ଣ୍ଣ ! ୭।୫୪

ମୂଳ ମହାଭାରତକୁ ଅନୁସରଣ କରି ମାଟିର ମହାକବି ସାରଳା ଦାସ ଓଡ଼ିଆରେ ମହାଭାରତ ରଚନା କରିଅଛନ୍ତି । ଏହା ମୂଳ ମହାଭାରତର ଅନୁବାଦ ନୁହେଁ; ଅନୁସୃଷ୍ଟି । ତେଣୁ ମୌଳିକ କଳ୍ପନା ବିଳାସରେ ଏହା ଏକ ସ୍ୱତନ୍ତ୍ର ମହାଗ୍ରନ୍ଥରେ ପରିଣତ ହୋଇ ଯାଇଛି । ଏହା ହୋଇଛି ଓଡ଼ିଆ ଜାତିର ଜୀବନ-ବେଦ, ସଂସ୍କୃତିର ମହାମନ୍ତ୍ର, ଜାତୀୟତାର ନିର୍ଘୋଷ । ଯେଉଁମାନେ ଅନୁବାଦ ନ କରି ଅନୁସରଣ କରନ୍ତି ସେମାନେ ଆପଣାର କଳ୍ପନା ବିଳାସ, ରୁଚି, ସାମାଜିକ ଅବବୋଧ, ଚିନ୍ତନ ଓ ଆଦର୍ଶକୁ ପ୍ରସଙ୍ଗ ଛଳେ ପରିବେଷଣ କରନ୍ତି । ସାରଳା ଦାସ ଠିକ୍ ଏହାହିଁ କରିଅଛନ୍ତି । ଆପଣାର ଏକ ନିଜସ୍ୱ ମନୋରମ ଜଗତ ତିଆରି କରି ସେହି ଜଗତରୁ ନାନା ବିଷୟ ଓ ଚରିତ୍ରକୁ ଚୟନ କରି ଆଣିଛନ୍ତି ଏବଂ ନିଜର ସାମାଜିକ ଅବବୋଧ ଓ ଆଦର୍ଶକୁ ଉପସ୍ଥାପନ କରିଛନ୍ତି । ଏହାଦ୍ୱାରା ମୂଳ ମହାଭାରତର ଗାମ୍ଭୀର୍ଯ୍ୟ କେତେକ ପରିମାଣରେ କ୍ଷୁର୍ଣ୍ଣ ହୋଇଥିଲେ ହେଁ, ଏହାର ସ୍ୱାଭାବିକତା ଓ ସୌକୁମାର୍ଯ୍ୟ ନିଶ୍ଚିତ ଅଭିନନ୍ଦନୀୟ ।

କର୍ଣ୍ଣ ପ୍ରଧାନ ସେନାପତି ହେଲା ପରେ ମାତ୍ର ଦୁଇଦିନ ଯୁଦ୍ଧ କରିଥିଲେ । ମୂଳ ମହାଭାରତରେ ଏ ସମ୍ପର୍କରେ ଉଲ୍ଲେଖ ଅଛି:—

'ଉଦ୍ୟୋଦ୍ୱ୍ୟ ଦିବସ ଯୁଦ୍ଧଂ କୁରୁପାଣ୍ଡବ ସେନୟୋଃ
କର୍ଣ୍ଣେ ସେନାପତୌ ରାଜନ୍ ବଭୂବାଦ୍ଭୁତ ଦାରୁଣଂ ।'

—କର୍ଣ୍ଣପର୍ବ—

ସାରଳା ମହାଭାରତରେ (ଅର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ) କିନ୍ତୁ ଉଲ୍ଲେଖ ଅଛି କର୍ଣ୍ଣ ଅଢ଼େଇଦିନ ଯୁଦ୍ଧ କରି ମଧ୍ୟାହ୍ନ ସମୟରେ ନିହତ ହେଲେ । ତାଙ୍କର ମୃତ୍ୟୁ ହେବାରୁ ଦୁର୍ଯ୍ୟୋଧନ ପ୍ରମୁଖ ବିଳାପ କରିବାରୁ ଅର୍ଦ୍ଧରାତ୍ରି ଅତୀତ ହୋଇଗଲା । ତେଣୁ କର୍ଣ୍ଣାହବ ଶେଷ ବେଳକୁ ତିନିଦିନ ପୂର୍ଣ୍ଣ ହୋଇଯିବାରୁ ସଙ୍କଳିତ ଭାରତ ଯୁଦ୍ଧର ଅଠରଦିନ ପୂର୍ଣ୍ଣ ହୋଇଗଲା । ଶଲ୍ୟଙ୍କ ଯୁଦ୍ଧ ଓ ମୃତ୍ୟୁ, ଦୁର୍ଯ୍ୟୋଧନଙ୍କ ଯୁଦ୍ଧ ଓ ମୃତ୍ୟୁ ଆଦି ଘଟଣା ଅଠର ଦିନପରେ ହୋଇଥିଲା ବୋଲି ଏଥିରୁ ଅନୁମାନ କରାଯାଇପାରେ । ଏହା କିନ୍ତୁ ସମ୍ଭବ ନୁହେଁ । ପ୍ରକୃତ ସାରଳା ଦାସ ବର୍ଣ୍ଣନା କରୁ କରୁ ଏପରି ସମୟଗତ ତ୍ରୁଟି କରି ଦେଇଛନ୍ତି । ସ୍ୱର୍ଗତ ଗୋପୀନାଥ ନନ୍ଦ 'ଶ୍ରୀ ଭାରତ ଦର୍ପଣ'ରେ ସାରଳା ଦାସଙ୍କର ଯେଉଁ ପୋଥିର ପାଠ ଉଦ୍ଧାର କରିଅଛନ୍ତି ସେଥିରେ କର୍ଣ୍ଣ ଦୁଇଦିନ ଯୁଦ୍ଧରେ ପ୍ରାଣ ହରାଇଥିବା ଓ ମହାଭାରତ ଯୁଦ୍ଧ ସତର ଦିନରେ ପହଞ୍ଚିଥିବା କଥା ଉଲ୍ଲେଖ ଅଛି ।

'ଭୀଷ୍ମ ଦଶଦିନ ଯେ ଦ୍ରୋଣ ପଞ୍ଚ ଦିବସ
ଦୁଇ ଦିନେ କର୍ଣ୍ଣ ହେଲା ପ୍ରାଣେ ନାଶ ।
ସତର ଦିନ ଆଜକୁ ହୋଇଲା ସଂପୂର୍ଣ୍ଣ
କୁମ୍ଭମାସ କୃଷ୍ଣ ପକ୍ଷ ଚତୁର୍ଥୀର ଦିନ ।'

କେଉଁ ପୋଥିର ପାଠ ଠିକ୍ ତାହା କହିବା ସମ୍ଭବ ନୁହେଁ । ଯଦି ଗୋପୀନାଥଙ୍କ ଉଦ୍ଧୃତ ପୋଥିର ପାଠକୁ ଧରାଯାଏ ତେବେ ସାରଳା ଦାସ ମୂଳ ମହାଭାରତର ସମୟକୁ ଠିକ୍ ରଖିଛନ୍ତି । ଯଦି ଡାଃ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ ପୋଥିକୁ ଧରାଯାଏ ତେବେ ସାରଳା ଦାସଙ୍କ ସମୟ ବିନ୍ୟାସରେ ବ୍ୟତିକ୍ରମ ପରିଲକ୍ଷିତ ହୁଏ । ଏହି ବ୍ୟତିକ୍ରମ ନିଶ୍ଚିତ ରୂପେ ତ୍ରୁଟିପୂର୍ଣ୍ଣ । (ଏହି ବ୍ୟତିକ୍ରମ କେବଳ ସମୟ ବିନ୍ୟାସରେ ନୁହେଁ; ବିଷୟ ଓ ଚରିତ୍ର ଉପସ୍ଥାପନାରେ ମଧ୍ୟ ।) ସ୍ଥୂଳ ଘଟଣାମାନଙ୍କର ମୌଳିକ ସୌସାଦୃଶ୍ୟ ଥିଲେହେଁ ବୈଷମ୍ୟ ସମଧିକ । ଘଟଣାମାନଙ୍କର ଆନୁପୂର୍ବିକତା ମଧ୍ୟ ଅସଂରକ୍ଷିତ । ପ୍ରଥମ ଦିନ ଯୁଦ୍ଧରେ ଶଲ୍ୟ କର୍ଣ୍ଣଙ୍କର ସାରଥି ନଥିଲେ । ଦ୍ୱିତୀୟଦିନ ଯୁଦ୍ଧରେ କର୍ଣ୍ଣଙ୍କ ଅନୁରୋଧକ୍ରମେ ଦୁର୍ଯ୍ୟୋଧନ ମଦ୍ରାଧିପତି ଶଲ୍ୟଙ୍କୁ ସାରଥି ହେବାକୁ ନିବେଦନ କଲେ । ସାରଳା ମହାଭାରତରେ କିନ୍ତୁ ପ୍ରଥମ ଦିବସରୁ ଶଲ୍ୟ ଦୁର୍ଯ୍ୟୋଧନଙ୍କ ଅନୁରୋଧ କ୍ରମେ କର୍ଣ୍ଣଙ୍କର ସାରଥି ହୋଇଛନ୍ତି । ମୂଳ ମହାଭାରତରେ ପ୍ରଥମଦିନ କର୍ଣ୍ଣ ଯୁଦ୍ଧର ଆରମ୍ଭରେ ମକର ବ୍ୟୂହ ରଚନା କଲେ ।

ଉଭୟ ପକ୍ଷର ଶଙ୍ଖ ବାଜି ଉଠିବା ମାତ୍ରେ ପ୍ରବଳ ଯୁଦ୍ଧ ଆରମ୍ଭ ହୋଇଗଲା ଓ ଉଭୟ ପକ୍ଷରୁ ବହୁ ସୈନ୍ୟ ନିହତ ହେଲେ । ଏହି ଯୁଦ୍ଧରେ ଅଙ୍ଗ-ବଙ୍ଗ-କଳିଙ୍ଗ-ନିଷାଦ-ପୁଣ୍ଡ୍ର-କୋଶଳ-ମଗଧ-ତାମ୍ରଲିପ୍ତି-ମଦ୍ର ପ୍ରଭୃତି ଦେଶର ମହାମହା ରଥୀମାନେ ଯୋଗ ଦେଇଥିଲେ । ଏପରି ଯୁଦ୍ଧ କେବେ ହୋଇ ନଥିଲା ବା ଭବିଷ୍ୟତରେ ମଧ୍ୟ ହେବନାହିଁ । * ପାଣ୍ଡବ ସୈନ୍ୟମାନଙ୍କୁ ଉତ୍ସାହ ଦେବା ଲାଗି ନକୁଳ ଦକ୍ଷତାର ସହିତ ଶର ସନ୍ଧାନ କରି କର୍ଣ୍ଣଙ୍କ ସାରଥିକୁ ମାରିଦେଲେ । କର୍ଣ୍ଣ ନକୁଳଙ୍କ ପ୍ରତି ତୀବ୍ର ଭାବରେ ପ୍ରତିଆକ୍ରମଣ କରିବାରୁ ନକୁଳ ଭୟଭୀତ ହୋଇ ପଳାୟନ କଲେ । ମାତ୍ର କର୍ଣ୍ଣ ତାଙ୍କୁ ଧନୁରେ ବାଣ ଯୋଗ କରି ଶର ସନ୍ଧାନ କରିବାରୁ ନକୁଳ ଯାଇପାରିଲେ ନାହିଁ । ନକୁଳଙ୍କ ଗଳାରେ ବାଣ ଲଗାଇ ଧନୁର୍ଦ୍ଦଣ୍ଡ ଦ୍ୱାରା କର୍ଣ୍ଣ ତାଙ୍କୁ ଭୁଲାଇବାକୁ ଲାଗିଲେ ମାତ୍ର କର୍ଣ୍ଣ ଜନନୀ କୁନ୍ତୀଙ୍କ ନିକଟରେ କରିଥିବା ଶପଥ କଥା ମନେ ପକାଇ ନକୁଳଙ୍କୁ ଛାଡ଼ିଦେଲେ । ଏକଦା ସେ ସହଦେବଙ୍କୁ ମଧ୍ୟ ହତ୍ୟା ନକରି ଛାଡ଼ିଦେଇଥିଲେ । ଏବେ ନକୁଳଙ୍କୁ ମଧ୍ୟ ଛାଡ଼ିଦେଲେ । ମୋଟାମୋଟି ଭାବରେ ମୂଳ ମହାଭାରତର ପ୍ରଥମ ଦିନର ଯୁଦ୍ଧରେ ଘଟିଥିବା ଏହି କଥାବସ୍ତୁକୁ ସାରଳା ଦାସ ଗ୍ରହଣ କରିଥିଲେ ମଧ୍ୟ କେତେକ ବ୍ୟତିକ୍ରମ କରିଅଛନ୍ତି । କର୍ଣ୍ଣ ପର୍ବର ଆରମ୍ଭରୁ ସଞ୍ଜୟ ଧୃତରାଷ୍ଟ୍ରଙ୍କୁ କୌରବ ମାନଙ୍କର ଅବଶ୍ୟମ୍ଭାବୀ ବିନାଶ ସମ୍ପର୍କରେ ଚେତେଇ ଦେଇ ଅଛନ୍ତି ।

ଦ୍ରୋଣଙ୍କ ମୃତ୍ୟୁର କାରଣ ବର୍ଣ୍ଣନା କରି ସାଇଲା ପରେ ସାରଳା ଦାସ କର୍ଣ୍ଣଙ୍କର ସେନାପତିତ୍ୱ ପ୍ରସଙ୍ଗର ଉଲ୍ଲେଖ କରିଅଛନ୍ତି । ମୂଳ ମହାଭାରତରେ ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ସେନାପତି କରିବା ଲାଗି ମନେ ମନେ ସ୍ଥିର କରିଥିଲେହେଁ; କର୍ଣ୍ଣଙ୍କ ବୀରତ୍ୱ ସମ୍ପର୍କରେ ସେ ଅବହିତ ଥିଲେହେଁ, *ଅନ୍ୟାନ୍ୟ ବୀରମାନଙ୍କ ଉପସ୍ଥିତିରେ ଯୁଦ୍ଧ ବନ୍ଦ କରିଦେବା ଲାଗି ପ୍ରସ୍ତାବ ଦେବା, ଅଶ୍ୱତ୍ଥାମଙ୍କ ପ୍ରସ୍ତାବ କ୍ରମେ କର୍ଣ୍ଣଙ୍କୁ ସେନାପତି ରୂପେ ବରଣ କରିବା ପ୍ରସଙ୍ଗ ବର୍ଣ୍ଣନା ଥିଲା ବେଳେ ସାରଳା ଦାସ ଏସବୁକୁ ପରିହାର କରିଅଛନ୍ତି । ସାରଳା ମହାଭାରତରେ ଦୁର୍ଯ୍ୟୋଧନ ନିଜେହିଁ କର୍ଣ୍ଣଙ୍କୁ ପ୍ରଧାନ ସେନାପତି ରୂପେ ବରଣ କରିଅଛନ୍ତି । କର୍ଣ୍ଣହିଁ ତାଙ୍କର ପ୍ରାଣ ସଖା । ତାଙ୍କୁ ସେ କହିଲେ ଭୀଷ୍ମ ଅଜୟ ହେଲେହେଁ ପାଣ୍ଡବଙ୍କ ପ୍ରତି ତାଙ୍କର ଥିଲା ଅନୁକମ୍ପା । ତେଣୁ ସେ ସ୍ୱଇଚ୍ଛାରେ ଶର ଶଯ୍ୟା ବରଣ କଲେ । ଦ୍ରୋଣ ଦୃଷ୍ଟଦ୍ୟୁମ୍ନର ମହାକ୍ଷତିସ୍ୱ ହେଲେହେଁ ପାଣ୍ଡବଙ୍କ ପାଇଁ ମୃତ୍ୟୁବରଣ କଲେ ।

---

* ନୈତାଦୃଶଂ ପୁନର୍ଯୁଦ୍ଧଂ ନ ଭୂତଂ ନ ଭବିଷ୍ୟତି ।

କର୍ଣ୍ଣ ପର୍ବ—ଶ୍ଳୋ୧୧/୨୮

* ପୁରନ୍ଦର ସମଂ ଯୁଦ୍ଧେ ମରୁଦ୍‌ଗଣ ସମଂ ବଳେ
କାର୍ତ୍ତବୀର୍ଯ୍ୟ ସମଂ ବୀର୍ଯ୍ୟେ କର୍ଣ୍ଣ ରାଜୋଽଗମନ୍ ମନଃ ।

କର୍ଣ୍ଣ ପର୍ବ-୨୨/୧୩

ପ୍ରଥମରୁ କର୍ଣ୍ଣଙ୍କୁ ପ୍ରଧାନ ସେନାପତି କରିଥିଲେ କୌରବଙ୍କର ଏପରି ବିପର୍ଯ୍ୟୟ ହୋଇ ନଥାନ୍ତା । ଦୁର୍ଯ୍ୟୋଧନ କର୍ଣ୍ଣଙ୍କୁ ପ୍ରଧାନ ସେନାପତି ରୂପେ ବରଣ କରି ତାଙ୍କୁ ଆଲିଙ୍ଗନ କଲେ । କର୍ଣ୍ଣ ମଧ୍ୟ ତାଙ୍କୁ ନିଶ୍ଚିତ ବିଜୟ ପାଇଁ ଆଶ୍ୱାସନା ଦେଲେ । ମୂଳ ମହାଭାରତରେ କର୍ଣ୍ଣ ପ୍ରଥମ ଦିନ ଏକାକୀ ଯୁଦ୍ଧ କଲା ପରେ ଦ୍ୱିତୀୟ ଦିନ ମଦ୍ରାଧିପତି ଶଲ୍ୟଙ୍କୁ ନିଜ ରଥର ସାରଥି ହେବାପାଇଁ ଦୁର୍ଯ୍ୟୋଧନଙ୍କୁ କହିଥିଲେ । ସାରଳା ଦାସ କିନ୍ତୁ ପ୍ରଥମ ଦିନ ଯୁଦ୍ଧରୁ ଶଲ୍ୟଙ୍କୁ କର୍ଣ୍ଣ-ରଥର ସାରଥି ହେବା ପ୍ରସଙ୍ଗ ବର୍ଣ୍ଣନା କରିଅଛନ୍ତି । ମୂଳ ମହାଭାରତରେ କର୍ଣ୍ଣ ଦୁର୍ଯ୍ୟୋଧନଙ୍କୁ କହିଛି ଯେ ସେ ଅର୍ଜ୍ଜୁନ ସମେତ ପାଣ୍ଡବମାନଙ୍କୁ ବିନାଶ କରିଦେବ ଯଦି ଶଲ୍ୟ ହେବେ ତାଙ୍କ ରଥର ସାରଥୀ । ମଦ୍ରରାଜ ଶଲ୍ୟଙ୍କ ପରି ଦକ୍ଷ ସାରଥି ଓ ଶକ୍ତିଶାଳୀ ଅନ୍ୟ କେହି ନାହାନ୍ତି । ତାଙ୍କ ପରି ମଧ୍ୟ ଅନ୍ୟ କେହି ଧନୁର୍ଦ୍ଧର ନାହାନ୍ତି ।

ଏକଥା ଶୁଣି ଶଲ୍ୟ ଭୟଙ୍କର କ୍ରୋଧ ପ୍ରକାଶ କଲେ । ସେ ବୀର, ସେ ଇଚ୍ଛା କଲେ ଦୁର୍ଯ୍ୟୋଧନଙ୍କର ସକଳ ଶତ୍ରୁଙ୍କୁ ଅକ୍ଲେଶରେ ବିନାଶ କରିପାରିବେ । ତାଙ୍କଠାରୁ ଜଣେ ନିକୃଷ୍ଟ ବ୍ୟକ୍ତି କର୍ଣ୍ଣଙ୍କର ସେ ସାରଥି ହେବେ ନାହିଁ । କର୍ଣ୍ଣ ଶୂଦ୍ର । ବ୍ରାହ୍ମଣ ଓ କ୍ଷତ୍ରିୟଙ୍କର ଶୂଦ୍ର ହେଉଛି ପରିଚାରକ । ଅଥଚ ସେ ହେବେ କର୍ଣ୍ଣ ରଥର ସାରଥି । ସେ ଯୁଦ୍ଧ କରିବାକୁ ଚାହାନ୍ତି ନାହିଁ । ବରଂ ନିଜ ଦେଶକୁ ସେ ଫେରି ଯିବା ଭଲ । *
ସାରଳା ମହାଭାରତରେ ଶଲ୍ୟ ଦୁର୍ଯ୍ୟୋଧନଙ୍କୁ ମଧ୍ୟ ଭର୍ତ୍ସନା କରିଅଛନ୍ତି :—

'ଆମ୍ଭେ ସମସ୍ତେ ଅନ୍ଧ ବୁଦ୍ଧି ସେ ଦିବ୍ୟ ଚକ୍ଷୁ
ଆମ୍ଭେ ସମସ୍ତେ ମୂର୍ଖ ବୁଦ୍ଧି ସେ ପଣ୍ଡିତ ଅଛୁ ।
ଆମ୍ଭେମାନେ ସର୍ବ୍ବସ୍ୱେଂ ବଧିର ଜଡ଼ କାଲ
ତୋହର ବଚନ ସେ ସୁଲଭ ଅମୂଲ୍ୟ ।
ଆମ୍ଭର ବଚନ ରାଜା ସବୁରି ଅଟଇ ବ୍ୟାଧି
ତୋହର ବଚନ ରାଜା ପରମ ମହୌଷଧି ।

---

* କୃଷିଶ୍ଚ ପାଶୁପାଲ୍ୟଂଚ ବିଶାଂ ଦାନଂ ଚ ସର୍ବଶଃ
ବ୍ରହ୍ମକ୍ଷତ୍ର ବିଶାଂ ଶୂଦ୍ରା ବିହିତାଃ ପରିଚାରକାଃ ।
ବ୍ରହ୍ମକ୍ଷତ୍ରସ୍ୟ ବିହିତା ସୂତାବୈ ପରିଚାରକାଃ
ନ ବିଟ୍ ଶୂଦ୍ରସ୍ୟ ତତ୍ରୈବ ଶୃଣୁ ବାକ୍ୟଂ ମମାନଘ ।
କର୍ଣ୍ଣ—୨୩।୩୫-୩୭

ଅବମାନମହଂ ପ୍ରାପ୍ୟ ନ ଯୋତ୍ସ୍ୟାମି କଥଂଚନ
ଆପୃଚ୍ଛ୍ୟ ତ୍ୱାଦ୍ୟ ଗାନ୍ଧାରେ ଗମିଷ୍ୟାମି ଯଥାଗତମ୍ ।
କର୍ଣ୍ଣ—୨୭।୩୯

ଆମ୍ଭର ବଚନ ରାଜା ଖଣ୍ଡାଗାର ହେଟି
ତୋହ୍ମୋର ବଚନ ରାଜା ପାଷାଣଗୋର ଗୋଟି ।

ଆମ୍ଭେମାନେ ରାଜା ସମସ୍ତେ ଅଟୁ ମନ୍ତୁ
ତୁହ୍ମ ସେ ରାଉଳ ହୋ ସମସ୍ତ ପ୍ରଜାପାଳୁ ।

ସତ୍ୟ ହେଉ କି ରାଜା ଅସତ୍ୟ ହେଉ
ତୋହ୍ମର ବଚନ ଗୋଟି ମେଣ୍ଟିବ ହାଦେ କେହୁ ।’

ସାରଳା ଦାସ ଶଲ୍ୟଙ୍କ ମୁଖରେ ଏହି ଯେଉଁ କଥା କୁହାଇ ଅଛନ୍ତି ତାହା ଏକାନ୍ତ ବାସ୍ତବ ଓ ତାତ୍ପର୍ଯ୍ୟ ପୂର୍ଣ୍ଣ । କ୍ଷମତାସୀନ ବ୍ୟକ୍ତି, ଯାହା ହେଉନା କାହିଁକି, ତାର କଥାକୁ ସମ୍ମତ କରିବାକୁ ବାଧ୍ୟ । ଏହି ଉକ୍ତି ମଧ୍ୟରେ ଅହଂପ୍ରମତ୍ତ କ୍ଷମତାଧର ବ୍ୟକ୍ତିପ୍ରତି ଶାଣିତ ବ୍ୟଂଜନା ପ୍ରକାଶିତ ହୋଇ ନାହିଁକି ? ଏପରି କଳ୍ପନା ମୂଳ ମହାଭାରତରେ ନାହିଁ । ଯେତେବେଳେ ଦୁର୍ଯ୍ୟୋଧନ ଶଲ୍ୟଙ୍କୁ କହିଲେ କର୍ଣ୍ଣ ରଥରେ ସାରଥି ହେବା ଲାଗି ସେତେବେଳେ ଶଲ୍ୟ ସ୍ପଷ୍ଟ ମନା କରିଦେଲେ । ବହୁ ବୁଝା ସୁଝା ପରେ ଶଲ୍ୟ ରାଜି ହେଲେ କର୍ଣ୍ଣଙ୍କର ସାରଥି ହେବାକୁ । ସେ କିନ୍ତୁ ଗୋଟିଏ ସର୍ତ୍ତ ରଖିଲେ । ସେହିସର୍ତ୍ତ ହେଉଛି ଯୁଦ୍ଧକ୍ଷେତ୍ରରେ ସେ କର୍ଣ୍ଣଙ୍କୁ ଯେତେ ଭର୍ତ୍ସନା କରି କହିବେ ତାକୁ ସେ ଗ୍ରହଣ କରିବ । † କର୍ଣ୍ଣ ମଧ୍ୟ ଏହି ସର୍ତ୍ତରେ ରାଜି ହେଲେ । ଅଧିକନ୍ତୁ କର୍ଣ୍ଣ ତାଙ୍କୁ ସହସ୍ରସ୍ୱର ରତ୍ନକୋଷ, ଏକ ସହସ୍ର ମତ୍ତଗଜ ଓ ଏକସହସ୍ର କନ୍ୟା ଦାନ ଦେବାକୁ କହିଲେ । ସେ ପୁଣି ନିଜର ଜନ୍ମଗୌରବ ଓ ବୀରତ୍ୱ ସଂପର୍କରେ କହିଲେ –

‘ନାପି ସୂତ କୁଳେ ଜାତଂ କର୍ଣ୍ଣ ମନ୍ୟେ କଥଂଚନ
ଦେବପୁତ୍ରମହଂ ମନ୍ୟେ କ୍ଷତ୍ରିୟାଣାଂ କୁଳୋଦ୍‌ଭବମ୍ ।

ସକୁଣ୍ଡଳଂ ସକବଚଂ ଦୀର୍ଘ ବାହୁ ମହାରଥମ୍
କଥମାଦିତ୍ୟ ସଦୃଶଂ ମୃଗୀ ବ୍ୟାଘ୍ରଂ ଜନିଷ୍ୟତି ।

ପଶ୍ୟ ହ୍ୟସ୍ୟ ଭୁଜୌ ପୀନୌ ନାଗରାଜ କରୋପମୌ
ବକ୍ଷଃ ପଶ୍ୟ ବିଶାଳଂ ଚ ସର୍ବଶତ୍ରୁ ନିବର୍ହଣମ୍ ।

କର୍ଣ୍ଣ – ୨୪/୧୫୯-୧୬୧

---

ସମୟଶ୍ଚ ହି ମେ ବୀର କଶ୍ଚିଦ୍ ବୈକର୍ତ୍ତନଂ ପ୍ରତି
ଉତ୍ସୃଜେୟଂ ଯଥାଶ୍ରଦ୍ଧମହଂ ବାଚୋଽସ୍ୟ ସଂନିଧୌ

କର୍ଣ୍ଣ – ୨୩/୫୩

କର୍ଣ୍ଣ ଆପଣାର ବୀରତ୍ୱ ସମ୍ପର୍କରେ କହିବାରୁ ଶଲ୍ୟ ତାଙ୍କୁ ତାଚ୍ଛଲ୍ୟ କଲେ । ✳ ସାରଳା ଦାସ ମଧ୍ୟ ଅନୁରୂପ ବର୍ଣ୍ଣନା କରିଅଛନ୍ତି । ଶଲ୍ୟ କର୍ଣ୍ଣଙ୍କୁ ବୀଭତ୍ସ ଭାବରେ ତାଚ୍ଛଲ୍ୟ କରିଛନ୍ତି ।

'କର୍ଣ୍ଣର ପ୍ରତଗ୍ୟାଂ ଶୁଣି ଶଲ୍ୟେ ବୋଇଲେ ଜୀବନ ତୋହର ପୋଡ଼ୁ ପୋଡ଼ୁ
ଯେ ତୋହର ସଙ୍ଗତେ ନଥାଇଁ ତାହାକୁ କହିବୁ ମୋତେ କମ୍ପା ଭଣ୍ଡୁ ।

ଆହୋ କର୍ଣ୍ଣ ଅପାର ପ୍ରତଜ୍ଞା ଯେ କରୁଥାନ୍ତି ମତ୍ତହାସ୍ତି
ଯେତେ ବେଳେ ଦେଖି ନଥ ନ୍ତି ସିଂଘର ତେଜ ମୂରତି ।

ସିଂଘକୁ ଦେଖିଲେ ଯେହ୍ନେ ପଳାଇ ନ ପାରନ୍ତି ଠାବ
ତୁ ଅଟୁ ମତ୍ତ ହାଥୀ ସିଂଘଟି ପାର୍ଥିବ ।

ଆହୋ କର୍ଣ୍ଣ ମହା ଘୋର ଅନ୍ଧକାର ଗ୍ରହ ଥାଇ ଘୋଟି
ଆଦିତ୍ୟ ତେଜ ଲାଗିଲେ ସେ ଯେହ୍ନେ ଯାଇ ଫିଟି ।

କର୍ଣ୍ଣ ଯେତେବେଳେ ଯୁଦ୍ଧରେ ନିଜର ବୀରତ୍ୱ ଦେଖାଇବାକୁ କହିଲେ ସେତେବେଳେ ଶଲ୍ୟ ପୁଣି ତାଙ୍କୁ ନାନା ଭାବରେ ଉପହାସ କଲେ । ସାରଳା ଦାସ ଯେଉଁ ପ୍ରସଙ୍ଗରେ ବର୍ଣ୍ଣନା କରିଅଛନ୍ତି ମୂଳ ମହାଭାରତରେ ଭିନ୍ନ ଭାବରେ ରହିଛି । ଯଦୁକୁଳ ତିଳକ ଶ୍ରୀକୃଷ୍ଣଙ୍କୁ ଭ୍ରୂକ୍ଷେପ ନକରି ଅର୍ଜ୍ଜୁନ ସୁଭଦ୍ରାକୁ ହରଣକରି ଆଣିଥିଲେ । ଅର୍ଜ୍ଜୁନହିଁ ରୁଦ୍ରଙ୍କୁ ବାହୁ ରଣରେ ପରାସ୍ତ କରିଥିଲେ । ଇନ୍ଦ୍ରଙ୍କୁ ପରାଜିତ କରି ଖାଣ୍ଡବ ବନ ଦହନ କରିବାକୁ ସମର୍ଥ ହୋଇଥିଲେ । ମୂଳ ମହାଭାରତର ଏହି ପ୍ରସଙ୍ଗକୁ ସାରଳାଦାସ ମୋଟା ମୋଟିଭାବରେ ଗ୍ରହଣ କରିଅଛନ୍ତି । ଶଲ୍ୟଙ୍କର ଏପରି କଟୁ କଥାରେ କର୍ଣ୍ଣ ବିଚଳିତ ହୋଇପଡ଼ିବାରୁ ଦୁର୍ଯ୍ୟୋଧନ ତାଙ୍କର ହାତଧରି ଅନ୍ୟ ସେପରି

---

✳ ସିଂହସିଂହ କେବାରଣାଂ ବୃହନ୍ତଂ
ବାଲୋ ମୂଢ଼ଃ କ୍ଷୁଦ୍ରମୃଗସ୍ତରସ୍ୱୀ
ସମାହ୍ୱୟସ୍ୱେହଂ ଦେବରବାଦ୍ୟ
ସମାହ୍ୱାନଂ ସୂତ ପୁନାର୍ଜ୍ଜୁନସ୍ୟ । ୩୫ ।

ମା ସୂତ ପୁତ୍ରାହ୍ୱୟ ରାଜପୁତ୍ରଂ
ମହାବୀର୍ଯ୍ୟଂ କେବାରଣଂ ଯଥୈବ
ବନେ ଶୃଗାଲଃ ପିଶିତସ୍ୟ ତୃପ୍ତୋ
ମା ପାର୍ଥମାସାଦ୍ୟ ବିନଙ୍କ୍ଷ୍ୟସିତ୍ୱମ୍ । ୩୬ ।

ନ କହି କର୍ଣ୍ଣ ରଥର ସାରଥୀ ହେବାକୁ ଅନୁରୋଧ କଲେ । ସେ କହିଲେ ଶ୍ରୀକୃଷ୍ଣ ପରମ ଶକ୍ତିଶାଳୀ ହୋଇ ମଧ୍ୟ ଅର୍ଜ୍ଜୁନଙ୍କ ରଥର ସାରଥୀ ହୋଇଛନ୍ତି । ଶଲ୍ୟ ଶ୍ରୀକୃଷ୍ଣଙ୍କ ଠାରୁ ଅଧିକ ଶକ୍ତିଶାଳୀ । ତ୍ରିପୁରାସୁରକୁ ବଧ କରିବା ଲାଗି ବ୍ରହ୍ମା ମଧ୍ୟ ମହାଦେବଙ୍କ ରଥର ସାରଥି ହୋଇଥିଲେ । ଏହି କାରଣରୁ ଶଲ୍ୟ ଅସୀମ ଶକ୍ତିଧର ହେଲେ ମଧ୍ୟ କର୍ଣ୍ଣଙ୍କ ରଥର ସାରଥି ହେବା ଅଯୋଗ୍ୟକର ନୁହେଁ । ଶ୍ରୀକୃଷ୍ଣଙ୍କଠାରୁ ଶଲ୍ୟ ଶକ୍ତିଶାଳୀ– ଏକଥା ଶୁଣିଲା ପରେ ଶଲ୍ୟ ମନେ ମନେ ଗର୍ବ ଅନୁଭବ କଲେ । ଏତଦ୍‌ବ୍ୟତୀତ ସେ ଯୁଧିଷ୍ଠିରଙ୍କୁ କଥାଦେଇ ଥିଲେ ଯେ ଯୁଦ୍ଧରେ ସେ କର୍ଣ୍ଣ ରଥରେ ସାରଥୀ ହୋଇ କର୍ଣ୍ଣଙ୍କୁ ତାଚ୍ଛଲ୍ୟପୂର୍ଣ୍ଣ କଥା କହି ତାଙ୍କୁ ମାନସିକ କରିଦେବେ । ଏହି କଥା ମନେ ପଡ଼ିବାରୁ ସେ କର୍ଣ୍ଣଙ୍କ ରଥରେ ସାରଥି ହେବାକୁ ସମ୍ମତି ପ୍ରକାଶ କଲେ । ଯୁଦ୍ଧ କ୍ଷେତ୍ରରେ ବାରମ୍ବାର ଶଲ୍ୟ କର୍ଣ୍ଣଙ୍କୁ ହତୋତ୍ସାହିତ କରାଇ ଅଛନ୍ତି । ମୂଳ ମହାଭାରତରେ କର୍ଣ୍ଣ ବାଧ୍ୟ ହୋଇ ଶଲ୍ୟଙ୍କୁ କହିଲେ—

ତ୍ୱଂ ତୁ ଦୁଷ୍ପ୍ରକୃତି ର୍ମୂଢ଼ୋ ମହାଯୁଦ୍ଧେ ହ୍ୟ କୋବିଦଃ
ଭୟାବତୀର୍ଣ୍ଣଃ ସଂତ୍ରାସାଦବଦ୍ଧଂ ବହୁଭାଷସେ । ୨୨ ।

ବାସୁଦେବ ସହସ୍ରଂ ବା ଫଲଗାନାନାଂ ଶତାନିଚ
ଅହମେକୋ ହନିଷ୍ୟାମି ଜୋଷମାସସ୍ୱ କୁଦେଶଜ । ୨୦ ।

କର୍ଣ୍ଣ ପର୍ବ— ୨୨ଅ

କେବଳ ଏତିକ ନୁହେଁ, ଶଲ୍ୟଙ୍କୁ କର୍ଣ୍ଣ ନାନା ପ୍ରକାର କଟୂକ୍ତିପୂର୍ଣ୍ଣ କଥା କହିଲେ । ମଦ୍ରଦେଶ ଲୋକ ସହିତ ପ୍ରୀତି ଅର୍ଥ ଶୋକ ସାଗରରେ ବୁଡ଼ିବା, ସେମାନେ ମିଥ୍ୟାବାଦୀ ସେମାନଙ୍କ ସ୍ତ୍ରୀମାନେ ସ୍ୱେଚ୍ଛାଚାରିଣୀ । ସେହିଦେଶର ଲୋକେ ଗୋମାଂସ ଭକ୍ଷଣ କରନ୍ତି । ମଦ୍ୟପାନ କରନ୍ତି । କ୍ଷତ୍ରିୟଙ୍କର ମଳ ଭିକ୍ଷାବୃତ୍ତି । ବ୍ରାହ୍ମଣମାନଙ୍କର ମଳ ମିଥ୍ୟା ପୃଥିବୀର ମଳ ବାହ୍ଲୀକ ଦେଶ । ସ୍ତ୍ରୀ ମାନଙ୍କର ମଳ ମଦ୍ରଦେଶର ସ୍ତ୍ରୀ । * ସେମାନେ

---

* କ୍ଷତ୍ରିୟସ୍ୟ ମଳଂ ଭୈକ୍ଷଂ ବ୍ରାହ୍ମଣସ୍ୟାନୃତଂ ମଳମ୍
ମଳଂ ପୃଥିବ୍ୟା ବାହ୍ଲୀକାଃ ସ୍ତ୍ରୀଣାଂ ମଦ୍ରସ୍ତ୍ରୀୟୋମଳମ୍ । ୬୮ ।

ମାନୁଷାଣଂ ମଳଂ ମ୍ଳେଚ୍ଛା ମ୍ଳେଚ୍ଛାନାଂ ମୌଷ୍ଟିକା ମଳମ୍
ମୌଷ୍ଟିକାନାଂ ମଳଂ ଶଣ୍ଢାଃ ଶଣ୍ଢାନାଂ ରାଜଯାଜକାଃ । ୭୦ ।

କର୍ଣ୍ଣ ପର୍ବ—୩୯ ଅ.

ଉଲଗ୍ନ ହୋଇ ନୃତ୍ୟ କରନ୍ତି । ସେମାନେ ନାନା ଦୁଷ୍କର୍ମରେ ପରିପୂର୍ଣ୍ଣ । * ଏକଥା ଶୁଣି ଶଲ୍ୟ କର୍ଣ୍ଣଙ୍କୁ ହଂସ ଓ କାକ କଥା କହିଲେ । ବୈଶ୍ୟ ପୁତ୍ରମାନଙ୍କର ଉଚ୍ଛିଷ୍ଟ ଭୋଜନ କରି ନିଜକୁ ବଳୀୟାର ମନେ କରୁଥିବା କାକ ହଂସମାନଙ୍କୁ ତାଚ୍ଛଲ୍ୟ କଲେ । ଆକାଶମାର୍ଗରେ ଉଡ଼ିବା- ପ୍ରତିଯୋଗିତା ପାଇଁ ସେମାନଙ୍କୁ ଆହ୍ୱାନ କଲେ । ହଂସ ଓ କାକ ମଧ୍ୟରେ ହେଲା ପ୍ରତିଯୋଗିତା । ଆଗରେ ବିପୁଳ ବିସ୍ତାରିତ ନୀଳ ସମୁଦ୍ରକୁ ଦେଖି କାକ ଭୟ କରିଗଲା । ସେ ନିରୁପାୟ ହୋଇ ହଂସର ପାଦଧରି ଶରଣାପନ୍ନ ହେଲା । ସେହିପରି କର୍ଣ୍ଣ ଦୁର୍ଯୋଧନଙ୍କର ଉଚ୍ଛିଷ୍ଟ ଭୋଜନକାରୀ । ତେଣୁ ସେ କାଲ ମଦ ବଶ୍ୱର ନକଲ ଅର୍ଜ୍ଜୁନଙ୍କୁ ମାରିବାକୁ ଗର୍ବ କରୁଛି । ଏହାପରେ କର୍ଣ୍ଣ କହିଲେ ସେ ଜାଣନ୍ତି କୃଷ୍ଣ ଅର୍ଜ୍ଜୁନଙ୍କର ବଳବୀର୍ଯ୍ୟ କେତେ । ସେ କେବଳ ପରଶୁରାମଙ୍କ ଅଭିଶାପକୁ ଭୟ କରୁଛନ୍ତି । ଛଦ୍ମ ବେଶରେ ପରଶୁରାମଙ୍କଠାରୁ ଶାସ୍ତ୍ରଶିକ୍ଷା କରିଥିବାରୁ ସେ ଅଭିଶପ୍ତ ହୋଇଥିଲେ ଯେ ମୃତ୍ୟୁଦିନ ସେ ଅସ୍ତ୍ରଜ୍ଞାନ ଭୁଲିବେ । ପୁନଶ୍ଚ ସେ ମଧ୍ୟ ଜନୈକ ବ୍ରାହ୍ମଣଙ୍କର ବାଛୁରୀକୁ ନଜାଣି ଶର ମାରିଥିବାରୁ ବ୍ରାହ୍ମଣ କର୍ତ୍ତୃକ ଅଭିଶପ୍ତ ହୋଇଥିଲେ ଯେ ଯୁଦ୍ଧ ସମୟରେ ତାଙ୍କର ରଥ ଚକ ପୃଥିବୀରେ ଦବିଯିବ । ଏହି ଅଭିଶାପ ଯୋଗୁ ସେ କେବଳ ଭୟ କରୁଛନ୍ତି । ସେ ପୁଣି ଶଲ୍ୟକୁ କଠୋର ଭର୍ତ୍ସନା କଲେ । ଶଲ୍ୟ ଏବଂ କର୍ଣ୍ଣଙ୍କ ମଧ୍ୟରେ ପରସ୍ପର ପ୍ରତି ଯେଉଁ ଭର୍ତ୍ସନା ମୂଳ ମହାଭାରତରେ ରହିଛି ସାରଳା ମହାଭାରତରେ ତାହା ଏତେ ପରିମାଣରେ ନାହିଁ ।

---

† ମଦ୍ରକଦେଶର ସ୍ତ୍ରୀଙ୍କ ହୋଇଣ ଲଙ୍ଗଳା
ନାଚୁଥାଆନ୍ତି ଧରାଧରି ହୋଇ ଗଳା ।
ସେ ସ୍ତ୍ରୀଙ୍କିମାନଙ୍କ ପୁଅମାନଙ୍କର –
ଠାରେ ଧର୍ମ ଅଛି ବୋଲିବ କେଉଁ ନର
ଏ ବାହାରେ ସେ ଛୁଡା ହୋଇଣ ମୂତନ୍ତି
ପାଣି ଘେନିବାର କଥାଟି ନ ଜାଣନ୍ତି ।
ସେ ଦେଶ ସ୍ତ୍ରୀଙ୍କର ଭୁମ୍ପେଡ ଭୂମର
ଲୋଡ଼ିବାକୁ ଥିବ ହେ କ ଗୃଣ ଭୂମ୍ବର ।
ମଦ୍ରଦେଶ ଯେବେ ଭିକାରି ଭିଖ ମାଗେ
ଓଠିଣ ଗୁପୋଡ଼େ ମାରନ୍ତି ତାକୁ ଆଗେ ।

× × ×

ନଖାଗ୍ରକୁ କେଶ ଯାଏଟି ଭୃତ୍ୟ ଦୋଷ
ବସିଲେ କହି ସରିଯିବ ଏ ଦିବସ ।

କୃଷ୍ଣସିଂହ ମହାଭାରତ – କର୍ଣ୍ଣ ପର୍ବ-ପୃ୪୭

କାକ ଓ ହଂସ ପ୍ରସଙ୍ଗକୁ ମଧ୍ୟ ସାରଳା ଦାସ ପରିହାର କରିଅଛନ୍ତି । ଅଥଚ ଏହି ପ୍ରସଙ୍ଗ କ ବ୍ୟଙ୍ଗ ବ୍ୟଞ୍ଜନାର ପରିଚୟ ଦିଏ । ପୁନଶ୍ଚ କର୍ଣ୍ଣ ଏବଂ ଶଲ୍ୟଙ୍କ ଉକ୍ତି ପ୍ରତ୍ୟୁକ୍ତି ମଧ୍ୟ ଦେଇ ବିଭିନ୍ନ ଦେଶର ପୁରୁଷ ଓ ନାରୀମାନଙ୍କର ସ୍ବଭାବିକ ସ୍ୱରୂପ ଏବଂ ସ୍ୱଭାବ ଚଳଣୀ ଯେପରି ବର୍ଣ୍ଣିତ ହୋଇଛି, ତାହା ସାରଳା ମହାଭାରତରେ ନାହିଁ ।

ମୂଳ ମହାଭାରତରେ କର୍ଣ୍ଣଙ୍କ ରଥର ପତାକା ହେଉଛି ହସ୍ତିକକ୍ଷା ଧ୍ୱଜ । ମୂଳ ଗ୍ରନ୍ଥରେ ହସ୍ତିର ନାମାନ୍ତର ନାଗ ଉଲ୍ଲେଖ ଥିବାରୁ ବୋଧହୁଏ ସାରଳା ଦାସ ତାଙ୍କ ଗ୍ରନ୍ଥରେ କର୍ଣ୍ଣ ରଥର ପତାକାରେ କାଳସର୍ପ ଚିହ୍ନ ଉଲ୍ଲେଖ କରିଅଛନ୍ତି । ଅଗ୍ନିଙ୍କର ଲୁଦୁବୁଦୁ ବ୍ୟାଧି ଦୂର କରିବା ପାଇଁ ଅର୍ଜୁନ ଖାଣ୍ଡବ ବନ ଦହନ କରିଥିଲେ । ଏହି ସମୟରେ ନାଗବଂଶ ଧ୍ୱଂସ ହୋଇଗଲେ । ବିଶାଳଚନ୍ଦ୍ର ନାଗବଂଶର ଶୋଷକ ସର୍ପ କୌଣସି ମତେ ଯାଇ ସମୁଦ୍ରରେ ଆତ୍ମଗୋପନ କଲା । ସେଠାରୁ ସେ ଅଭେଦ କବଚ ମଣି ଆଣି କର୍ଣ୍ଣଙ୍କୁ ଦେଲା । କର୍ଣ୍ଣ ଶୋଷକ ପ୍ରତି ସଦୟ ହୋଇ ତାର ଅନୁରୋଧ କ୍ରମେ ରଥରେ ସ୍ଥାନ ଦେଲେ । କର୍ଣ୍ଣ ବାଣ ସାହାଯ୍ୟରେ ତାକୁ ପ୍ରେଷଣ କଲେ ସେ ନନ୍ଦିଘୋଷ ରଥକୁ ଗିଳିଦେବ ବୋଲି କହିଲା । ଇତିପୂର୍ବରୁ ଶୋଷକ ଶମୀବୃକ୍ଷ କୋଟର ଭିତରେ ଲୁଚିକରି ଥିଲା । ଯେତେବେଳେ ଅର୍ଜୁନଙ୍କ ନିର୍ଦ୍ଦେଶରେ ଉତ୍ତମ କୁମାର ସେହି ବୃକ୍ଷ କୋଟରରୁ ଗାଣ୍ଡିବ ଧନୁ ଆଣିବାକୁ ହାତ ବଢାଇଲା, ସେତେବେଳେ ଶୋଷକ ତାକୁ ଅର୍ଜୁନ ମନେକରି ଦଂଶନ କଲା । ଅର୍ଜୁନ ଗାରୁଡ଼ ମନ୍ତ୍ର ପଢ଼ି ଉତ୍ତମକୁ ଆରୋଗ୍ୟ କଲେ । ଶୋଷକ ଅର୍ଜୁନଙ୍କୁ ଭୟ କରି ସମୁଦ୍ର ମଧ୍ୟକୁ ଚାଲିଯାଇ ଆତ୍ମଗୋପନ କଲା । ସେଠାରୁ ସେ ଅଭେଦ କବଚ ଆଣି କର୍ଣ୍ଣଙ୍କଠାରେ ଶରଣ ପଶିଲା । ବୋଧହୁଏ ଏହି କାରଣରୁ ସାରଳା ଦାସ କର୍ଣ୍ଣ ରଥରେ କାଳସର୍ପ ଚିହ୍ନ ରହିଥିଲା ବୋଲି ବର୍ଣ୍ଣନା କରିଅଛନ୍ତି । ମୂଳ ମହାଭାରତରେ ଅଛି ଯେ କର୍ଣ୍ଣ ଚନ୍ଦନଗୁଣ୍ଡ ଭିତରେ ନାଗାସ୍ତ୍ର ବୁଡ଼ାଇ ରଖିଥିଲେ । ଚନ୍ଦନ ଗୁଣ୍ଡ ପ୍ରଭାବରେ ନାଗାସ୍ତ୍ର ଉଜ୍ଜ୍ୱଳ ହୋଇଥିଲା । କର୍ଣ୍ଣ ସେହି ବାଣକୁ ଅର୍ଜୁନଙ୍କ ପ୍ରତି ପ୍ରୟୋଗ କଲାବେଳେ ସେଥିସହିତ ଅଶ୍ୱସେନ ନାମକ ଏକ ନାଗ ମଧ୍ୟ ଯାଇଥିଲା । ତାର କବଳରୁ ରଥକୁ ରକ୍ଷା କରିବା ପାଇଁ ଶ୍ରୀକୃଷ୍ଣ ଅଶ୍ୱର ଲଗାମକୁ ଶିଥିଳ କରିଦେବାରୁ ରଥ ଦବି ଗଲା । ଫଳରେ କର୍ଣ୍ଣଙ୍କ ସର୍ପାସ୍ତ୍ର ଅର୍ଜୁନଙ୍କ ମୁକୁଟକୁ କେବଳ କାଟି ଦେଲା । ଯେଉଁ ମୁକୁଟକୁ ପିନାକ ପାଣି ସ୍ୱୟଂ ମହାଦେବ କାଟିବାକୁ ସମର୍ଥ ନୁହନ୍ତି ତାକୁ କର୍ଣ୍ଣଙ୍କ ସର୍ପାସ୍ତ୍ର କାଟି ଦେଲା । ସେହି ସର୍ପ ପୁନର୍ବାର କର୍ଣ୍ଣର ତୂଣୀର ମଧ୍ୟରେ ପ୍ରବେଶ କରି ତାଙ୍କୁ ଅନୁରୋଧ କଲା ଅର୍ଜୁନଙ୍କ ପ୍ରତି ପ୍ରେଷଣ କରିବା ଲାଗି । ଏ ପର୍ଯ୍ୟନ୍ତ କର୍ଣ୍ଣ ଜାଣି ନଥିଲେ ଯେ ତାଙ୍କର ତୂଣୀର ମଧ୍ୟରେ ଗୋଟାଏ ସର୍ପ ରହିଛି ବୋଲି । ଯେତେବେଳେ ସେ ଜାଣିଲେ ତାଙ୍କର ଅଜ୍ଞାତ ସାରରେ ସର୍ପଟିଏ ଅଛି ଏବଂ ସେହି ସର୍ପ ଅର୍ଜୁନଙ୍କୁ ମାରିବାକୁ କହୁଛି ସେତେବେଳେ କର୍ଣ୍ଣ ତାକୁ ସ୍ପଷ୍ଟ ମନା କରିଦେଲେ । କାରଣ ସେ ଅନ୍ୟର ସାହାଯ୍ୟରେ କାହାରିକୁ

ହତ୍ୟା କରନ୍ତ ନାହିଁ । ତେଣୁ ସେହ ଅଶ୍ୱସେନ କର୍ଣ୍ଣ ରଥରୁ ଶର ରୂପ ହୋଇ ଯାଉଥିଲାବେଳେ କୃଷ୍ଣଙ୍କ ନିର୍ଦ୍ଦେଶରେ ଅର୍ଜୁନ ତାକୁ କାଟି ପକାଇଛ । ମୂଳ ମହାଭାରତର ଏହ ପ୍ରସଙ୍ଗକୁ ସାରଳା ଦାସ ନେଇ ନାହାନ୍ତି । ସେ ବର୍ଣ୍ଣନା କରିଛନ୍ତି ଯେ ଦ୍ୱିତୀୟ ଦିନ ଯୁଦ୍ଧରେ କର୍ଣ୍ଣଙ୍କୁ ଆଦ୍ରବଳ ନନ୍ଦନ ଶୋଷକ କାଳସର୍ପ କହୁଛ ତାକୁ ଶରରେ ପେଷିଲେ ସେ ଅର୍ଜୁନ—ବାସୁଦେବ ସହତ ନନ୍ଦିଘୋଷ ରଥକୁ ଗିଳିଦେବ । ଶଲ୍ୟଙ୍କ ନିର୍ଦ୍ଦେଶ କ୍ରମେ କର୍ଣ୍ଣ ଶୋଷକ ସର୍ପକୁ ଶରରେ ପ୍ରେରଣ କଲେ । ଶଲ୍ୟଙ୍କ ନିର୍ଦ୍ଦେଶରେ ଶୋଷକ ବାନ୍ତ କରିବାରୁ କେବ ନନ୍ଦିଘୋଷ ରଥର ପତାକା ବାହାରିଲା । ଶୋଷକ ପୁନର୍ବାର ତାକୁ ପେଷିବା ପାଇଁ କର୍ଣ୍ଣଙ୍କୁ ଅନୁରୋଧ କଲା ମାତ୍ର କର୍ଣ୍ଣ ତାକୁ ଭର୍ତ୍ସନା କଲେ । ଏଥର ଶୋଷକ ଦେଲା କର୍ଣ୍ଣଙ୍କୁ ଅଭିଶାପ ।

ମୂଳ ମହାଭାରତରେ ଅଶ୍ୱସେନ କର୍ଣ୍ଣ ରଥରେ ରହିବା, କର୍ଣ୍ଣଙ୍କ ଶରରେ ଯିବା, ଅର୍ଜୁନଙ୍କ ମୁକୁଟ ଗିଳିଦେବା ଘଟଣା କୃଷ୍ଣଙ୍କୁ ଆଶ୍ଚର୍ଯ୍ୟ କରିଛ । କର୍ଣ୍ଣ ଆଦୌ ଜାଣିନଥିଲେ ଯେ ଅଶ୍ୱସେନକୁ ସେ ଶରରେ ପେଷଣ କରୁଛନ୍ତି । ନିଜର ପୌରୁଷ ପ୍ରତି ତାଙ୍କର ଅଗାଧ ବିଶ୍ୱାସ । କାହାର ସାହାଯ୍ୟ ନେବାକୁ ସେ ଇଚ୍ଛୁକ ନୁହନ୍ତି । ସାରଳା ମହାଭାରତରେ କର୍ଣ୍ଣଙ୍କ ଶରଣ ନେଇଛ ଶୋଷକ । ମୂଳ ମହାଭାରତରେ ଅଶ୍ୱସେନ ସାରଳା ମହାଭାରତରେ ହୋଇଛ ଶୋଷକ । ସାରଳା ମହାଭାରତରେ କର୍ଣ୍ଣ ଜ୍ଞାତସାରରେ ଶୋଷକକୁ ପ୍ରେରଣ କରିଛନ୍ତି । ଦ୍ୱିତୀୟବାର ତାକୁ ପେରଣ କରିବାକୁ ମନା କରିଛନ୍ତି । ତେଣୁ ଶୋଷକ ଦେଇଛ ଅଭିଶାପ । ମୂଳ ମହାଭାରତରେ ଏହ ଅଭିଶାପ କଥା ନାହିଁ । ସେଥିରେ ଅଛ କର୍ଣ୍ଣଙ୍କ ରଥ ଚକ କାଦୁଅରେ ଗଳି ପଡ଼ିବାରୁ ସେ ରଥକୁ ଉଠାଇବା ପାଇଁ ତଳକୁ ଅବତରଣ କଲେ । ସେହ ସମୟରେ ସେ ଲକ୍ଷ୍ୟ କଲେ ପରଶୁରାମଙ୍କ ପ୍ରଦତ୍ତ ବିଦ୍ୟା । ପରଶୁରାମଙ୍କ ଅଭିଶାପ କାର୍ଯ୍ୟ କଲା । ବ୍ରାହ୍ମଣ ଅଭିଶାପ ମଧ୍ୟ ସମାନ ଭାବରେ ଫଳବତୀ ହେଲା । ସାରଳା ଦାସ ଏସବୁ ପ୍ରସଙ୍ଗକୁ ପରିହାର କରି ଶୋଷକ ସର୍ପ କଥାର ଅବତାରଣା ପୂର୍ବକ ତାର ଅଭିଶାପ ଉପରେ ଗୁରୁତ୍ୱ ଆରୋପ କରିଅଛନ୍ତି । ଏହ ପ୍ରସଙ୍ଗରୁ କର୍ଣ୍ଣଙ୍କର କ୍ଷାତ୍ରଧର୍ମ, ବୀରତ୍ୱ, ଶରଣ ବତ୍ସଳତା ଓ ସ୍ୱାଭିମାନ ସମ୍ପର୍କରେ ଯଥାର୍ଥ ପରିଚୟ ମିଳିଥାଏ । ଲୋକ ବିଶ୍ୱାସ ଓ ଲୋକ ସଂସ୍କୃତିର ସ୍ୱରୂପ ଭାବରେ ସାମାଜିକ ଜୀବନରେ ସର୍ପର ଅଶୁଭତା ଓ ଅମଙ୍ଗଳତା ମଧ୍ୟ ସୂଚିତ ।

ପ୍ରଥମ ଦିନ ଯୁଦ୍ଧରେ ଭୀମସେନଙ୍କୁ ଦୁଃଶାସନ ସହିତ ଯୁଦ୍ଧ କରିବାକୁ ହେବ ବୋଲି ଚରମାନେ ସମ୍ବାଦ ଦେଲେ । ଏ କଥା ଶୁଣି ଭୀମ ଅତ୍ୟନ୍ତ ଆନନ୍ଦିତ ହେଲେ । ଏତେ ଦିନପରେ ତାଙ୍କର ପ୍ରତିଜ୍ଞା ପୂରଣ ହେବ । ପାଞ୍ଚାଳୀଙ୍କର ମୁକୁଳିକେଶ ବନ୍ଧନ କରିବାର ସୁଯୋଗ ଲାଭ କରିବେ । ସେ ଯେତେବେଳେ ଦ୍ରୌପଦୀଙ୍କୁ ଏହ ସମ୍ବାଦ

ହେଲେ ସେତେବେଳେ ଦ୍ରୌପଦୀ ମଧ୍ୟ ନିଜର ଦୁର୍ଦ୍ଦଶା କଥା କହି ତାଙ୍କୁ ଆହୁରି ଉତ୍ତେଜିତ କରିଦେଲେ । ଯୁଦ୍ଧ କ୍ଷେତ୍ରରେ କର୍ଣ୍ଣ ତାଙ୍କର ସାରଥି ଶଲ୍ୟଙ୍କୁ କହିଲେ ଯଦି ସେ ଯୁଦ୍ଧରେ ମୃତ୍ୟୁ ବରଣ କରନ୍ତି ତେବେ ସେ (ଶଲ୍ୟ) କଣ କରିବେ ? ଶଲ୍ୟ କହିଲେ ସେ ଦୁର୍ଯ୍ୟୋଧନଙ୍କ ନିକଟକୁ ଶୂନ୍ୟ ରଥ ଫେରାଇ ନେଇଯିବେ । ଅନୁରୂପ ଭାବରେ ସେତେବେଳେ ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ଏ କଥା କହିଲେ ସେତେବେଳେ ଶ୍ରୀକୃଷ୍ଣ କହିଲେ ସେ ସେ ଚକ୍ରଧର କର୍ଣ୍ଣ ଓ ଶଲ୍ୟଙ୍କୁ ବଧ କରିବେ । କର୍ଣ୍ଣ ଓ ଅର୍ଜୁନଙ୍କ ମଧ୍ୟରେ ହେଲା ପ୍ରବଳ ସଂଗ୍ରାମ । କଳିଙ୍ଗସେନ ରାଜାଙ୍କ ସହିତ ଭୀମଙ୍କର ହେଲା ଯୁଦ୍ଧ । ଏହି ଯୁଦ୍ଧରେ ଯୋଗଦେଲେ ଦୁର୍ଯ୍ୟୋଧନଙ୍କର ସନ୍ତାନବେ ଭାଇ । ଭୀମ ବୃକୋଦର ମୂର୍ତ୍ତି ଧାରଣ କରି ହତ୍ୟାକଲେ ସମସ୍ତଙ୍କୁ ।

ଦୁଃଶାସନର ମୃତ୍ୟୁ ହୋଇ ନଥିବାରୁ ଦ୍ରୌପଦୀ ଭୀମଙ୍କୁ ତଥା ଶ୍ରୀକୃଷ୍ଣଙ୍କୁ ଭର୍ତ୍ସନା କଲେ ! ଏହି ଉକ୍ତିର ସଂଘାତ ଶୁଣି ଭୀମ ପ୍ରତିଜ୍ଞା କଲେ ଆସନ୍ତାକାଲି ଯୁଦ୍ଧରେ ଦୁଃଶାସନକୁ ହତ୍ୟାକରି ନପାରିଲେ ସେ ନିଜେ ଅଗ୍ନିରେ ଝାସ ଦେବେ ।

ଦୁର୍ଯ୍ୟୋଧନଙ୍କର ସନ୍ତାନବେ ଜଣ ଭାଇଙ୍କର ମୃତ୍ୟୁ ହେଲା । ସେମାନଙ୍କ ବିଧବା ପତ୍ନୀମାନେ ବିକଳ ରୋଦନ କଲେ । ଦୁର୍ଯ୍ୟୋଧନଙ୍କୁ ସେମାନେ ନାନା ଭର୍ତ୍ସନା କଲେ । ଭାନୁମତୀ ରାଣୀ ମଧ୍ୟ ସେମାନଙ୍କ ଦଶା ଭୋଗ କରନ୍ତୁ ବୋଲି ଅଭିଶାପ ଦେଲେ । ଧୃତରାଷ୍ଟ୍ର ମଧ୍ୟ ପୁତ୍ର ଶୋକରେ ବିଳାପ କଲେ । ବିଦୁର ଦୁର୍ଯ୍ୟୋଧନଙ୍କୁ ବୁଝାଇଲେ ପାଣ୍ଡବମାନଙ୍କୁ ପାଞ୍ଚଖଣ୍ଡ ପଡ଼ା ଦେଇଥିଲେ ଯୁଦ୍ଧ ବନ୍ଦ ହୋଇଯିବ । ଦୁର୍ଯ୍ୟୋଧନ କିନ୍ତୁ କୌଣସି କଥା ଶୁଣିଲେ ନାହିଁ । ଯୁଦ୍ଧ କରିବା ପାଇଁ ସେ ଦୃଢ଼ ପ୍ରତିଜ୍ଞ । ମୂଳ ମହାଭାରତରେ ଏ ପ୍ରସଙ୍ଗର ବର୍ଣ୍ଣନା ନାହିଁ । ଏହା ସାରଳାଦାସଙ୍କର ମୌଳିକ କଳ୍ପନା । ଦ୍ୱିତୀୟ ଦିନ ଯୁଦ୍ଧକୁ ଯାତ୍ରା କରିବା ପୂର୍ବରୁ ଦ୍ରୌପଦୀ ପୁଣି ଶ୍ରୀକୃଷ୍ଣଙ୍କୁ କହିଲେ—

'ସୁଲଭ ନିରେଖପଣେ ଦେଖିଲି ନାଥ ତୋତେ
ତୁହି ସେ ଜଗନ୍ନାଥ ପାରି କରିବୁନା ମୋତେ ।
ଆଜ ଯେବେ ନଉପାଡ଼ିବୁ ଦୁଃଶାସନର ଭୁଜ
ତୋହର ମୁଖ ନଶୁଝିବ ଅଗ୍ନିରେ ହୋଇବ ଦହିତ ।
ଆଜ ଦୁଃଶାସନକୁ ତୁ ନ ମାରିବୁ ଯେବେ
ସତ୍ୟେ ବିଷ ଖାଇ ସତ୍ୟ ସତ୍ୟ ମୃତ୍ୟୁବେ ।'

ଜିଘାଂସା ପରାୟଣା ଦ୍ରୌପଦୀ ଯେପରି ଭାବରେ ଶ୍ରୀକୃଷ୍ଣ ଓ ଭୀମାଦି ପଞ୍ଚଭ୍ରାତାଙ୍କୁ ଉତ୍ତେଜିତ କରି କହିଅଛନ୍ତି ତାହା ସାରଳା ଦାସଙ୍କର ମୌଳିକ କଳ୍ପନା । ଏକ ପକ୍ଷରେ ପଞ୍ଚପଡ଼ା ଦାବୀ ଓ ସିଂହାସନ ଲାଭର ଆଶା ଏବଂ ଅନ୍ୟ ପକ୍ଷରେ ଦ୍ରୌପଦୀଙ୍କ ପ୍ରତି ନିର୍ଯ୍ୟାତନା—

ଏହି ଦୁଇଟି ମଧ୍ୟରେ ଦ୍ରୌପଦୀଙ୍କ ପ୍ରତି ହୋଇଥିବା ଲାଞ୍ଛନାହିଁ ସାରଳା ମହାଭାରତରେ ପ୍ରାଧାନ୍ୟ ଲାଭ କରିଛି । ଏହାହିଁ ପାଣ୍ଡବମାନଙ୍କ କ୍ରୋଧକୁ ଉତ୍ତେଜିତ କରି ଦେଇଛି । ଯୁଦ୍ଧ କ୍ଷେତ୍ରରେ ଅର୍ଜୁନ ଓ କର୍ଣ୍ଣଙ୍କ ମଧ୍ୟରେ ଲୋମହର୍ଷଣ କାରୀ ଯୁଦ୍ଧ ଚାଲିଥାଏ । ଏହି ସମୟରେ ଉଭୟ ଉଭୟଙ୍କୁ ନାନା କଟୂକଥା କହୁଥାନ୍ତି । ଅର୍ଜୁନ ଶରମାରି କର୍ଣ୍ଣ ରଥକୁ ଶତ ଭେଡ଼ା ଘୁଞ୍ଚାଇ ଦେଲେ । କର୍ଣ୍ଣ ମଧ୍ୟ ଶରମାରି ଅର୍ଜୁନ ରଥକୁ ସାତ ଭେଡ଼ା ଘୁଞ୍ଚାଇ ଦେଲେ । ଏତିକିବେଳେ ଆକାଶ ମାର୍ଗରୁ ଶୁଭିଲା କର୍ଣ୍ଣଙ୍କ ସାଧୁବାଣୀ । ଶ୍ରୀକୃଷ୍ଣ ମଧ୍ୟ କର୍ଣ୍ଣଙ୍କୁ ପ୍ରଶଂସା କଲେ । ଅର୍ଜୁନ ଏଥିରେ ଦୁଃଖିତ ହୋଇ ହାତରୁ ଧନୁ ପକାଇ ଦେଲେ । ଶତ୍ରୁକୁ ଶ୍ରୀକୃଷ୍ଣ ପ୍ରଶଂସା କରିବାରୁ ଅର୍ଜୁନ ବିରସ ହୋଇପଡ଼ିଲେ । ଶ୍ରୀକୃଷ୍ଣ ତାଙ୍କୁ ବୁଝାଇଲେ କର୍ଣ୍ଣଙ୍କ ଦର୍ପ ମଧ୍ୟ ତାଙ୍କୁ ଅଗୋଚର । କର୍ଣ୍ଣର ରଥ ଶିମୁଳି ତୁଳା ସଦୃଶ । ଅଥଚ ନନ୍ଦିଘୋଷ ରଥ ମନ୍ଦର ପର୍ବତ ପରି ଗରୁ । ଶ୍ରୀକୃଷ୍ଣ ପୁଣି ମୁଖ ବିବର ଦେଇ ଅର୍ଜୁନଙ୍କୁ ଦେଖାଇଲେ ବିଶ୍ୱରୂପ । ଅର୍ଜୁନ ଥରେ ଯୁଦ୍ଧ ଆରମ୍ଭରେ ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ ଦେଖିଥିଲେ । ଏବେ ସେ ପୁଣି ବିଶ୍ୱରୂପ ଦେଖିଲେ । ଏଥର ଅର୍ଜୁନଙ୍କର ମୋହଭଙ୍ଗ ହେଲା । ସେ ଶ୍ରୀକୃଷ୍ଣଙ୍କ ପାଦଧରି କ୍ଷମା ମାଗିଲେ । ସାରଳା ଦାସ ଯେପରି ଭାବରେ ଏହି ପ୍ରସଙ୍ଗକୁ ବର୍ଣ୍ଣନା କରି ଅଛନ୍ତି ତାହା ମୂଳ ମହାଭାରତରେ ନାହିଁ । ତାଙ୍କର ଏହା ସମ୍ପୂର୍ଣ୍ଣ ମୌଳିକ କଳ୍ପନା । ଏଥିରୁ କର୍ଣ୍ଣଙ୍କର ପୌରୁଷ ଓ ବୀରତ୍ୱ ଏବଂ ଅର୍ଜୁନଙ୍କର ଆତ୍ମସମର୍ପଣ ଭାବର ସୂଚନା ମିଳେ ।

ଇତ୍ୟବସରରେ କର୍ଣ୍ଣ ଯୁଦ୍ଧ କରିଅଛନ୍ତି ଯୁଧିଷ୍ଠିରଙ୍କ ସହିତ । ସେ ଯୁଧିଷ୍ଠିରଙ୍କୁ ବିରଥ କରିଦେଲେ । ତାଙ୍କର କେଶ ଆକର୍ଷଣ ପୂର୍ବକ ତାଙ୍କୁ ନାନା କଟୂକଥା କହିଲେ । କୁନ୍ତୀଙ୍କର ସେ ଦ୍ୱିତୀୟ ପୁତ୍ର । ଅଥଚ ସେ ଜ୍ୟେଷ୍ଠ ନାମ ବହନ କରିଅଛନ୍ତି । କର୍ଣ୍ଣ କ୍ରୋଧାନ୍ୱିତ ହୋଇ ଯୁଧିଷ୍ଠିରଙ୍କ କେଶ ଧରି ଭୀଷଣ ଭାବରେ ଆକର୍ଷଣ କରିବାରୁ ଯୁଧିଷ୍ଠିର ପ୍ରାଣ ବିକଳରେ କହିଲେ—

'ହିଂସାସ ନ କର କର୍ଣ୍ଣ ହୋ ମୋତେ ଏତେକ ଯେଣି ହାଣ
ମୋହୋର ଇଷ୍ଟ ଦେବତା ସେ କୋଇନ୍ତା ଦେବୀ ଜାଣ ।'

ସାରଳା ମହାଭାରତ—କର୍ଣ୍ଣପର୍ବ

କର୍ଣ୍ଣ ଏକଥା ଯୁଧିଷ୍ଠିରଙ୍କ ମୁଖରୁ ଶୁଣି ଜନନୀ କୁନ୍ତୀଙ୍କ ନିକଟରେ କରିଥିବା ଶପଥ କଥା ମନେ ପକାଇ ଯୁଧିଷ୍ଠିରଙ୍କୁ ଛାଡ଼ିଦେଲେ । ମୂଳ ମହାଭାରତରେ ଏ ପ୍ରସଙ୍ଗ ନାହିଁ ସେଥିରେ ଶଲ୍ୟଙ୍କର ଅଛି ପାଣ୍ଡବମାନଙ୍କ ପ୍ରତି ଦୁର୍ବଳତା । ଯେତେବେଳେ କର୍ଣ୍ଣ ଯୁଧିଷ୍ଠିରଙ୍କୁ ଲାଞ୍ଛନା ଦେଲେ ସେତେବେଳେ ଶଲ୍ୟ ତାଙ୍କୁ ସେଥିରୁ ନିବର୍ତ୍ତାଇବାକୁ ଉଦ୍ୟମ କଲେ । ଶଲ୍ୟଙ୍କର ଏହି ପ୍ରଚ୍ଛନ୍ନ ଉଦ୍ଦେଶ୍ୟ କଥା ମୂଳ ମହାଭାରତରେ ଯେପରି

ଅଛି ସାରଳା ମହାଭାରତରେ ସେପରି ନାହିଁ । ସାରଳା ମହାଭାରତରେ ଅଛି ଯେ ଯୁଧିଷ୍ଠିର ଅପମାନ ପାଇ ଯୁଦ୍ଧକ୍ଷେତ୍ରରୁ ଇନ୍ଦ୍ରପ୍ରସ୍ଥକୁ ଚାଲିଗଲେ । ଅର୍ଜୁନ ଏ ସମ୍ବାଦ ପାଇ ଶ୍ରୀକୃଷ୍ଣଙ୍କ ସହିତ ତାଙ୍କ ପାଖକୁ ଗଲେ । ଯୁଧିଷ୍ଠିର ଭାବିଥିଲେ କର୍ଣ୍ଣକୁ ହତ୍ୟା କରି ସେମାନେ ଆସିଛନ୍ତି । କର୍ଣ୍ଣ ମରି ନଥିବା ଜାଣି ସେ ଅର୍ଜୁନକୁ ଧିକ୍କାର କଲେ । ସେ ମଧ୍ୟ କୃଷ୍ଣଙ୍କୁ ଧିକ୍କାର କଲେ । ଯୁଧିଷ୍ଠିର ଅର୍ଜୁନଙ୍କର ଗାଣ୍ଡୀବ ଧନୁ ଓ ପାଶୁପତ ନାରାଚକୁ ନିନ୍ଦା କରନ୍ତେ, ଅର୍ଜୁନ କ୍ରୋଧ ପ୍ରକାଶ କରି ତାଙ୍କୁ ହତ୍ୟା କରିବାକୁ ଖଡ୍ଗ ଉତ୍ତୋଳନ କଲେ । ହର ପାର୍ବତୀଙ୍କଠାରୁ ପାଶୁପତ ଓ ଅକ୍ଷୟ ତୂଣୀର ପାଇଲା ବେଳେ ସେ ଶପଥ କରିଥିଲେ ଯିଏ ସେହି ଅସ୍ତ୍ରକୁ ନିନ୍ଦା କରିବ ସେ ତାକୁ ବିନାଶ କରିବେ । ଯଦି ସମ୍ଭବ ନ ହୁଏ ତେବେ ସେ ଅଗ୍ନିରେ ଆତ୍ମାହୁତି ଦେବେ । ତତ୍ପରେ ଅର୍ଜୁନ ଆପଣାର ବୀରତ୍ୱ ବିଷୟରେ ଶ୍ରୀକୃଷ୍ଣଙ୍କୁ କହିବାରୁ ଶ୍ରୀକୃଷ୍ଣ ତାଙ୍କୁ ବୁଝାଇ ଦେଲେ—

'ଆତ୍ମ ପ୍ରଶଂସା ସ୍ୱେ ତୋର ଆତ୍ମାକୁ ମରଣ ସମାନ ।'

ଶ୍ରୀକୃଷ୍ଣ ଶିବଙ୍କୁ ଲକ୍ଷ୍ୟକରି ଅର୍ଜୁନଙ୍କୁ କ୍ଷମା ଦେବାକୁ କହିଲେ । ହରପାର୍ବତୀ ଏକଥା ଜାଣି ଅର୍ଜୁନର ତୂଣରେ ପାଶୁପତ ବାଣ ରହିବା ପାଇଁ ଆଦେଶ ଦେଲେ । ସାରଳା ଦାସ ଏସବୁ ପ୍ରସଙ୍ଗକୁ ନିଜର କଳ୍ପନା ବଳରେ ରୂପାୟନ କରିଅଛନ୍ତି । ମୂଳ ମହାଭାରତରେ ଏହା ନାହିଁ । ସେଥିରେ ଅଛି କର୍ଣ୍ଣ ବାଣମାରି ଯୁଧିଷ୍ଠିରଙ୍କୁ ବ୍ୟସ୍ତ ବିବ୍ରତ କରିଦେବାରୁ ଶଲ୍ୟ କୌଶଳ କରି କର୍ଣ୍ଣଙ୍କୁ ସେଠାରୁ ହଟାଇ ନେଇଗଲେ । ଯୁଧିଷ୍ଠିର ଅପମାନିତ ହୋଇ ଯୁଦ୍ଧ କ୍ଷେତ୍ରରୁ ଶିବିରକୁ ଚାଲି ଗଲେ । ଭୀମ ଏକାକୀ ଯୁଦ୍ଧ ଚଳାଇଲେ ଏବଂ ଅର୍ଜୁନ ଓ କୃଷ୍ଣ ଯୁଧିଷ୍ଠିରଙ୍କୁ ଦେଖିବା ପାଇଁ ଶିବିରକୁ ଗଲେ । ଯୁଧିଷ୍ଠିର ସେମାନଙ୍କୁ ଦେଖି କର୍ଣ୍ଣ ମୃତ୍ୟୁ ସମ୍ବାଦ ଜାଣିବାକୁ ଚାହିଁଲେ । କାରଣ କର୍ଣ୍ଣହିଁ ତାଙ୍କର ଏକମାତ୍ର ଚିନ୍ତା । ଯେଉଁ ଆଡ଼କୁ ସେ ଯାଆନ୍ତି ସେହି ଆଡ଼େ ତାଙ୍କୁ କେବଳ କର୍ଣ୍ଣହିଁ ଦେଖାଯାଏ । କର୍ଣ୍ଣଙ୍କ ଧିକ୍କାର ବଚନ ଶୁଣି ବଞ୍ଚିରହିବା ଅପେକ୍ଷା ବରଂ ମୃତ୍ୟୁ ହୋଇଥିଲେ ଭଲ ହୋଇଥାନ୍ତା । ଅର୍ଜୁନ ଯୁଦ୍ଧ ବୃତ୍ତାନ୍ତ ଯୁଧିଷ୍ଠିରଙ୍କୁ କହିଲେ । ଯୁଧିଷ୍ଠିର ଅର୍ଜୁନଙ୍କୁ କହିଲେ ତାଙ୍କଠାରୁ ବଳି ଆଉ କେହି ମୂର୍ଖ ନାହିଁ । ସେ ଜୁଆ ଖେଳିବାରୁ ଭାଇମାନେ ରାଜ୍ୟ ହରାଇଲେ, ବନବାସ କଲେ । ତାଙ୍କରି ଯୋଗୁ ହେଲା ରକ୍ତାକ୍ତ ସଂଗ୍ରାମ । ତେଣୁ ତାଙ୍କର ମୁଣ୍ଡକାଟି ଦେବା ଉଚିତ । ନ ହେଲେ ସେ ବନବାସ କରିବାକୁ ଚାଲିଯିବେ । ସେ ପୁଣି କହିଲେ ଏକଦା ଶ୍ରୀକୃଷ୍ଣ ତାଙ୍କୁ ଓ ଦୁର୍ଯ୍ୟୋଧନଙ୍କୁ କହିଥିଲେ ଜଣେ ଦୋଷ ଦୁର୍ଗୁଣ ନଥିବା ବ୍ୟକ୍ତିକୁ ଖୋଜି ବାହାର କରିବାପାଇଁ । ସେଦିନ ଦୁର୍ଯ୍ୟୋଧନ କହିଥିଲେ ସେ ନିଜେ ହିଁ ସର୍ବୋତ୍ତମ ବ୍ୟକ୍ତି । ଅଥଚ ଯୁଧିଷ୍ଠିର କହିଥିଲେ ତାଙ୍କଠାରୁ ଆଉ କେହି ଖରାପ ବ୍ୟକ୍ତି ନାହାନ୍ତି । ଏବେ ସେ ସେହି କଥା

ଚନ୍ତା କରୁଛନ୍ତି । ସେ ଜଣେ ହିଁ ସମସ୍ତଙ୍କ ଅପେକ୍ଷା ପ୍ରକୃତରେ ଦୁର୍ଗତମ ବ୍ୟକ୍ତି । ଏକଥା ଶୁଣି ଅର୍ଜୁନ ଘୋର ଲଜ୍ଜିତ ହେଲେ । ଏହି ଗାମ୍ଭୀର୍ଯ୍ୟପୂର୍ଣ୍ଣ ଲୋକଶିକ୍ଷାମୂଳକ ବର୍ଣ୍ଣନା ସାରଳା ମହାଭାରତରେ ନାହିଁ ।

କର୍ଣ୍ଣ ଅର୍ଜୁନଙ୍କ ମଧ୍ୟରେ ପ୍ରବଳ ସଂଗ୍ରାମ ଚାଲିଥିଲାବେଳେ ଦୁଃଶାସନ ଭୀମଙ୍କୁ ହତ୍ୟା କରିବାକୁ ଧାଇଁ ଆସିଲେ । ମୂଳ ମହାଭାରତରେ ଅଛି ଯେ ଭୀମ ପରାକ୍ରମ ଦେଖାଇ ବୃକୋଦର ଦୁଃଶାସନଙ୍କ ରଥର ଧ୍ୱଜକୁ କାଟିଦେଲେ । ସେହିକବେଳେ ଭୀମଙ୍କର ମନେ ପଡ଼ିଲା ଦ୍ରୌପଦୀଙ୍କୁ ଦୁଃଶାସନର ନର୍ଯ୍ୟାତନା କଥା । ତେଣୁ ସେ କାଳରଞ୍ଜ କରି ଦୁଃଶାସନ ନିକଟକୁ ଧାଇଁଗଲେ । ତାର ତଣ୍ଟିକୁ ପାଦରେ ଚପିଧରି ତରବାରୀ ସାହାଯ୍ୟରେ ତାର ହୃଦୟକୁ ବିଦାରଣ କଲେ । ବ୍ୟାଘ୍ରପରି ସେ ଦୁଃଶାସନର ରକ୍ତପାନ କଲେ । ମୂଳମହାଭାରତର ଏହି ବର୍ଣ୍ଣନା ସେତେ ଚମକପ୍ରଦ ନୁହେଁ । ସାରଳାଦାସ କିନ୍ତୁ ଏହି ପ୍ରସଙ୍ଗକୁ ବେଶ୍ ହୃଦୟସ୍ପର୍ଶୀ କରିଅଛନ୍ତି । ନାରୀ ନର୍ଯ୍ୟାତନାକାରୀ ଦୁଃଶାସନର ମୃତ୍ୟୁକୁ ସେ ଅଧିକ ଗୁରୁତ୍ୱପୂର୍ଣ୍ଣ ମନେକରିଅଛନ୍ତି ।

ଭୀମ ଓ ଦୁଃଶାସନଙ୍କ ମଧ୍ୟରେ ହେଲା ପ୍ରବଳ ଯୁଦ୍ଧ । ଉଭୟେ ଉଭୟଙ୍କୁ କଲେ ନାନା ଭର୍ତ୍ସନା । ଯୁଦ୍ଧରେ ଦୁଃଶାସନ ଗଦାଶୂନ୍ୟ ହୋଇପଡ଼ିଲା । ତେଣୁ ଭୀମ ମଧ୍ୟ ଗଦା ପକାଇଦେଲେ । ଉଭୟ ବାହୁଯୁଦ୍ଧରେ ନିମଗ୍ନ ହେଲେ । ପ୍ରଥମେ ଦୁଃଶାସନ ଭୀମକୁ ତଳେ ମାଡ଼ିବସି ମୁଷ୍ଟିପ୍ରହାର କଲା । ତାଙ୍କୁ ମାରିବାପାଇଁ ଉଦ୍ୟତ ହେଲା । ଦୁର୍ଯ୍ୟୋଧନ, କର୍ଣ୍ଣ, ଶଲ୍ୟ ଆଦି ସମସ୍ତେ ଆନନ୍ଦିତ । ଶକୁନି କେବଳ ମନେ ମନେ ବିଷାଦିତ । କୌରବମାନେ ରଥରେ ଉଡ଼ାଇନେଲେ ବିଜୟ କେତନ । ଯୁଧିଷ୍ଠିର କଲେ ଗଭୀର ଶୋକ । ସେ ଭାବିଲେ ତାଙ୍କର ପାପରୁ ଆଜି ଭୀମର ହେଉଛି ମୃତ୍ୟୁ । ଶ୍ରୀକୃଷ୍ଣ ମଧ୍ୟ ଦୁଃଖ କଲେ, ମାତ୍ର ସହଦେବ ତାଙ୍କୁ ବତାଇନେଲେ ସକଳ ରହସ୍ୟ । କୁନ୍ତୀଦେବୀଙ୍କର ଦୁର୍ବାସାଙ୍କୁ ସେବା ଓ ମନ୍ତ୍ରମାଳ ପ୍ରାପ୍ତି, ହରିଣୀ ସହିତ ରତିକ୍ରୀଡ଼ା କରୁଥିବା ଅବସ୍ଥାରେ ଅଗ୍ନିକା ଋଷିଙ୍କ ପଣ୍ଡୁଙ୍କର ଶରଘାତ ଓ ଋଷିଙ୍କର ପଣ୍ଡୁଙ୍କ ପ୍ରତି ଅଭିଶାପ, ଶତଶୃଙ୍ଗ ପର୍ବତରେ ଭୀମାଦି ଭାଇମାନଙ୍କର ଜନ୍ମ, ଜନ୍ମହେବା ମାତ୍ରେ ଶତଶୃଙ୍ଗ ପର୍ବତକୁ ଭୀମର ପଦ ପ୍ରହାର ଓ ଶୃଙ୍ଗଭଗ୍ନ, ଶତଶୃଙ୍ଗଙ୍କର ଭୀମକୁ ପ୍ରଥମ ଯୁଦ୍ଧରେ ହାରିବା ପାଇଁ ଅଭିଶାପ ପ୍ରଦାନ ଏବଂ କୁନ୍ତୀଙ୍କ ସାନୁନୟ ପ୍ରାର୍ଥନା ଫଳରେ ଶତଶୃଙ୍ଗର କ୍ରୋଧ ପ୍ରଶମନ ଓ ତାର ନାମ ସ୍ମରଣ ମାତ୍ରେ ଭୀମର ଶତସିଂହ ବଳପ୍ରାପ୍ତି ପାଇଁ ବରଦାନ ଇତ୍ୟାଦି ଘଟଣାକୁ ସାରଳା ଦାସ ଯେପରି ବିସ୍ତୃତ ଭାବରେ ରୂପାୟନ କରିଅଛନ୍ତି ତାହା ମୂଳ ମହାଭାରତରେ ନାହିଁ । ସହଦେବଙ୍କ ଠାରୁ ସମସ୍ତ କଥା ଶୁଣି ଶ୍ରୀକୃଷ୍ଣ ଶଙ୍ଖଧ୍ୱନି ମାଧ୍ୟମରେ ଭୀମଙ୍କୁ ଶତଶୃଙ୍ଗ ନାମ ସ୍ମରଣ କରାଇଦେଲେ । ଏଥର ଭୀମ ଧାରଣ କଲେ ବୃକୋଦର ମୂର୍ତ୍ତି । ଦୁଃଶାସନଙ୍କୁ ସେ

ଓଲଟାଇ ଭଳେ ମାଡ଼ି ବସି ଭୀଷଣ ଗର୍ଜନ କଲେ । ଦୁଃଶାସନକୁ ସେ ମାରିବା ପୂର୍ବରୁ ପ୍ରଥମେ କୌରବ ପକ୍ଷର ସମସ୍ତ ସେନାମାନଙ୍କୁ ଆହ୍ୱାନ କଲେ ତାଙ୍କ କବଳରୁ ଦୁଃଶାସନକୁ ରକ୍ଷା କରିବା ଲାଗି । ସେ ମଧ୍ୟ ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କୁ ଆହ୍ୱାନ କଲେ ଦୁଃଶାସନ ପ୍ରାଣ ରକ୍ଷାପାଇଁ । ଅର୍ଜୁନ ଏଥିରେ କ୍ରୋଧ ପ୍ରକାଶ କରି ଗାଣ୍ଡୀବ ପ୍ରସ୍ତୁତ କରନ୍ତେ, ଶ୍ରୀକୃଷ୍ଣ ତାଙ୍କୁ ବାରଣ କଲେ । ସାରଳା ଦାସ ପ୍ରତ୍ୟେକ ଚରିତ୍ରର ପୂର୍ବଜନ୍ମ ଖୋଜିଛନ୍ତି । ଏପରିକି ଦୁଃଶାସନର ହାତରେ ଥିବା କଙ୍କଣର ମଧ୍ୟ ସେ ପୌରାଣିକ ବିବରଣୀ ପ୍ରଦାନ କରି ଅଛନ୍ତି । ଗୋଟିଏ ଚରିତ୍ରର ପୂର୍ବଜନ୍ମ ପ୍ରସଙ୍ଗରେ ସାରଳା ଦାସ ଯେପରି ବିଭିନ୍ନ ବିବରଣୀ ପ୍ରଦାନ କରିଅଛନ୍ତି ସେଥିରୁ ସତ୍ୟତା ଜଣାଯାଏ ନାହିଁ । ତଥାପି ଏସବୁ କାହାଣୀ-ସଂଯୋଜନାରୁ ସାରଳା ଦାସଙ୍କର ଅପୂର୍ବ ନିର୍ମାଣକ୍ଷମ ପ୍ରତିଭାର ପରିଚୟ ମିଳିଥାଏ ।

ଦୁଃଶାସନର ମୃତ୍ୟୁ ହେଲା । ଦ୍ରୌପଦୀ କେଶ ବନ୍ଧନ କଲେ, ସେ ହେଲେ ଗଭୀର ଆନନ୍ଦିତା । ସେଦିନ ରାତ୍ରିରେ ସେ ଭୀମକୁ ନିଜ ଅନ୍ତଃପୁରକୁ ନିମନ୍ତ୍ରଣ କଲେ । ସେତିକିବେଳେ ଶ୍ରୀକୃଷ୍ଣ ଭୀମଙ୍କୁ କହିଲେ—

'ଯେତେବେଳେ ରମଣ ତୁ କରିବୁ ଦ୍ରୌପଦୀ
ରତି ଶୃଙ୍ଗାରେ ସେ ହୋଇବ ତୋଷମତି ।
ତୋଷ ହୋଇ ମହାସତୀ ଯାଚିବେ ତୋତେ ବର
ବୋଲିବୁ କୃଷ୍ଣ ପାଣ୍ଡବେ ନ ପଡ଼ିବୁ ତୋହୋର ଖପର ।'

ସାରଳା ମହାଭାରତ—କର୍ଣ୍ଣପର୍ବ

ଭୀମ ଗଲେ ଦ୍ରୌପଦୀଙ୍କ ଅନ୍ତଃପୁରକୁ । ପାଞ୍ଚାଳୀ ଭୀମଙ୍କ ସହିତ ଶୃଙ୍ଗାର ରସରେ ନିମଜ୍ଜିତ ହୋଇ ଅଶେଷ ତୃପ୍ତି ଲଭ କଲେ । ସେ ଇଚ୍ଛା କଲେ ଭୀମକୁ ଗୋଟିଏ ବର ପ୍ରଦାନ କରିବାକୁ । ଭୀମ କରପଞ୍ଝଯୋଡ଼ି କହିଲେ—

'ସ୍ୱେ ଗୋସମଣି ଗୋ ମାଗୁଅଛୁ ବର
କୃଷ୍ଣ ଆଦି ପାଣ୍ଡବେ ନପଡ଼ିବୁ ଖପରରେ ତୋର ।'

ଦ୍ରୌପଦୀ ଏକଥା ଶୁଣି ସମସ୍ତ କଥା ବୁଝିଗଲେ । ସେ ଜାଣିଲେ ଏହା ଭୀମଙ୍କର କଥା ନୁହେଁ, କପଟୀ କୃଷ୍ଣଙ୍କର କଥା । ତେଣୁ ସେ କହିଲେ—

'ବୋଇଲେ ସମସ୍ତେ ପଡ଼ିବ ହେକା ରହିବେ ପ୍ରହେଷ୍ଟି
ନସ୍କ କୃଷ୍ଣ କଥା ତୋତେ କହିଲେ ଶ୍ରୀପତି ।
କୋଇଲା ଆଦି କରି ସ୍ୱର ପାଣ୍ଡବ ସହିତେ
ସମସ୍ତ ପଡ଼ିବେ ସେ ମୋହର ଖପରନ୍ତେ ।

ସାରଳା ମହାଭାରତ-କର୍ଣ୍ଣପର୍ବ

ଏସବୁ ବର୍ଣ୍ଣନା ମୂଳ ମହାଭାରତରେ ନାହିଁ । ସାରଳାଦାସ ଏହାକୁ ଆପଣାର ଅଦ୍ଭୁତ କଳ୍ପନା ବଳରେ ବର୍ଣ୍ଣନା କରିଅଛନ୍ତି । ଏସବୁ ବର୍ଣ୍ଣନା ମୌଳିକ । ତଥାପି ଯୁଦ୍ଧ ମୁଖର ପରିବେଶ ମଧ୍ୟରେ ଦ୍ରୌପଦୀଙ୍କ ସହିତ ଭୀମଙ୍କର ରତିକ୍ରୀଡ଼ା ସ୍ୱାଭାବିକତା ବିରୋଧୀ । ଏପର୍ଯ୍ୟନ୍ତ କର୍ଣ୍ଣ ମରିନାହିଁ । ଯୁଦ୍ଧ ସଙ୍କଟ ଯାଇ ନାହିଁ । ଅଥଚ ଦ୍ରୌପଦୀଙ୍କର ଭୀମକୁ ଅନ୍ତଃପୁରକୁ ଯିବାପାଇଁ ନିମନ୍ତ୍ରଣ ? ଦ୍ରୌପଦୀ କଣ କେବଳ ଦୁଃଶାସନର ମୃତ୍ୟୁ ଚାହିଁଥିଲେ ? ଦୁଃଶାସନ ତ ନିମିତ୍ତ ମାତ୍ର । ଦୁର୍ଯ୍ୟୋଧନ ନିର୍ଦ୍ଦେଶର ସେ ବାହକ । ଦୁର୍ଯ୍ୟୋଧନ ମଧ୍ୟ ଏପର୍ଯ୍ୟନ୍ତ ମରିନାହିଁ । ଶୃଙ୍ଗାର ପାଇଁ ଦ୍ରୌପଦୀ ଏତେ ବ୍ୟାକୁଳ ହେଲେ କାହିଁକି ? ସେଥିରେ ପୁଣି ଦ୍ରୌପଦୀଙ୍କର ବରଦାନ ଯଥାର୍ଥ ବିରୋଧୀ । ଏସବୁ ସତ୍ତ୍ୱେ ସାରଳା ଦାସ ନିଜର ଅପୂର୍ବ କଳ୍ପନା ବିଳାସ ବଳରେ ଯେଉଁସବୁ ପ୍ରସଙ୍ଗର ଅବତାରଣା କରି ଅଛନ୍ତି , ପରିବେଶର ଗାମ୍ଭୀର୍ଯ୍ୟକୁ କମାଇ ଦେଇଥିଲେ ମଧ୍ୟ ସ୍ୱକୀୟ ବୈଶିଷ୍ଟ୍ୟର ପରିଚୟ ପ୍ରଦାନ କରି ଥାଏ ।

ମୂଳ ମହାଭାରତରେ କର୍ଣ୍ଣ ପ୍ରଥମେ ନକୁଳକୁ ଏବଂ ପରେ ଯୁଧିଷ୍ଠିରଙ୍କୁ ନିର୍ଯ୍ୟାତନା ଦେଇଥିବା କଥା ବର୍ଣ୍ଣନା କରାଯାଇଛି । ସାରଳା ମହାଭାରତରେ କିନ୍ତୁ ପ୍ରଥମେ ଯୁଧିଷ୍ଠିରଙ୍କୁ ଓ ପରେ ନକୁଳଙ୍କୁ କର୍ଣ୍ଣ ନିର୍ଯ୍ୟାତନା ଦେଇଛି । ଦୁଃଶାସନଙ୍କ ମୃତ୍ୟୁପରେ କର୍ଣ୍ଣ ଓ ଅର୍ଜ୍ଜୁନଙ୍କ ମଧ୍ୟରେ ହେଲା ଭୟଙ୍କର ସଂଗ୍ରାମ । ପୂର୍ବ ଅଭିଶାପ ଯୋଗୁ କର୍ଣ୍ଣର ରଥ ଦବି ଯିବାରୁ କର୍ଣ୍ଣ ଅର୍ଜ୍ଜୁନଙ୍କୁ ଅନୁରୋଧ କରିଛି । କିଛି ସମୟ ପାଇଁ ଯୁଦ୍ଧ ନ କରିବାକୁ ।

କର୍ଣ୍ଣର ବାଣୀ ଶୁଣି ଅର୍ଜ୍ଜୁନ ଶରସନ୍ଧାନ ବନ୍ଦ କରିଦେଲେ । ଶ୍ରୀକୃଷ୍ଣ କିନ୍ତୁ ଅର୍ଜ୍ଜୁନଙ୍କୁ କର୍ଣ୍ଣ ବିରୁଦ୍ଧରେ ଉତ୍ତେଜିତ କଲେ । ସେ ମଧ୍ୟ କର୍ଣ୍ଣଙ୍କୁ କହିଲେ ସେମାନଙ୍କର ମତ ଓ ଧର୍ମ କଥା ଜଣା ଅଛି । ଭୀମକୁ ବିଷଲଡ଼ୁ ଦେଇ ଅଗାଧ ଜଳରେ ଭସାଇ ଦେବା, ଜଉଘର କରି ପାଣ୍ଡବଙ୍କୁ ସେଥିରେ ରଖି ନିଆଁ ଲଗାଇ ଦେବା, କପଟ ପଶା ଖେଳରେ ପାଣ୍ଡବଙ୍କୁ ବନବାସ କରାଇବା, ସଭାରେ ଦ୍ରୌପଦୀଙ୍କୁ ବିଲଗ୍ନ କରାଇବା, ଚଉଦ ବର୍ଷର ବାଳକ ଅଭିମନ୍ୟୁକୁ ଅନ୍ୟାୟ ଯୁଦ୍ଧରେ ମାରିବା ଆଦି ନାନା ଘଟଣାରୁ ସେମାନଙ୍କର ନ୍ୟାୟଧର୍ମ କଥା ଜଣାପଡ଼ିଛି । ଅର୍ଜ୍ଜୁନ ଏସବୁ କଥା ଶୁଣି ଉତ୍ତେଜିତ ହୋଇ କର୍ଣ୍ଣଙ୍କ ପ୍ରତି ଶରନିକ୍ଷେପ କଲେ । କର୍ଣ୍ଣର ମୁଣ୍ଡ ଛିଣ୍ଡି ପଡ଼ିଲେ ମଧ୍ୟ ସେଥିରୁ ଜାତ ହୋଇଛି ଆଉ ଗୋଟିଏ ଲେଖା ମୁଣ୍ଡ । ଅର୍ଜ୍ଜୁନ ଏ ଘଟଣାରେ ଆଶ୍ଚର୍ଯ୍ୟ ହେଲେ । ସହଦେବ ତାଙ୍କୁ କହିଲେ କର୍ଣ୍ଣର ଜନ୍ମ ଆଦିତ୍ୟଙ୍କର ଔରସରୁ । ସୂର୍ଯ୍ୟ ଦେବତା ତାଙ୍କୁ ଦେଇଥିଲେ ଅମୃତ କୁଣ୍ଡଳ ଓ ଅଭେଦ କବଚ । ତାଙ୍କ ଶରୀରରେ ଅଛି ବଜ୍ର ଛତିରି । ଅମୃତ କୁଣ୍ଡଳରୁ ଅମୃତ ଝରିବା ଫଳେ କର୍ଣ୍ଣର ପିଣ୍ଡରୁ ସୃଷ୍ଟି ହେଉଛି ଆଉ ଏକ ମୁଣ୍ଡ । ଯେତେବେଳେ ଛଦ୍ମ ବେଶରେ ଇନ୍ଦ୍ର କର୍ଣ୍ଣଙ୍କଠାରୁ କବଚକୁଣ୍ଡଳ ଓ

ବଳ ଛଳଣାକୁ ନେଇଗଲେ ସେତେବେଳେ ଆଦିତ୍ୟ ଦେବତା କର୍ଣ୍ଣଙ୍କ ହୃଦୟରେ ସ୍ଥାପନ କରି ଦେଇଗଲେ ମରକତ ଲିଙ୍ଗ । ଏହା ଥିଲା ପର୍ଯ୍ୟନ୍ତ କର୍ଣ୍ଣ ଅବଧ୍ୟ । ଏକ ସମୟରେ ଯଦି ବାଦଲ ଶର, ପାଶୁପତ ଜାଳଚକ୍ରକୁ ମାରି ଯଥାକ୍ରମେ କର୍ଣ୍ଣର ହୃଦୟ, ନାଭି ସ୍କନ୍ଧକୁ ଭେଦ କରି ତାକୁ ତିନିଖଣ୍ଡ କରିଦିଆଯିବ ତେବେ କର୍ଣ୍ଣର ମୃତ୍ୟୁ ହେବ । ଅର୍ଜ୍ଜୁନ ଏହିପରି କରିବାରୁ କର୍ଣ୍ଣ ମୃତ୍ୟୁ ବରଣ କଲେ । କର୍ଣ୍ଣଙ୍କ ମୃତ୍ୟୁପରେ ଆଦିତ୍ୟ ଦେବତାଙ୍କ ଶୋକ ବାସ୍ତବିକ ହୃଦୟସ୍ପର୍ଶୀ । ଦୁର୍ଯ୍ୟୋଧନ ମଧ୍ୟ କର୍ଣ୍ଣଙ୍କର ଗୁଣ ସ୍ମରଣ କରି ବିଳାପ କଲେ । ଦୁର୍ଯ୍ୟୋଧନଙ୍କ ବିଳାପରୁ କର୍ଣ୍ଣଙ୍କର ବୀରତ୍ୱ, ମହତ୍ତ୍ୱର ଉଦାହରଣ ଓ ମାନବିକତାର ପରିଚୟ ମିଳେ । କର୍ଣ୍ଣଙ୍କ ନିଧନ ପରେ ଦୁର୍ଯ୍ୟୋଧନ ଶଲ୍ୟଙ୍କୁ ସେନାପତି ପଦରେ ଅଧିଷ୍ଠିତ କରାଇଲେ । ପୁନର୍ବାର ଯୁଦ୍ଧ ବାଦ୍ୟ ବାଜି ଉଠିଲା । ଶଲ୍ୟଙ୍କ ସହିତ ଶକୁନି ବିଦ୍ୟମାନ ।

ସାରଳା ଦାସ କର୍ଣ୍ଣ ପର୍ବରେ ମଧ୍ୟ ଅନ୍ୟପର୍ବମାନଙ୍କ ପରି ବିଭିନ୍ନ ଦେବାଦେବୀଙ୍କୁ ବନ୍ଦନା କରିଅଛନ୍ତି । ପ୍ରଥମରୁ ସେ ଭକ୍ତବତ୍ସଳା ସଂସାର ଉଦ୍ଧାରିଣୀ ଜଗତ୍‌ଜନନୀ କୃପାଦାୟିନୀ ତାରିଣୀ ନାରାୟଣୀ ଶକ୍ତିଙ୍କୁ ବନ୍ଦନା କରି ବିଷୟବସ୍ତୁର ଆରମ୍ଭ କରି ଅଛନ୍ତି । ଦ୍ରୋଣଙ୍କ ମୃତ୍ୟୁର କାରଣ ବର୍ଣ୍ଣନା କରି ସାରିବା ପରେ ମହାଦେବଙ୍କର ବନ୍ଦନା କରି କବି ଲେଖିଛନ୍ତି—

'ସଦା ଆନନ୍ଦ ନାଥ ମମ ହୃଦେ ଧରି
ବଞ୍ଚାଇଲ କଳିକାଳଦଣ୍ଡ ମହାମନ୍ତ୍ରପଢ଼ି ।
ସ୍ୱାମୀ ଅଭୟେ ବରଦାତା ଯେବଣ-ପୁରୁଷ
ମୁହିଁ ଏହା ଶ୍ରବିଲି ମୋହର ଜନ୍ମର ଅଭ୍ୟାସ ।
ଦିବା ରାତ୍ରେ ସ୍ମରଇଁ ମୁଁ ଦେବ ଯେ ଶ୍ରୀକାଶୀ
ବଦଯନ୍ତି ସାରଳା ଦାସ ସ୍ୱାମୀ ବାରଣାସିଠାବ ଦେଖି ।

ସାରଳା ମହାଭାରତ—କର୍ଣ୍ଣପର୍ବ

କର୍ଣ୍ଣ ଓ ଅର୍ଜ୍ଜୁନଙ୍କ ଯୁଦ୍ଧର ପ୍ରଥମ ଦିବସ ଶେଷ ହେବା ପରେ ସାରଳାଦାସ ସାରଳାଦେବୀଙ୍କର ବନ୍ଦନା କରିଛନ୍ତି—

କୃପାଜଳ ନିଧିନୀ ବିଜୟେ ମମ ହୃଦେ
ଅକ୍ଷୟେ ଭଣ୍ଡାର ବିଧ୍ୱଂସିଲି ମୁଁ ଶ୍ରୀସାରଳା ଚଣ୍ଡୀ ପ୍ରସାଦେ ।
ଅନନ୍ତ ଗାୟତ୍ରୀ ନିର୍ମଳ ନିରାକୁଳୀ
ଅନନ୍ତ କୋଟି ଯୁଗେ ବାଳୁତ ରୂପେ ଖେଳି ।

× × ×

ପ୍ରାପତ କର ମୋତେ ଅବଦ୍ଧନ ଭୂମି ଛଳ ଅର୍ଦ୍ଧେ
କଣ୍ଠିତ ଭଗତ ହୋଇଲି ସେ ଦେବାର ପ୍ରସାଦେ ।

× × ×

ଅକଳିତ ସାଗର ଚରଣେ ମୋର ଇଚ୍ଛା
ବଦନ୍ତି ଶୂଦ୍ରମୁନି ସାରୋଳ ଦାସ ପୂରେଇବା ମନୋବାଞ୍ଛା ।”

ସାରଳା ମହାଭାରତ—କର୍ଣ୍ଣପର୍ବ

କର୍ଣ୍ଣ ପର୍ବର ଉପସଂହାର ବେଳକୁ ମଧ୍ୟ କବି ଶ୍ରୀ ପୁରୁଷୋତ୍ତମଙ୍କର ମନୋଜ୍ଞ ବର୍ଣ୍ଣନା କରିଛନ୍ତି ।

‘ଜୟରୁ ଜୟ ଭାରତ କୁଳ ମଣ୍ଡନ ଶ୍ରୀପୁରୁଷୋତ୍ତମ
ଜଗ ବନ୍ଦନ ନାଥ ମଣି ଜୟରୁ ଶ୍ରୀରାମ ।

× × ×

ଜମ୍ବୋଦ୍ୱୀପ ଭରଥ ଖଣ୍ଡ ଦକ୍ଷିଣ ଓଡ଼୍ରରାଷ୍ଟ୍ରେ
ନୀଳସୁନ୍ଦର ଗିରି ଦକ୍ଷିଣ ବାରିନିଧି ଉତ୍ତର ତଟେ ।
କୋଟିସୂର୍ଯ୍ୟ ଶୀର୍ଷ ଯେହ୍ନେ କଳ୍ପବଟ ଛାୟା
କଳିକାଳ ବିଧ୍ୱଂସନ ନୀଳ ଉତ୍ପଳ ସାର କାୟା ।
ଶ୍ୟାମୀ ଶ୍ୱେତ ପୀତ କୁଙ୍କୁମ ବିକଶିତ ତିନି ରୂପ
ସଂସାର ସାଗର ତାରଣକୁ ଧରିଲି ବହୁବ ରୂପ ।

ସାରଳାମହାଭାରତ—କର୍ଣ୍ଣପର୍ବ

× × ×

କର୍ଣ୍ଣ ପର୍ବ ଯୁଦ୍ଧ ପର୍ବ ମଧ୍ୟରେ ମୁକୁଟ ମଣି । କାରଣ ଭୀଷ୍ମ, ଦ୍ରୋଣ, ଶଲ୍ୟାଦି ବୀରମାନଙ୍କର ପାଣ୍ଡବ ମାନଙ୍କ ପ୍ରତି ଥିଲା ଶ୍ରଦ୍ଧା ଓ ଦୁର୍ବଳତା । ଅପର ପକ୍ଷରେ କର୍ଣ୍ଣ ଏହି ଦୁର୍ବଳତାର ପାତ୍ର ନଥିଲେ । ଦେବଦତ୍ତ ଶକ୍ତିକୁ ହରାଇ ଏବଂ ନାନା ଭାବରେ ଅଭିଶପ୍ତ ହୋଇ ମଧ୍ୟ କର୍ଣ୍ଣ ଯେପରି ନିର୍ଭୀକ ଭାବରେ ଯୁଦ୍ଧ କରି ନନ୍ଦିଘୋଷ ରଥକୁ ହଟାଇ ଦେଇଛି । ଯୁଧିଷ୍ଠିର ଓ ନକୁଳଙ୍କୁ ଲାଂଛିତ କରିଛି ଓ ଅବଶେଷରେ ଅସହାୟ ଭାବରେ କାରୁଣ୍ୟ ନିବେଦନ କରି ମଧ୍ୟ ମୃତ୍ୟୁ ବରଣ କରିଛି ତାହା ତାଙ୍କ ଚରିତ୍ରର ବୈଶିଷ୍ଟ୍ୟ ପ୍ରତିପାଦନ କରେ । ଏକ ଦିଗରେ ମାତୃଭକ୍ତ ଓ ମା’ କୁନ୍ତୀଙ୍କ ନିକଟରେ ଶପଥ ଏବଂ ଅନ୍ୟ ଦିଗରେ ବନ୍ଧୁ ଦୁର୍ଯ୍ୟୋଧନଙ୍କ ନିଷ୍ଠା ଓ ଆନ୍ତରିକତାର ଦ୍ୱନ୍ଦ୍ୱ ମଧ୍ୟରେ କର୍ଣ୍ଣ ପଡ଼ିଯାଇଛି । ପୁନଶ୍ଚ ସାରଥି ଶଲ୍ୟ ତାଙ୍କୁ ଉତ୍ସାହ ଦେବା ପରିବର୍ତ୍ତେ ଯୁଦ୍ଧର ଚରମ ସଙ୍କଟ ମୁହୂର୍ତ୍ତରେ ଯେପରି ତାଚ୍ଛଲ୍ୟ ଓ ହତୋତ୍ସାହିତ କରି ବିଭ୍ରାନ୍ତ କରିଛନ୍ତି ତାହା ହୋଇଛି ତାଙ୍କ ପତନର ଅନ୍ୟ ତମ କାରଣ । ଏସବୁ ବର୍ଣ୍ଣନା ମୂଳ ମହାଭାରତରେ ଥିଲେ ହେଁ ସାରଳା ଦାସ ତାକୁ ନିଜସ୍ୱ କଳ୍ପନା ବଳରେ ନୂତନ କଳା-ନୈପୁଣ୍ୟ

ପ୍ରଦାନ କରିଛନ୍ତି । କର୍ଣ୍ଣ ପର୍ବର ବୈଶିଷ୍ଟ୍ୟ ହେଉଛି ନକୁଳ ଓ ଯୁଧିଷ୍ଠିରଙ୍କ କର୍ଣ୍ଣର ନର୍ଯ୍ୟାତନା ଓ କ୍ଷମା, ଦୁଃଶାସନରେ ମୃତ୍ୟୁ ଓ ଦ୍ରୌପଦୀଙ୍କର ବେଣୀ ବନ୍ଧନ ଏବଂ କର୍ଣ୍ଣର ମୃତ୍ୟୁ । ଦ୍ରୌପଦୀଙ୍କ ବେଣୀ ବନ୍ଧନହିଁ ଏହି ପର୍ବର ସର୍ବଶ୍ରେଷ୍ଠ ବିଷୟ । ଦ୍ରୌପଦୀଙ୍କ ବେଣୀ ଆମର୍ଷନ କରିବା ଦିନରୁ ଦୁଃଶାସନ ପ୍ରତି ଦ୍ରୌପଦୀଙ୍କର ଭୟଙ୍କର କ୍ରୋଧ । ସେଠି ଦୟା ନାହିଁ, କ୍ଷମା ନାହିଁ, ନାରୀର କୋମଳ ଆବେଦନ ନାହିଁ ; ଅଛି ଖାଲି ପ୍ରତିହିଂସା । ନାରୀର ଏହି ପ୍ରତିହିଂସାହିଁ ପାଣ୍ଡବଙ୍କୁ କୌରବ-ନିଧନ-ଯଜ୍ଞର ଆୟୋଜନ କରିବାକୁ ଦେଇଛି ପ୍ରେରଣା । କର୍ଣ୍ଣ ପର୍ବରେ ଏହି ଯଜ୍ଞର ହୋଇଛି ପୂର୍ଣ୍ଣାହୁତି । ଦୁଃଶାସନର ଭୀମ କୃତ୍ତିକ ମୃତ୍ୟୁ, ଭୁଜ ଉତ୍ପାଟନ ଓ ଦ୍ରୌପଦୀଙ୍କର ବେଣୀ ବନ୍ଧନହିଁ ଏହି ଯଜ୍ଞର ଯେପରି ସର୍ବଶ୍ରେଷ୍ଠ ଲାଭ-ସମ୍ପଦ । ତେଣୁ କର୍ଣ୍ଣ ସହିତ ଅର୍ଜୁନର ଭୟାନକ ସମର ହୋଇଥିଲେ ହେଁ ଏବଂ କର୍ଣ୍ଣ କୌରବ ବାହିନୀର ପ୍ରଧାନ ସେନାପତି ରୂପେ ଯୁଦ୍ଧ ପରିଚାଳନା କରୁଥିଲେହେଁ ଭୀମ-ଦୁଃଶାସନ-ଯୁଦ୍ଧ ଯେପରି ହୋଇଯାଇଛି ମୁଖ୍ୟ । ଏହି ପର୍ବରେ ଏହି କାରଣରୁ ଭୀମ ହୋଇଛି ନାୟକ ଓ ଦ୍ରୌପଦୀ ହୋଇଛନ୍ତି ନାୟିକା । ସାରଳା ଦାସ ଏହାକୁ ଯେପରି ବର୍ଣ୍ଣନା କରିଅଛନ୍ତି, ତାହା ମୂଳ ମହାଭାରତରୁ ବ୍ୟତିକ୍ରମ ହେଲେହେଁ ; ଏହା ତାଙ୍କର ଉତ୍କୃଷ୍ଟ ସୃଷ୍ଟିର କାଳଜୟୀ ଅବଦାନ ।



# ଶଲ୍ୟପର୍ବ

ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି

---

ସାରଳାଙ୍କ ଶଲ୍ୟପର୍ବରେ ଦୁର୍ଯ୍ୟୋଧନଙ୍କ ଦ୍ୱାରା ଶଲ୍ୟଙ୍କୁ ସେନାପତିତ୍ୱରେ ବରଣ, ଶକୁନି ସହିତ ସହଦେବଙ୍କର ଯୁଦ୍ଧ, ଶକୁନିର ମୃତ୍ୟୁ, ଶଲ୍ୟଙ୍କ ସହ ଯୁଧିଷ୍ଠିରଙ୍କ ଯୁଦ୍ଧ ଓ ଶଲ୍ୟଙ୍କର ମୃତ୍ୟୁ। ଏହାପରେ କୃପାଚାର୍ଯ୍ୟଙ୍କୁ ସେନାପତି ପଦରେ ବରଣ, ଅର୍ଜୁନଙ୍କ ସହ ଯୁଦ୍ଧ ଓ ମୃତ୍ୟୁ, ବାଣଙ୍କ ଦ୍ୱାରା ପୁନର୍ଜୀବନ ଲାଭ।

ମହାରଥୀ କର୍ଣ୍ଣଙ୍କ ମୃତ୍ୟୁପରେ ମାଢଚକ୍ରବର୍ତ୍ତୀ ଦୁର୍ଯ୍ୟୋଧନ ମଦ୍ରପତି ମହାବୀର ଶଲ୍ୟଙ୍କୁ ବୀରବେଶ ଅଳଙ୍କାରରେ ସଜ୍ଜିତ କରାଇ ସେନାପତି ହେବାକୁ ଅନୁରୋଧ କଲେ। "ଯେତେକେ କର୍ମ ଅଛି ତୋହର ଅମନେ ଯୁଦ୍ଧକରି" କହି ଶଲ୍ୟ ଯୁଦ୍ଧକୁ ବାହାରିଲେ। ନନ୍ଦିଘୋଷ ରଥରେ ଥାଇ କୃଷ୍ଣାର୍ଜୁନ ଶଲ୍ୟଙ୍କ ସମ୍ମୁଖୀନ ହେଲେ ଓ ଅର୍ଜୁନ କହିଲେ ମାମୁଁ ହୋଇ ଭଣଜାଙ୍କ ସଙ୍ଗେ ଯୁଦ୍ଧ କରିବା ପିତା ପୁତ୍ର ମଧ୍ୟରେ ରଣ ସଦୃଶ। ନକୁଳ ସହଦେବଙ୍କ ମୁହଁକୁ ଚାହିଁ ତୁମେ ଆପଣା ଦେଶକୁ ଫେରିଯାଅ। ଶଲ୍ୟ କହିଲେ ବାବୁରେ ତୁମର ପରମ କଲ୍ୟାଣ ହେଉ' ମୋର ଆଶୀଷ ନେଇ ବାହାରିହ। ମାତ୍ର ମୁଁ ବାଲ୍ୟକାଳରୁ ଧୃତରାଷ୍ଟ୍ର କୋଳରେ ବଢ଼ି ତାହାଙ୍କ ସମ୍ପଦ କାଳରେ ଅନେକ ଭୋଗ କରିଥିବାରୁ ଏତେବେଳେ ଗୁଣ୍ଡୁସିବା ଅଧର୍ମ ହେବ। ମାଢଗୋବିନ୍ଦ ପାଇଁ ଅନେକ ଯୁଦ୍ଧକରି ତୁମ୍ଭମାନଙ୍କୁ ସମରରେ ଆଜି ଅବଶ୍ୟ ବଧ କରିବି। ଏହାପରେ ଅର୍ଜୁନ କ୍ରୋଧ ହୋଇ ବାଣ ମାରିବାରେ ଲାଗିଲେ। ଶଲ୍ୟଙ୍କ ଉଣେଶହ ପାଞ୍ଚ ବାଣକୁ ନାଶ କରିବାକୁ ଅର୍ଜୁନଙ୍କର କାମ୍ୟକ ଶର, ଶଲ୍ୟଙ୍କ ପର୍ବତ ଶରକୁ ଅର୍ଜୁନର ବଜ୍ରାଶର, ଅଗ୍ନି ଶରକୁ ମେଘାଶର, କୁହୁଡ଼ି ନାରାଚକୁ ସୂର୍ଯ୍ୟାବର୍ତ୍ତିକ, ଓ ବାବଲ ବାଣରେ ଅର୍ଜୁନ ସବୁ ବାଣକୁ କାଟି ପକାଇଲେ। ଧନଞ୍ଜୟଙ୍କ ଅର୍ଦ୍ଧଚନ୍ଦ୍ର ବାଣକୁ ଶଲ୍ୟ ତୀକ୍ଷ୍ଣ ମୁନା ବାଣରେ କାଟି ବଜ୍ରାବଳୀ ନାରାଚ ପେଷିବାରୁ ଅର୍ଜୁନ ତାକୁ ନୀଳବାଣରେ ବିନାଶ କଲେ। ଅର୍ଜୁନ ଚନ୍ଦ୍ରାବଳୀ ଶର ପେଷି ଶଲ୍ୟଙ୍କୁ ନିରସ୍ତ୍ର କରିଦେଲେ। ଯୁଦ୍ଧ କ୍ଷେତ୍ରର ଅନ୍ୟ ଅଂଶରେ ଶକୁନି ସହିତ ସହଦେବଙ୍କର ସମର ହେଲା। ସେହି ସମରରେ ଶକୁନି ବିରଥ ହୋଇ ଏକ ମତ୍ତଆଳ ଗଜ ଆରୋହଣ କରି ଖଡ୍ଗ ଧରି ଯୁଦ୍ଧ କଲା। ମାତ୍ର ସହଦେବଙ୍କ ତୀକ୍ଷ୍ଣମୁନା ଶରରେ ଆହତ ହୋଇ ହସ୍ତୀ ପଳାଇଲା। ତତ୍ପରେ ଶକୁନି ଏକ ଅଶ୍ୱପୃଷ୍ଠରେ ରହି ବହୁ ଯୋଦ୍ଧାଙ୍କୁ ହାଣି ପକାଇଲା।

ସହଦେବଙ୍କ ଅର୍ଦ୍ଧଚନ୍ଦ୍ର ବାଣରେ ଶକୁନିର ଶିରଚ୍ଛେଦ ହେଲା । ସଞ୍ଜୟ ମନ୍ତ୍ରୀଙ୍କଠାରୁ ଶକୁନିର ମୃତ୍ୟୁ ସମ୍ବାଦ ଶୁଣି ଧୃତରାଷ୍ଟ୍ର ଆନନ୍ଦିତ ହୋଇ କହିଲେ ଯେବେ ମୋର ପୁତ୍ର କଷ୍ଟ ପାଶୋର ଗଲା । ଆଗରୁ ଯଦି ଏ ଘଟଣା ଘଟିଥାନ୍ତା ତେବେ ଉଭୟ କୁଳରକ୍ଷା ପାଇଥାଆନ୍ତା । ଶକୁନି ମନ୍ତ୍ରୀ ହେବା ଦ୍ୱାରା କୁରୁପାଣ୍ଡବଙ୍କ ମଧ୍ୟରେ କଳହ ସୃଷ୍ଟି କରାଇ ଦୂରାଗ୍ରହ କରିଦେଲା । ଦୁର୍ଯ୍ୟୋଧନ କିନ୍ତୁ ଶକୁନି ନିଧନରେ ବହୁତ ଦୁଃଖ ଅନୁଭବ କରି କନ୍ଦାକଟା କଲା ଏବଂ କହିଲା, ମାମୁଁ ତୁମରି ପ୍ରସାଦରୁ ମୁଁ ପିତା ନିଷ୍କଣ୍ଟକ ରାଜ୍ୟ ଭୋଗ କରୁଥିଲି । ଏହି ସମୟରେ ଯୁଧିଷ୍ଠିରଙ୍କୁ ଏକ ବିରାଟକାୟ ଶ୍ୱେତ ହସ୍ତୀ ଉପରେ ଚଢ଼ି ଯୋଦ୍ଧାମାନଙ୍କ ସହିତ ଯୁଦ୍ଧକରି ଆସୁଥିବାର ଦେଖି ଦୁର୍ଯ୍ୟୋଧନ ଶକୁନି ଶବକୁ ତଳେରଖି ଏକ ମତ୍ତଗଜ ଆରୋହଣ କରି ଯୁଧିଷ୍ଠିରଙ୍କ ସମ୍ମୁଖୀନ ହେଲା । ଘୋରତର ଯୁଦ୍ଧ ହେଲା, ଯୁଧିଷ୍ଠିରଙ୍କ ଶରରେ ଦୁର୍ଯ୍ୟୋଧନର ମତ୍ତହସ୍ତୀ ମରିଗଲା ଓ ଦୁର୍ଯ୍ୟୋଧନ ଭୂମିରେ ଠିଆହୋଇ ଯୁଦ୍ଧ କରିବାକୁ ଉଦ୍ୟତ ହେଲା । ଅର୍ଜୁନ ଶ୍ରୀକୃଷ୍ଣଙ୍କୁ ନନ୍ଦୀଘୋଷ ରଥକୁ ବାହିନେଇ ଦୁର୍ଯ୍ୟୋଧନଙ୍କ ସମ୍ମୁଖରେ ଠିଆ କରିବାକୁ କହିଲେ । ନନ୍ଦିଘୋଷ ରଥ ପଛରେ ଯୁଧିଷ୍ଠିରଙ୍କ ବଗଳଚନ୍ଦ୍ର ନାମକ ହସ୍ତୀରେ ଚଢ଼ି ଯୁଦ୍ଧ କରିବା ସମୟରେ ଅଜଙ୍ଗମ ସାରଙ୍ଗ ଧନୁ ହାତରେ ଧରି ଆସି ସୈନ୍ୟମାନଙ୍କ ମଧ୍ୟରେ ମିଶିଲେ ଓ ଶତ୍ରୁ ପକ୍ଷର ବହୁସୈନ୍ୟ ନିଧନ କଲେ । ଯୁଧିଷ୍ଠିରଙ୍କ ସମ୍ମୁଖରେ ଶଲ୍ୟ ଆସି ଆବୋରିଲେ, ଶଲ୍ୟଙ୍କ ଅବଚ୍ଛିନ୍ନ ବାଣ ବୃଷ୍ଟି ସତ୍ତ୍ୱେ ଯୁଧିଷ୍ଠିର ହଟିଲେ ନାହିଁ । ଯୁଧିଷ୍ଠିରଙ୍କ ହସ୍ତୀ ମୁଣ୍ଡରେ ଶଲ୍ୟଙ୍କ ଶର ଭେଦଯିବାରୁ ସେ ମନ୍ଦରଗିରି ପଡ଼ିଲା ପରି ଟଳି ପଡ଼ିଲା । ଆଉ ଏକ ଶର ଯୋଗେ ଯୁଧିଷ୍ଠିରଙ୍କ ଧନୁକୋଣ କଟିଯିବାରୁ ଯୁଧିଷ୍ଠିର ଖଡ୍ଗ ଧରି ଶଲ୍ୟଙ୍କ ଉପରକୁ ଚଳାଇବା ବେଳକୁ ଶଲ୍ୟଙ୍କ ଶରରେ ତାହା ମଧ୍ୟ କଟିଗଲା । ରାଜା ବୀରସେନ ଓ ରାଣୀ ଶାଲ୍ମଣୀଙ୍କ ପୁତ୍ର ମହାବୀର ଶଲ୍ୟ ଯୁଧିଷ୍ଠିରଙ୍କୁ ଗୋଟାଏ ଚାପୁଡ଼ା ମାରିବାରୁ ଯୁଧିଷ୍ଠିର ଅଚେତ ହୋଇଗଲେ । ଶଲ୍ୟଙ୍କ ଆକ୍ରମଣରେ ଯୁଧିଷ୍ଠିର ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ତାଙ୍କୁ ଛୁଡ଼ିଦେବାକୁ ସେ ବାରମ୍ବାର ଅନୁରୋଧ କରି ବ୍ୟର୍ଥ ହେବାରୁ "ମାମୁଁ ଜଳିଲ, ଜଳିଲ" ବୋଲି ଚିତ୍କାର କରନ୍ତେ 'ଜଳିଲ' ଶବ୍ଦ ଉଚ୍ଚାରଣରେ ଶଲ୍ୟ ଜଳିଗଲା । ଶଲ୍ୟ ଦହଯ୍ୟ ହୋଇ ଜ୍ୱାଳାନଳ ଦୃଷ୍ଟି ପକାଇବା ଆଶଙ୍କାରେ କୁରୁପତି ଦୁର୍ଯ୍ୟୋଧନ ପଳାଇଗଲେ ଓ ଆଉ ପଛକୁ ଲେଉଟି ଚାହିଁଲେ ନାହିଁ । ତାଙ୍କର ସେ ଦୃଷ୍ଟି ସୈନ୍ୟବାହିନୀ ଉପରେ ପଡ଼ିବାରୁ ସୈନ୍ୟମାନେ ଫାଟିଗଲେ ବା ଛତ୍ରଭଙ୍ଗ ଦେଲେ । ଶ୍ରୀକୃଷ୍ଣ ଓ ଅର୍ଜୁନ ଏ ଦୃଶ୍ୟ ଦେଖି ହସିଲେ ।

କୁରୁରାଜା ଦୁର୍ଯ୍ୟୋଧନ ଭୀତତ୍ରସ୍ତ ହୋଇ ପଳାୟନ କରୁଥିବା ଦେଖି ଭୀମ ତାର ପଶ୍ଚାଦ୍ଧାବନ କରିବାକୁ ଉଦ୍ୟତ ହୁଅନ୍ତେ ଶ୍ରୀକୃଷ୍ଣ ତାଙ୍କୁ ତହିଁରୁ ବାରଣ କରି କହିଲେ ନିଶସ୍ତ୍ର ଲୋକ ସଙ୍ଗେ ସଂଗ୍ରାମ କରିବା ଉଚିତ ନୁହେଁ । ଯୁଦ୍ଧକ୍ଷେତ୍ରର ଏ ବାର୍ତ୍ତା

ସଞ୍ଜୟଙ୍କ ମାଧ୍ୟମରେ ଧୃତରାଷ୍ଟ୍ରଙ୍କ ନିକଟରେ ପହଞ୍ଚିଲା । ଶଲ୍ୟପରି ତ୍ରୈଲୋକ୍ୟ ବିଜୟୀ ବୀର କିପରି ନିହତ ହେଲେ ତାର କାରଣ ପଚାରିବାରୁ ସଞ୍ଜୟ ପର୍ଶୁରାମ ଆଶ୍ରମରେ ଶଲ୍ୟଙ୍କ ଯୁଦ୍ଧ ବିଦ୍ୟା ଶିକ୍ଷା ବେଳର ଘଟଣାଟି ବର୍ଣ୍ଣନା କଲେ । ଭୀଷ୍ମ, ଭୂରିଶ୍ରବା, ସୋମଦତ୍ତ ଓ ଶଲ୍ୟ ପର୍ଶୁରାମଙ୍କ ଆଶ୍ରମରେ ଥାଇ ଯମୁନା ନଦୀ କୂଳବର୍ତ୍ତୀ ଇନ୍ଦ୍ରପ୍ରସ୍ଥରେ ଅଭ୍ୟାସ କରୁଥିଲେ । ଗଙ୍ଗା ନଦୀର ଦକ୍ଷିଣ ତୀରରେ ସେମାନେ ଥିବାବେଳେ ଉତ୍ତର ଦିଗସ୍ଥିତ ଲୋହଗିରି ଗୁମ୍ଫା ଭେଦ କରିବା ନିମନ୍ତେ ଫିମ୍ପିଶର ମାରିବାକୁ ଗୁରୁଙ୍କଠାରୁ ଆଦେଶ ପାଇ ଭୀଷ୍ମ, ଭୂରିଶ୍ରବା, ସୋମଦତ୍ତ ଓ ଶଲ୍ୟ ଜଣଙ୍କ ପରେ ଜଣେ ଶର ସନ୍ଧାନ କଲେ । ସେହି ପର୍ବତ ଉତ୍ତର କୋଣରେ ପ୍ରବାହିତ ଋଷିକୁଲ୍ୟା ନଦୀ ଓ ତାହାର ଅଗ୍ନିକୋଣରେ ଭୈରବୀ ଦେବୀ ଥାନ୍ତି । ସେ ନଦୀ ତୀରରେ ଅଣଷ୍ଟକ ଋଷିଙ୍କ ନିବାସସ୍ଥଳୀ । ନଅ ହଜାର ବର୍ଷ ଧରି ତପସ୍ୟାରତ ଏହି ଋଷିଙ୍କ ଶରୀରରେ ଡାହାଣ ପଞ୍ଜରାରେ ପକ୍ଷୀ ବାସ ପଞ୍ଜରା ଫୁଟାଇ ସେ ପିମ୍ପିଶର ବାହାରିବାରୁ ଋଷି ଗର୍ଜନ କରି ଧାଇଁ ଯାଇ ପର୍ଶୁରାମଙ୍କ ପାଖରେ କହିଲେ ମୋତେ ଅଦୋଷରେ ଯେ ଏପରି ଦଣ୍ଡ ଦେଇଛି ତାର ଶରୀର ଜଳିଯାଉ । ଏହାଶୁଣି ଶଲ୍ୟ ଋଷିଙ୍କୁ ରକ୍ଷାକରିବାକୁ ନିବେଦନ କରନ୍ତେ ଋଷି କହିଲେ ମହାଭାରତ ଯୁଦ୍ଧରେ ଯୁଧିଷ୍ଠିର ହାତରେ ତୁ ନିହତହେବୁ । ତେଣୁ ସେହି ଋଷିଙ୍କ ଅଭିଶାପ ଯୋଗୁଁ ଶଲ୍ୟଙ୍କ ଏପରି ଫଳ ଫଳିଲା ।

ଶଲ୍ୟ ବଧ ପରେ କୃପାଚାର୍ଯ୍ୟଙ୍କୁ ସେନାପତି ପଦରେ ବରଣ କରି ଦୁର୍ଯ୍ୟୋଧନ କହିଲା: ତୁମେ ତ ସମ୍ବନ୍ଧେ ପାଣ୍ଡବଙ୍କ ଶତ୍ରୁ, ତୁମର ଭଣେଇ ଦ୍ରୋଣଙ୍କୁ ସେମାନେ ହତ୍ୟା କରିଛନ୍ତି । ତେଣୁ ସେମାନଙ୍କ ସଙ୍ଗେ ଯୁଦ୍ଧକରିବା ତୁମର କର୍ତ୍ତବ୍ୟ । ସେନାପତି ଭାବେ କୃପାଚାର୍ଯ୍ୟଙ୍କୁ ଦେଖି ଅର୍ଜ୍ଜୁନ ରଥ ଉପରୁ କହିଲେ, ଦ୍ରୋଣ ଯେତେବେଳେ ମାରିଗଲେ ତୁମ୍ଭଙ୍କୁ କି କ୍ରୋଧ ଅଛି ? ତେଣୁ ଯୁଦ୍ଧକ୍ଷେତ୍ର ଛାଡ଼ି ଯାଇ ଜପତପ କର । ଏଥିରେ କ୍ରୁଦ୍ଧ ହୋଇ ବୃଷଧ୍ୱଜ ତନୟ କୃପାଚାର୍ଯ୍ୟ ଅର୍ଜ୍ଜୁନ ଉପରକୁ ଶର ପ୍ରୟୋଗ କଲେ । ଅର୍ଜ୍ଜୁନ ମଧ୍ୟ ଶରଦ୍ୱାରା ତାର ଉତ୍ତର ଦେଲା । ଆକାଶରେ ଅଗ୍ନି ବୃଷ୍ଟି ହେଲା । କୃପଙ୍କ କାଳସର୍ପ ବାଣକୁ ଅର୍ଜ୍ଜୁନର ଗରୁଡ଼ବାଣ, ପୁଣି କୃପ ଅଗ୍ନିବାଣରେ ଅଗ୍ନି ବୃଷ୍ଟି କରିବାରୁ ଅର୍ଜ୍ଜୁନ ମେଘାସ୍ତ୍ରରେ ଜଳବୃଷ୍ଟି କରି ଅଗ୍ନି ନିବାରଣ କଲା । କୃପାଚାର୍ଯ୍ୟ ପର୍ବତାଶର ନିକ୍ଷେପ କରନ୍ତେ ଅର୍ଜ୍ଜୁନ ତାହା ବଜ୍ରଶରରେ ଖଣ୍ଡ ବିଖଣ୍ଡିତ କଲା । ପରିଶେଷରେ ଅର୍ଜ୍ଜୁନ କୃଷ୍ଣଙ୍କ ମାଧ୍ୟମରେ କର୍ଣ୍ଣଠାରୁ ଲାଭକରିଥିବା ନୀଳବାଣ ଓ ଭୁଜବାଣ ଶରଦ୍ୱୟ ନିକ୍ଷେପ କଲା । "ନୀଳବାଣ ଯେହୁ ବାସୁଦେବଙ୍କ କନିଷ୍ଠ ଅଙ୍ଗୁଷ୍ଠି, ଭୁଜବାଣ ଯେହୁ ରୁଦ୍ରଙ୍କର ଅଙ୍ଗୁଷ୍ଠି ଗୋଟି" । ସେହି ବେଳେ ଶସ୍ତ୍ର କୃପଙ୍କଠାରେ ଶ୍ରୀବତ୍ସ ଲକ୍ଷଣ ଦେଖି କିପରି ନାଶ କରିବା ବୋଲି ଚିନ୍ତିତ ହେଲେ । ବ୍ରାହ୍ମଣକୁ ମାରିରେ ଅଧର୍ମ ହେବ । କୃପାଚାର୍ଯ୍ୟ କହିଲେ ତୁମ୍ଭେ ମୁହିଁ ହରିହର । ତୁମ ପ୍ରତିପକ୍ଷ ହେବାପରି ଆଉ ପାଳିଟା

ଶର ନାହିଁ । ତେଣୁ ମାରିବା ରକ୍ଷିବା ତୁମର ଧର୍ମ । ନୀଳବାଣ କହିଲା ଆମେ ଅପାଲଟଙ୍କ ଶର । ବ୍ରହ୍ମା, ରୁଦ୍ର, ଚନ୍ଦ୍ର ଓ ସୂର୍ଯ୍ୟଙ୍କର ମୁଣ୍ଡ ଆମେ ଶିରଚ୍ଛେଦ କରିପାରୁ । ପେଷିଥିବା ଲୋକପାଖରୁ ବ୍ୟର୍ଥହୋଇ ଫେରନ୍ତୁ ନାହିଁ । ଏହାକହି ଶରଦ୍ୱୟ କୃପଙ୍କ ଉପରେ ପଡ଼ିବାରୁ ତାଙ୍କର ମୁଣ୍ଡ ହାଣି ହୋଇଗଲା ଓ ଚକ୍ରପାଣି ଶ୍ରୀକୃଷ୍ଣ ଶଙ୍ଖଧ୍ୱନି କଲେ । କୃପଙ୍କ ମୃତ୍ୟୁରେ ଉଭୟ ପକ୍ଷ ସୈନ୍ୟଙ୍କ ମଧ୍ୟରେ ଚହଳ ପଡ଼ିଗଲା ।

ନୀଳବାଣ ଓ ଭୁଜବାଣ ଦୁଇ ଶସ୍ତ୍ର ହସ୍ତ ମନରେ ବିସ୍ମରିଲେ କୃପଙ୍କ ମୁଖ ତ କୃଷ୍ଣ ଫାଲଗୁନ ସହିତେ ସମସ୍ତେ ଦେଖିମାରିଲେ । ଅର୍ଜୁନ କଥାରେ ମାରିଦେଲେ ସିନା ପୁଣି ଜୀଆଇ ଦେଇ ଆମର ପାପ କ୍ଷାଳନ କରିଦେବା । କୃପଙ୍କ ମୁଖକୁ ପିଠି ସହିତ ଯୋଡ଼ି ମୃତ ସଞ୍ଜୀବନୀ ମନ୍ତ୍ର ଜୀବନ୍ୟାସ ଦେଇ ସେ ସ୍ଥାନ ତ୍ୟାଗ କରି ଅରଣ୍ୟରେ ତପସ୍ୟା କରିବାକୁ ପଠାଇଦେଲେ । କେଣ ବାସ ଅସମ୍ମାନ ହୋଇ ଆଚାର୍ଯ୍ୟ କୃପ ତପସ୍ୟା ନିମିତ୍ତ ବନ ଅରଣ୍ୟରେ ଯାଇ ଲୁଚିଲେ । ନୀଳବାଣ ଓ ଭୁଜବାଣ ଦୁହେଁ ସ୍ୱର୍ଗଗାମୀ ହୋଇ ହରିହରଙ୍କ ଠାରେ ଲୀନ ହେଲେ । ବ୍ୟାସଦେବଙ୍କ ମହାଭାରତରେ ଶଲ୍ୟ ପର୍ବ ୬୮ଟି ଅଧ୍ୟାୟର ସମଷ୍ଟି । ୧—ସଞ୍ଜୟଙ୍କଠାରୁ କୌରବ ଓ ପାଣ୍ଡବମାନଙ୍କ ସୁରସୁର ସମର ସନ୍ଧାନ ତୁମୁଳ ଯୁଦ୍ଧ, କର୍ଣ୍ଣବଧ, ଦୁର୍ଯ୍ୟୋଧନ ବନ୍ଧ ସ୍ୱାନ ହୋଇ ଏକ ହ୍ରଦରେ ଆଶ୍ରୟ ନେବାବେଳକୁ ଭୀମ ସେଠାରେ ପହଞ୍ଚି ତାଙ୍କୁ ଉଚ୍ଚସ୍ୱରରେ ଆହ୍ୱାନ କରିବା ଆଦି ସମ୍ବାଦ ପାଇ ଧୃତରାଷ୍ଟ୍ର ଶୋକାକୁଳିତ ହେଲେ । ସଞ୍ଜୟ କହିଲେ, ମହାରାଜ, ମଦ୍ରାଧିପତି ଶଲ୍ୟ, ସୁବଳନନ୍ଦନ ଶକୁନି, ପୁରୁଷସିଂହ ଉଲୁକ ଓ ସଂଶପ୍ତକ ସୈନ୍ୟ ନିହତ ହୋଇଛନ୍ତି । ଭୀମ ସ୍ୱରର ପତଙ୍ଗ ଅନୁସାରେ କୁରୁପତି ଦୁର୍ଯ୍ୟୋଧନଙ୍କର ଉରୁ ଭଗ୍ନ କରିଛନ୍ତି । ପାଣ୍ଡବ ପକ୍ଷର ଧୃଷ୍ଟଦ୍ୟୁମ୍ନ ଅପରାଜିତ, ଶିଖଣ୍ଡୀ ନିହତ, ଯୁଧାମନ୍ୟୁ ଉତ୍ତମୌଜା ପଟ୍ଟଦ୍ରକଗଣ ଓ ଚେଦି ପାଞ୍ଚାଳ ସୈନ୍ୟ ସମସ୍ତ ଦ୍ରୌପଦୀଙ୍କ ପଞ୍ଚପୁତ୍ର ଜୀବନ ତ୍ୟାଗ କରିଛନ୍ତି । କର୍ଣ୍ଣପୁତ୍ର ବୃଷସେନ ଓ ଆପଣଙ୍କ ପୁତ୍ରମାନେ ହତ ହୋଇଛନ୍ତି । ଏହାଶୁଣି ପୁତ୍ରଶୋକରେ ଧୃତରାଷ୍ଟ୍ର ମୂର୍ଚ୍ଛିତ ହେଲେ । ସଞ୍ଜୟଙ୍କ ସମ୍ବୋଧନ କରି କହିଲେ ଆମ୍ଭେ ପୁତ୍ରହୀନ ହୋଇ ଅନାଥ ହେଲୁ । ଏତେବେଳେ ତୁମେ ହିଁ ଆମର ଗତି । ଦ୍ୱିତୀୟ ଅଧ୍ୟାୟରେ ଦୁର୍ଯ୍ୟୋଧନର ଗୁଣ ବାହୁନି ଧୃତରାଷ୍ଟ୍ରଙ୍କ ପୁତ୍ର ଶୋକ ଓ ଯୁଦ୍ଧର ଜନ୍ମିତ ବିବରଣୀ ଜିଜ୍ଞାସା । ତୃତୀୟ ଅଧ୍ୟାୟରେ ସତ୍ୟ ପରାକ୍ରମ ବୃକୋଦର ସୈନ୍ୟମାନଙ୍କୁ ସଂହାର କରିବା, ମାଦ୍ରିପୁତ୍ର ନକୁଳ ଓ ସହଦେବ ମାତୁଳଙ୍କ ସହିତ ଗାନ୍ଧାର ରାଜାଙ୍କୁ ଆକ୍ରମଣ କରିବା, ଦୁର୍ଯ୍ୟୋଧନ ସ୍ୱୀୟ ସୈନ୍ୟମାନଙ୍କୁ ଅତିଶୟ କ୍ଷତବିକ୍ଷତ ଓ ପଳାୟନ ତତ୍ପରରେ ଦୃଢ଼ନିଶ୍ଚୟ ହେବା ଦେଖି ସେମାନଙ୍କୁ ନିଷେଧ କରିବା ଓ ଦୁର୍ଯ୍ୟୋଧନଙ୍କ ବାକ୍ୟ ମାନ୍ୟକରି ସୈନ୍ୟମାନଙ୍କ ପୁନର୍ବାର ଯୁଦ୍ଧ, ଚତୁର୍ଥ ଅଧ୍ୟାୟରେ ଦୁର୍ଯ୍ୟୋଧନଙ୍କୁ ଯୁଦ୍ଧରୁ ନିବୃତ୍ତ ହେବାକୁ କୃପାଚାର୍ଯ୍ୟଙ୍କ ପ୍ରବୋଧ ବାକ୍ୟ, ପଞ୍ଚମ ଅଧ୍ୟାୟରେ ଅଭିମନ୍ୟୁଙ୍କ ବିନାଶ ହେତୁ ପାଣ୍ଡବମାନେ ଯୁଦ୍ଧରୁ ନିବୃତ୍ତ ହେବେନାହିଁ କହି ଦୁର୍ଯ୍ୟୋଧନ ଜଣ୍ଡିତ

ସ୍ୱବେ ଯୁଦ୍ଧ କରିବାକୁ ଋଷିବୃନ୍ଦଙ୍କୁ ଆହ୍ୱାନ କଲେ । ଷଷ୍ଠ ଅଧ୍ୟାୟରେ ଯୁଦ୍ଧପ୍ରିୟ ବୀରଗଣ ଶଲ୍ୟ ଚିତ୍ରସେନ, ଶକୁନି, ଅଶ୍ୱତ୍ଥାମା, ସାତ୍ୱତ ବଂଶୀୟ କୃତବର୍ମା କୃପାଚାର୍ଯ୍ୟ, ସୁଷେଣ, ଅରିଷ୍ଟସେନ, ଧୃତସେନ ଓ ଜୟସେନ ପ୍ରଭୃତି ଦୁର୍ଯ୍ୟୋଧନଙ୍କ ପାଖରେ ସମବେତ ହେଲେ । ଅଶ୍ୱତ୍ଥାମା ପ୍ରସ୍ତାବ ଦେଲେ, ମଦ୍ରପତି ଶଲ୍ୟ ବଳବୀର୍ଯ୍ୟ କୁଳଶୀଳ ଯଶଃ ଶ୍ରୀ ଓ ତେଜଃ ଆଦି ସବ ଗୁଣରେ ପରିପୂର୍ଣ୍ଣ ପୁଣି ଆପଣାର ଭଣଜାମାନଙ୍କୁ ଛାଡ଼ି ଆମ ପକ୍ଷରେ ଯୋଗ ଦେଇଛନ୍ତି । ତେଣୁ ତାହାଙ୍କୁ ସେନାପତି କରନ୍ତୁ । ତତ୍ପରେ ଦୁର୍ଯ୍ୟୋଧନ ଶଲ୍ୟଙ୍କୁ କୃତାଞ୍ଜଳିପୂର୍ବକରେ କହିଲେ ହେ ମିତ୍ର ବତ୍ସଳ ଆପଣ ଆମର ସେନାପତି ହୁଅନ୍ତୁ । ଏଥିରେ ଶଲ୍ୟ ଆପଣାର ସମ୍ମତି ପ୍ରଦାନ କରି କହିଲେ, କୁରୁରାଜ ! ତୁମର ପ୍ରିୟ କାର୍ଯ୍ୟ ସାଧନ ପାଇଁ ଆମ୍ଭେ ରାଜ୍ୟ, ଧନ ଓ ପ୍ରାଣ ପର୍ଯ୍ୟନ୍ତ ସମର୍ପଣ କରିବୁ । ଏହା ପରେ ମଦ୍ରକମାନେ ଶଲ୍ୟଙ୍କୁ ସ୍ତବ କଲେ । (୭ମ ଅଧ୍ୟାୟ) । ଶଲ୍ୟ ସେନାପତି ହେବାରୁ କର୍ଣ୍ଣଙ୍କ ମୃତ୍ୟୁ ଦୁଃଖ କୌରବ ସୈନ୍ୟମାନଙ୍କ ମନରୁ ଦୂର ହୋଇଗଲା । ସେମାନଙ୍କ ଆନନ୍ଦ ଧ୍ୱନି ଶୁଣି ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ଏହାର କାରଣ ପଚାରନ୍ତେ ଶ୍ରୀକୃଷ୍ଣ କହିଲେ ହେ ନରବର ! ଶାର୍ଦ୍ଦୂଳ ସମାନ ବିକ୍ରମଶାଳୀ ଆପଣଙ୍କ ବ୍ୟତୀତ ଆଉ ଅନ୍ୟ କେହି ତାଙ୍କ ସହିତ ଲଢ଼ିବାକୁ ସମକକ୍ଷ ଯୋଦ୍ଧା ନାହାନ୍ତି । ସେ ଯୁଦ୍ଧ କ୍ଷେତ୍ରରେ ସିଂହ ସଦୃଶ ବିଚରଣ କରିବେ । ଦୁର୍ଯ୍ୟୋଧନ ଏହି ଶଲ୍ୟଙ୍କୁ ଅପରାଜେୟ ବିଚାରି ବହୁ ସତ୍କାରକରି ପଠାଇଛନ୍ତି, ମାତ୍ର ଆପଣଙ୍କ ହସ୍ତରେ ସେ ହତ ହେଲାପରେ ଆପଣଙ୍କର ଜୟ ହେବ ଏବଂ ଦୁର୍ଯ୍ୟୋଧନଙ୍କର ସମସ୍ତ ସୈନ୍ୟ ହତ ହେବେ । ଭୀଷ୍ମ ଓ ଦ୍ରୋଣ ରୂପ ସାଗର ଓ କର୍ଣ୍ଣ ରୂପ ମହା ସାଗର ଅତିକ୍ରମ କରି ଆଉ ଶଲ୍ୟ ରୂପ ଗୋଷ୍ପଦରେ ନିମଗ୍ନ ହୁଅନ୍ତୁ ନାହିଁ । କ୍ଷାତ୍ରଧର୍ମ ପ୍ରଦର୍ଶନ କରି ଶଲ୍ୟ ବଧ କରନ୍ତୁ ।

ଅଷ୍ଟମ ଅଧ୍ୟାୟ—ମହାରଥମାନେ ମଦ୍ରରାଜ ଶଲ୍ୟଙ୍କୁ ସେନାପତି କରିବା ପରେ ନିଜ ନିଜ ଅଧୀନରେ ଥିବା ସୈନ୍ୟଦଳଙ୍କୁ ଘେନି ତାହାଙ୍କ ଆଦେଶ ଅପେକ୍ଷାରେ ରହିଲେ । ସେମାନେ ପ୍ରତିଜ୍ଞା କଲେ ଯେ କେହି ଏକାକୀ ପାଣ୍ଡବଙ୍କ ସଙ୍ଗେ ସଂଗ୍ରାମ କରିବେ ନାହିଁ । ସମସ୍ତେ ପରସ୍ପରକୁ ରକ୍ଷାକରି ସମରରେ ପ୍ରବୃତ୍ତ ହେବେ ।

ପ୍ରତାପଶାଳୀ ମହାରଥ ମଦ୍ରରାଜ ଶଲ୍ୟ ସର୍ବତୋଭଦ୍ର ନାମ ବ୍ୟୂହ ରଚନା କରି ସିନ୍ଧୁଦେଶୀୟ ଅଶ୍ୱ ଯୁକ୍ତ ଉତ୍କୃଷ୍ଟ ରଥରେ ବସି ପାଣ୍ଡବମାନଙ୍କ ନିକଟକୁ ଗଲେ । ସେହି ବ୍ୟୂହର ଅଗ୍ରଭାଗରେ ରହିଲେ ମଦ୍ରଦେଶୀୟ ବୀରଗଣ ଓ କର୍ଣ୍ଣଙ୍କ ପୁତ୍ର । ମଧ୍ୟଭାଗରେ ଅବସ୍ଥାନ କଲେ ସୈନ୍ୟ ସାମନ୍ତ ପରିବେଷ୍ଟିତ ଦୁର୍ଯ୍ୟୋଧନ । ବାମଭାଗରେ କୃତବର୍ମା ଓ ତ୍ରିଗର୍ତ୍ତ ସୈନ୍ୟଗଣ । ଦକ୍ଷିଣ ପାର୍ଶ୍ୱରେ ଅବସ୍ଥାନ କଲେ ଶକ ଓ ଯବନ ସୈନ୍ୟଙ୍କ ସହ କୃପାଚାର୍ଯ୍ୟ । କାମ୍ବୋଜ ସୈନ୍ୟଙ୍କ ସହିତ ପୃଷ୍ଠ ଭାଗରେ ରହିଲେ ଅଶ୍ୱତ୍ଥାମା । ଶକୁନି ଓ ଉଲୂକ ଅନ୍ୟାନ୍ୟ ସୈନ୍ୟମାନଙ୍କୁ ଧରି ଯୁଦ୍ଧଯାତ୍ରା କଲେ ।

ପାଣ୍ଡବମାନେ ଶଲ୍ୟଙ୍କ ସମ୍ମୁଖୀନ ହେବାକୁ ଧାବିତ ହେଲେ । ଶଲ୍ୟଙ୍କ ସଙ୍ଗେ ଯୁଧିଷ୍ଠିର, କୃତବର୍ମା ଓ ସଂଶପ୍ତକ ସୈନ୍ୟଙ୍କ ସହିତ ଅର୍ଜୁନ, କୃପାଚାର୍ଯ୍ୟଙ୍କ ବିରୁଦ୍ଧରେ ଭୀମ ଏବଂ ନକୁଳ ଓ ସହଦେବ ଶକୁନି ଓ ଉଲୂକଙ୍କ ସଙ୍ଗେ ଲଢ଼ିବାକୁ ଲାଗିଲେ ।

ନବମ ଅଧ୍ୟାୟରେ ଭୀଷଣ ଯୁଦ୍ଧର ବର୍ଣ୍ଣନା କରାଯାଇଛି । ରଣମତ୍ତ ନକୁଳ ଚିତ୍ରସେନକୁ ଆକ୍ରମଣ କଲେ । ସେ ନକୁଳଙ୍କ ଶରାସନକୁ ଛେଦନ କରିବାରୁ ନକୁଳ ବିରଥ ହୋଇ ପଦବ୍ରଜରେ ଧାବିତ ହେଲେ ଏବଂ ଚିତ୍ରସେନ ରଥରେ ଚଢ଼ି ତାହାର ଶିରଚ୍ଛେଦ କଲେ । ଭ୍ରାତାଙ୍କ ମରଣ ଦେଖି କର୍ଣ୍ଣପୁତ୍ର ସୁଷେଣ ଓ ସତ୍ୟସେନ ନକୁଳଙ୍କୁ ଆକ୍ରମଣ କଲେ ।

ଏକାଦଶ ଅଧ୍ୟାୟ—କୌରବ ସେନା ମିଳିତଭାବେ ପାଣ୍ଡବସେନା ସମ୍ମୁଖକୁ ଧାବିତ ହେଲେ । ମହାବଳୀ ଶଲ୍ୟ ଭୀମଙ୍କୁ ଶାଣିତ ଶର ନିକ୍ଷେପ କଲେ ଓ ତାଙ୍କଦ୍ୱାରା ସହସ୍ର ସହସ୍ର ପ୍ରଭଦ୍ରକ ଓ ସୋମକ ସୈନ୍ୟ ପୀଡ଼ିତ ହେଲେ । ଗଦା ଯୁଦ୍ଧ ପଣ୍ଡିତ ଭୀମ ଶଲ୍ୟଙ୍କ ଅଶ୍ୱଗୁଡ଼ିକୁ ଗଦାଘାତରେ ସଂହାର କରିବାରୁ ଶଲ୍ୟ ଭୀମଙ୍କ ବକ୍ଷକୁ ତୋମରାସ୍ତ୍ର ପ୍ରୟୋଗ କଲେ । ଭୀମ ତାକୁ ଆପଣା ବକ୍ଷରୁ ବାହାର କରି ଶଲ୍ୟଙ୍କ ସାରଥି ହୃଦୟକୁ ବିଦ୍ଧ କଲେ । ସାରଥି ରକ୍ତବାନ୍ତି କରି ରଥରୁ ଖସିପଡ଼ିଲା ଏବଂ ଶଲ୍ୟ ସାରଥି ବିହୀନ ରଥରୁ ଓହ୍ଲାଇ ଲୌହ ଗଦା ହସ୍ତରେ ଭୀମଙ୍କୁ ଆକ୍ରମଣ କଲେ ।

ଦ୍ୱାଦଶ ଅଧ୍ୟାୟ—ମଦ୍ରରାଜ ଶଲ୍ୟ ଓ ବୃକୋଦର ବୃଷଭସମାନନାଦ କରି ଗଦାଦ୍ୱୟକୁ ଘୂରାଇ ରଣସ୍ଥଳରେ ବିଚରଣ କଲେ । ଉଭୟେ ପରସ୍ପରକୁ ଗଦାଘାତରେ ଆହତ କଲେ । କୃପାଚାର୍ଯ୍ୟ ଶଲ୍ୟଙ୍କୁ ରଥରେ ବସାଇ ଯୁଦ୍ଧକ୍ଷେତ୍ରରୁ ନେଇଗଲେ । କିଛି ସମୟ ପରେ ପୁଣି ଶଲ୍ୟ ଯୁଧିଷ୍ଠିରଙ୍କୁ ଆକ୍ରମଣ କରିବାରୁ ଧର୍ମରାଜ ଶର ନିକ୍ଷେପ କରି ଶଲ୍ୟଙ୍କୁ ବିଦ୍ଧ କଲେ । କ୍ଷୁରପ୍ର ଅସ୍ତ୍ର ପ୍ରହାର ଦ୍ୱାରା ଶଲ୍ୟଙ୍କ ଚକ୍ରରକ୍ଷକର ପ୍ରାଣ ସଂହାର କଲେ ।

ତ୍ରୟୋଦଶ ଅଧ୍ୟାୟ – ମହାରଥ ସୁରଥଙ୍କ ନିଧନ, (୧୪ଶ ଅଧ୍ୟାୟ) ପରେ ଶଲ୍ୟ ଓ ଯୁଧିଷ୍ଠିରଙ୍କଯୁଦ୍ଧର ଉଗ୍ରତା (୧୫ଶ ଅ) ବର୍ଣ୍ଣନା କରାଯାଇଛି । ଯୁଧିଷ୍ଠିରଙ୍କୁ ୩ଟି, ଭୀମଙ୍କୁ ୭ଟି, ସାତ୍ୟକି ସହଦେବ,ନକୁଳଙ୍କୁ ଶର ନିକ୍ଷେପ କରି ଶଲ୍ୟ ଭୂମଣ୍ଡଳ ଶରଦ୍ୱାରା ପରିପୂର୍ଣ୍ଣ କରି ଦେଲେ । ସଦା ଶାନ୍ତ ଓ ଧୀର ସ୍ୱଭାବ ବିଶିଷ୍ଟ ରାଜା ଯୁଧିଷ୍ଠିର କ୍ରୋଧରେ କମ୍ପମାନ ହୋଇ ଶର ବୃଷ୍ଟି କରି "ହେ ଶଲ୍ୟ ! ତୁମେ ରହ" କହି ତାଙ୍କ ସଙ୍ଗେ ଯୁଦ୍ଧ କଲେ । (୧୬ଶ ଅ) । ଯୁଧିଷ୍ଠିର ମଣି ଓ ପ୍ରବାଳଦ୍ୱାରା ଉଜ୍ଜ୍ୱଳ ଏକ ପ୍ରଦୀପ୍ତ ଶକ୍ତିନେଇ ଶଲ୍ୟଙ୍କୁ ଅତି ବେଗରେ ନିକ୍ଷେପ କଲେ । (୧୭।୪୧) । ରୁଦ୍ରଦେବତା ଅନ୍ଧକାସୁରକୁ ଯେପରି ଶର ନିକ୍ଷେପ କରି ଗର୍ଜନ କରିଥିଲେ, ଯୁଧିଷ୍ଠିର ସେହିପରି ଗର୍ଜନକରି "ହେ ଅନିଷ୍ଟକାରକ ତୁମ୍ଭେ ହତ ହେଲ', କହି ଗର୍ଜନ କଲେ । ସେହି ଶକ୍ତି ପ୍ରବେଶ କରିବାରୁ ଶଲ୍ୟଙ୍କ ନାସା, ନେତ୍ର କର୍ଣ୍ଣ ଓ ମୁଖରୁ ଅନର୍ଗଳ ରକ୍ତସ୍ରାବ ହେଲା । ବଜ୍ରାହତ

ପବଂତ ଶୃଙ୍ଗପର ଭୂପତିତ ହେଲେ । (୧୭।୫୬) ଏହାପରେ ଶଲ୍ୟ ନିହତ ଓ କୃତବର୍ମା ବିରଥ ହେବାରୁ ଦୁର୍ଯ୍ୟୋଧନଙ୍କ ସୈନ୍ୟବୃନ୍ଦ ପରାଙ୍ମୁଖ ହେଲେ । ବାସ୍ତବରେ ସପ୍ତଦଶ ଅଧ୍ୟାୟରେ ଶଲ୍ୟଙ୍କ ମୃତ୍ୟୁପରେ ଶଲ୍ୟପର୍ବ ଶେଷ ହୋଇ ଅଛି, ମାତ୍ର ଏହା ଫଳରେ ଦୁର୍ଯ୍ୟୋଧନଙ୍କ ପଳାୟନ, ଶଲ୍ୟ ବଧ; ସାତ୍ୟକ କୃତବର୍ମା ଯୁଦ୍ଧ ସଂକୁଳ ଯୁଦ୍ଧ, ଅର୍ଜ୍ଜୁନଙ୍କ ପରାକ୍ରମ ପ୍ରଦର୍ଶନ ଦୁର୍ଯ୍ୟୋଧନାପଯାନ, ଧୃତରାଷ୍ଟ୍ରଙ୍କ ଏକାଦଶପୁତ୍ରଙ୍କ ବଧ, ସୁଶର୍ମା ବଧ ଶକୁନି ଓ ଉଲୂକ ବଧ ଆଦି ସଂଘଟିତ ହୋଇଥିବାରୁ ଏସମସ୍ତ ପ୍ରସଙ୍ଗ ଶଲ୍ୟବଧ ଅନ୍ତର୍ଭୁକ୍ତ କରାଯାଇଛି ଅଣଷ୍ଟୁକ ବା ଅନୁଷ୍ଟୁପ୍ ଋଷିଙ୍କ ଅଭିଶାପ ବୃତ୍ତାନ୍ତ ସାରଳା ଦାସଙ୍କ ସୃଷ୍ଟି । ପୁନଶ୍ଚ ନୀଳବାଣ ଓ ଭୁଜବାଣ କଥା ମଧ୍ୟ ତାହାଙ୍କ କଳ୍ପନା ପ୍ରସୂତ ।



# ଗଦାପର୍ବ

ନୀଳମଣି ମିଶ୍ର

---

ଶ୍ରୀକୃଷ୍ଣ ଦ୍ୱୈପାୟନ ମହର୍ଷି ବ୍ୟାସଦେବ କେଉଁ ଶୁଭ ମୁହୂର୍ତ୍ତରେ ବିଘ୍ନରାଜ ଗଣେଶଙ୍କ ସହାୟତାରେ ମହାଭାରତର ପ୍ରଣୟନ କରିଥିଲେ କେଜାଣି ତାହା ତତ୍କାଳୀନ ଭାରତୀୟ ଜନଜୀବନର ଦର୍ପଣ ସ୍ୱରୂପ ଅଦ୍ୟାପି ସମାଜରେ ଆଦୃତ ହେଉଛି । ଜନସାଧାରଣ କେବଳ ଧର୍ମଧାରଣା ନେଇ ମହାଭାରତ ପାଠ କରନ୍ତି ନାହିଁ । ମହାଭାରତ ଗ୍ରନ୍ଥରେ ଭାରତୀୟ ସଭ୍ୟତାର ଯେଉଁ ଶାଶ୍ୱତ ଚିତ୍ର ବିଭିନ୍ନ ଉପାଖ୍ୟାନ ମାଧ୍ୟମରେ ପ୍ରଦତ୍ତ ହୋଇଛି ତାହା 'କେବଳ ଭାରତର ଜନସାଧାରଣଙ୍କୁ ନୁହେଁ, ବିଶ୍ୱର ଜନସାଧାରଣଙ୍କ ମନରେ ଅଲିଭା ସ୍ମୃତି ଜାଗ୍ରତ କରି ପାରୁଛି ।

ମହାଭାରତ ଯୁଗର ପ୍ରଧାନ ଜନନାୟକ ବାସୁଦେବ ଶ୍ରୀକୃଷ୍ଣଙ୍କ ଇଙ୍ଗିତରେ ଯେଉଁ ଯୁଦ୍ଧ କୁରୁ ଓ ପାଣ୍ଡବମାନଙ୍କ ମଧ୍ୟରେ ସଙ୍ଗଠିତ ହୋଇଥିଲା ତା'ର ଦ୍ୱିତୀୟ ଦୃଷ୍ଟାନ୍ତ ପୁରାଣମାନଙ୍କରେ ମିଳେ ନାହିଁ । ଭଗବାନ୍ ଶ୍ରୀକୃଷ୍ଣ ସେ ଯୁଗରେ ଜଣେ ପ୍ରଖ୍ୟାତ ନେତା ଭାବରେ ସମଗ୍ର ଭାରତବର୍ଷକୁ ଏକ ଶାନ୍ତିର ଅଞ୍ଚଳ ରୂପେ ପରିଣତ କରିବା ପାଇଁ ମହାଭାରତ ଯୁଦ୍ଧର ବହୁପୂର୍ବରୁ କଂସ ଆଦି ଦୁର୍ଦ୍ଦାନ୍ତ ଶତ୍ରୁମାନଙ୍କୁ ସଂହାର କରିବା ସଙ୍ଗେ ସଙ୍ଗେ ଜରାସନ୍ଧ ପରି ଅହଙ୍କାରୀ, ପୌଣ୍ଡ୍ରକ ଆଦି ସ୍ୱାଭିମାନୀ, ଶିଶୁପାଳ ଆଦି ମଦୋନ୍ମତ୍ତ ରାଜାମାନଙ୍କୁ ବିଭିନ୍ନ ରଣ କ୍ଷେତ୍ରରେ ସମୁଚିତ ଶିକ୍ଷା ଦେଇଥିଲେ । କିନ୍ତୁ ମଧ୍ୟଭାରତର ରାଜନ୍ୟବର୍ଗଙ୍କ ମଧ୍ୟରେ ହସ୍ତିନାର ରାଜା ପାଣ୍ଡୁଙ୍କ ପରାକ୍ରମ ତଥା ରାଜନୀତିରେ ଅନ୍ୟାନ୍ୟ ଦୁର୍ଦ୍ଧର୍ଷ ଶତ୍ରୁମାନେ ମୁଣ୍ଡଟେକି ପାରୁନଥିଲେ । କିନ୍ତୁ ପାଣ୍ଡୁଙ୍କ ଅକାଳ ବିୟୋଗ ପରେ ଅନ୍ଧରାଜା ଧୃତରାଷ୍ଟ୍ର ପାଣ୍ଡୁପୁତ୍ର ଯୁଧିଷ୍ଠିର, ଭୀମ, ଅର୍ଜୁନ ନକୁଳ ଓ ସହଦେବଙ୍କୁ ପିତୃ ଅଧିକାରରୁ ବଞ୍ଚିତ କରି ଅନ୍ୟାୟ ଭାବରେ ରାଜଦଣ୍ଡ ହସ୍ତଗତ କରିଥିଲେ । ଧୃତରାଷ୍ଟ୍ରଙ୍କ ଅନ୍ଧତ୍ୱର ସୁଯୋଗ ନେଇ ତାଙ୍କର ମହତ୍ତ୍ୱାକାଂକ୍ଷୀ ପୁତ୍ର ଦୁର୍ଯ୍ୟୋଧନ ଏକ ପ୍ରକାର ସମ୍ରାଜ୍ୟର ସର୍ବେସର୍ବା ହୋଇ ଉଠିଲେ । ଏତିକିବେଳେ ତାଙ୍କୁ ସାହାଯ୍ୟ କରିବା ପାଇଁ ଶକୁନି, କର୍ଣ୍ଣ, ଜୟଦ୍ରଥ ପ୍ରଭୃତି କୁମନ୍ତ୍ରଣାଦାତାମାନେ ଦୁର୍ଯ୍ୟୋଧନଙ୍କ ପାରିଷଦରେ ଯୋଗଦାନ କରି ପାଣ୍ଡବମାନଙ୍କ ବିରୁଦ୍ଧରେ ମାରାତ୍ମକ ଷଡ଼ଯନ୍ତ୍ରମାନ ଆରମ୍ଭ କରିଦେଲେ । ଶାନ୍ତିପ୍ରିୟ, ନ୍ୟାୟପରାୟଣ ତଥା ବଳବାନ୍ ପାଣ୍ଡବମାନେ ପଦେ ପଦେ କୌରବମାନଙ୍କ ଷଡ଼ଯନ୍ତ୍ରର ଶିକାର ହେବାକୁ ଲାଗିଲେ । ସେମାନେ ମାତାଙ୍କ ସହିତ ରାଜପୁରୀରେ ରହି ମଧ୍ୟ ନିଜକୁ ସର୍ବଦା ଅନାଥ ବୋଲି ମନେକଲେ ।

ପୁତ୍ରସ୍ନେହରେ ବଶୀଭୂତ ଅନ୍ଧ ଧୃତରାଷ୍ଟ୍ର ପାଣ୍ଡବମାନଙ୍କ ସୁରକ୍ଷା ଲାଗି କୌଣସି ପ୍ରକାର ସୁବ୍ୟବସ୍ଥା କଲେ ନାହିଁ, ବରଂ ମନ୍ତ୍ରୀ ତଥା ସହୋଦର ବିଦୁର ଏ' ବିଷୟରେ ଅନ୍ଧରାଜାଙ୍କ ଦୃଷ୍ଟି ଆକର୍ଷଣ କରିଇ ରାଜକୋପର ଭାଜନ ହୋଇଥିଲେ । ଏହିକବେଳେ ବାସୁଦେବ ଶ୍ରୀକୃଷ୍ଣ ନ୍ୟାୟପ୍ରିୟ ପାଣ୍ଡବମାନଙ୍କ ପକ୍ଷ ସମର୍ଥନ କରି ପଦେପଦେ ସେମାନଙ୍କୁ କୌରବମାନଙ୍କ ଚକ୍ରାନ୍ତରୁ ରକ୍ଷା କରିଥିଲେ । ଶ୍ରୀକୃଷ୍ଣଙ୍କ ପରାମର୍ଶକ୍ରମେ ପାଣ୍ଡବମାନେ କୌରବମାନଙ୍କ ବିରୁଦ୍ଧରେ ଯେଉଁ ଯୁଦ୍ଧ ଘୋଷଣା କରିଥିଲେ, ତାହା ଭୀଷ୍ମପର୍ବଠାରୁ ଆରମ୍ଭ କରି ଗଦାପର୍ବ ପର୍ଯ୍ୟନ୍ତ ମହାଭାରତ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ଆଦ୍ୟ,ମଧ୍ୟ,ସଭା,ବନ, ଉଦ୍ୟୋଗ ପର୍ବମାନଙ୍କରେ ପାଣ୍ଡବ ଓ କୌରବମାନଙ୍କ ଅନ୍ୟାନ୍ୟ କାର୍ଯ୍ୟାବଳୀ ବର୍ଣ୍ଣିତ ହୋଇଛି । ଏହି ମହାଭାରତ ଗ୍ରନ୍ଥଟି ସଂସ୍କୃତରେ ଲିଖିତ ହୋଇ ସମଗ୍ର ଭାରତରେ ଲୋକପ୍ରିୟ ହୁଅନ୍ତେ, ପରବର୍ତ୍ତୀ କାଳରେ ଆଞ୍ଚଳିକ ଭାଷାରେ ତା'ର ଅନୁବାଦ କରାଯାଇଥିଲା । ଏହି ଅନୁବାଦ ଗୁଡ଼ିକ ମଧ୍ୟରେ ଓଡ଼ିଆ ଭାଷାରେ ରଚିତ ସାରଳାଦାସଙ୍କ ମହାଭାରତ ଗ୍ରନ୍ଥଟି ଏକ ଅନବଦ୍ୟ ଗ୍ରନ୍ଥ । ଶୂଦ୍ରମୁନି ରୂପେ ପରିଚିତ ସାରଳାଦାସ ସଂସ୍କୃତ ମହାଭାରତର ଛାୟାରେ ଅଠର ଖଣ୍ଡ ବିଶିଷ୍ଟ ଖଣ୍ଡିଏ ଉପାଦେୟ ଗ୍ରନ୍ଥ ଲେଖିଛନ୍ତି । ସଂସ୍କୃତ ମହାଭାରତରେ 'ଗଦାପର୍ବ' ବୋଲି କୌଣସି ପର୍ବ ନାହିଁ କିନ୍ତୁ ସାରଳାଦାସ ସଂସ୍କୃତ ମହାଭାରତର ଶଲ୍ୟପର୍ବଟିକୁ ଦୁଇଭାଗ କରି ଶଲ୍ୟ ଓ ଗଦା-ପର୍ବରେ ପରିଣତ କରିଥିବାର ଜଣାଯାଏ । ସଂସ୍କୃତ ମହାଭାରତର ଶଲ୍ୟପର୍ବରେ ମହାବୀର ମଦ୍ରରାଜଙ୍କ ବଧ ପରେ ଧୃତରାଷ୍ଟ୍ରଙ୍କ ଏକାଦଶ ପୁତ୍ର ବଧ, ସୁଧର୍ମାବଧ, ଶକୁନି ଉଲୁକବଧ, ପ୍ରଭୃତି ଯୁଦ୍ଧର ତାଣ୍ଡବ ବର୍ଣ୍ଣନା କରାଯାଇଛି । ତତ୍ପରେ କୌରବଶ୍ରେଷ୍ଠ ଦୁର୍ଯ୍ୟୋଧନ ମହାଭୟରେ ରଣସ୍ଥଳରୁ ପୃଷ୍ଠାଭିମୁଖ ହୋଇ ପଳାୟନ କଲେ । ସେତେବେଳକୁ କୌରବ ପକ୍ଷୀୟ ବୀରମାନଙ୍କ ମଧ୍ୟରେ ଅଶ୍ୱତ୍ଥାମା, କୃତବର୍ମା ଓ ଓ କୃପାଚାର୍ଯ୍ୟ ମାତ୍ର ଜୀବନ ଧାରଣ କରିଥିଲେ । ଦୁର୍ଯ୍ୟୋଧନ ଉପରୋକ୍ତ ତିନିବୀର ମଧ୍ୟ ମୃତ୍ୟୁ ମୁଖରେ ପଡ଼ିଛନ୍ତି ବୋଲି ଜାଣି ମହାଭୟରେ ହସ୍ତରେ ଗଦାଧାରଣ କରି ଦ୍ୱୈପାୟନ ହ୍ରଦକୁ ପଳାୟନ କଲେ । ସେଠାରେ ଜଳସ୍ତମ୍ଭନ ପୂର୍ବକ ଦୁର୍ଯ୍ୟୋଧନ ସନ୍ତପ୍ତ ହୃଦୟରେ ହ୍ରଦ ମଧ୍ୟରେ ଶୟନ କଲେ । କିନ୍ତୁ କାଠୁରିଆ ମାନଙ୍କଠାରୁ ପାଣ୍ଡବମାନେ ଏହି ସମ୍ବାଦ ପାଇ ଦୁର୍ଯ୍ୟୋଧନଙ୍କୁ ନାନାଦି କୁବାକ୍ୟରେ ଭର୍ତ୍ସନା କରି ଯୁଦ୍ଧ ଲାଗି ଆହ୍ୱାନ କଲେ । ଦୁର୍ଯ୍ୟୋଧନ ପାଣ୍ଡବଙ୍କ ଆହ୍ୱାନରେ ହ୍ରଦରୁ ବାହାରି ଗଦାହସ୍ତରେ ଭୀମଙ୍କ ସହିତ ଯୁଦ୍ଧ ଲାଗି ଆୟୋଜନ କରୁଥିବା ସମୟରେ ତୀର୍ଥ ଯାତ୍ରାରେ ନାରଦଙ୍କଠାରୁ ଭୀମ ଦୁର୍ଯ୍ୟୋଧନ ଗଦାଯୁଦ୍ଧ ବୃତ୍ତାନ୍ତ ଶ୍ରବଣ କରି ବଳରାମ ସେଠାରେ ଆସି ଉପସ୍ଥିତ ହେଲେ । ଶ୍ରୀମଦ୍ଭାଗବତର ବର୍ଣ୍ଣନାନୁସାରେ ବଳରାମ ଉଭୟ ବୀରଙ୍କୁ ଗଦା ଯୁଦ୍ଧରୁ କ୍ଷାନ୍ତ ହେବା ଲାଗି ଉପଦେଶ ଦେଲେ । କିନ୍ତୁ ଦୁର୍ଯ୍ୟୋଧନ ତାଙ୍କ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରନ୍ତେ, ସେ ମନ ଦୁଃଖରେ ଯୁଦ୍ଧକ୍ଷେତ୍ର ତ୍ୟାଗ କରି ଦ୍ୱାରକାକୁ ପ୍ରସ୍ଥାନ କଲେ ।

ଏହାପରେ ଦୁଇବୀର ପରସ୍ପର ପ୍ରତି ଦୋଷାରୋପ କରି ଗଦାଯୁଦ୍ଧରେ ପ୍ରବୃତ୍ତ ହେଲେ । ବ୍ୟାସଦେବ ସେ ଦୁହିଁଙ୍କ ଗଦାଯୁଦ୍ଧର କୌଶଳ ସମ୍ବନ୍ଧରେ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—

"ମଣ୍ଡଳାନି ବିଚିତ୍ରାଣି ସ୍ଥାନାନି ବିବିଧାନି ଚ ।
ଗୋମୂତ୍ରିକାଣି ଚିତ୍ରାଣି ଗତ ପ୍ରତ୍ୟାଗତାନି ଚ ।
ପରିମୋକ୍ଷଂ ପ୍ରହାରାଣାଂ ବର୍ଜନଂ ପରିଧାବନମ୍ ।
ଅଭିଦ୍ରବଣ ମାକ୍ଷେପ ମବସ୍ଥାନଂ ସବିଗ୍ରହମ୍ ।
ପରାବର୍ତ୍ତନ ସମ୍ବର୍ତ୍ତ ମବପ୍ଲୁତ ମଥାପ୍ଲୁତଂ ।
ଉପନ୍ୟସ୍ତ ମପନ୍ୟସ୍ତଂ ଗଦାଯୁଦ୍ଧ ବିଶାରଦୌ ।"

(ଶଲ୍ୟପର୍ବ-ଷଟ୍ ପଞ୍ଚାଶତ୍ତ୍ର ଅଧ୍ୟାୟ)

ଭୀମ ଦୁର୍ଯ୍ୟୋଧନଙ୍କ ମଧ୍ୟରେ ଭୂମୁଳଯୁଦ୍ଧ ଅନୁଷ୍ଠିତ ହେବା ପରେ ଭୀମ ଦୁର୍ଯ୍ୟୋଧନଙ୍କ ଜାନୁରେ ପ୍ରହାର କରି ତାଙ୍କୁ ଭୂତଳଶାୟୀ କରାଇଲେ । କିନ୍ତୁ ଗଦାଯୁଦ୍ଧର ବିରୋଧନୀତି ବୋଲି ପ୍ରତିବାଦ କରି ଲାଙ୍ଗଳଧାରୀ ସଙ୍କର୍ଷଣ ବଳରାମ ଭୀମଙ୍କୁ ବଧ କରିବାଲାଗି ଉଦ୍ୟତ ହେଲେ । ଏତିକବେଳେ ଭଗବାନ ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନଙ୍କ ପ୍ରତି ମୈତ୍ରେୟଙ୍କ ଅଭିଶାପ ଓ ଭୀମଙ୍କର ଋଷିପ୍ରୋଚିତ ପ୍ରତିଜ୍ଞା ଦୃଷ୍ଟିରୁ ଏହା ହୋଇଛି ଏବଂ ଏଥିପାଇଁ କ୍ରୋଧ ନ କରିବାକୁ ବଳରାମଙ୍କୁ ବୁଝାଇ କହିଥିଲେ—

"ଇତିପୂର୍ବଂ ପ୍ରତିଜ୍ଞାତଂ ଭୀମେନ ହି ସଭାତଳେ ।
ମୈତ୍ରେୟେଣାଭି ଶପ୍ତଶ୍ଚ ପୂର୍ବମେବ ମହର୍ଷିଣା ॥
ଉରୁ ଭେତ୍ସ୍ୟତି ତେ ଭୀମୋ ଗଦୟେତି ପରଂତପ ।
ଅତୋ ଦୋଷଂ ନ ପଶ୍ୟାମି ମା କ୍ରୁଦ୍ଧ ତ୍ୱଂ ପ୍ରଲମ୍ବହନ୍ ॥"

(ମହାଭାରତ – ନବ ପଞ୍ଚାଶତ୍ତ୍ର ଅଧ୍ୟାୟ)

ତତ୍ପରେ ଭୀମ ଦୁର୍ଯ୍ୟୋଧନଙ୍କ ମସ୍ତକରେ ପାଦ ପ୍ରହାର କରି ତାଙ୍କ ପୂର୍ବକୃତ କୁକୃତ୍ୟର ସ୍ମରଣ କରାଇବା ବେଳେ ଯୁଧିଷ୍ଠିର ଧର୍ମନୀତି ବୁଝାଇ ବୃକୋଦରଙ୍କୁ ଏପରି ଅକାର୍ଯ୍ୟରୁ ନିବୃତ୍ତ କରିଥିଲେ । ଏହାପରେ ଦୁର୍ଯ୍ୟୋଧନ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଉକ୍ତିବାଦ ହୋଇଥିଲା । ଦୁର୍ଯ୍ୟୋଧନର ଉରୁଭଙ୍ଗ ପରେ ଧୃତରାଷ୍ଟ୍ର ଗାନ୍ଧାରୀ ପୁତ୍ର ଶୋକରେ ଅଧୀର ହୋଇପଡ଼ିଲେ । ସେମାନଙ୍କୁ ସାନ୍ତ୍ୱନା ଦେଇ ବାସୁଦେବ ପାଣ୍ଡବମାନଙ୍କୁ କର୍ତ୍ତବ୍ୟାକର୍ତ୍ତବ୍ୟ ସମ୍ବନ୍ଧରେ ଉପଦେଶ ପ୍ରଦାନ କଲେ ।

ଅସହାୟ ଦୁର୍ଯ୍ୟୋଧନ ବିଳାପ କରିବା ପରେ ଦ୍ରୋଣ କୁମାର ଅଶ୍ୱତ୍ଥାମା ଆସି ତାଙ୍କୁ ପ୍ରବୋଧନା ଦେବା ସଙ୍ଗେ ସଙ୍ଗେ ନିଜେ ସେନାପତି ହେଲେ ପାଣ୍ଡବମାନଙ୍କୁ ଅନାୟାସରେ ଜୟ କରିବାର ପ୍ରତିଶ୍ରୁତି ଦେଇ ସେନାପତିତ୍ୱ ଗ୍ରହଣ କରିଥିଲେ ।

ବ୍ୟାସଦେବ ସୌପ୍ତିକ ପର୍ବରେ ଅଶ୍ୱତ୍ଥାମାଙ୍କ ମନ୍ତ୍ରଣା, ସଙ୍କଳ୍ପ । ଶତ୍ରୁବଧର ପରିକଳ୍ପନା ଅଶ୍ୱତ୍ଥାମାଙ୍କ ଶିବାର୍ଚ୍ଚନ, ଦ୍ରୌପଦୀଙ୍କ ପଞ୍ଚପୁତ୍ର ବଧ, ଦୁର୍ଯ୍ୟୋଧନଙ୍କ ପ୍ରାଣତ୍ୟାଗ ଅଶ୍ୱତ୍ଥାମାର ଆତ୍ମଗୋପନ ଓ ଅର୍ଜ୍ଜୁନଙ୍କ ବ୍ରହ୍ମଶିର ପ୍ରୟୋଗ ପ୍ରଭୃତି ବର୍ଣ୍ଣନା ଥିବାର ଦେଖାଯାଏ । ମହର୍ଷି ବ୍ୟାସଦେବ ଗଦାପର୍ବ ବୋଲି ଗୋଟିଏ ସ୍ୱତନ୍ତ୍ର ପର୍ବ ସୃଷ୍ଟି ନ କରି ଶଲ୍ୟ ପର୍ବରେ ଦୁର୍ଯ୍ୟୋଧନଙ୍କ ସହିତ ଭୀମର ଗଦାଯୁଦ୍ଧ ଓ ସୌପ୍ତିକ ପର୍ବରେ ଦୁର୍ଯ୍ୟୋଧନଙ୍କ ମୃତ୍ୟୁ ବର୍ଣ୍ଣନା କରିଛନ୍ତି । କିନ୍ତୁ ଓଡ଼ିଶାର ମହାକବି ସାରଳା ଦାସ ଶଲ୍ୟପର୍ବ ସହିତ ଗଦାପର୍ବର ବର୍ଣ୍ଣନା ନକରି ଦଶ ଅଧ୍ୟାୟ ବିଶିଷ୍ଟ ଏକ ସ୍ୱତନ୍ତ୍ର ଗଦାପର୍ବର ପରିକଳ୍ପନା କରିଛନ୍ତି । ଉକ୍ତ ଅଧ୍ୟାୟ ଗୁଡ଼ିକରେ ମହାକବି ସାରଳାଙ୍କ ବନ୍ଦନା, ଦ୍ୱୈପାୟନ ହ୍ରଦରେ ଦୁର୍ଯ୍ୟୋଧନର ପ୍ରବେଶ, କୁନ୍ତୀଙ୍କର ଧିକ୍କାର ଓ ଭୀମଙ୍କର ପ୍ରତିଜ୍ଞା, ପଞ୍ଚପାଣ୍ଡବଙ୍କ ଦ୍ୱାରା ଦୁର୍ଯ୍ୟୋଧନର ଅନୁସନ୍ଧାନ, ଅଶ୍ଳେଷା ବଧ, ଭୀମଙ୍କର ସିଂହନାଦ ପ୍ରାପ୍ତି, ସିଂହ ରଡ଼ି ଓ ଦୁର୍ଯ୍ୟୋଧନର ଲକ୍ଷ୍ମୀଙ୍କୁ ଅବଜ୍ଞା, ଦୁର୍ଯ୍ୟୋଧନର ବ୍ୟାସ ସରୋବରରୁ ନିର୍ଗମନ ତଥା ଭୀମଙ୍କୁ ରାଜାଖ୍ୟବରେ ସମସ୍ତଙ୍କର ମାନ୍ୟ, ଭୀମ ଦୁର୍ଯ୍ୟୋଧନଙ୍କର ରଣ ଓ ଭୀମଙ୍କର କ୍ଷୀର ସମୁଦ୍ରରେ ପତନ ଯୁଧିଷ୍ଠିରଙ୍କ ଶୋକ ଓ ଶ୍ରୀକୃଷ୍ଣଙ୍କ ଦ୍ୱାରା ଭୀମର ପୁନର୍ଜନ୍ମ ପ୍ରାପ୍ତି, ଦୁର୍ଯ୍ୟୋଧନର ଊରୁଭଙ୍ଗ, ବଳରାମଙ୍କ ପ୍ରବେଶ, ଯୁଧିଷ୍ଠିରଙ୍କ ଶୋକ ଓ ଦ୍ୱାରକା ଗମନ ପ୍ରଭୃତି ବିଷୟ ଦଶଟି ଅଧ୍ୟାୟରେ ସନ୍ନିବେଶିତ ହୋଇଛି ।

ମହାକବି ସାରଳାଦାସଙ୍କ ବର୍ଣ୍ଣିତ ସାରଳା ବନ୍ଦନା, କୁନ୍ତୀଙ୍କର ଧିକ୍କାର, ବ୍ୟାସ ସରୋବର ବିବରଣ, ଅଶ୍ଳେଷ୍ୟ ଦୈତ୍ୟ ବଧ, ଭୀମଙ୍କର ସିଂହନାଦ ଓ ସିଂହରଡ଼ି ଲକ୍ଷ୍ମୀଙ୍କୁ ଅବଜ୍ଞା ଭୀମଙ୍କୁ ରାଜାବୋଲି ସମସ୍ତଙ୍କର ମାନ୍ୟ, ଭୀମଙ୍କର କ୍ଷୀର ସମୁଦ୍ରେ ପତନ, ଭୀମଙ୍କ ଅଦର୍ଶନରେ ଯୁଧିଷ୍ଠିରଙ୍କ ଶୋକ, ଶ୍ରୀକୃଷ୍ଣଙ୍କ ଦ୍ୱାରା ଭୀମଙ୍କର ପୁନର୍ଜୀବନ ପ୍ରାପ୍ତି ଆଦି ସମ୍ପୂର୍ଣ୍ଣ ନୂତନ ପରିକଳ୍ପନା । ମହାକବି ସାରଳାଦାସ ତାଙ୍କର ପ୍ରତ୍ୟେକ ରଚନାରେ ସଂସ୍କୃତକୁ ଆଧାର ରୂପେ ଗ୍ରହଣ କରି ପ୍ରାସଙ୍ଗିକତାର ସହିତ ଯେପରି କଳ୍ପନା ଜଳଧିରେ ସନ୍ତରଣ କରନ୍ତି, ପ୍ରସ୍ତୁତ ଗଦାପର୍ବରେ ମଧ୍ୟ ଅନୁରୂପ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ମହାକବି ସାରଳାଙ୍କର ବରପୁତ୍ର ହୋଇଥିବାରୁ ସେ ପ୍ରାୟ ପ୍ରତ୍ୟେକ ପର୍ବର ଆରମ୍ଭରେ ଇଷ୍ଟଦେବୀଙ୍କୁ ବନ୍ଦନା କରିଛନ୍ତି । ଗଦାପର୍ବରେ ମଧ୍ୟ ଅନୁରୂପ ପରମ୍ପରା ରକ୍ଷାକରି ସାରଳାଙ୍କ ପାଦ ବନ୍ଦନା ପୂର୍ବକ ଗାନ କରିଛନ୍ତି—

ନମସ୍ତେ ସାରଳା ମାଗୋ ଝଙ୍କଡ଼ ବାସିନୀ ।
ଅଭୟ ବରଦାୟିନୀ ଦୁର୍ଗତି ତାରିଣୀ ।
ତବ ପରସାଦେ ମାଗୋ ଶ୍ରୀମହାଭାରତ ।
ଶଲ୍ୟପର୍ବ ଶେଷଯାଏ କଲି ମୁଁ ବ୍ୟକତ ।

ଏ ଅନ୍ତେ ଯେ ଗଦାପର୍ବ କରିବି ଲିଖନ ।
କଣ୍ଠ ତଟେ ବସି ପଦ କହସି ବଚନ ।
ଜନ୍ମରୁ ମୂରୁଖ ମୁଁ ଯେ ନ ଜାଣଇ କିଛୁ ।
ପ୍ରାରମ୍ଭରୁ ତବ ପାଦେ ଆଶ୍ରେ କରିଅଛୁ ।
ଏଣୁ ମୋଠାରେ ଗୋ ମାତ ହୋଇବ ପ୍ରସନ୍ନ ।
ଶୂଦ୍ରମୁନି ଶ୍ରୀ ସାରଳା ଦାସର ଜଣାଣ ।।"

ପ୍ରସ୍ତୁତ ବନ୍ଦନାଟି ରାଧାରମଣ ପୁସ୍ତକାଳୟ ଦ୍ୱାରା ପ୍ରକାଶିତ ଗଦାପର୍ବରେ ସନ୍ନିବେଶିତ ହୋଇଛି । କିନ୍ତୁ ସ୍ୱର୍ଗତଃ ଉତ୍କଳର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଙ୍କଳିତ ଗଦାପର୍ବରେ ପ୍ରସ୍ତୁତ ସାରଳା ବନ୍ଦନାଟି ଦେଖିବାକୁ ମିଳେ ନାହିଁ ।

ମହାଭାରତ ଯୁଦ୍ଧର ପ୍ରଖ୍ୟାତ ବୀରମାନେ ସମରରେ ନିହତ ହେବା ପରେ ଦୁର୍ଯ୍ୟୋଧନ ଏକାବେଳକେ ବୁଦ୍ଧିଭ୍ରଷ୍ଟ ହୋଇପଡ଼ିଥିଲେ । ସମ୍ମୁଖରେ ନବ ତାଳ ଗଭୀର' 'ସାତତାଳ ବିଚ୍ଛର୍ଗ' ରକ୍ତନଦୀକୁ ଦେଖି ହତଃପ୍ରଭ ହୋଇଗଲେ । ସେ ବଂଶର ଏକମାତ୍ର କୁଳାଙ୍କୁର ଲକ୍ଷ୍ମଣ କୁମରକୁ ଦେଖି କୌଣସି ଉପାୟରେ ପ୍ରାଣରକ୍ଷା ଲାଗି ଉପଦେଶ ଦେବା ସଙ୍ଗେ ସଙ୍ଗେ କହିଲେ—

"ଅପାର ପ୍ରବୋଧନା ରାଜା ମାନଗୋବିନ୍ଦ ଯେ ବୋଲି
ରଥରୁ ଓହ୍ଲାଇ ପୁତ୍ରରେ ପଳା ଯା ବେଗେ ଚାଲି ।
ବାବୁରେ, ମୁହିଁ ଯେ ନାଶ କଲି ଗନ୍ଧାରସେନାବଂଶ ।
ଶତ୍ରୁବିବାଦୀ ନୁହଁଇ ଅନମିତେ କଲିଁ ତାକୁ ଆଶ ।
ଏକା ଜଣେ ଶକୁନି ଯେ ଉବୁରିଣ ଥିଲା ।
ଉପାୟେ କରିଣ ସେ ମୂଳବଂଶ ମରାଇଲା ।
ବାବୁ ତୋହର ବୃତ୍ତି ଥିଲେ ରେ କରିବୁ ପିତୃକାର୍ଯ୍ୟ ।
ଏକା ଜଣେ ଥିଲେ ତୁ ପାଇବୁ ଅଇଶ୍ୱର୍ଯ୍ୟ ଅଧିରାଜ୍ୟ ।"

ପିତାର ଆଜ୍ଞାନୁସାରେ ଲକ୍ଷ୍ମଣ ଉତ୍ତରମୁଖ ହୋଇ ଜୀବନ ବିକଳରେ ପଳାଇବାକୁ ଲାଗିଲା । କିନ୍ତୁ ଧୃଷ୍ଟଦ୍ୟୁମ୍ନ ଓ ଭୀମସେନଙ୍କ ଆକ୍ରମଣରେ ସେ ମଧ୍ୟ ପ୍ରାଣହରାଇ ରକ୍ତନଦୀର ଗଭୀର ସ୍ରୋତରେ ଲୀନ ହେବାକୁ ଲାଗିଲା ।

ଦୁର୍ଯ୍ୟୋଧନ ରାତ୍ରିର ଅନ୍ଧକାର ମଧ୍ୟରେ ଆତ୍ମଗୋପନ ଲାଗି ଦ୍ୱୈପାୟନ ହ୍ରଦକୁ ପଳାଇବା ପାଇଁ ମନସ୍ଥ କଲେ । କିନ୍ତୁ ମାର୍ଗରେ ପ୍ରବାହିତ ଭୟଙ୍କର ରକ୍ତନଦୀରେ ସନ୍ତରଣ ପାଇଁ ତାଙ୍କର ସାହସ ହେଲାନି । ସେ ରକ୍ତନଦୀ କୂଳରେ ଦଣ୍ଡାୟମାନ ହୋଇ ଲକ୍ଷ୍ୟ କଲେ ଦୁଃଶାସନ, କର୍ଣ୍ଣ, ଦ୍ରୋଣ, ଶକୁନି, ଭୂରିଶ୍ରବା, ପ୍ରଭୃତି ବହୁ

ବୀରଙ୍କ ଶବ ଭୟଙ୍କର ଶୋଣିତ ଧାରର ପ୍ରଖର ସୋତରେ ଭାସି ଭାସି ଗ୍ଲଲିଛୁ । ଦୁର୍ଯୋଧନ ମନେ ଭାବିଲେ, ଏମାନେ ସମସ୍ତେ ମୋର ଅନୁଗାମୀ, ବନ୍ଧୁ ଓ ସହୋଦର ଜୀବନରେ ମୁଁ ଏମାନଙ୍କ ପାଇଁ ଅନେକ କିଛି କରିଛି । ମୋର ଏହି ବିପଦ ବେଳେ ଏମାନେ ନିଶ୍ଚୟ ମୋତେ ରକ୍ତନଦୀରୁ ପାରକରାଇ ଦେବେ । ଏହି ଆଶା ମାନଚନ୍ଦ୍ର-ବର୍ତ୍ତୀଙ୍କ ମନରେ ଉଦୟ ହେବାରୁ ସେ ଗୋଟି ଗୋଟି କରି ପ୍ରତ୍ୟେକଙ୍କ ଶବ ଉପରକୁ ଲମ୍ଫ ପ୍ରଦାନ କରିଛନ୍ତି କିନ୍ତୁ କାହାର ଶବକୁ ଆଶ୍ରୟ କରି ସେ ରକ୍ତନଦୀରେ ସନ୍ତରଣ କରିବାରେ ସକ୍ଷମ ହୋଇ ନାହାନ୍ତି । ଏହି ପ୍ରସଙ୍ଗରେ କବି ସାରଳାଦାସ ଯେଉଁ ପ୍ରାଣସ୍ପର୍ଶୀ ବର୍ଣ୍ଣନା କରିଛନ୍ତି ତାହା ପ୍ରତ୍ୟେକ ପାଠକଙ୍କୁ ଶୋକାଭିଭୂତ କରାଏ ।

ପରିଶେଷରେ ଗୋଟିଏ ଅପୂର୍ବ ସୁନ୍ଦର ମୂର୍ତ୍ତି ଭାସି ଭାସି ଆସିଛି । ତା'ର ଶରୀରରେ ତାଡ ତୋଡ଼ର, ବାହୁଟି, କଙ୍କଣ, ପ୍ରଭୃତି ନାନା ପ୍ରକାର ଅଳଙ୍କାର ଶୋଭା ପାଉଛି । ଶବଟି ମୁହଁ ମାଡ଼ି ଭାସି ଭାସି ଯାଉଥିବାରୁ ଦୁର୍ଯୋଧନ ତାକୁ ଚିହ୍ନିପାରି ନାହାନ୍ତି । କିନ୍ତୁ ସେ ଅନନ୍ୟୋପାୟ ହୋଇ ନିଜର ସର୍ବସ୍ୱ ଭାର ଗଦା ଘେନି ସେହି ଶବ ଉପରକୁ କୁଦି ପଡ଼ିଛନ୍ତି । ଆଶ୍ଚର୍ଯ୍ୟର କଥା ଦୁର୍ଯୋଧନ ଓ ତାଙ୍କର ଗଦା ଭାରରେ ଶବଟି ବୁଡ଼ିଯାଇ ନ ଥିଲା ବରଂ ସୋଲ ଭେଳା ପରି ସେ ଦୁର୍ଯ୍ୟୋଧନଙ୍କୁ ରକ୍ତନଦୀ ପାର କରାଇ ଦେଇଛି । ଏହି ପ୍ରସଙ୍ଗରେ ସାରଳାଦାସ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି –

"କେବଣ ମହାତ୍ମା ସେ ବଡ଼ାଇ ବିଚକ୍ଷଣ,
ଏ ଅବା ମୋତେ କରି ପାରଇ କାରଣ ।
କୋଳ କରି ଧଇଲେ ତାକୁ ମାନଚନ୍ଦ୍ରବନ୍ତୀ,
ଉପରେ ଥୋଇଲେ ନେଇ ଗଦାବର ଦୁହିନ୍ତି ।

× × ×

ଆପଣେ ରାଜା ଯେ ପଡ଼ଇ ଚଢ଼ି ପରେ ମାଡ଼ି,
ସୋଲ ଭେଳା ଜାଣି ଭାସଇ ରକତ-ନଦୀରେ ନବୁଡ଼ି ।"

ଦୁର୍ଯ୍ୟୋଧନ ଅଚିହ୍ନ ଶବର ଅଦ୍ଭୁତ କର୍ମରେ ସ୍ତମ୍ଭୀଭୂତ ହୋଇ ମନେ ମନେ ଶବ ପ୍ରତି କୃତଜ୍ଞତା ଜଣାଇବା ସଙ୍ଗେ ସଙ୍ଗେ ରକ୍ତନଦୀର ଅପର କୂଳରେ ତାକୁ ଲେଉଟାଇ ଦେଖିବାକୁ ଚେଷ୍ଟା କଲେ କିନ୍ତୁ ନିୟତିର ନିଷ୍ଠୁର ଅଟ୍ଟ ହାସ, ବିଧାତାର ଇଙ୍ଗିତ ତଥା କପାଳର ଲିଖନକୁ କେହି ଅନ୍ୟଥା କରିପାରେ ନାହିଁ । ନିଶାର୍ଦ୍ଧ ପରେ କ୍ଷୀଣ ଚନ୍ଦ୍ରର ପ୍ରକାଶରେ କୁରୁକୁଳ ଚୂଡ଼ାମଣି ହତଶ୍ରୀ-ପ୍ରଭ ଦୁର୍ଯ୍ୟୋଧନ ଶବଟିକୁ ଲେଉଟାଇ ତା'ର ମୁଖଦର୍ଶନ କରିବା ମାତ୍ରେ ହାହାକାର କରି ଭୂମିରେ ଲେଉଟି

ପଡ଼ିଲେ । ଯେଉଁ କୃଷ୍ଣଙ୍କର ଲକ୍ଷ୍ମଣକୁମାରଙ୍କୁ ପ୍ରାଣ ଘେନ ପଳାଇ ଯିବା ପାଇଁ ସେ ଉପଦେଶ ଦେଇଥିଲେ, ତାହାର ଶବ ଦେଖି ସେ ମୁଣ୍ଡ କୋଡ଼ କାନ୍ଦ କାନ୍ଦ କହିଲେ –

"ବାବୁରେ ପଳା ଯା ବୋଲିଣ ବୋଇଲି ମୁହିଁ ତୋତେ,
ପ୍ରମାଦ ଭୂମିରେ ପୁଣରେ ପଡ଼ିଲୁ କେମନ୍ତେ ।
ଆରେ ଆରେ ମୋର ଲକ୍ଷ୍ମଣ କଇଛା କଗକେଠୀ,
ଫଇଲେକେ ବନ୍ଦନା ନାଥ ତୋହର ନାମ ଗୋଟି ।
ଅଷ୍ଟ ଅଙ୍ଗ ଲକ୍ଷଣରେ ତୋହର ବଢଣ ଗୁଣ,
ଶସ୍ଥଳ ଜନ ଚନ୍ଦ୍ରଲେ ତୁ ସର୍ବଗୁଣେ ଲକ୍ଷଣ ।
ବାବୁ, ଅବଚ୍ଛନ୍ନେ ମୂର୍ତ୍ତି ଦଶୁ ଯେ ବାଳର୍କ ପ୍ରାୟେ,
କଣ୍ଟେ ତେଜକୁ ଅଧିକ ଦଶଇ ତୋର କାୟେ ।
ଅନ୍ଧ ନଡ଼ନ୍ତ ପୁ ତ୍ରରେ ଅନାସ୍ତ ମୋତେ କଲୁ,
ଗଣ୍ଡିର ସମୋଦ୍ରେ ମୋର ଭେଳା ବୁଡ଼ାଇଲୁ ।

× × ×

ମାନଗୋବନ୍ଦ ଦୁର୍ଯୋଧନ ବନ୍ଧୁ ମିତ୍ର ସହୋଦର ମନୁଷ୍ୟଙ୍କୁ ହରାଇ ବଚଳିତ ହୋଇ ପଡ଼ିଥିଲେ । ଲକ୍ଷ୍ମଣ କୁମାରଙ୍କୁ ପଳାଇବା ଲାଗି ଉପଦେଶ ଦେଲ ସେ ଭାବିଥିଲେ କୁରୁବଂଶ ରକ୍ଷା ହୋଇଗଲା । କନ୍ତୁ ରକ୍ତନଦୀ ସନ୍ତରଣ ବେଳେ ସମସ୍ତଙ୍କଠାରୁ ନିରାଶ ହୋଇ ପୁଣର ଶବ ଉପରେ ଚଢ଼ି ପାର ହୋଇଥିବାରୁ ସେ ଶବ ପ୍ରତି ଗଭୀର କୃତଜ୍ଞତା ଜଣାଇବା ଲାଗି ମନସ୍ଥ କରିଥିବା ବେଳେ ନିଜର କୁଳନନ୍ଦନର ଶବ ଦେଖି ଦୁଃଖରେ ମୁହ୍ୟମାନ ହୋଇ ପଡ଼ିଥିଲେ । ସେ ପୁଣର ଶବକୁ ଧରି କୋଳରେ ରୋଦନ କରିବା ସଙ୍ଗେ ସଙ୍ଗେ ବାହ୍ୟଜ୍ଞାନ ହରାଇ ବସିଲେ । ସେ ଅତୀତର ସମସ୍ତ କଥା ଗୋଟି ଗୋଟି ମନେପକାଇ ସେ ସତେ ଯେପରି ପୁଅ ତାଙ୍କର ବଞ୍ଚିଛି ସେହିପରି ଭାବରେ ସମ୍ବୋଧନ କରି ରାଜନବରକୁ ଫେରିଯିବା ଲାଗି ବୁଝାଇବାକୁ ଲାଗିଲେ ।

"ଆସ ଆସ ବାବୁ ମନ୍ଦିରକୁ ଯିବାରେ ତନୟ ।
ଅର୍ଘ୍ୟ ଘେନ ବାଟ ଚାହିଁଥିବେ ତୋହର ଭାନୁମତୀ ମାୟେ ।
ବାବୁ ମାୟେ ପୋଷେ ତୁମ୍ଭେ ଅନେକ କଲ ଯେ ଦଇବା,
ବୋଇଲ ବାସୁଦେବ ଏଥୁଁ ନ ଯାନ୍ତୁ ଅପମାନ ଘେନ ।
ବୋଇଲ ପଢ଼ା ପାଞ୍ଚଖଣ୍ଡି ଯେ ମାଗୁଛନ୍ତି ଶିଷ୍ଟପଣ,
ପଢ଼ା ଦୁଇଖଣ୍ଡି ଦେଇ ପ୍ରବୋଧିବା ଅର୍ଥ୍ୟାଁ ।

ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଶକୁନି ଦେଖନ୍ତେ,
ବିନା ଯୁଦ୍ଧେ ସୂତ-ପୁତ୍ରେ ବୋଇଲୁ ରାଜ୍ୟ ନ ଦେଇ ବଡ଼ାଇଁତେ ।

ତହିଁର ପ୍ରତିଫଳ ଏବେ ପାଇଲୁରେ ବାବୁ,
ଏଡ଼େ ବଡ଼ ସମ୍ପଦ ମୁଁ ବଢ଼ାଇଲି ସବୁ ।

ଏବେ ପୁତ୍ରରେ ତୋର କରିବା ବୋଲ,
ଅର୍ଦ୍ଧ ରାଜ୍ୟ ପାଣ୍ଡବଙ୍କୁ ଦେଇ ତୁ ଉଠିଆସ ମୋହର କୋଳ ।

ସାଧାରଣ ଜନ ହରାଇ ଦୁର୍ଯ୍ୟୋଧନ ପୁତ୍ରର ଗୁଣ ବାନ୍ଧବ ଯେପରି ଭାବରେ ବେଦନ କରିଛନ୍ତି ତାହା ସାରଳା ଦାସଙ୍କ ସ୍ୱକୀୟ କଳ୍ପନାପ୍ରସୂତ । ଜଣେ ଉଦାସୀ ଭକ୍ତ ଭାବରେ ସେ ପାଠକର ମନକୁ ଦୋହଲାଇ ଦେବା କାମନାରେ ଦୁର୍ଯ୍ୟୋଧନର ରକ୍ଷଣଶୀ ସନ୍ତରଣ ପ୍ରସଙ୍ଗ ମହାଭାରତର ଗଦାପର୍ବରେ ଉଲ୍ଲେଖ କରିଛନ୍ତି ।

ଏହାପରେ ଦୁର୍ଯ୍ୟୋଧନ ପ୍ରାଣ ଭୟରେ ହସ୍ତିନାରେ ପ୍ରବେଶ କରି ପିତା, ମାତା ଓ ରାଣୀ ଭାନୁମତୀଙ୍କ ସହ ପରାମର୍ଶ କରିଛନ୍ତି ଏବଂ ସେମାନଙ୍କଠାରୁ ବିଦାୟ ନେଇ ଦୁର୍ଯ୍ୟୋଧନ ବ୍ୟାସ ସରୋବରକୁ ଗମନ କରିଛନ୍ତି । ସେ ଦୁର୍ବାସାଙ୍କ ସାହାଯ୍ୟରେ ବ୍ୟାସ ସରୋବର ମଧ୍ୟରେ ପ୍ରବେଶ କରି କ୍ଷୀରସମୁଦ୍ର ମଧ୍ୟସ୍ଥିତ ଅନନ୍ତ ଶଯ୍ୟା ନିକଟରେ ମୂର୍ଚ୍ଛା ଗତ ହୋଇ ଶୋଇରହିଲେ । ଦେବୀ କମଳିନୀ ମହାଲକ୍ଷ୍ମୀ ଅତି ସ୍ନେହରେ ଦୁର୍ଯ୍ୟୋଧନର ଶିର ଜାନୁ ଉପରେ ରଖି ବିହ୍ୱଳ ହୋଇ କାନ୍ଦିବାକୁ ଲାଗିଲେ । ଦେବୀଙ୍କର ଅଶ୍ରୁପାତ ଦୁର୍ଯ୍ୟୋଧନ ନିଦରୁ ଉଠି ମାତାଙ୍କର ପରିଚୟ ପାଇ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ମହାଲକ୍ଷ୍ମୀ ଦୁର୍ଯ୍ୟୋଧନର ଶରୀର ଆଉଁସି ଦେଇ କହିଲେ ତୁ ଯଦି ଭୀମଙ୍କର ଗଦା ରଡ଼ ସହ୍ୟ କରି ମୋର କୋଳରେ ଶୋଇ ରହିବୁ ତେବେ ତ୍ରିପୁରରେ ତୋତେ କେହି ଜୟ କରି ପାରିବେ ନାହିଁ ।

କୁନ୍ତୀ ଦେବୀ ଦୁର୍ଯ୍ୟୋଧନ ବଞ୍ଚିଥିବା ଯାଏ ଶତ୍ରୁରେ ନିଶ୍ୱାସ ମାରିପାରିଲେ ନାହିଁ । ସେ ଗୋଟି ଗୋଟି କରି ସବୁ ପୁତ୍ରଙ୍କୁ ଦୁର୍ଯ୍ୟୋଧନଙ୍କୁ ମାରିବା ଲାଗି ପରାମର୍ଶ ଦେଇ ନିରସ୍ତ ହେଲେ । ପରିଶେଷରେ ପୁତ୍ରମାନଙ୍କୁ ଧିକ୍କାର କରି ବନବାସ କରିବା ଲାଗି ଉଦ୍ୟତ ହୁଅନ୍ତେ ଭୀମ ମାତାଙ୍କ ଦୁର୍ବଚନ ସହ୍ୟ କରି ନ ପାରି ସେହି ଦିନ ସନ୍ଧ୍ୟା ସୁଦ୍ଧା ଦୁର୍ଯ୍ୟୋଧନଙ୍କୁ ବଧ କରିବା ଲାଗି ପ୍ରତିଜ୍ଞାବଦ୍ଧ ହେଲେ ।

କବି ସାରଳା ଦାସ ଏହି ପ୍ରସଙ୍ଗଟିକୁ ଅତି ଚମତ୍କାର ଭାବରେ ଗଦାପର୍ବରେ ଉଲ୍ଲେଖ କରିଛନ୍ତି—

"ଛଡେ ଅସ୍ତ୍ର ମଧ୍ୟେ ଯେବେ ନ ମାରଇ ଆଜ ।
ସେହି ରଣ ଭୂମିରେ ନଷ୍ଟେ ଅନଳେ ହୋଇବ ଦହନ ।
ହରହର ବ୍ରହ୍ମା ପାଇଲେ ହୋ ଆଜ ରଖ ।
ମାନଗୋବିନ୍ଦଙ୍କୁ ନ ମାଇଲେ ହସ ନ ଗ୍ରହିବ ମୋର ମୁଖ ।

ଏହିପରି ଭାବରେ ପ୍ରତିଜ୍ଞା କରି ଭୀମସେନ ଅଗ୍ରସର ହୁଅନ୍ତେ ପାଣ୍ଡବମାନେ ବନ ଗିରି, ଗହ୍ୱର ସନ୍ଧାନ ଅନ୍ୱେଷଣ କରିବାକୁ ଲାଗିଲେ । ପରିଶେଷରେ ଜଣେ ବ୍ୟାଧ ଠାରୁ ଖବର ପାଇ ପାଣ୍ଡବ-ମାନେ ବ୍ୟାସ ସରୋବର ନିକଟରେ ଉପସ୍ଥିତ ହୋଇଛନ୍ତି । ଏହି ପ୍ରସଙ୍ଗରେ କବି ଦକ୍ଷଯଜ୍ଞ ଓ ବ୍ୟାସସରୋବରର ବର୍ଣ୍ଣନା ବିସ୍ତୃତ ଭାବରେ କରିଛନ୍ତି । ପୂର୍ବ କାଳରେ କେଉଁମାନେ ବ୍ୟାସ ସରୋବରରେ ପ୍ରବେଶ କରି କି ଫଳ ପାଇଛନ୍ତି, ତାହାର ବର୍ଣ୍ଣନା ସଙ୍ଗେ ସଙ୍ଗେ ଅଶ୍ଳେଷା ଦୈତ୍ୟର ବଧ ପ୍ରସଙ୍ଗ ଉତ୍ଥାପନ କରି ଭୀମ ହସ୍ତରେ ତାହାର ବଧ କରାଇଛନ୍ତି । ତତ୍ପରେ ସହଦେବଙ୍କ ପରାମର୍ଶ ଅନୁସାରେ ଭୀମସେନ ମହାଦେବଙ୍କ ଠାରୁ ସିଂହନାଦ ବର ମାଗି ଦୁର୍ଯ୍ୟୋଧନଙ୍କୁ ଉତ୍ଥିତ କରାଇବା ଲାଗି ପ୍ରସ୍ତୁତ ହୋଇଛନ୍ତି । ଭୀମସେନଙ୍କର ସିଂହନାଦ ଓ ଭର୍ତ୍ସନାପୂର୍ଣ୍ଣ ବାକ୍ୟ ଶୁଣି ଦୁର୍ଯ୍ୟୋଧନ ମହାଲକ୍ଷ୍ମୀଙ୍କ ଆଶ୍ୱାସନାକୁ ପ୍ରତ୍ୟାଖ୍ୟାନ କରି ବ୍ୟାସ ସରୋବରରୁ ବାହାର ହୋଇଛନ୍ତି । ଏହି ପ୍ରସଙ୍ଗରେ ମହାକବି ସାରଳା ଦାସ ତାଙ୍କର ଚିରାଚରିତ ଅଭ୍ୟାସ ଅନୁସାରେ ଜ୍ୟୋତିଷ ଶାସ୍ତ୍ରର ବିସ୍ତାର ଅର୍ଥାତ ମାସ, ପକ୍ଷ, ତିଥି, ବାର, ନକ୍ଷତ୍ର, ଯୋଗ, କରଣର ବିସ୍ତାର କରିଛନ୍ତି—

"କୁମ୍ଭ ମାସ କୃଷ୍ଣପକ୍ଷ ପଞ୍ଚମୀ ଚନ୍ଦ୍ର ବାର
ଚିତ୍ରା ନାମେ ନକ୍ଷତ୍ର ଯେ ଅଟଇ ସେ ଦିନର ।
ଶୂଳ ନାମେ ଯୋଗ ତୈତିଳ କରଣ,
ଦିନକର ଅର୍ଦ୍ଧ ମଙ୍ଗଳ ବେଳ ଜାଣ ।
ବେଳ ଅର୍ଦ୍ଧମାନ ହୋଏ ଦ୍ୱିତୀୟ ପ୍ରହରେ,
ମହାକୋପ କରିଣ ଆସଇ କୁରୁବୀରେ ।
ମାନଗୋବିନ୍ଦ ବାହାର ସେ ବ୍ୟାସ ସରୋବରୁ,
ଆସରେ ପାଣ୍ଡବେ ସେ କୃଷ୍ଣ ଆସି ବେଗେ ଯାରୁ ।"

ଏହି ପ୍ରସଙ୍ଗରେ ମହାକବି ସାରଳା ଦାସ ଆଉ ଗୋଟିଏ ଚମତ୍କାର ପ୍ରସଙ୍ଗ ଉତ୍ଥାପନ କରିଛନ୍ତି । ଦୁର୍ଯ୍ୟୋଧନ ବ୍ୟାସ ସରୋବରରୁ ଉଠି ପାଣ୍ଡବମାନଙ୍କ ସମ୍ମୁଖରେ କହିଲେ —"ମୁଁ ହେଉଛି ରାଜଚକ୍ରବର୍ତ୍ତୀ ଏବଂ ଭାଇମାନଙ୍କ ମଧ୍ୟରେ ଜ୍ୟେଷ୍ଠ । ମୋ ସହିତ କେବଳ ତୁମ୍ଭମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଓ ରାଜଚକ୍ରବର୍ତ୍ତୀ ହିଁ ଯୁଦ୍ଧ କରିବ । ଏହି ପ୍ରଶ୍ନ ଅତ୍ୟନ୍ତ ନ୍ୟାୟପୂର୍ଣ୍ଣ ତଥା ବାସ୍ତବ ହୋଇଥିବାରୁ ଏଠାରେ ନଟନାଗର,

ତନ୍ତୀ ଭଗବାନ ବାସୁଦେବ ଗୋଟିଏ ନୂତନ ଉପାୟ ବାହାର କର ଭୀମଙ୍କୁ ପଞ୍ଚକଟକର ରାଜା ବୋଲି ଘୋଷଣା କଲେ ଏବଂ ଦୁର୍ଯ୍ୟୋଧନର ପ୍ରସ୍ତାବମତେ ଭଗବାନ ଶ୍ରୀକୃଷ୍ଣ ଭୀମସେନଙ୍କ ପାଦରେ ପ୍ରଣାମ ଜଣାଇଲେ । ଯୁଧିଷ୍ଠିର ଏହି ସୁଯୋଗରେ ଶ୍ରୀକୃଷ୍ଣଙ୍କ ଚରଣରେ ପ୍ରଣାମ କରି ଭୀମସେନଙ୍କୁ ପ୍ରଣାମ କରିଥିବାର ଛଳନା କଲେ । ଏହା ପରେ ଅପମାନ, କ୍ଷୋଭ, ଭୟ ତଥା ମର୍ମନ୍ତୁଦ ଯନ୍ତ୍ରଣାରେ ଅଧୀର ହୋଇ ଦୁର୍ଯ୍ୟୋଧନ ଭୀମସେନଙ୍କ ସହିତ ଗଦାଯୁଦ୍ଧ କରିବା ଲାଗି ପ୍ରସ୍ତୁତ ହେଲେ ।

ଏହି ପ୍ରସଙ୍ଗରେ ମହାକବି ସାରଳା ଦାସ ଆଉ ଗୋଟିଏ ପ୍ରସଙ୍ଗର ଉତ୍ଥାପନ କରିଛନ୍ତି ଯାହାକି ଅନ୍ୟତ୍ର ପରିଲକ୍ଷିତ ହୁଏ ନାହିଁ । ଦୁର୍ଯ୍ୟୋଧନର ଗଦା ଘାତରେ ଭୀମସେନ ଉଡ଼ିଯାଇ କ୍ଷୀର ସମୁଦ୍ର ମଧ୍ୟରେ ପଡ଼ିଲେ । ଭୀମସେନଙ୍କୁ ନ ଦେଖି ପାଣ୍ଡବମାନେ ଶୋକ ସାଗରରେ ନିମଜ୍ଜିତ ହେଲେ । ଏହା ଲକ୍ଷ୍ୟ କରି ଶ୍ରୀକୃଷ୍ଣ ଗରୁଡ଼ଙ୍କ ଦ୍ୱାରା ଭୀମସେନଙ୍କୁ ଅମୃତ ପିଆଇ ପୁଣି ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ କରାଇଲେ ଏହି ସମୟରେ ବଳରାମ ଦୁର୍ଯ୍ୟୋଧନର ପକ୍ଷ ସମର୍ଥନ କରି ଗଦା ଯୁଦ୍ଧ କ୍ଷେତ୍ରରେ ଉପସ୍ଥିତ ହେଲେ । ଦୁର୍ଯ୍ୟୋଧନ ଯୁଦ୍ଧରେ ମତ୍ତ ହୋଇ ଅଭିମାନ ବଶତଃ ଅନନ୍ତ ରୂପ-ଧାରୀ ବଳଦେବଙ୍କୁ ପ୍ରଣାମ ନିବେଦନ କଲେ ନାହିଁ । କିନ୍ତୁ ଯୁଧିଷ୍ଠିର ବଳଦେବଙ୍କ ପାଦତଳେ ସାଷ୍ଟାଙ୍ଗ ପ୍ରଣାମ ଜଣାଇଲେ । ତାଙ୍କୁ ସ୍ତୁତି କରି କହିଲେ—

"ଜୟତୁ ବଳରାମ ତ୍ରୈଲୋକ୍ୟ ଚନ୍ଦ୍ରାମଣି,
ଜୟତୁ ବଳରାମ ଅଭୟ ହଳପାଣି ।।

ଜୟତୁ ବଳରାମ ରେବତୀରମଣ
ଜୟତୁ ବଳରାମ ଶରଣ ରକ୍ଷଣ ।

× × ×

ଜୟତୁ ବଳରାମ ମୁଁ ଶରଣ ଗଲି ତୋତେ ।
ଜୟତୁ ବଳରାମ ଉଦ୍ଧରସି ମୋତେ ।।

× × ×

ଜୟତୁ ବଳରାମ ଉଦ୍ଧତ ଧରସି ମୁକ୍ତି ।
ଜନ୍ମେ ଜନ୍ମେ ସେବଇ ମୁଁ ତୁମ୍ଭ ପଦ୍ମ ପାଦକୁ" ।।

ଯୁଧିଷ୍ଠିରଙ୍କ ବିନମ୍ର ନିବେଦନରେ ବଳରାମ ସନ୍ତୁଷ୍ଟ ହୋଇ ତାଙ୍କୁ ରାଜା ଚକ୍ରବର୍ତ୍ତୀ ହେବାଲାଗି ବର ପ୍ରଦାନ ପୂର୍ବକ ପ୍ରୟାଗ ତୀର୍ଥକୁ ପ୍ରତ୍ୟାଗମନ କଲେ । ଭଗବାନ ବଳରାମ ଫେରିଯିବା ସମୟରେ ଦୁର୍ଯ୍ୟୋଧନକୁ ଧିକ୍କାର କରି କହିଲେ—

"ଆରେ ଦୁର୍ଯୋଧନ ନମସ୍କାର କରିଥାନ୍ତୁ ଯେବେ
ନିଶ୍ଚୟେ ଆଜ ପାଣ୍ଡବଙ୍କୁ ମାରି ସେ ରାଜ୍ୟ ଦିଅନ୍ତ ପାଆନ୍ତୁ ଶୁଭ କାର୍ଯ୍ୟ"
ଯଦ୍ୟପି ପରିପାନ୍ତା ଦେବ ବାସୁଦେବ ।
ଅବଶ୍ୟ ତାହାଙ୍କୁ ମୁଁ କରନ୍ତ ପରାଭବ ।।

ବଳରାମଙ୍କ ଠାରୁ ଆଶୀର୍ବାଦ ପାଇ ମହୋତ୍ସାହରେ ଭୀମ ଦୁର୍ଯୋଧନଙ୍କୁ ଆକ୍ରମଣ କଲେ, କିନ୍ତୁ ଦୁର୍ଯୋଧନର ମୁଥ ଆଘାତରେ ପରାଭବ ପାଇ ଶତ୍ରୁଙ୍କୁ ସ୍ମରଣ କରନ୍ତେ ପୁଣି ଅପୂର୍ବ ବିକ୍ରମରେ ମାନଗୋବିନ୍ଦଙ୍କୁ ଆକ୍ରମଣ କରିଥିଲେ । ଏହି ସମୟରେ ଶ୍ରୀକୃଷ୍ଣଙ୍କ ଠାରୁ ନିର୍ଦ୍ଦେଶ ପାଇ ଭୀମସେନ, ଗଦାଯୁଦ୍ଧର ନିୟମ ବିରୁଦ୍ଧ ହୋଇଥିଲେ ହେଁ ଦୁର୍ଯୋଧନଙ୍କ ଜାନୁ ଦ୍ୱୟକୁ ତୀବ୍ର ଆଘାତ କରିଥିଲେ । ଏହି ଆଘାତରେ ମାନଗୋବିନ୍ଦ ମୂର୍ଚ୍ଛିତ ହୋଇ ପଡ଼ିଥିଲେ । ଭୀମ ଦୁର୍ଯୋଧନର ରକ୍ତରେ ତଳା ଘେନି ତା'ର ବୁକୁ ବିଦାରିବାକୁ ଉଦ୍ୟତ ହୁଅନ୍ତେ ଯୁଧିଷ୍ଠିର ଭୀମଙ୍କୁ ଶପଥ ଦେଇ ଏପରି ଅକାର୍ଯ୍ୟରୁ ନିବର୍ତ୍ତାଇ ଥିଲେ । ଏହା ପରେ ଯୁଧିଷ୍ଠିର ଦୁର୍ଯୋଧନଙ୍କ ସମ୍ମୁଖରେ ବସି ତା'ର ପୂର୍ବ କୁକୃତ୍ୟମାନ ମନେ ପକାଇ ଅନେକ ଉପଦେଶ ଦେଲେ ଏବଂ ଦୁର୍ଦ୍ଧର୍ଷ ନାମକ ବୀରଙ୍କୁ ଦୁର୍ଯୋଧନ ପଡ଼ିଥିବା ସ୍ଥାନରେ ଜଗାଇ, ଜଇନ୍ତ୍ରା ନଗରରେ ପ୍ରବେଶ କଲେ । ଏହି ସମୟରେ କୁନ୍ତୀ ଦେବୀ ହାତରେ ଅର୍ଘ୍ୟଥାଳ ଘେନି ଭୀମଙ୍କୁ ବନ୍ଦାଇବା ସଙ୍ଗେ ସଙ୍ଗେ ଭୀମସେନ ପରି ପୁତ୍ର ପାଇ ଥିବାରୁ ମନେ ମନେ ଗର୍ବିତା ହୋଇଥିଲେ ।

ଏହାପରେ ପାଣ୍ଡବ ପାଞ୍ଚଭାଇ ମହାଭାରତ ଯୁଦ୍ଧରେ ପ୍ରତ୍ୟେକଙ୍କର କାର୍ଯ୍ୟ ସମ୍ବନ୍ଧରେ ଅଭିମାନପୂର୍ଣ୍ଣ ବିବରଣୀ ପ୍ରଦାନ କରିବା ସଙ୍ଗେ ସଙ୍ଗେ ପରମ ଆହ୍ଲାଦରେ ବିଜୟ ଉତ୍ସବ ପାଳନ କଲେ ।

ପରିଶେଷରେ ମହାକବି ସାରଳାଦାସ ଯାଦବ ବଳଙ୍କ ମୁଖରେ ଦ୍ୱାପର ଯୁଗର ମହାନ୍ ସୂତ୍ରଧର ଭଗବାନ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରି ଗଦା ପର୍ବଟିକୁ ଶେଷ କରିଛନ୍ତି ।

"ଦୁଃଖୀଜନ ଉଦ୍ଧାରନ୍ତା ତୁହି ସେ ଜଗବନ୍ଧୁ ।
ଶରଣ ରକ୍ଷଣ ନାଥ ଅଭୟେ ସତ୍ୟ ସିନ୍ଧୁ ।

× × ×

ମହାକବି ସାରଳା ଦାସ ଯାଦୁକରୀ ଲେଖନୀର ସ୍ପର୍ଶରେ ବ୍ୟାସଦେବଙ୍କ ବର୍ଣ୍ଣିତ ମହାଭାରତ ଗଦାଯୁଦ୍ଧ ଓଡ଼ିଆ ପାଠକପାଠିକାମାନଙ୍କ ନିକଟରେ ଅତ୍ୟନ୍ତ ହୃଦ୍ୟ ଓ ମନୋଜ୍ଞ ହୋଇ ପାରିଛି । ଏହି ପରିପ୍ରେକ୍ଷୀରେ ଦେଖିବାକୁ ଗଲେ ସାରଳାଦାସଙ୍କ ମହାଭାରତ ଗ୍ରନ୍ଥଟି ଏକ ଅମୂଲ୍ୟ ଗ୍ରନ୍ଥ ରତ୍ନ, ଏଥିରେ ସନ୍ଦେହ ନାହିଁ ।



# କାର୍ତ୍ତିକା ପର୍ବ

## ଡକ୍ଟର ଖଗେନ୍ଦ୍ରନାଥ ମଲ୍ଲିକ

---

ଶୂଦ୍ରମୁନି ସାରଳା ଦାସଙ୍କର କାର୍ତ୍ତିକା ପର୍ବଟି ଦୁର୍ଯ୍ୟୋଧନଙ୍କ ଉରୁଭଗ୍ନ ପରେ ଦ୍ରୋଣପୁତ୍ର ଅଶ୍ୱତ୍ଥାମାଙ୍କର ପ୍ରତିଶୋଧଜନିତ କାର୍ତ୍ତିକା ଅସ୍ତ୍ର ପ୍ରୟୋଗ ଏବଂ ସେଥିରୁ ଶ୍ରୀକୃଷ୍ଣଙ୍କ ଦୈବନ୍ତ୍ର ଶକ୍ତିରୁ ପାଣ୍ଡବ ବଂଶ ରକ୍ଷାର୍ଥେ ପରୀକ୍ଷିତଙ୍କ ଜୀବଦାନକୁ କେନ୍ଦ୍ରକରି ରଚିତ ଛଅଟି ଅଧ୍ୟାୟରେ କଥାବସ୍ତୁର ଚୟନ ହୋଇଛି । ପ୍ରଥମେ ଅଶ୍ୱତ୍ଥାମା କର୍ତ୍ତୃକ ଦ୍ରୌପଦୀଙ୍କର ପଞ୍ଚପୁତ୍ର ଶିରଚ୍ଛେଦ, ସେମାନଙ୍କର ପୂର୍ବଜନ୍ମ ବିବରଣ, ଛଦ୍ମବେଶୀ ଶ୍ରୀକୃଷ୍ଣଙ୍କ ଦ୍ୱାରା ଅଶ୍ୱତ୍ଥାମାଙ୍କ ଅସ୍ତ୍ର ହରଣ, ଶ୍ରୀକୃଷ୍ଣଙ୍କ ଠାରୁ ନନ୍ଦ ଓ ବସୁଦେବଙ୍କର ମହାଭାରତ ଯୁଦ୍ଧ ବୃତ୍ତାନ୍ତ ଶ୍ରବଣ, ଅଶ୍ୱତ୍ଥାମାର ପାଣ୍ଡବ ବଧାର୍ଥେ କାର୍ତ୍ତିକା ଶର ପ୍ରୟୋଗ ଏବଂ ଶ୍ରୀକୃଷ୍ଣଙ୍କ ଦ୍ୱାରା ପରୀକ୍ଷିତଙ୍କ ଜୀବଦାନ ହେଉଛି ଉକ୍ତ ଗ୍ରନ୍ଥର ବିଷୟବସ୍ତୁ । ଏହି ବିଷୟକୁ ବ୍ରହ୍ମସୁତ ଅଗସ୍ତି ମନୁରାଜାଙ୍କୁ ବର୍ଣ୍ଣନା କରିଛନ୍ତି ।

ଭୀମସେନ ଦୁର୍ଯ୍ୟୋଧନଙ୍କୁ ନିହତ କରିବା ଲାଗି ନିଜ ପ୍ରତିଜ୍ଞା ଅନୁସାରେ ଦୁଇଦିନ ଅନ୍ନଜଳ ସ୍ପର୍ଶ କରି ନଥିଲେ । ଦୁର୍ଯ୍ୟୋଧନଙ୍କ ଉରୁଭଗ୍ନ ପରେ ସେ ତାଙ୍କର ରୋଷେଇଆକୁ କୋପଚିତ୍ତରେ କହିଲେ ଶୀଘ୍ର ମାଂସ ଖାଇବାକୁ ଦେବାଲାଗି । ରୋଷେଇଆ ଦିନାମ ଶିକାରୀ ଭୀମଙ୍କ ପାଇଁ ରଖିଥିବା ଚକୁଆ ଚକୋଇ ପକ୍ଷୀଦ୍ୱୟ କାଠପଞ୍ଜୁରୀରୁ ଉଡ଼ିଯାଇଥିବାରୁ ବିବ୍ରତ ଭାବେ ନୂତନ ଶିକାର ଲାଗି ବନରେ ବୁଲୁବୁଲୁ ତୁଙ୍ଗଭଦ୍ରା-ନଦୀତୀରରେ ଅଶ୍ୱତ୍ଥାମାର ସାକ୍ଷାତ ପାଇଲେ । ଶିକାରୀଠାରୁ ସମସ୍ତ ଘଟଣା ଶୁଣି ଅଶ୍ୱତ୍ଥାମା କହିଲେ ପୂର୍ବକାଳରେ ଶ୍ରୀରାମଙ୍କ ଅଭିଶାପରୁ ଚକୁଆ ଚକୋଇଙ୍କର ଦିନବେଳା ବ୍ୟତୀତ ଅନ୍ୟ ସମୟରେ ମିଳନ ହୁଏନାହିଁ । ତୁ ନିଜର ଅଜ୍ଞାନତା ବଶତଃ ସେମାନଙ୍କୁ ଏକାଠି ରଖିଥିବାରୁ ସେ ପଞ୍ଜୁରୀ ଫାଟିଗଲା ଏବଂ ଚଢ଼େଇ ଉଡ଼ିଗଲେ । ତାପରେ ଅଶ୍ୱତ୍ଥାମା ଦୁର୍ଯ୍ୟୋଧନଙ୍କର ଉରୁଭଗ୍ନ ସମ୍ବାଦ ଶୁଣି ବ୍ୟସ୍ତଭାବରେ ତାଙ୍କୁ ଦେଖିବା ପାଇଁ ଆସିଲେ । ସେ ଦେଖିଲେ ଦୁର୍ଯ୍ୟୋଧନଙ୍କ ଜାନୁ ଅଧରେ ମସ୍ତକ ଭଙ୍ଗି ଉରୁଭଗ୍ନ ଦୁର୍ଯ୍ୟୋଧନ ବଡ଼ ଅସହାୟ ଭାବେ ପଡ଼ିଛନ୍ତି । ଅଶ୍ୱତ୍ଥାମାକୁ ଦେଖି ଦୁର୍ଯ୍ୟୋଧନ ବଡ଼ ନିରାଶଭାବେ କହିଲେ ଦେଖ ତୁମମାନଙ୍କୁ ଆଶ୍ରାକରି ଆଜି ମୋର କି ଅବସ୍ଥା ହୋଇଛି । ଏଥିରେ ଅଶ୍ୱତ୍ଥାମା ଅଭିମାନ ଚିତ୍ତରେ କହିଲେ ମୁଁ କଣ ଆପଣଙ୍କୁ ମୋତେ ସେନାପତି କରିବା ଲାଗି ପୂର୍ବରୁ କହିନଥିଲି । ମାତ୍ର ଆପଣ ଉପହାସ କଲେ । ମୋ

ସ୍ୱପ୍ନରେ ବି ପାଣ୍ଡବଙ୍କର ମୃତ୍ୟୁଭେଦ ଥିଲା । ଆଜି କେବଳ ନିର୍ଲଜ୍ଜଭାବେ ଅପଣ ନ ହେଉଥିଲେ ମଧ୍ୟ ମୁଁ ଆପଣଙ୍କୁ ଦେଖା କରିବାକୁ ଆସିଛି । ମୋର ଅନୁରୋଧ ଏବେବି ସମ୍ଭବ ଅଛି । ଆପଣ ମୋତେ ସେନାପତି ପଦରେ ବରଣ କରନ୍ତୁ, ମୁଁ ପାଣ୍ଡବମାନଙ୍କର ମସ୍ତକ ଆଣି ଆପଣଙ୍କୁ ଭେଟି ଦେବି । ଆପଣ ଶାନ୍ତିରେ ଶେଷ ନିଶ୍ୱାସ ତ୍ୟାଗ କରିବେ ।

ଅଶ୍ୱତ୍ଥାମାର ଦମ୍ଭୋକ୍ତିରେ ଦୁର୍ଯୋଧନ ନିଜର ଅସହାୟତା ପ୍ରକାଶ କରିଛନ୍ତି—

“ଦୁର୍ଯୋଧନ ବୋଇଲା ହୋ ବହିଗଲା ପାଣି
ବନ୍ଧବାନ୍ଧି ନୁଆଁଗଲା ବେଳକାଳ ଜାଣି ।

ଆଜନ୍ମୁଁ ଯେବେ ମୁଁ ନ ପାଳନ୍ତି ସତ୍ୟବ୍ରତ
ସରିଲା ବେଳକୁ ଆଉ କାହିଁକି ନିୟତ ।

ଆଜି ମୋ ପାଖରେ ଆଉ କେଉଁ ରଥ, ଗଜ, ଅଶ୍ୱ, ଅଲଙ୍କାର, ସୈନ୍ୟ ସାମନ୍ତ ଅଛି ଯେ ମୁଁ ତୁମକୁ ସେନାପତି ରୂପେ ବରଣ କରିବି । ଅଶ୍ୱତ୍ଥାମା କହିଛି ମୋର କିଛି ଲୋଡ଼ାନାହିଁ । ଆପଣ କେବଳ ମୋତେ ସ୍ୱୀକାର କରନ୍ତୁ । ଏଥିରେ ଦୁର୍ଯ୍ୟୋଧନ ସମ୍ମତି ପ୍ରକାଶ କରିଛନ୍ତି ଏବଂ ତାଙ୍କ ଆଦେଶରେ ଦୁର୍ବାକ୍ଷ ଶିଆଳି ଲତା ଅଶ୍ୱତ୍ଥାମା ମସ୍ତକରେ ବାନ୍ଧି ତାଙ୍କୁ ସେନାପତି ରୂପେ ବରଣ କରିବା ପରେ ଅଶ୍ୱତ୍ଥାମା ପାଣ୍ଡବ ଶିବିରରେ ରାତ୍ରିକାଳରେ ପ୍ରବେଶ କରିଛି । ସେ ପ୍ରଥମେ ନଗର ସିଂହଦ୍ୱାରରେ ଥିବା [illegible] ମୂର୍ତ୍ତି ସହ ଯୁଦ୍ଧ କରି ତାଙ୍କୁ ପରାସ୍ତ କରିଛି ଏବଂ ତା ପରେ ସେ କାନ୍ଥଙ୍କି ଭିତରେ ପ୍ରବେଶ କରି ଦୁଇଅକ୍ଷୌହିଣୀ ସୈନ୍ୟ, ପିତାଶଯ୍ୟ, ଧୃଷ୍ଟଦ୍ୟୁମ୍ନ ଏବଂ ଚନ୍ଦ୍ରଶାଳା ଭିତରେ ଶୋଇଥିବା ଦ୍ରୌପଦୀଙ୍କର ପଞ୍ଚ ପୁତ୍ରଙ୍କୁ ପାଣ୍ଡବ ଭାବି ହତ୍ୟା କରିଛି ଓ ସେହି ପଞ୍ଚପୁତ୍ରଙ୍କ ମସ୍ତକ ସହିତ ଧୃଷ୍ଟଦ୍ୟୁମ୍ନଙ୍କର ମସ୍ତକ ହରଣ କରି ଆନନ୍ଦ ମନରେ ଦୁର୍ଯୋଧନଙ୍କ ନିକଟକୁ ପ୍ରଭାତ କାଳରେ ଆସିଥିଛି । ଦୁର୍ଯୋଧନ ସେହି ପଞ୍ଚ ମସ୍ତକକୁ ଚିହ୍ନିପାରି ବଡ଼ ଯନ୍ତ୍ରଣାକ୍ରାନ୍ତ ହୋଇ ପଡ଼ିଛନ୍ତି ଏବଂ ଅଶ୍ୱତ୍ଥାମାର କୁଷ୍ଟପ୍ରକୃତିକୁ ନିନ୍ଦା କରିବା ସଙ୍ଗେ ସଙ୍ଗେ ସେହି ପଞ୍ଚପୁତ୍ରଙ୍କର ମସ୍ତକ କୋଳରେ ଧରି ପ୍ରାଣ ବିସର୍ଜନ କରିଛନ୍ତି । ଅଶ୍ୱତ୍ଥାମା ଲଜ୍ଜିତ ହୋଇ ବଣକୁ ପଳାଇ ଯାଇଛି ।

ଏହାପରେ ସାତବର୍ଷ ଲେଖାଏଁ ହୋଇଥିବା ଦ୍ରୌପଦୀ ପୁତ୍ରମାନଙ୍କର ଅକାଳ ମୃତ୍ୟୁ ଖବର କାରଣ ସମ୍ପର୍କରେ ମନୁଙ୍କ ଜିଜ୍ଞାସା ହେବାରୁ ଅଗସ୍ତି କହିଲେ ଯେ 'ବିଷ୍ଣୁପ୍ରଭବ ନାମକ ଏକ ସତ୍ୟଯୁଗରେ ବିଷ୍ଣୁଭଦ୍ର ନାମକ ଏକ ଧାର୍ମିକ ରାଜା ଥିଲେ । ତାଙ୍କର ବଂଶଧର ଥିଲେ ଗ୍ୟାଧ୍ୱଜା । ପ୍ରତାପଶାଳୀ ଗ୍ୟାଧ୍ୱଜାଙ୍କର ନିଅଣ୍ଡ ରାଣୀ

ଥିଲେ । ସେମାନଙ୍କ ମଧ୍ୟରୁ ଉମାବସୁଙ୍କର କନ୍ୟା ସତ୍ୟବତୀ ଥିଲେ ଅନ୍ୟତମା । ଉମାବସୁଙ୍କର ଅନ୍ୟତମା କନ୍ୟା ରେଣୁକା ଯମଦଗ୍ନିଙ୍କୁ ବିବାହ କରିଥିଲେ । ଦୁଇଭଉଣୀ ଅପୁତ୍ରିକା ଥିଲେ । ପୁତ୍ରପ୍ରାପ୍ତି ନିମନ୍ତେ ଯଜ୍ଞ କରିବା ଲାଗି ଗାଧିରାଜାଙ୍କ ପରାମର୍ଶରେ ତାଙ୍କ ପତ୍ନୀ ସତ୍ୟବତୀ କନିଷ୍ଠାଭଗ୍ନି ରେଣୁକା ଘରେ ପହଞ୍ଚିଲେ । ଯମଦଗ୍ନି ଏଥିପାଇଁ ଯଜ୍ଞ କଲେ । ପନ୍ଦରବର୍ଷ ଯଜ୍ଞ କରିବାପରେ ଦିନେ ସ୍ନାନସମାପନାନ୍ତେ ଈଶାନ୍ୟକୋଣରେ ଚରୁକୁ ରେଣୁକା ଏବଂ ଅଗ୍ନିକୋଣରେ ଚରୁକୁ ସତ୍ୟବତୀ ଭକ୍ଷଣ କରିବା ଲାଗି ଯମଦଗ୍ନି କହିଲେ । ମାତ୍ର ପ୍ରଥମେ ସ୍ନାନକରି ସତ୍ୟବତୀ ରେଣୁକାଙ୍କ ଚରୁ ଖାଇଲେ । ଏଥିରେ ଦୁଃଖିତା ହେଲେହେଁ ଶେଷରେ ରେଣୁକା ସତ୍ୟବତୀଙ୍କ ପାଇଁ ଥିବା ଚରୁ ଖାଇଲେ । ଶେଷରେ ଏହି ଚରୁ ଭକ୍ଷଣର ପାର୍ଥକ୍ୟ ହେତୁ ସତ୍ୟବତୀ କ୍ଷତ୍ରିୟପତ୍ନୀ ହେଲେହେଁ ବ୍ରାହ୍ମଣ ବିଶ୍ୱାମିତ୍ରଙ୍କୁ ଏବଂ ବ୍ରାହ୍ମଣପତ୍ନୀ ରେଣୁକା କ୍ଷତ୍ରିୟ ପରଶୁରାମଙ୍କୁ ଜନ୍ମ ଦେଲେ । ପିତାଙ୍କ ଅନ୍ତେ ବିଶ୍ୱାମିତ୍ର ରାଜାହେଲେ । ଏକଦା ସେ ବନରେ ପାରିଷଦ ବର୍ଗଙ୍କ ସହ ଭ୍ରମଣ କରି ଦ୍ୱିପ୍ରହର କାଳ କ୍ଷୁଧାଜନିତ ଯନ୍ତ୍ରଣାରେ ବଶିଷ୍ଠଙ୍କ ଆଶ୍ରମରେ ଅତିଥି ହେଲେ । ବ୍ରହ୍ମର୍ଷି ବଶିଷ୍ଠ ଗୋଟିଏ କୁଡ଼ିଆ ଅନ୍ନ ଏବଂ ନିଜର ଏକମାତ୍ର ଗାଭୀ କାମଧେନୁଠାରୁ କ୍ଷୀର ସଂଗ୍ରହ କରି ନିଜର ଉନହଜାର ଶିଷ୍ୟଙ୍କ ଦ୍ୱାରା ବିଶ୍ୱାମିତ୍ରଙ୍କର ଅକ୍ଷୌହିଣୀ ସୈନ୍ୟସାମନ୍ତଙ୍କୁ ତୃପ୍ତ କରିଦେବାରୁ, ବିଶ୍ୱାମିତ୍ରଙ୍କର କାମଧେନୁ ଉପରେ ଲୋଭ ଆସିଲା । ସେ ସେହି ଗାଭୀକୁ ଦେଇଦେବା ଲାଗି ପ୍ରଥମେ ବଶିଷ୍ଠଙ୍କୁ ମାଗି ବିଫଳ ହେବା ପରେ ଜୋରେଇ ନେବାର ଉପାୟ କଲେ । ମାତ୍ର କାମଧେନୁ ଦ୍ୱାରା ପରାସ୍ତ ହୋଇ ଅଷ୍ଟବସୁଙ୍କର ଶରଣାପନ୍ନ ହେଲେ । ଅଷ୍ଟବସୁ ମନ୍ତ୍ରବଳରେ ଦିନେ କାମଧେନୁକୁ ଜୋରେଇ ନେଲେ । ବଶିଷ୍ଠ କାମଧେନୁକୁ ଫେରାଇ ଆଣିବାବେଳେ ତାଙ୍କୁ ବସୁଗଣ ଯନ୍ତ୍ରଣା ଦେବାରୁ ଋଷିଙ୍କ ଅଭିଶାପ ପ୍ରାପ୍ତ ହୋଇ ଗଙ୍ଗାଙ୍କ ସନ୍ତାନ ରୂପେ ଜନ୍ମି ମାତା ଦ୍ୱାରା ନିହତ ହୋଇଥିଲେ । ସୁତରାଂ ବିଶ୍ୱାମିତ୍ର ଏଥିରେ ବିଫଳ ହୋଇ ବଶିଷ୍ଠଙ୍କ ପରି ଋଷିର ମର୍ଯ୍ୟାଦା ପାଇବା ଲାଗି କଠୋର ତପସ୍ୟା କଲେ । ମାତ୍ର ବାରମ୍ବାର ବିଫଳ ହୋଇ ଶେଷରେ ଦେବର୍ଷି ଉପାଧି ଲାଭ କରି ଥିଲେହେଁ, ତାଙ୍କର ଅହଂ ପ୍ରବୃତ୍ତି ଦମନ କରିପାରି ନଥିଲେ । ତେଣୁ ସେ ବ୍ରହ୍ମାପଦ ପାଇବା ଲାଗି ବିଦ୍ୟାଧରଙ୍କ ସହ ଯୁଦ୍ଧକଲେ । ବିଦ୍ୟାଧର ପୁରୁଷମାନେ ଭୟରେ ଦାନୀ ରାଜା ହରିଚନ୍ଦନ (ହରିଶ୍ଚନ୍ଦ୍ର) ଙ୍କ ଶରଣାପନ୍ନ ହେବାରୁ, ବିଶ୍ୱାମିତ୍ର କୌଶଳରେ ତାଙ୍କୁ ସତ୍ୟ କରାଇ ପତ୍ନୀପୁତ୍ର ସହ ରାଜାଙ୍କୁ ରାଜ୍ୟରୁ ବିତାଡ଼ନ କଲେ । ଅଳ୍ପବୟସ୍କ ରାଜକୁମାର ରୋହିତାକ୍ଷ ଶୀଘ୍ର ସ୍ୱଳନପାଇବାରୁ ତାଙ୍କ ଉପରେ ବିଶ୍ୱାମିତ୍ରଙ୍କ ଅତ୍ୟାଚାର ଦେଖି ପାଞ୍ଚଜଣ ବିଶ୍ୱଦେବା ବିଶ୍ୱାମିତ୍ରଙ୍କୁ ତିରସ୍କାର କରିବାରୁ ବିଶ୍ୱାମିତ୍ର ସେମାନଙ୍କୁ ମନୁଷ୍ୟରୂପେ ଜନ୍ମନେବା ଲାଗି ଅଭିଶାପ ଦେଲେ । ତାପରେ ସେହି ପଞ୍ଚ ବିଶ୍ୱଦେବା ବିଶ୍ୱାମିତ୍ରଙ୍କୁ ସନ୍ତୁଷ୍ଟ କରିବାରୁ ସେମାନଙ୍କୁ ଦ୍ରୌପଦୀ ପୁତ୍ର ରୂପେ ଜନ୍ମନେଇ ସାତବର୍ଷ

ତପନରେ ପ୍ରାଣତ୍ୟାଗକାରୀ ସ୍ୱର୍ଗକୁ ଆସିବାକୁ ବିଶ୍ୱାମିତ୍ର ବର ପ୍ରଦାନ କରିଥିଲେ । ଏଥିପାଇଁ ସେମାନେ ଅଶ୍ୱତ୍ଥାମା କର୍ତ୍ତୃକ ନିହତ ହେଲେ ବୋଲି ଅଗସ୍ତି କହିଛନ୍ତି ।

ଏହାପରେ ବର୍ଣ୍ଣିତ ହୋଇଛି ଯେ, ଦ୍ୱାରକାରେ ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କରୁଛନ୍ତି ଇନ୍ଦ୍ରପ୍ରସ୍ଥ ଯିବାଲାଗି । ମାତ୍ର ଶ୍ରୀକୃଷ୍ଣ କହୁଛନ୍ତି ମୁଁ ଆଗେ ଦେଖି ଆସେ ଦୁର୍ଯ୍ୟୋଧନ ମରିଛି କି ନାହିଁ । ଯଦି ସେ ମରି ନଥିବ ତେବେ ଆପଣମାନଙ୍କର ସେଠାକୁ ଯିବା ଠିକ୍ ହେବନି । ତାପରେ ସେ ପାଣ୍ଡବ ମାନଙ୍କୁ ବୁଝାଇ ଏକୁଟିଆ ଇନ୍ଦ୍ରପ୍ରସ୍ଥ ଯାଇଛନ୍ତି ଏବଂ ସେଠାରେ ଦୁର୍ଦକ୍ଷଠାରୁ ଦ୍ରୌପଦୀ ପୁତ୍ର ନିହତ ହୋଇଥିବା ଆଦି ସମସ୍ତ ସମ୍ବାଦ ଶୁଣିଆସି କହିବାରୁ ଦ୍ରୌପଦୀ ପୁତ୍ର ବିଚ୍ଛେଦରେ ଅଧୀର ହୋଇ ପଡ଼ିଲେ । ଫଳରେ ଶ୍ରୀକୃଷ୍ଣ ଛଦ୍ମବେଶୀ ବ୍ରାହ୍ମଣ ରୂପରେ ନନ୍ଦକେଶ୍ୱର ବନରେ କୃପବ୍ରହ୍ମା ଏବଂ ଅଶ୍ୱତ୍ଥାମାଙ୍କୁ ଭେଟିଲେ । କୃପବ୍ରହ୍ମା ପରିଚୟରେ କହିଲେ ଯେ ଏ ଆମର ଭଣଜା ଅଶ୍ୱତ୍ଥାମା ବିନାଦୋଷରେ ବାଳକ ହତ୍ୟା କରି କୁମ୍ଭୀପାକ ରୌରବ ନର୍କ ଦୋଷ ଅର୍ଜନ କରିଥିବାରୁ ଆମେ ତୀର୍ଥ ଭ୍ରମଣ କରୁଛୁ । ଛଦ୍ମବେଶୀ କୃଷ୍ଣ ସେମାନଙ୍କୁ କହିଲେ ଯେ, ତୀର୍ଥଯାତ୍ରାବେଳେ ଅସ୍ତ୍ରଶସ୍ତ୍ର ପାଖରେ ରଖିଲେ ତମୋଗୁଣ ବୃଦ୍ଧି ହେବ, ତେଣୁ ଏହାକୁ କପାଳେଶ୍ୱର ତୀର୍ଥସ୍ଥ ଜଳ ମଧ୍ୟରେ ବୁଡ଼ାଇ ଦେଇଯିବା । ଏହାପରେ ସେ କୌଶଳରେ ସେ ଅସ୍ତ୍ର ସମସ୍ତ ଅପହରଣ କରି ଦ୍ୱାରକା ଫେରିଆସି ଦ୍ରୌପଦୀଙ୍କୁ ସାନ୍ତ୍ୱନା ଦେଲେ ଯେ ତୁମ ପୁତ୍ର ଶତ୍ରୁଙ୍କର ସମସ୍ତ ଅସ୍ତ୍ରଶସ୍ତ୍ର ମୁଁ ନଷ୍ଟ କରି ଆସିଛି, ତେଣୁ ଆଉ ଚିନ୍ତା କରିବାର ଆବଶ୍ୟକତା ନାହିଁ ।

ବହୁଦିନ ପରେ ଶ୍ରୀକୃଷ୍ଣଙ୍କ ସହ ଉଗ୍ରସେନ, ନନ୍ଦ, ବସୁଦେବ ପ୍ରମୁଖଙ୍କର ସାକ୍ଷାତ ହେବାରୁ ସେମାନେ କୃଷ୍ଣଙ୍କର ଅଦର୍ଶନ ରହସ୍ୟ ଜିଜ୍ଞାସା କରୁଛନ୍ତି ଏବଂ ଉତ୍ତରରେ ଶ୍ରୀକୃଷ୍ଣ କହିଲେ ସେ କିପରି ମହାଭାରତ ଯୁଦ୍ଧରେ ଅଂଶ ଗ୍ରହଣ କରିଥିଲେ । ସେ ଯୁଦ୍ଧରେ ବହୁ ମୃତାହତ ହେଲେ । ପାଣ୍ଡବ ମାନଙ୍କୁ ସେ ଦ୍ୱାରକାକୁ ଆଣିଛନ୍ତି ଏବଂ ଶେଷରେ ତାଙ୍କୁ ମିଶାଇ ପାଣ୍ଡବ ପାଞ୍ଚଜଣ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, ବିଦୁର, ଧୃତରାଷ୍ଟ୍ର, ଯୁଯୁତ୍ସୁ, ସାତ୍ୟକି, ଦୁର୍ଦକ୍ଷ ଏପରି ୧୩ ଜଣ ବଞ୍ଚି ରହିଛନ୍ତି । କେବଳ ଏକମାତ୍ର ଅହଙ୍କାରୀ ଦୁର୍ଯ୍ୟୋଧନର ଅଜ୍ଞାନତା ହେତୁ ଏପରି ବଂଶନାଶ ହେଲା ବୋଲି ଶ୍ରୀକୃଷ୍ଣ ମତ ଦେବାପରେ ଉଗ୍ରସେନ ଶ୍ରୀକୃଷ୍ଣଙ୍କୁ ବ୍ରହ୍ମରୂପେ ସ୍ତୁତି କରିଛନ୍ତି ।

ଏପାଖରେ ଛଦ୍ମବେଶୀ ବ୍ରାହ୍ମଣଙ୍କ ଅଦର୍ଶନରେ ତଥା କପାଳମୋଚନ କ୍ଷେତ୍ରରେ ନିଜର ଅସ୍ତ୍ରଶସ୍ତ୍ର ନଦେଖି କୃପାଚାର୍ଯ୍ୟ ଧ୍ୟାନରେ ଶ୍ରୀକୃଷ୍ଣଙ୍କର ଏପରି କୌଶଳ ଜାଣିପାରି ଅଶ୍ୱତ୍ଥାମାଙ୍କୁ କହିଛନ୍ତି । ଏଥିରେ ଅଶ୍ୱତ୍ଥାମା କୃପଙ୍କର ଶତବାରଣ ସତ୍ତ୍ୱେ ଉତ୍ତ୍ୟକ୍ତ ହୋଇଯାଇ ନିକଟସ୍ଥ ଏକ କାର୍ଣ୍ଣିଶ ବୃକ୍ଷ ଉପାଡ଼ି ଏବଂ ତାକୁ ଦୁଇଫାଳ କରି ଧନୁ ଓ ଶର ନ୍ୟାସରେ ବ୍ରହ୍ମମନ୍ତ୍ର ପଢ଼ି ପ୍ରୟୋଗ କରିଛନ୍ତି । ସେହି ପ୍ରୟୋଗ କଲାବେଳେ ଶରକୁ ଆଦେଶ ଦେଇଛନ୍ତି—

ସୈନ୍ଯକଷଣି ଶିରଚ୍ଛେଦନ କର ପାଣ୍ଡବ ପଞ୍ଚବୀର ।
ତାହାଙ୍କ ଯେବେ ଅବୋରଇ ତଡ଼ଧାଇ
ତାହାଙ୍କୁ ସହିତେ ପକାଇବୁ ମାର ।
ପୁଣି ବୋଇଲ ଯାଦବ ହଣର ସାତବଂଶ
ସବୁନ୍ତ ଛେଦପକା ନଥ ଉ ତାଙ୍କ ଲେଶ ।

ବ୍ରହ୍ମମନ୍ତ୍ର ଦ୍ୱାରା କାର୍ତ୍ତିଶିକା ଶର ତେଜସ୍ଥାନ ହୋଇ ଆକାଶ ମାର୍ଗରେ ଘୋଟିଗଲା । ସେ ଶରର ପ୍ରଭାବ ସମ୍ପର୍କରେ କବି ଲେଖିଛନ୍ତି—

"ଦେଖକା ନମିଷକେ ହାଣକା ଘୂର ଭେଟି
ଗମଇ ଅନ୍ତରୀକ୍ଷେ ଆକାଶ ମଣ୍ଡଳ ଘୋଟି ।
ଆହୋ ଚଇତନ ଯେସନେ ଉଲ୍କାପାତ ଦିଶଇ ଆକାଶୁଂ
ନବ ଦ୍ୱୀପ ସପତ ସାଗର ଖଳବଳ ହୋଇଅଛୁ
କାର୍ତ୍ତିଶିକା ଶର ଆସୁଂ

× × ×

ଆକୁଟି ହୋଇଅଛୁ ସପତ ସିନ୍ଧୁ ପାଣି ।"

କାର୍ତ୍ତିଶିକା ଶରର ଏପରି ଭୟଙ୍କର ପ୍ରଭାବରେ ଦ୍ୱାରକାର ଅଧିବାସୀଗଣ ଆତଙ୍କିତ ହୋଇ ପଡ଼ିଲେ । ସମସ୍ତେ ବିକଳ ସ୍ୱରେ ଚିତ୍କାର କଲେ ସେମାନଙ୍କୁ ବଞ୍ଚାଇବା ପାଇଁ । ଶ୍ରୀକୃଷ୍ଣ ଏହାର କାରଣ ପଚ୍ଚରନ୍ତେ ସହଦେବ ସମସ୍ତ ବିଷୟ କହିଲେ । କୃଷ୍ଣ କ୍ରୋଧାନ୍ୱିତ ହୋଇ ସେ ଶରକୁ ପ୍ରତିହତ କରିବା ଲାଗି ବିଭିନ୍ନ ଅସ୍ତ୍ରଶସ୍ତ୍ର ପ୍ରୟୋଗ କରି ବିଫଳ ହେଲେ । ଏକ ଲକ୍ଷ ଯୋଜନରୁ ଟପିଆସି କାର୍ତ୍ତିଶିକା ଶର ଦଶସହସ୍ର ଯୋଜନରେ ପହଞ୍ଚିଲା । ସହଦେବ ବ୍ୟସ୍ତ ହୋଇପଡ଼ି କହିଲେ ଶୀଘ୍ର ଆମ ମଧ୍ୟରୁ ଜଣକୁ ଅର୍ପଣ ନକଲେ ସେ ଶର ଦ୍ୱାରା ସମସ୍ତ ଦ୍ୱାରକାପୁର ନାଶ ହୋଇଯିବ । ଶ୍ରୀକୃଷ୍ଣ ଚିନ୍ତାକରି ପାରିଲେ ନାହିଁ କାହାକୁ ଅର୍ପଣ କରିବେ । ସମସ୍ତେ ତାଙ୍କର ପ୍ରିୟ । ତେଣୁ ଶେଷରେ ସେ ଅଜର ଅବ୍ୟର୍ଥ ଶର ନାରାୟଣାସ୍ତ୍ର ପ୍ରୟୋଗ କଲେ । ଭୟଙ୍କର ପ୍ରକୋପରେ ସମସ୍ତ ବ୍ରହ୍ମାଣ୍ଡ କମ୍ପିଉଠିଲା । କାରଣ କାର୍ତ୍ତିଶିକା ସ୍ୱୟଂ ବ୍ରହ୍ମ ଏବଂ ନାରାୟଣାସ୍ତ୍ର ସ୍ୱୟଂ ବିଷ୍ଣୁ । ତେଣୁ ଏ ଯୁଦ୍ଧରେ ଏ ଦୁଇ ମହାଶକ୍ତିର ପତନ ହୋଇ ନପାରେ, ବରଂ ଭୟଙ୍କର ଶବ୍ଦ ତାରେ ସମଗ୍ର ବ୍ରହ୍ମାଣ୍ଡ ଧ୍ୱଂସ ପାଇଯିବ । ତେଣୁ ଭୟଭୀତ ହୋଇ ପଶିଷ୍ୟ ବ୍ରହ୍ମା ସେଠାରେ ଉପସ୍ଥିତ ହୋଇ ଅଜପାମନ୍ତ୍ର ଦ୍ୱାରା କାର୍ତ୍ତିଶିକା ଶରକୁ ସନ୍ତୁଷ୍ଟ କରି ଫେରିଯିବାକୁ କହିବାରୁ ସେ ଶର କହିଲା ମୋର କଣ ଏଥିରେ ଦୋଷଅଛି ? ଅଶ୍ୱତ୍ଥାମା କ୍ରୋଧ ବଶତଃ ମୋତେ ପ୍ରେରଣ କଲା । ଠିକ୍ ଅଛି—

'ଈଷୀକା ଶର ବୋଲଇ ଚଞ୍ଚୁ ପାଣ୍ଡବଙ୍କ ଗୁଣ୍ଡୁଳ୍କ ଯେବେ ସେକ୍ଷେ
ପାଣ୍ଡବ ସମାନ କରି ଦେବାକ ମୋତେ ଜଣେ ।''

ବ୍ରହ୍ମା କହିଲେ ତାହେଲେ ଉତ୍ତରା ଗର୍ଭରେ ଯେଉଁ ସନ୍ତାନ ଅଛି ତାକୁ ଛେଦନ କରି ପଳା । ତାପରେ ସେ ନାରାୟଣ ଶରକୁ ସ୍ତୁତିକରି ବୈକୁଣ୍ଠ ଧାମକୁ ପଠାଇ ଦେଲେ ।

ଈଷୀକା ଶର ଭେଦ କରିବାରୁ ଉତ୍ତରା ମୂର୍ଚ୍ଛିତା ହୋଇ ପଡ଼ିଲେ ଏବଂ ତାଙ୍କର ଚେତା ଫେରିବାରୁ ସେ ମୃତ ପୁତ୍ର ପରୀକ୍ଷିତଙ୍କୁ ଜନ୍ମ ଦେଇ ପ୍ରାଣତ୍ୟାଗ କଲେ । ଏଥିରେ ଦ୍ୱାରକାର ରମଣୀମାନେ ତଥା ପାଣ୍ଡବଗଣ ଶୋକାକୁଳ ହୋଇ ଶ୍ରୀକୃଷ୍ଣଙ୍କୁ ନିବେଦନ କରିଛନ୍ତି ପାଣ୍ଡବ ବଂଶ ରକ୍ଷା ନିମନ୍ତେ ପରୀକ୍ଷିତଙ୍କୁ ଜୀବଦାନ ଦେବାଲାଗି । ଏ କ୍ଷେତ୍ରରେ ସୁଭଦ୍ରାଙ୍କର ମାନବିକ ଦୃଷ୍ଟିକୋଣରୁ ଚେତନାରହିତ ଅବସ୍ଥାରେ ଶ୍ରୀକୃଷ୍ଣ ଅଭିଭୂତ ହୋଇପଡ଼ି ଶେଷରେ ମୃତ ପୁତ୍ରକୁ କୋଳରେ ଧରି ଅମୃତ ଦୃଷ୍ଟିରେ ଚାହିଁ ନିଜର ଅବତାରତ୍ୱ ଓ ମହିମା ସ୍ମରଣକରି ଜୀବଦାନ ଦେଇଛନ୍ତି । ମହାପରୀକ୍ଷା ମଧ୍ୟରେ ପରୀକ୍ଷିତଙ୍କ ଜୀବଦାନରେ ସମସ୍ତ ଦ୍ୱାରକାବାସୀ ଆନନ୍ଦିତ ହୋଇ ଜଗତ୍ ସ୍ରଷ୍ଟା ଶ୍ରୀକୃଷ୍ଣଙ୍କର ମହିମା କୀର୍ତ୍ତନ କରି ଧନ୍ୟ ହୋଇଛନ୍ତି । ଏହି ପର୍ଯ୍ୟାୟରେ କବି ସାରଳା ଦାସଙ୍କର ଈଷୀକାପର୍ବ ବିଷୟବସ୍ତୁର ପରିସମାପ୍ତି ଘଟିଛି ।

**ବିଷୟ ବୈଚିତ୍ର୍ୟ :—**

ଏ ଚରଣ ଅନେକାଂଶରେ ବ୍ୟାସଦେବଙ୍କ ଲେଖନୀ ଭିନ୍ନ ରୂପ ନେଇଥିବା ଦେଖାଯାଏ । ମୂଳ ସଂସ୍କୃତ ମହାଭାରତର ସ୍ରଷ୍ଟା ବ୍ୟାସଦେବଙ୍କର ଅଠରଖଣ୍ଡ ମହାଭାରତରେ ଈଷୀକା ପର୍ବ ନାମରେ କୌଣସି ସ୍ୱତନ୍ତ୍ର ପର୍ବ ନାହିଁ । ବରଂ ସଂସ୍କୃତ ସୌପ୍ତିକ ପର୍ବ ଅନ୍ତର୍ଗତ ଏକ ଉପପର୍ବ ଐଷିକର ଘଟଣାକୁ ନେଇ ସାରଳା ଦାସ ଈଷୀକା ପର୍ବ କଥନ କରି ଅଛନ୍ତି । ମାତ୍ର ମୂଳ ମହାଭାରତ ପରି ସାରଳାଙ୍କ ମହାଭାରତ ଅଠର ଖଣ୍ଡରେ ସୀମାବଦ୍ଧ । ସମଗ୍ର ସଂସ୍କୃତ ମହାଭାରତରେ ସୌପ୍ତିକ, ଅନୁଶାସନ, ମହାପ୍ରସ୍ଥାନିକ ପର୍ବର ନାମ ଯେପରି ସାରଳାଙ୍କ ଲେଖନୀରେ ଗ୍ରହଣ କରାଯାଇ ନାହିଁ, ସେହିପରି ସାରଳାଙ୍କ ମଧ୍ୟ ପର୍ବ, ଗଦା ଓ ଈଷୀକା ପର୍ବର ନାମ ବ୍ୟାସଙ୍କ ସଙ୍କଳନରେ ନାହିଁ । ଅନ୍ୟ ପନ୍ଦରଟି ପର୍ବର ନାମ ଅକ୍ଷୁର୍ଣ୍ଣ ରହିଛି । ମୋଟ ଉପରେ ଯେଉଁ ସେନାପତିଜଣଙ୍କ ନାମାନୁସାରେ ଯଥା—ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ ଆଦିପର୍ବ ରଚିତ ହୋଇଛି ତାହା ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ । ବୋଧ ହୁଏ ସମଗ୍ର ମହାଭାରତ ଯୁଦ୍ଧରେ ଯେଉଁମାନେ ମହାରଥୀର ଆସନ ଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରୁ ନଅଜଣ ଯଥାକ୍ରମେ—ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ, ଅଶ୍ୱତ୍ଥାମା, ଭୂରିଶ୍ରବା, ସୋମଦତ୍ତ, ବାହ୍ଲିକ ଓ କୃପ ବ୍ରହ୍ମା ଆଦି କୌରବ ପକ୍ଷରେ ଥିବା ବେଳେ, ଏ ନାମ ମ

ମହାରଥୀ ଅର୍ଜୁନ ପାଣ୍ଡବ ପକ୍ଷରେ ଥିଲେ । ପୁନଶ୍ଚ ଏହି ନବ ମହାବୀରଙ୍କ ଏକମାତ୍ର ଅର୍ଜୁନ ଶ୍ରେଷ୍ଠ ଥିବାରୁ ଏବଂ ସମସ୍ତ ଚରିତ୍ର ସହ ତାଙ୍କର ସମ୍ପର୍କ ଥିବାରୁ ଅର୍ଜୁନ ପର୍ବ ହେବାର ଆବଶ୍ୟକତା ନଥିଲା । ମାତ୍ର ଅପର ପକ୍ଷରେ ଯେଉଁମାନେ ପ୍ରଥମେ ଯୁଦ୍ଧାଭିଳାଷ ପୋଷଣ କରି ପାଣ୍ଡବମାନଙ୍କ ବିରୋଧରେ ଅସ୍ତ୍ର ଉତ୍ତୋଳନ କରିଥିଲେ ସେହି କୌରବ ପକ୍ଷରୁ ପ୍ରଥମେ ପିତାମହ ଭୀଷ୍ମ ଦଶଦିନ, ଗୁରୁ ଦ୍ରୋଣାଚାର୍ଯ୍ୟ ପାଞ୍ଚଦିନ, ମହାଦାନୀ କର୍ଣ୍ଣ ଦୁଇଦିନ ଏବଂ ପରେ ଶଲ୍ୟ ମୃତ୍ୟୁଲାଭ କରିବାରୁ ସେହି ଏକଦିନର ଯୁଦ୍ଧ କୃପବ୍ରହ୍ମା ଚଳାଇ ଦୁର୍ଯ୍ୟୋଧନଙ୍କ ମୃତ୍ୟୁପରେ ଜଙ୍ଗଲକୁ ଚାଲିଯାଇଥିଲେ । ସୁତରାଂ କୌରବ ପକ୍ଷର ଏହି ଅଦ୍ଭୁତ ମହାରଥୀଗଣ ଅର୍ଥାତ୍ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ କେବଳ ସେନାପତି ନ ଥିଲେ, ସେମାନଙ୍କର ବ୍ୟକ୍ତି ଜୀବନ ଏପରି ଚାରିତ୍ରିକ ଗୁଣାବଳୀରେ ମହୀୟାନ୍ ଥିଲା ଯେ, ସେମାନଙ୍କୁ ସମସ୍ତେ ପୂଜା କରୁଥିଲେ । ଏପରିକି କେବଳ ଶଲ୍ୟ ଯୁଧିଷ୍ଠିରରୂପୀ ସତ୍ୟ ଓ ଧର୍ମରେ କୁଠାରାଘାତକରି ଚାଲିଗଲା ବେଳେ ଅନ୍ୟମାନଙ୍କୁ ଶ୍ରୀକୃଷ୍ଣଙ୍କ ଚକ୍ରାନ୍ତରେ ଅନ୍ୟାୟ ଭାବେ ହତ୍ୟା କରାଯାଇଥିଲା । ଅନ୍ୟଥା ପାଣ୍ଡବମାନଙ୍କର ବିଜୟଲାଭ ସହଜରେ ସମ୍ଭବ ହୋଇପାରି ନ ଥାନ୍ତା । ସୁତରାଂ ସ୍ୱ ସ୍ୱ ଗୁଣାବଳୀରେ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅର୍ଥାତ୍ ଜଣେ ଉଭୟଙ୍କର ପିତାମହ, ଅନ୍ୟ ଜଣେ ଗୁରୁ, କର୍ଣ୍ଣ ପୁଣି ଅଗ୍ରପାଣ୍ଡବ ଏବଂ ଶଲ୍ୟ ପୁଣି ଉଭୟଙ୍କର ମାତୁଳ ହୋଇଥିବାରୁ ସେମାନଙ୍କ ମୃତ୍ୟୁପରେ ସେମାନଙ୍କର ଚାରିତ୍ରିକ ଗୁଣାବଳୀ ଅମର ହୋଇଥିବାରୁ ସେମାନଙ୍କ ନାମରେ ପର୍ବର ନାମକରଣ ହୋଇଥିବା ସମ୍ଭବ । ମୃତ୍ୟୁହିଁ ତ ମର ଏବଂ ଅମରର କଷଟିପଥର । ପୁନଶ୍ଚ ଦ୍ରୋଣପୁତ୍ର ଅଶ୍ୱତ୍ଥାମା ମଧ୍ୟ ଜଣେ ମହାରଥୀ ଥିଲେ ଏବଂ ଶେଷରେ ତାଙ୍କର ଅବ୍ୟର୍ଥ କାର୍ଣ୍ଣିକା ବାଣ ପ୍ରୟୋଗରେ ଶ୍ରୀକୃଷ୍ଣଙ୍କର ଅସାମର୍ଥ୍ୟ ହେତୁ ଉତ୍ତରାଙ୍କର ଜୀବନଦୀପ ଲିଭିଥିବାରୁ ତାଙ୍କର ବାଣ ଉପରେ ଗୁରୁତ୍ୱ ଦିଆଯାଇ ସାରଳା ଦାସ ଏପରି ନାମକରଣ କରିଥିବା ସମ୍ଭବ । ଏତଦ୍‌ଭିନ୍ନ ପ୍ରଥମରୁ ଉଲ୍ଲେଖ କରାଯାଇଛି ଉତ୍କଳ ଏକ ପ୍ରଧାନ ତନ୍ତ୍ରଭୂମି । ସାରଳା ଦାସଙ୍କ ସମୟରେ ଏହି ତନ୍ତ୍ର ପ୍ରୟୋଗର ପ୍ରାଧାନ୍ୟ ମଧ୍ୟ କମ୍ ନଥିଲା । ଅଦ୍ୟାପି ତନ୍ତ୍ରରେ ଉଲ୍ଲିଖିତ କାର୍ଣ୍ଣିକା ବାଣ ପ୍ରୟୋଗରେ କୌଣସି ବ୍ୟକ୍ତିର ଜୀବନ ନାଶ କରାଯାଇପାରେ ବୋଲି ମଧ୍ୟ ଗୁଣିଆମାନଙ୍କ ଠାରୁ ଜଣାଯାଏ । ସୁତରାଂ କାର୍ଣ୍ଣିକାବାଣ ପ୍ରୟୋଗରେ ଉତ୍ତରା ମୂର୍ଚ୍ଛିତା ହେଲେ ! ଏହା ଏକାନ୍ତ ସତ୍ୟ । ମାତ୍ର ଯେଉଁପରି ଭାବରେ ବାଣ ଆସିବାର ବର୍ଣ୍ଣନା ହୋଇଛି ତାହା ଅତିରଞ୍ଜନ ବୋଲି ମନେହୁଏ । ଏପରି ଅତିରଞ୍ଜନ ଯେ ସାରଳାଙ୍କର ଇଚ୍ଛାକୃତ ତାହା ମଧ୍ୟ କୁହାଯାଇ ନ ପାରେ । ପୁନଶ୍ଚ ତାଙ୍କ ପର୍ବମାନଙ୍କରେ ଯେଉଁ ବର୍ଣ୍ଣନାଧର୍ମୀ ପୁନରୁକ୍ତି ଦୋଷ ତଥା ଗ୍ରାମ୍ୟତାର ଅଧିକ ପରିମାଣରେ ଦେଖାଯାଏ ତାହା ମଧ୍ୟ ହେବା ଏକାନ୍ତ ସ୍ୱାଭାବିକ ଥିଲା । ଅର୍ଥାତ୍ ସାରଳାଙ୍କ ଲେଖନୀର ପାରିପାର୍ଶ୍ୱିକ ଅବସ୍ଥା ଥିଲା ଗ୍ରାମ୍ୟଜୀବନ ଏବଂ ଏକ ପୁରାଣ ଗୋଷ୍ଠୀ

ନ୍ୟାୟରେ ସେ ଯେତେବେଳେ ଗୋଟାଏ ଗୋଟାଏ ପର୍ବ ସମସ୍ତାନୁକ୍ରମେ ଲୋକମାନଙ୍କୁ ପଢ଼ି ଶୁଣାଉ ଥିବେ ସେତେବେଳେ ସେ ମୂଳ ବିଷୟକୁ ବର୍ଜନ ପର୍ବରେ ରୂପାୟିତ କରିବାରେ ଅହାମ୍ମାବ୍ୟ କିଛି ନଥିଲା । ବରଂ ଏହାଫଳରେ ଗ୍ରାମ୍ୟଲୋକେ କୌଣସି ଏକ ପର୍ବ ପଠନରେ ମହାଭାରତର ବିଷୟବସ୍ତୁ ପ୍ରତି ସଚେତନ ହୋଇ ପାରୁଥିଲେ ।

ଏତଦ୍‌ଭିନ୍ନ କାହାଣୀକା ପର୍ବରେ ଥିବା ବିଷୟବସ୍ତୁର ଯେଉଁ ଭିନ୍ନତା ଦେଖାଯାଏ ତାହା ମଧ୍ୟ ବର୍ଣ୍ଣ୍ୟ । ମୂଳ ମହାଭାରତରେ ଅଛିଯେ ଅଶ୍ୱତ୍ଥମା ସେନାପତିତ୍ୱ ଗ୍ରହଣ କରିବାପରେ ଶତ୍ରୁ ନିଧନ କିମର କରିବେ ପ୍ରଥମେ କିଛି ଚିନ୍ତା କରିପାରିଲେ ନାହିଁ । ଏକ ବୃକ୍ଷମୂଳେ କୃତବର୍ମା, କୃପାଚାର୍ଯ୍ୟ ଶୋଇଯାଇଥିବା ବେଳେ ପ୍ରତିହିଂସା ପରାୟଣ ଅଶ୍ୱତ୍ଥମା ଚିନ୍ତିତ ହୋଇ ପଡ଼ିଥିଲା । ଏପରି ସମୟରେ ସେ ହଠାତ୍ ଦେଖିଲା ଯେ, ଗୋଟିଏ ଅଭ୍ରଭେଦନ ପେଚକ ପକ୍ଷୀ ସେହି ବୃକ୍ଷକୋରଡରେ ନିଦ୍ରିତ କାକମାନଙ୍କୁ ଗୋଟାଏ ପରେ ଗୋଟାଏ ନେଇ ହତ୍ୟାକଲା । ଏଥିରେ ଅଶ୍ୱତ୍ଥମା ଶେଷସିଦ୍ଧାନ୍ତରେ ପହଞ୍ଚିଲା ଯେ ସେ ରାତ୍ରକାଳରେ ଏହିପରି ଶତ୍ରୁମାନଙ୍କୁ ନିହତ କରିବ । ଶାସ୍ତ୍ରରେ ମଧ୍ୟ ଅଛି ଯେ, ଶତ୍ରୁଗଣ କ୍ଳାନ୍ତ ବା ଶକ୍ତିହୀନ ହେଲେ ମଧ୍ୟ ସେମାନଙ୍କୁ ଆକ୍ରମଣ କରି ନିହତ କରାଯାଇପାରେ । ଆମ୍ଭେମାନେ ହୀନବଳ ହୋଇଅଛୁ, ତେଣୁ ଅନ୍ଧକାର ରାତ୍ରିରେ ନିଦ୍ରିତ ଅବସ୍ଥାରେ ଶତ୍ରୁଙ୍କୁ ଆକ୍ରମଣ କରିବାରେ କୌଣସି ଦୋଷ ନାହିଁ । ଏପରି କଲେ ପାଣ୍ଡବଙ୍କୁ ଜୟକରି ହେବ ।

ଏ ବିଷୟ କୃପାଚାର୍ଯ୍ୟଙ୍କୁ ନିଦ୍ରାରୁ ଉଠାଇ ଜଣାଇବାରୁ କୃପାଚାର୍ଯ୍ୟ ଯେପରି ତାହା ଧାରାରୁ ବିରତ ହେବାଲାଗି ଅଶ୍ୱତ୍ଥମାଙ୍କୁ ଉପଦେଶ ଦେଲେ । ସେ କହିଲେ— ମୂର୍ଖ ଦୁର୍ଯ୍ୟୋଧନଙ୍କ ପାଇଁ ଆମେ ଯୁଦ୍ଧରେ ପ୍ରବୃତ୍ତ ହୋଇ ପରାସ୍ତ ହୋଇଅଛେ । ଏବେ ଚାଲ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ସହ ପରାମର୍ଶ କରି ଯାହା କିଛି କରିବା । ମାତ୍ର ଅଶ୍ୱତ୍ଥମା ତାହା ନ ମାନି କହିଲେ— ଜଗତରେ ପ୍ରତ୍ୟେକ ନିଜ ନିଜ ବିଚାର ଓ ବୁଦ୍ଧି ଠିକ୍‌ବୋଲି ମନେ କରନ୍ତି । ପାଣ୍ଡବମାନେ ମୋର ପିତାଙ୍କୁ ଅନ୍ୟାୟ ଭାବରେ ନିହତ କରିଛନ୍ତି । ସୁତରାଂ ତାର ପ୍ରତିବିଧାନ କଳ୍ପେ ମୋର ସଂକଳ୍ପ ଅନୁସାରେ ମୁଁ କାର୍ଯ୍ୟ କରିବି । ଏହାଶୁଣି କୃପ ଅତ୍ୟନ୍ତ ଦୁଃଖିତ ହୋଇ କହିଲେ—ଜଗତରେ ତୁମେ ଖ୍ୟାତି ଲାଭ କରିଛ । କିନ୍ତୁ ବର୍ତ୍ତମାନ ତୁମେ ଏପରି କର୍ମ କଲେ ଶ୍ୱେତ ବସ୍ତ୍ରରେ ରକ୍ତଚିହ୍ନ ପରି ତୁମର ନିର୍ମଳଙ୍କ କୀର୍ତ୍ତିରେ କଳିମା ଲିପ୍ତ ହେବ । ନିଦ୍ରିତ-ବ୍ୟକ୍ତିମାନଙ୍କୁ ହତ୍ୟାକରିବା କୌଣସି ପ୍ରକାରେ ଧର୍ମକାର୍ଯ୍ୟ ନୁହେଁ ।

ଅଶ୍ୱତ୍ଥାମା କହିଲେ ଆପଣ ଏକଣ କହୁଛନ୍ତି ? ଯେଉଁ ପାଣ୍ଡବଗଣଙ୍କ ମଧ୍ୟରୁ ଅସ୍ତ୍ରହୀନ ଯୋଗରୂଢ଼ ପିତୃଦେବଙ୍କୁ ଧୃଷ୍ଟଦ୍ୟୁମ୍ନ ହତ୍ୟାକଲେ, ମେଦିନୀଗ୍ରସ୍ତ ରଥଚକ୍ର ଉତ୍ତୋଳନ କରିବା ନିମନ୍ତେ କର୍ଣ୍ଣ ଚେଷ୍ଟା କଲାବେଳେ ଅଧର୍ମ ରୀତିରେ ଅର୍ଜୁନ ତାଙ୍କୁ

ନିହତ କଲେ, ଭୀମ ଦୁର୍ଯ୍ୟୋଧନଙ୍କ ନାଭି ଅଂଶରେ ଆଘାତ କଲେ—ସେତେବେଳେ ଧର୍ମ କେଉଁଠି ରହିଲା ? ସୁତରାଂ ପିତୃହନ୍ତା ଏହି ପାଞ୍ଚାଳଙ୍କୁ ମୁଁ ନିଦ୍ରିତାବସ୍ଥାରେ ହତ୍ୟାକରି ପକ୍ଷୀ କିମ୍ବା କୀଟଜନ୍ମ ଗ୍ରହଣ କରିବାକୁ ସମ୍ମତ ଅଛି । ତାପରେ ସେ ଶତ୍ରୁ ଶିବିରକୁ ଗମନ କଲାବେଳେ କୃପ ଏବଂ କୃତବର୍ମା କହିଲେ ତେବେ ଚାଲ ଆମ୍ଭେମାନେ ମଧ୍ୟ ତୁମ ପାପର ଅଂଶ ଗ୍ରହଣ କରିବୁ । ତାପରେ ତିନିଜଣ ଯାକ ପାଣ୍ଡବ ଶିବିରରେ ପ୍ରବେଶ କରିବାକୁ ଚାଲିବେଳେ ପ୍ରଥମେ ଭୂତପତିଙ୍କୁ ଦ୍ୱାରଦେଶରେ ଭେଟିଛନ୍ତି । ତାଙ୍କସହ ସଂଗ୍ରାମକରି ଅଶ୍ୱତ୍ଥମା ପରାସ୍ତ ହେବାରୁ ଅସହାୟ ଭାବେ ଚିନ୍ତାକରିଛନ୍ତି – ବାସ୍ତବିକ ଯେଉଁ ବ୍ୟକ୍ତି ଅପ୍ରିୟ ଅଥଚ ହିତକର ସୁହୃଜ୍ଜନମାନଙ୍କ ବାକ୍ୟ ଶ୍ରବଣ ନ କରେ, ଆମ୍ଭେ ଯେଉଁ ପରି କୃପ ଓ କୃତବର୍ମାଙ୍କ ବାକ୍ୟ ଲଙ୍ଘନ କରି ଆପଦପ୍ରାପ୍ତ ହୋଇଅଛୁ, ସେହି ବ୍ୟକ୍ତି ମଧ୍ୟ ସେହିପରି ବିପଦରେ ପଡ଼ି ଶୋକ କରେ । ଶାସ୍ତ୍ରବାକ୍ୟ ଲଙ୍ଘନ କଲେ ଧର୍ମରୁ ସ୍ଖଳିତ ହେବାକୁ ପଡ଼େ । ଗୋ, ବ୍ରାହ୍ମଣ, ରାଜା, ସ୍ତ୍ରୀ, ସଖା, ମାତା, ଗୁରୁ, ଦୁର୍ବଳ, ଜଡ଼, ଅନ୍ଧ, ସୁପ୍ତ, ଭୀତ, ନିଦ୍ରାରୁ ଉତ୍‌ଥିତ, ମତ୍ତ ଉନ୍ମତ୍ତ ଓ ପ୍ରମାଦ ଗ୍ରସ୍ତ ଜନମାନଙ୍କୁ ଶସ୍ତ୍ରାଘାତ କରିବା ଉଚିତ ନୁହେଁ । ମାତ୍ର ସେ ସବୁପ୍ରକାର ନିଦ୍ରାହୀନ ବ୍ୟକ୍ତିଙ୍କ ମଧ୍ୟରୁ (ଆତୁର, ଅମର୍ଷ, ଅର୍ଥଚିନ୍ତା ପରାୟଣ, କାମିନୀକାମୁକ ବ୍ୟକ୍ତି) ଅମର୍ଷ ଯୁକ୍ତ ହୋଇ ନିଦ୍ରିତ ବ୍ୟକ୍ତିଙ୍କୁ ହତ୍ୟାକରିବାକୁ ବସିଥିବାରୁ ଏପରି ବିଫଳ ହୋଇଛନ୍ତି । ସୁତରାଂ ଏ ସଂସାରରେ ଦୈବାନୁକୂଲ୍ୟ ବ୍ୟତିରେକେ କୌଣସି ବିଷୟରେ ଉଦ୍ୟତ ହେବାର ଶକ୍ତି ନାହିଁ । ଏହା ଭାବି ସେ ଶିବଙ୍କର ଶରଣାପନ୍ନ ହୋଇ ଅସାଧ-ଯୋଗ ସାଧନ ଦ୍ୱାରା ତାଙ୍କୁ ସନ୍ତୁଷ୍ଟ କରିଛନ୍ତି । ଫଳରେ ଶିବ ସନ୍ତୁଷ୍ଟ ହୋଇ ତାଙ୍କୁ ଅସି ପ୍ରଦାନ ପୂର୍ବକ ତାଙ୍କ ଶରୀରରେ ପ୍ରବେଶ କରିବାରୁ ସେ ଅଧିକ ତେଜସ୍ୱାନ ହୋଇ କୃପ ଏବଂ କୃତବର୍ମାଙ୍କୁ ଦ୍ୱାରଦେଶରେ ରଖି ପୁର ମଧ୍ୟରେ ପ୍ରବେଶ କରି ସମସ୍ତଙ୍କୁ ନିଷ୍ଠୁର ଭାବରେ ହତ୍ୟା କରିଛନ୍ତି । ଅଶ୍ୱତ୍ଥମାଙ୍କର ଏହି ହତ୍ୟାର ବିଭୀଷିକା ଉପରେ ସତେ ଯେପରି ବ୍ୟାସଙ୍କର ଲେଖନୀ ଗୁରୁତ୍ୱ ଆରୋପ କରିଛି । ପୁନଶ୍ଚ ଦ୍ରୌପଦୀଙ୍କ ପୁତ୍ରଗଣ— ମାତୁଳଙ୍କ ନିଧନ ପରେ ଅଶ୍ୱତ୍ଥମା ସହ ଯୁଦ୍ଧକରି ନିହତ ହୋଇଥିବା ବର୍ଣ୍ଣିତ ହୋଇଛି ।

ମାତ୍ର ସାରଳା ମହାଭାରତରେ ପ୍ରାସଙ୍ଗିକ ବର୍ଣ୍ଣନା ପରିବର୍ତ୍ତେ ଅଶ୍ୱତ୍‌ଥମାର ପ୍ରବେଶକୁ ସଙ୍କୁଚିତ କରିବା ସଙ୍ଗେ ସଙ୍ଗେ ଅମୂଳକଭାବେ ଦ୍ରୌପଦୀ ପୁତ୍ରମାନଙ୍କର ମସ୍ତକ ଗାରକରି ଦୁର୍ଯ୍ୟୋଧନଙ୍କ ନିକଟକୁ ଆଣିବା ଏବଂ ସେ ପୁତ୍ରମାନଙ୍କର ପୂର୍ବଜନ୍ମ ବିବରଣୀ ସଂଯୋଜନା କରିବା ଆଦି ନିଜସ୍ୱ ଧାରାରେ ଚର୍ଚ୍ଚିତ ହୋଇଛି । ମାତ୍ର ମୂଳ ମହାଭାରତରେ ଅଛି ଦ୍ରୌପଦୀ ପୁତ୍ର ଏବଂ ସମସ୍ତ ପାଞ୍ଚାଳଗଣଙ୍କୁ ହତ୍ୟାକରିବା ପରେ ଯେଣୁ ରକ୍ତରଞ୍ଜିତ କଳେବର ହୋଇ ସେମାନେ ମୁମୂର୍ଷୁ ଦୁର୍ଯ୍ୟୋଧନଙ୍କ ନିକଟରେ

ପଦ୍ୟରେ ତାଙ୍କର ଗୁଣାବଳୀ ବର୍ଣ୍ଣନା କରିଛନ୍ତି । ଦୁର୍ଯ୍ୟୋଧନଙ୍କ ନିକଟରେ ପଡ଼ିଥିବା ସ୍ୱର୍ଣ୍ଣଗଦାକୁ ଲକ୍ଷ୍ୟ କରି କୃପ କହୁଛନ୍ତି— "ପ୍ରୀତିଯୁକ୍ତା ସ୍ତ୍ରୀ ଯେଉଁପରି ପତିଙ୍କ ସହିତ ହର୍ମ୍ୟ ଗୃହରେ ଶୟନ କରିଥାଏ, ତଦବତ ଏହି ଗଦା ଏହି ବୀରଙ୍କ ସହିତ ଭୂତଳରେ ପଡ଼ିଛି ।" ଅଶ୍ୱତ୍ଥାମା, ଦୁର୍ଯ୍ୟୋଧନଙ୍କ ଅନ୍ୟାୟ ନିଧନ ପାଇଁ ଦାୟୀ ଯୁଧିଷ୍ଠିର, ଅର୍ଜୁନ, କୃଷ୍ଣ, ଭୀମ ଆଦିଙ୍କୁ ତିରସ୍କାର କରି ରାଜାଙ୍କୁ କହୁଛନ୍ତି—ମହାରାଜ । ଆପଣ ଜୀବିତ ଅଛନ୍ତି ଯେବେ ତେବେ ଶ୍ରୁତି ସୁଖକାରକ କେତେକ ବାକ୍ୟ ଶ୍ରବଣ କରନ୍ତୁ । ବର୍ତ୍ତମାନ ପାଣ୍ଡବ ପକ୍ଷର ୭ ଜଣ ଏବଂ ଆମ ପକ୍ଷରେ ୩ ଜଣ ଜୀବିତ ଅଛୁଁ । ପାଣ୍ଡବଙ୍କର ପୁତ୍ରଗଣ ଏବଂ ସେମାନଙ୍କର ନରବାହନଯୁକ୍ତ ଶିବିର ସୁପ୍ତ ଅବସ୍ଥାରେ ହତ ହୋଇଅଛି । ଏହା ଶୁଣିବା ପରେ ଦୁର୍ଯ୍ୟୋଧନ ସେହି ମୃତ୍ୟୁ ସହ ସଂଗ୍ରାମ କରୁଥିବା ଅବସ୍ଥାରେ ମଧ୍ୟ ଉତ୍ଫୁଲ୍ଲିତ ହୋଇ କହୁଛନ୍ତି—ହେ ଅଶ୍ୱତ୍ଥାମା । ପିତାମହ ଭୀଷ୍ମଦେବ ଓ କର୍ଣ୍ଣଙ୍କର ଅସାଧ୍ୟ କର୍ମ ତୁମେ କରିଅଛ । ତାପରେ ସେ ପ୍ରାଣ ବିସର୍ଜନ କରିଛନ୍ତି ।

ଏ ସମସ୍ତ ଧୃଷ୍ଟଦ୍ୟୁମ୍ନଙ୍କ ସାରଥୀଠାରୁ ଯୁଧିଷ୍ଠିର ଶୁଣି ଅତ୍ୟନ୍ତ ବ୍ୟାକୁଳ ହୋଇ କହୁଛନ୍ତି— 'ଏହି ବିଜୟରେ ଆମ୍ଭେମାନେ ମଧ୍ୟ ପରାଜିତ ହେଲେ ଏବଂ ପରାଜିତ ବ୍ୟକ୍ତିମାନଙ୍କର ବର୍ତ୍ତମାନ ଜୟ ହୋଇଅଛି । ମହାବୀର କର୍ଣ୍ଣଙ୍କ ହସ୍ତରୁ ରକ୍ଷା ପାଇଥିବା ଦ୍ରୌପଦୀ ପୁତ୍ରଗଣ ଆମ୍ଭମାନଙ୍କ ଅସାବଧାନତା ହେତୁ ପତଙ୍ଗ ପରି ନିହତ ହେଲେ । ମହାସମୁଦ୍ର ପାରହୋଇ ବାଣିଜ୍ୟ ନୌକା କ୍ଷୁଦ୍ର ପୁଷ୍କରିଣୀରେ ଜଳମଗ୍ନ ହେଲାପରି ଆମ୍ଭେମାନେ ଦୁର୍ଗତ ହୋଇଛେ ।'' ଦ୍ରୌପଦୀ ମଧ୍ୟ ପୁତ୍ର ଶୋକରେ ଦଗ୍ଧୀଭୂତ ହୋଇ କହୁଛନ୍ତି— ପାପୀ ଅଶ୍ୱତ୍ଥାମାକୁ ନିହତ କରିବାକୁ କଣ କେହି ନାହିଁ ? ତାପରେ ସେ ଭୀମଙ୍କର ବୀରତ୍ୱର ମହିମା ବର୍ଣ୍ଣନା କରି ତାଙ୍କୁ ପୁଣି ଅଶ୍ୱତ୍ଥାମାକୁ ନିହତ କରିବା ଲାଗି ଅନୁରୋଧ କରିବା ସଙ୍ଗେ ସଙ୍ଗେ ଯୁଧିଷ୍ଠିରଙ୍କୁ କହୁଛନ୍ତି ଯେ - ମହାରାଜ ! ମୁଁ ଶୁଣିଅଛି, ଦ୍ରୋଣ ପୁତ୍ରଙ୍କ ମସ୍ତକରେ ଗୋଟିଏ ଜନ୍ମଗତ ମଣି ଅଛି । ସେହି ମଣିକୁ ମୁଁ ମସ୍ତକରେ ରଖିବା ଲାଗି ଇଚ୍ଛା କରିଅଛି । ତେଣୁ ତାହା ମୋତେ ଆଣି ଦିଅନ୍ତୁ । ଏଥିରେ ଭୀମସେନ ଦ୍ରୌପଦୀଙ୍କ ଇଚ୍ଛା ପୂରଣ କରିବା ଲାଗି ଏକାକୀ ଯାତ୍ରା କରିବା ପରେ ଶ୍ରୀକୃଷ୍ଣ କହୁଛନ୍ତି - 'ଦ୍ରୋଣ ଏକଦା ନିଜ ପୁତ୍ରଙ୍କୁ କହିଥିଲେ ବ୍ରହ୍ମଶିର ନାମକ ଏକ ଅସ୍ତ୍ର ଅଛି, ଯାହାଦ୍ୱାରା ସମଗ୍ର ପୃଥିବୀ ଧ୍ୱଂସ ହୋଇଯିବ । ତାପରେ ସେ ସେହି ଅସ୍ତ୍ର ନିଜର ପ୍ରିୟ ଶିଷ୍ୟ - ଅର୍ଜୁନଙ୍କୁ ଦେବାପାଇଁ ଇଚ୍ଛା ପ୍ରକାଶ କଲାବେଳେ ଅଶ୍ୱତ୍ଥାମା କ୍ରୋଧ ପ୍ରକାଶ କଲେ । ଫଳରେ ଦ୍ରୋଣ ଦୁଃଖରେ ତାହା ନିଜ ପୁତ୍ରଙ୍କୁ ଦେବାବେଳେ କହିଥିଲେ - ଯୁଦ୍ଧ ସଂଗ୍ରାମରେ ଅତିଶୟ ଆପଦଗ୍ରସ୍ତ ହେଲେ ଯୁଝା ଏହି ଅସ୍ତ୍ର ମନୁଷ୍ୟମାନଙ୍କ ପ୍ରତି

ପ୍ରତ୍ୟାଗ କରିବ ନାହିଁ । ମାତ୍ର ମୋର ଦୁଃଖ ଯେ ତୁମେ ବୋଧହୁଏ ଏହା ପାଳନ କରିବ ନାହିଁ । ଆଜି ତୁଏତ ଗୁରୁଙ୍କ କଥା ସତ୍ୟରେ ପରିଣତ ହେବ । କାରଣ ସେହି ଚପଳମତି ଦୁରାତ୍ମା ଭୀମଙ୍କ ପ୍ରତି ସେ ଅସ୍ତ୍ର ପ୍ରତ୍ୟାଗ କରିଯାଉଛି । ତେଣୁ ଆମକୁ ଭୀମଙ୍କୁ ରକ୍ଷା କରିବାଲାଗି ଯିବାକୁ ପଡ଼ିବ । ତାପରେ ଶ୍ରୀକୃଷ୍ଣ, ଯୁଧିଷ୍ଠିର ଓ ଅର୍ଜୁନଙ୍କ ସହ ଭୀମଙ୍କର ପଥ ଅନୁସରଣ କରି ଏକ ନଦୀ କୂଳରେ ବ୍ୟାସଦେବଙ୍କ ନିକଟରେ ଆତ୍ମଗୋପନ କରୁଥିବା ଅଶ୍ୱତ୍ଥାମାଙ୍କୁ ଭେଟିଲେ । ଅଶ୍ୱତ୍ଥାମା ଭୟଭୀତ ହୋଇ ଆତ୍ମରକ୍ଷା ଲାଗି ଦିବ୍ୟାସ୍ତ୍ର ଲୁଣ୍ଠନାଶର ବା ବ୍ରହ୍ମଶିର ପ୍ରୟୋଗ କଲେ । ଫଳରେ ଅର୍ଜୁନ ଶ୍ରୀକୃଷ୍ଣଙ୍କ ଇଙ୍ଗିତରେ ତାର ପ୍ରତି ପ୍ରୟୋଗ କଲେ ଏବଂ ବ୍ରହ୍ମାଣ୍ଡ ଦଗ୍ଧିଭୂତ ହେବା ଭୟରେ ନାରଦ, ବ୍ୟାସ ପ୍ରମୁଖ ଋଷିଗଣ ସେ ବାଣକୁ ପ୍ରତିସଂହାର କରିବା ଲାଗି ଅର୍ଜୁନଙ୍କୁ ବୁଝାଇଲେ । ବ୍ୟାସଦେବ ସ୍ପଷ୍ଟ କହିଲେ ଏ ଅସ୍ତ୍ର ପ୍ରୟୋଗରେ ରାଜ୍ୟରେ ବାରବର୍ଷ ବୃଷ୍ଟି ହେବନାହିଁ ଏବଂ ପୃଥିବୀ ଧ୍ୱଂସ ପାଇଯିବ । ଫଳରେ ଲୋକମାନଙ୍କର ମଙ୍ଗଳ ନିମନ୍ତେ ତଥା ଗୁରୁଜନମାନଙ୍କର ଉପଦେଶକୁ ସମ୍ମାନ ଜଣାଇ ସତ୍ୟବ୍ରତଧାରୀ ଅର୍ଜୁନ ନିଜର ଧୈର୍ଯ୍ୟ ସଂଯମତା ହେତୁ ସେ ବାଣକୁ ସଂହାର କରିପାରିଲେ । ମାତ୍ର ଅଶ୍ୱତ୍ଥାମା ସଫଳ ହୋଇ ପାରିଲେ ନାହିଁ । ସେ କହିଲେ ମୁଁ କେବଳ ଭୀମଙ୍କ ଭୟରେ ଏହା ପ୍ରୟୋଗ କରିଅଛୁ । ବର୍ତ୍ତମାନ ଉପାୟ ନାହିଁ, ତେବେ ମୋର ବାଣ ଦ୍ୱାରା ମୁଁ ଏହାକୁ କେବଳ ପାଣ୍ଡବ ମହିଳାଙ୍କ ଗର୍ଭରେ ପତିତ କରାଇବ । ଏଥିରେ ଶ୍ରୀକୃଷ୍ଣ ମଧ୍ୟ ପ୍ରତିଜ୍ଞା କରିଛନ୍ତିଯେ ତାହା ସନ୍ତାନବତୀ ଉତ୍ତରାଙ୍କ ଗର୍ଭରେ ପଡ଼ିଲେ ସେ ପରୀକ୍ଷିତଙ୍କୁ ଜୀବନଦାନ ଦେବେ । ତାପରେ ବ୍ୟାସଦେବ ଅଶ୍ୱତ୍ଥାମାଙ୍କୁ ନିଜ ମସ୍ତକସ୍ଥ ମଣି ପାଣ୍ଡବମାନଙ୍କୁ ଦେଇଦେବା ଲାଗି ନିର୍ଦ୍ଦେଶ-ଦେଇଛନ୍ତି । ଅଶ୍ୱତ୍ଥାମା କହିଲେ—ପାଣ୍ଡବ ଓ କୌରବଗଣ ଇହଲୋକରେ ଯେଉଁ ସମସ୍ତ ଧନରତ୍ନ ପ୍ରାପ୍ତ ହୋଇଥିଲେ, ତାହା ଅପେକ୍ଷା ଏ ମଣି ଉତ୍କୃଷ୍ଟ; ଯାହାକୁ ମସ୍ତକରେ ବନ୍ଧନ କରିଥିଲେ ଶସ୍ତ୍ରବ୍ୟାଧି ବା କ୍ଷୁଧା ଏକାବେଳେ ତିରୋହିତ ହୁଏ ଏବଂ ଦେବ ଦାନବ, ପନ୍ନଗ, ରାକ୍ଷସ ଓ ତସ୍କରଗଣଙ୍କ ଠାରୁ କୌଣସି ଭୟ ଉତ୍ପନ୍ନ ହୁଏ ନାହିଁ । ସେହି ମଣିର ଏପରି କାର୍ଯ୍ୟ ତାହା ପରିତ୍ୟାଗ କରିବା ସମ୍ଭବ ନୁହେଁ । ମାତ୍ର ବର୍ତ୍ତମାନ କ୍ଷେତ୍ରରେ ତାହା ବ୍ୟତୀତ ଅନ୍ୟ ଉପାୟ ନାହିଁ । ଏହା କହି ଅତ୍ୟନ୍ତ ବ୍ୟଥିତ ଚିତ୍ତରେ ସେ ମଣି ପ୍ରଦାନ ପୂର୍ବକ ଅରଣ୍ୟକୁ ଚାଲିଗଲେ । ଭୀମସେନ ସେହି ମଣିକୁ ଦ୍ରୌପଦୀଙ୍କ ହସ୍ତରେ ପ୍ରଦାନ କରି କହିଲେ—'ହେ କଲ୍ୟାଣୀ ! ତୁମ ନିମନ୍ତେ ଏ ମଣି ଆଣିଛୁ । ତୁମର ପୁତ୍ରହନ୍ତା ପରାଜିତ ହୋଇଛନ୍ତି ଏବଂ ଦୁର୍ଯ୍ୟୋଧନ ପ୍ରାଣତ୍ୟାଗ କରିଛନ୍ତି । ଦୁଃଶାସନର ରକ୍ତ ମୁଁ ପାନ କରିଛୁ । ମୋର ଋଣ ମୁଁ ପରିଶୋଧ କରିଛୁ ।' ତାପରେ ଦ୍ରୌପଦୀ ସେହି ମଣିକୁ ଯୁଧିଷ୍ଠିରଙ୍କ ହସ୍ତରେ ପ୍ରଦାନ ପୂର୍ବକ ବିନୀତ ସ୍ୱରରେ କହିଛନ୍ତି—'ହେ ଧର୍ମପୁତ୍ର ! ଏ ମଣି ଆପଣଙ୍କ ପକ୍ଷ ନିଷ୍ପାପ, ନିଷ୍କଳଙ୍କ

ନୃପତଙ୍କର ଅଭିଷେକ ହେବା ଉପଯୁକ୍ତ ।'' ମାତ୍ର ସାରଳାଦାସ ମଣି ସ୍ଥାନରେ ଅପହରଣ କଲ୍ପନା ଏବଂ କାର୍ତ୍ତିକୀକା ଶରକୁ ଶ୍ରୀକୃଷ୍ଣ ନାରାୟଣ ଶରରେ ପ୍ରତିହତ କରିବାର ଚେଷ୍ଟାକରିବା ଆଦି ବିଷୟ ବର୍ଣ୍ଣନା କରିଛନ୍ତି । ଉଭୟ ବିଷୟବସ୍ତୁ ଚରିତ ମଧ୍ୟରେ ମୂଳ ମହାଭାରତରେ ବିଷୟଟି ଯେତିକି ଗମ୍ଭୀର, ଉଦ୍ବୋଧିପକ ଓ ମୁଖ୍ୟରୂପେ ବର୍ଣ୍ଣିତ ହୋଇଛି, ତାହା ସାରଳାଙ୍କ ଲେଖାରେ ନାହିଁ । ବରଂ ଅନେକ କ୍ଷେତ୍ରରେ ଅସ୍ୱାଭାବିକତା ଓ ଅତିରଞ୍ଜନ କଥନ ଦେଖିବାକୁ ମିଳିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ କ୍ଷେତ୍ରରେ ଶ୍ରୀକୃଷ୍ଣଙ୍କୁ ଯେପରି ଚିତ୍ରଣ କରାଯାଇଛି ତାହା ଅସଙ୍ଗତ ହୋଇଛି । ପୁନଶ୍ଚ ବ୍ୟାସଦେବ ସୌପ୍ତିକପର୍ବରେ ଭଯୁଙ୍କର ପରିବେଶ ଓ ସୁପ୍ତ ସୈନ୍ୟଙ୍କର ହତ୍ୟାର ପ୍ରାଧାନ୍ୟ ହେତୁ ଯେପରି ତାଙ୍କ ପର୍ବର 'ସୌପ୍ତିକ' ନାମକରଣ କରିଛନ୍ତି, ସାରଳା ଦାସ ମୂଳ ସମସ୍ୟାଟିକୁ ଗୌଣକରି କାର୍ତ୍ତିକୀକା ଶର ପ୍ରୟୋଗ ଉପରେ ପ୍ରାଧାନ୍ୟ ଦେଇଥିବାରୁ ତାଙ୍କ ପର୍ବର ନାମ 'କାର୍ତ୍ତିକୀକା ପର୍ବ' ରଖିଛନ୍ତି । ଏପରିକି ଶେଷରେ ଯୁଧିଷ୍ଠିର ଯେତେବେଳେ ପ୍ରଶ୍ନ କରିଛନ୍ତି—ଏପରି ପାଞ୍ଚାଳ ବୀରମାନଙ୍କୁ ଏକମାତ୍ର ଅଶ୍ୱତ୍ଥାମା ନିହତ କରିବାକୁ କିପରି ସକ୍ଷମ ହେଲା, ସେତେବେଳେ ଶ୍ରୀକୃଷ୍ଣ ଏହା ଶିବଙ୍କ ବରରୁ ସମ୍ଭବ ହୋଇଥିବା କହି ଦେବ ଦେବ ମହାଦେବ ଶିବଙ୍କ ଗୁଣାବଳୀ ଯେପରି ବର୍ଣ୍ଣନା କରିଛନ୍ତି, ତାହା ସାରଳାଙ୍କ ଲେଖାରେ ନାହିଁ । ଏହାର କାରଣ ହେଉଛି ଲସାମୋଦୀ ଗ୍ରାମ୍ୟ ନିରକ୍ଷର ଜନଙ୍କୁ ଅତିରଞ୍ଜନଧର୍ମୀ ଧୃତ ବ୍ୟକ୍ତିମାନଙ୍କର ଅଲୌକିକ କାହାଣୀ ପରେ କାହାଣୀ ଶୁଣାଇ ସନ୍ତୁଷ୍ଟ କରିବାର ଅଭିପ୍ରାୟହିଁ ସାରଳାଙ୍କୁ ଏପରି ବର୍ଣ୍ଣନା କରିବାର ସୁଯୋଗ ଦେଇଛି । ତେଣୁ ସେ ମୂଳ ପ୍ରସଙ୍ଗକୁ ଅନେକାଂଶରେ ତ୍ୟାଗକରି ନିଜସ୍ୱ ଗ୍ରାମ୍ୟ ଦୃଷ୍ଟିକୋଣରୁ ଅନେକ କଥା କହିବାକୁ ଲେଭ ସମ୍ବରଣ କରିପାରି ନାହାନ୍ତି । ତେଣୁ କ ଚରିତ ଚିତ୍ରଣରେ, ଉକ୍ତ ଦୃଶ୍ୟ ମଧ୍ୟରେ ଅଥବା ସ୍ୱାଭାବିକ ମହତ୍ତ୍ୱ ପ୍ରକାଶନରେ ଉତ୍କଳୀୟ ପଲ୍ଲୀ ଅଞ୍ଚଳସ୍ଥ ଚରିତ୍ର ମାନଙ୍କୁ ମହାଭାରତସ୍ଥ ଚରିତ୍ର ଅନ୍ତରାଳରେ ରୂପାୟିତ କରିଛନ୍ତି । ତେଣୁ ଏହି ମାନବବାଦୀ ଦୃଷ୍ଟିକୋଣ ସମ୍ବଳିତ ବର୍ଣ୍ଣନା ଗୁଡ଼ିକ ଉତ୍କଳର ପୁରପଲ୍ଲୀରେ ସୁଦୂର-ପ୍ରସାରୀ ହୋଇପାରିଛି । ମାତ୍ର ଏ ସମସ୍ତ ମଧ୍ୟରେ ଯେ ଉଚ୍ଚକୋଟୀର ମୂଲ୍ୟବୋଧ ନାହିଁ ତାହାନୁହେଁ ବରଂ ପ୍ରସଙ୍ଗକ୍ରମେ କବି ସାରଳା ଦାସ ଯେଉଁ ଚିନ୍ତାଧାରା ପ୍ରକାଶ କରିଛନ୍ତି, ତାହା ବିଶ୍ୱସାହିତ୍ୟ କ୍ଷେତ୍ରରେ ମଧ୍ୟ ଦୁର୍ଲଭ ।

ଉଦାହରଣ ସ୍ୱରୂପ ମୂଳ ମହାଭାରତରେ ଅଛି ଯେ ଅଶ୍ୱତ୍ଥାମା କର୍ତ୍ତୃକ ଦ୍ରୌପଦୀଙ୍କ ପଞ୍ଚପୁତ୍ର ନିହତ ହେବା ସମ୍ବାଦ ଶୁଣି ଆନନ୍ଦରେ ଦୁର୍ଯ୍ୟୋଧନ ପରଲୋକ ଗମନ କରିଥିବା ବେଳେ ସାରଳା ଦାସ ଦୁର୍ଯ୍ୟୋଧନ ଚରିତ୍ର ମଧ୍ୟରେ ଯେଉଁ ପିତୃହୃଦୟ ଚିରନ୍ତନତାର ପ୍ରକାଶ କରିଛନ୍ତି ତାହା ଅନନ୍ୟସାଧାରଣ । ମୂଳ ମହାଭାରତରେ ଏହି ପାକ୍ଷିକ ସ୍ଥିତିରେ ଦୁର୍ଯ୍ୟୋଧନର କେବଳ ଅହଂସର୍ବସ୍ୱ ମନୋବୃତ୍ତିର ପରିଚୟ ଥିବାବେଳେ

ସାରଳାଙ୍କ ଦୁର୍ଯ୍ୟୋଧନ ଚରିତ୍ରର ସେହି ଅହଙ୍କାର ସର୍ବସ୍ୱ ଆବରଣ ତଳେ ଜ୍ୟୋତ୍ସ୍ନା ବିଧୌତ ଯେଉଁ ଦେବତ୍ୱ ଗୁପ୍ତ ଲୁକ୍କାୟିତ ହୋଇଥିଲା, ତାହାର ପ୍ରକାଶରେ ମାନବର ହିଂସ୍ର ପ୍ରବୃତ୍ତିର ଅନ୍ଧକାରକୁ କଟୁଛଟା ଦୂରେଇ ଦେଇ ମାନବର ସମ୍ବେଦନା ପ୍ରକାଶ କରିଥାଏ, ଠିକ୍ ଫକୀରମୋହନଙ୍କ ରାଣ୍ଡୀ ପୁଅ ଅନନ୍ତାପରି ।

ଆଧୁନିକ ଯୁଗର କେତେଜଣ ସମାଲୋଚକମାନେ କହନ୍ତି—'Every man is a moon and has a darkside which he never shows to any body. ତେଣୁ କୌଣସି ମାନବ କେବଳ ରାକ୍ଷସ ପ୍ରବୃତ୍ତିର ଦାସ ନୁହେଁ । ପରିସ୍ଥିତି ପରିବେଶ ଦ୍ୱାରା ତାର ଅନ୍ତରାଳୋକ ଅନ୍ଧକାରାଚ୍ଛନ୍ନ ହୋଇଯାଇଥାଏ । ଠିକ୍ ମେଘ ମଧ୍ୟରେ ସୂର୍ଯ୍ୟାଲୋକ ପରି । ଅନୁରୂପ ଅଶ୍ୱତ୍ଥମା ଶିରଚ୍ଛେଦନ କରି ଆଣିଥିବା ଦ୍ରୌପଦୀ ପୁତ୍ର ମାନଙ୍କର ମସ୍ତକକୁ ଚହ୍ନି ପାରି ଏକାନ୍ତ ଦୁଃଖରେ ଭଗ୍ନ ପଞ୍ଜ ଅଶ୍ୱତ୍ଥମାକୁ ତିରସ୍କାର ପୂର୍ବକ ଦୁର୍ଯ୍ୟୋଧନ କହୁଛନ୍ତି—

'ଆହେ ଅଶ୍ୱତ୍ଥମା ଆହେ ଅଷ୍ଟ ନଷ୍ଟ
ତୋହର ପ୍ରକୃତି ଜାଣି ମୁଁ ନବାଞ୍ଛିଲି ମୁକୁଟ
ସମର ଶେଷକାଳେ ମୋତେ ଯେ କଲୁ ସ୍ନେହା
ବାଳୁତ ବଧ ଦୋଷେ କଲୁରେ ପାମର ଦୋରେହା ।

ଅଭିମନ୍ୟୁ ମଲା ଘଟୋତ୍କଚ ନାଶଗଲା
ଲକ୍ଷ୍ମଣ କୁମାର ହି ପଡ଼ିଲା ବଂଶହି ସଲଳା
ସେହାନ୍ତ ରଖିଲି ମୁଁ ବଂଶ ରକ୍ଷାର ନିମନ୍ତେ
ଗତ ଆଗତ ବୁଡ଼ିଲା ସେ ତୋହର କୃତ୍ୟେ ।

ହେ ଦଇବ ସନ୍ତାନ କଳପତରୁଂ ଯେ ବୋଲ ବୋଲି
ଅଶ୍ୱତ୍ଥମା ସସନ୍ନେ ଗତ ଆଗତ ଦୁଇକୁଳ ବୁଡ଼ାଇଲି ।
ତୋହର ମୁଖ ପ୍ରତି ମୁଁ ନଚାହିଁରେ ଦୋରେହା
ବଂଶ ନିଅଂଶ କଲୁରେ ମୋହର ମୂଳରୁ ନରହିଁ ।

ପଞ୍ଚଭୂତ ଆତ୍ମା କଂପେ ଅଛୁ ହୋ ନିର୍କଜ
ସେପଞ୍ଚ ପୁଅଙ୍କ ଅବସ୍ଥା ଦେଖି କଂପେ ନୃପଇ ଦହିକ ।
ପାଞ୍ଚଜଣ ମୁଣ୍ଡ ଦିଅ ମୋହୋର କୋଳାନ୍ତରେ
କୋଳକରି ଧରି ମୁଁ ହୋଇବ କନା ମୁକତେ ।"

ଦୁର୍ଯ୍ୟୋଧନଙ୍କ କରୁଣ ଆବେଦନରେ ଦୁର୍ଦ୍ଦାନ୍ତ ତାଙ୍କ କୋଳରେ ସେହି ପଞ୍ଚପୁତ୍ରଙ୍କ ମସ୍ତକ ଦେବାପରେ—

‘ପାଞ୍ଚଙ୍କର ମୁଣ୍ଡ କୋଳେ ଦେଖିଣ ଧୃତରାଷ୍ଟ୍ରି
ପ୍ରାଣ ତେଜିଲା ମୁମୂର୍ଚ୍ଛା ଗଲା ଫାଟି ।

କେବଳ ଏତିକି ନୁହେଁ ମୃତପୁତ୍ର ପରୀକ୍ଷିତଙ୍କୁ ଦେଖି ଦୁଃଖ ଏବଂ ଅଭିମାନରେ ସ୍ୱଭ୍ରାତା ଶ୍ରୀକୃଷ୍ଣଙ୍କୁ ସୁଭଦ୍ରା ଯେପରି ତିରସ୍କାର କରିଛନ୍ତି ଅଦ୍ୟାପି ପଲ୍ଲୀ ଅଞ୍ଚଳରେ ଭ୍ରାତା ଭଗ୍ନୀଙ୍କର ସମ୍ପର୍କକୁ ସ୍ମରଣ କରାଇଦିଏ । ସୁଭଦ୍ରା ପ୍ରଥମରୁ କହୁଛନ୍ତି—

‘ମୁହିଁ ଜାଣିଲି ଅର୍ଜୁନ ମୋତେ ସୁଖ ଠାବ କଲୁ
ମଧ୍ୟେ ଯଦୁବଂଶ ଅନେକ ନଷ୍ଟାଇଲୁ ।

ମାତ୍ର ତୁମ ଅନ୍ତର କପଟରେ ପୂର୍ଣ୍ଣ । ତେଣୁ ତୁମର ଇଚ୍ଛାରେ ଯଦୁବଂଶ ସହ ବିବାଦକର ଯୋଗେ ଅର୍ଜୁନ ସହ ବିବାଦ କରାଇଥିଲେହେଁ—

‘ହରି ତୋହର କଥାସେ ସେବେ ଜାଣିଲି ସେତେ ବୁଝି
କପଟ ଯୁଦ୍ଧେ ମରାଇଲୁ ଚଉଦ ବରଷ ପୁତ୍ରଗୋଟି ।

ଦ୍ରୋଣଙ୍କ ବ୍ୟୂହ ଭେଦ କରି ନପାରି ଅଭିମନ୍ୟୁ ମୃତ୍ୟୁ ଲଭ କରିବା ମିଥ୍ୟା । ତୁମେ ଏ ସମସ୍ତ ମୂଳରେ । ମାତ୍ର କାହିଁକି ? କଣ ମୁଁ ତୁମ ପାଖରେ ଦୋଷ କରିଥିଲି ?

‘ହରି ଶତ୍ରୁଙ୍କୁ ଛଡ଼ାଇ ଅର୍ଜୁନ ତୋତେ ଜିଣି
ତେଣୁ ହୃଦରେ କୂଟ ଧରିଲୁକି ପୁଣି ।

ମୋର ସ୍ୱାମୀ ତୁମକୁ ଜୟ କରିଥିବାରୁ ତୁମ ଅନ୍ତରରେ ଭିତରେ ପ୍ରତି ଈର୍ଷାଭାବ ହେତୁ ଏପରି କଲ କି ? ତା'ପରେ ସେ ଅଭିମାନ କରି କହୁଛନ୍ତି—

‘ଅତି ନିଷ୍ଠୁର ତୁ ତୋହୋର କଥା ବହେଣୀ ଭଂଜେ
ହୃଦରେ ହିଂସାଧିବ ବୋଲନ୍ତି ଦେବରାଜା ।

ମାତ୍ର ତୁମେ ମନେରଖିବା ଉଚିତ—

‘ସେବେ ପାଇଲୁ ହରି ହେ ବାଳୁତ ହତ୍ୟା ଦୋଷ
ଇହଲୋକେ ଅପଖ୍ୟାତି ପରଲୋକେ ଅପଯଶ ।
କାଳେ ଜାଣିବ ତୋର ଅର୍ଜୁନକୁ ଅଭାବ
କେଉଂଣ ଦ୍ରୋହ କଲେ ତୋତେ ପଞ୍ଚଇ ପାଣ୍ଡବ
କଉରବ ବଂଶ ହରି ନାଶ କଲୁ କୂଟେ
ପାଣ୍ଡବଙ୍କ ବଂଶ ସେବେ ମରାଇଲୁ କପଟେ ।”

ମାନବ ଦୁଃଖରେ ବିଚଳିତ ହୋଇ ପଡ଼ିଲେ ଅବଚେତନ ମନରେ ଥିବା ସମସ୍ତ ଚିନ୍ତା ଚେତନା ପ୍ରକାଶ ପାଇବା ପରି ଏବଂ ଭଲଗୁଡ଼ିକ ମନର ଆକାର ଧାରଣ କରିବା ନ୍ୟାୟରେ ସୁଭଦ୍ରା ଏବେ ନିଜ ଭାଇକୁ ସନ୍ଦେହ କରି ତାଙ୍କୁ ପାଣ୍ଡବଙ୍କର ଶତ୍ରୁରୂପେ ଅଭିହିତ କରିଛନ୍ତି । କାରଣ ଗୋଟିଏ ବଂଶ ଯେ ନଷ୍ଟ କରିଛୁ, ଆଉ ଗୋଟିଏ ବଂଶ ନଷ୍ଟ କରିବାରେ ତା ପକ୍ଷରେ ଅସମ୍ଭବ କଣ ? ଏଥିରେ ଶ୍ରୀକୃଷ୍ଣ ବିଚଳିତ ହୋଇପଡ଼ି କହୁଛନ୍ତି—ସେପରି କହନା, ତୋର ସ୍ୱାମୀ ଏହା ଶୁଣିଲେ ମୋ ଉପରେ ରାଗ କରିବେ । ଏହା ଶୁଣି ଅତ୍ୟନ୍ତ ସ୍ୱାଭାବିକ ଭାବରେ ସୁଭଦ୍ରା କହୁଛନ୍ତି ଯଦି ତୁମର ପୁତ୍ରଙ୍କୁ ଏତେ ଭୟ ତେବେ ମୋର ବଂଶରକ୍ଷାର ଉପାୟ କଣ କରୁଛ ? ଶ୍ରୀକୃଷ୍ଣ କହୁଛନ୍ତି ଦେଖ ଯେଉଁମାନେ ମଲେ ସେମାନେ ନିଜ ପାପରେ ନିଜେ ନଷ୍ଟ ହୋଇଛନ୍ତି; ଏଥିରେ ମୋର ଦୋଷ କଣ ? ସୁଭଦ୍ରା ଦୃଢ଼ ସ୍ୱରରେ କହିଲେ—କଣ ହେଲା, ଯେଉଁ ଦ୍ୱାରକାରେ ସହସ୍ରେକ ଧାର ସୁଦର୍ଶନ ଚକ୍ର ପ୍ରତି ମୁହୂର୍ତ୍ତରେ ଘୂରୁଛି, ସେଠାରେ ଯମର ପ୍ରବେଶ ନାହିଁ; ତେବେ ମୋ ନାତି କାହିଁକି ମଲା ? ନାଁ ନାଁ ସେପରି ଭୁଲାଇଲେ ହେବ ନାହିଁ । ମୁଁ ପାପିନୀ ହୋଇଗଲି, ଏ ମୁଖ କାହାକୁ ଦେଖାଇ ପାରିବି ନାହିଁ । ଏହା କହି ଆତ୍ମହତ୍ୟା କଲାବେଳେ ଶ୍ରୀକୃଷ୍ଣ ତାଙ୍କୁ ସେଥିରୁ ନିବୃତ କରି ପରୀକ୍ଷିତଙ୍କୁ ବଞ୍ଚାଇବାର ଆଶା ପ୍ରକାଶ କରିଛନ୍ତି ।

ଏତଦ୍‌ଭିନ୍ନ ଅର୍ଥାତ୍ ବର୍ଣ୍ଣନାର ଏପରି ସ୍ୱାଭାବିକତା ସହିତ କବି ତାଙ୍କ କାବ୍ୟରେ ଯେପରି ସାମାଜିକତା ଏବଂ ଚିରନ୍ତନ ନୀତିତତ୍ତ୍ୱ ବିଧାନ କରିଛନ୍ତି, ତାହା ମଧ୍ୟ ପ୍ରଣିଧାନଯୋଗ୍ୟ । ଗାଧିରାଜା ଉପାଖ୍ୟାନରେ ଯେପରି ଜଣାଯାଏ ନାରୀମାନଙ୍କର ଜାତିଗତ ଭିନ୍ନତା ନଥିବାରୁ ବ୍ରାହ୍ମଣ ଗୋଟାଏ କନ୍ୟାକୁ ବିବାହ କଲାବେଳେ ତାଙ୍କର ଭଗ୍ନୀ କ୍ଷତ୍ରୀୟଙ୍କୁ ବିବାହ କରି ପାରିଥିଲା ଏବଂ ବଡ଼ ଭଉଣୀ ସାନଭଉଣୀ ଗୃହରେ ଉପସ୍ଥିତ ହେଲେ ଜ୍ୱାଇଁଙ୍କର ବଡ଼ଭଉଣୀଙ୍କ ପ୍ରତି ଯେଉଁ ମାନ୍ୟଭାବ ତାହା ଓଡ଼ିଶାର ସାମାଜିକ ଚଳଣୀକୁ ସ୍ମରଣ କରାଇଦିଏ । ପୁନଶ୍ଚ ବିଶ୍ୱାମିତ୍ରଙ୍କ ଚରିତ୍ରରେ ସେ ଦୁଇଟି କଥା ସୂଚାଇଛନ୍ତି । ପ୍ରଥମ କଥା ହେଲା ଯେ ଦୀର୍ଘ ଦିନର ସାଧକ ବିଶ୍ୱାମିତ୍ର ନିମିଷକରେ ମେନକାର ପ୍ରୀତିରେ ନିଜକୁ ହଜାଇ ଦେଇ ଥିବାରୁ କବି ପଣ୍ଡିତମାନଙ୍କୁ ଚେତେଇ ଦେଇଛନ୍ତି—

"ଆହେ ବୁଧଜନେ ନାରୀ ସ୍ନେହେ ମୋହକାରୀ
ଯେତେ ଯତି ହେଉ ନିଅନ୍ତି ତାର ଚିତ୍ତ ହରି ।

ପୁନଶ୍ଚ ସେହି ବିଶ୍ୱାମିତ୍ର ଚରିତ୍ରରେ କବି ସୂଚେଇ ଦେଇଛନ୍ତି ଯେ ପ୍ରବୃତ୍ତି-ଦମନ ବ୍ୟତିରେକେ ସାଧକ ତାର ସାଧନାରେ ସିଦ୍ଧିଲାଭ କଲେହେଁ ବଦନାମୀ ହୋଇ

ନ ପାରେ । ତେଣୁ ମାନବ ପ୍ରଥମେ କୁପ୍ରବୃତ୍ତି, ଇନ୍ଦ୍ରିୟଜନିତ ପ୍ରବଣତା, କାମ-କ୍ରୋଧ-ହିଂସା ଭାବରୁ ମୁକ୍ତ ହୋଇପାରିଲେ ସେ ବଶିଷ୍ଠଙ୍କ ପରି ପରମପୂଜ୍ୟ ଋଷିର ଆଖ୍ୟା ଅର୍ଜନ କରିପାରିବ ।

ସୁତରାଂ ସାରଳା ଦାସ ମହାଭାରତରେ ନାନା ବିଭିନ୍ନତା ତଥା ବର୍ଣ୍ଣନା ପ୍ରବଣତା ଓ ଗ୍ରାମ୍ୟଦୋଷ ଦର୍ଶିତା ସତ୍ତ୍ୱେ ଏଥିରେ ଥିବା ମାନବ ଅନ୍ତରର ଚିରନ୍ତନ ଧର୍ମିତା ଓ ମାନବକୁ କୁପ୍ରବୃତ୍ତି ବର୍ଜାଇ ସୁପଥରେ ଯିବା ଲାଗି ଥିବା ସମାଜ ସଚେତନତା ଶୂଦ୍ରମୁନି ସାରଳାଦାସଙ୍କୁ ଯେ କାଳବକ୍ଷରେ ସ୍ୱତନ୍ତ୍ର ଆସନରେ ଆସୀନ କରାଇବ ଏଥିରେ ଦ୍ୱିମତ ହେବାର ଅବକାଶ ନାହିଁ ।



# ନାରୀପର୍ବ

## ଇଂଜିନିୟର ଶ୍ରୀ ପ୍ରଭାକର ସ୍ୱାଇଁ

---

ମହାନ୍ ଐତିହ୍ୟସମ୍ପନ୍ନ ଅଠରପର୍ବ ବିଶିଷ୍ଟ ସାରଳା ମହାଭାରତ ବ୍ୟାସକୃତ ମହାଭାରତର ଅବିକଳ ଅନୁବାଦ ନୁହେଁ; ପରନ୍ତୁ ସାରଳାଙ୍କ ନିଜସ୍ୱ ମୌଳିକତାରେ ଏହା ଅଧିକ ମନୋରମ, ଅତୀବ ଭାସ୍ୱର । ମହାମନୀଷୀ ମହାକବି ସାରଳାଦାସ ମୂଳ ମହାଭାରତର ବିଷୟବସ୍ତୁ ଓ ଚରିତ୍ର ସମୂହକୁ ନିଜ କାବ୍ୟସୌଧର ଭିତ୍ତିପ୍ରସ୍ତର ରୂପେ ଗ୍ରହଣ କରିଥିଲେ ମଧ୍ୟ ନିଜର ଅସାମାନ୍ୟ ପ୍ରତିଭା, ଅଗାଧ ପାଣ୍ଡିତ୍ୟ ତଥା ଅପରିସୀମ ସାଧନା ବଳରେ ଏହାକୁ ଅନନ୍ୟ ସୁନ୍ଦର କରି ଗଢ଼ି ତୋଳିଛନ୍ତି । ଏପରିକି ଦେବତା - କୁଳ ମଧ୍ୟ ସାରଳାଦାସଙ୍କ ଲେଖନୀର ଜାଦୁସ୍ପର୍ଶରେ ଏହି ଧୂଳି ଧୂସରିତ ଧରଣୀ ପୃଷ୍ଠକୁ ଓହ୍ଲାଇ ଆସିଛନ୍ତି । ଏକାନ୍ତ ଭାବେ ମାନବସୁଲଭ ଗୁଣାବଳୀରେ ମଣ୍ଡିତ ହୋଇ ପାରିଛନ୍ତି । ଏତଦ୍‌ବ୍ୟତୀତ ତତ୍କାଳୀନ ଓଡ଼ିଆ ସଭ୍ୟତା, ସଂସ୍କୃତି ପରମ୍ପରା, ଧର୍ମ, ଦର୍ଶନ, ଚିନ୍ତା, ଚେତନା, ରୀତିନୀତି ଓ ଚାଲିଚଳଣି ଆଦିକୁ ନିଜର ସୃଜନଶକ୍ତି ବଳରେ ଜୀବନ୍ତ ରୂପ ଦାନକରି ସେ ଓଡ଼ିଆ ଜାତିକୁ ବିଶ୍ୱସାହିତ୍ୟ ଦରବାରରେ ଏକ ଶ୍ରେଷ୍ଠଆସନ ପ୍ରଦାନ କରିବାକୁ ସମର୍ଥ ହୋଇପାରିଛନ୍ତି । ସର୍ବୋପରି ଯୁଗୀୟ ସମ୍ପଦକୁ ଉପାଦାନ ରୂପେ ଗ୍ରହଣ କରି ସାରଳା ମହାଭାରତ ଯୁଗାତୀତର ମହତ୍ତ୍ୱ ଅବଧାରଣ କରି କାଳଜୟୀ ହୋଇପାରିଛି ।

ବ୍ୟାସକୃତ ମହାଭାରତର ଏକାଦଶ ପର୍ବ ନାରୀପର୍ବ ହୋଇଥିବା ସ୍ଥଳେ ସାରଳାଙ୍କ ମହାଭାରତର ତ୍ରୟୋଦଶ ପର୍ବ ହେଉଛି ନାରୀପର୍ବ । ଉଭୟତ୍ର ନାରୀପର୍ବ ଆକାରରେ କ୍ଷୁଦ୍ର ହେଲେହେଁ ଏହାକୁ ଉପେକ୍ଷା କରାଯାଇ ନପାରେ । କାରଣ ଏକମାତ୍ର ନାରୀ ପର୍ବହିଁ ସମସ୍ତ ମହାଭାରତକୁ ଏକ ଶୋକାନ୍ତ କାବ୍ୟରେ ପରିଣତ କରିଛି । ତେଣୁ ଏହି ପର୍ବ ମଧ୍ୟ ଶୋକପର୍ବ ନାମରେ ଅଭିହିତ ।

ବ୍ୟାସଦେବଙ୍କ ମହାଭାରତରେ କୁରୁକ୍ଷେତ୍ର ଯୁଦ୍ଧର ଅବସାନପରେ ଧୃତରାଷ୍ଟ୍ରଙ୍କ ବିଳାପ, ସଞ୍ଜୟଙ୍କର ଧୃତରାଷ୍ଟ୍ରଙ୍କ ପ୍ରତି ସାନ୍ତ୍ୱନା, ଧୃତରାଷ୍ଟ୍ର ଓ ବିଦୁରଙ୍କ ମଧ୍ୟରେ ଧର୍ମ ସମ୍ବନ୍ଧରେ କଥୋପ-କଥନ, ବେଦବ୍ୟାସଙ୍କର ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ପ୍ରତି ଧର୍ମୋପଦେଶ, ଧୃତରାଷ୍ଟ୍ରଙ୍କ ଦ୍ୱାରା ଲୌହଭୀମଚୂର୍ଣ୍ଣ, ଶ୍ରୀକୃଷ୍ଣଙ୍କର ଉପଦେଶ ପ୍ରଦାନ, କୁରୁରମଣୀମାନଙ୍କ ଶୋକ, ଯୁଧିଷ୍ଠିର ଭୀମ ଓ ଦ୍ରୌପଦୀଙ୍କସହ ଗାନ୍ଧାରୀ ଓ କୁନ୍ତୀଙ୍କର

ମିଳନ, ରଣ ଭୂମିର ବିଳାପଦୃଶ୍ୟ, ଗାନ୍ଧାରୀଙ୍କର ଶ୍ରୀକୃଷ୍ଣଙ୍କୁ ଅଭିଶାପ, ନିଧନ ବୀରମାନଙ୍କର ଜଳକ୍ରିୟା ପ୍ରଭୃତି ପ୍ରସଙ୍ଗମାନ ସ୍ଥାନ ପାଇଛି । ସାରଳାଙ୍କ ନାରୀପର୍ବରେ କୁରୁକ୍ଷେତ୍ର ଯୁଦ୍ଧର ଅବସାନପରେ ପାଣ୍ଡବମାନଙ୍କ ହସ୍ତିନା ଗମନ, ଧୃତରାଷ୍ଟ୍ରଙ୍କର ଶୋକ, ବିଦୁରଙ୍କ ଉପଦେଶ ଧୃତରାଷ୍ଟ୍ରଙ୍କ ଦ୍ୱାରା ଲୌହଭୀମ ଚୂର୍ଣ୍ଣ, ଶ୍ରୀକୃଷ୍ଣଙ୍କ ଉପଦେଶ, ଗାନ୍ଧାରୀଙ୍କ ନେତ୍ରଜ୍ୱାଳାରେ ଯୁଧିଷ୍ଠିର ଦହନ, ରଣଭୂମିରେ କୁରୁ ରମଣୀମାନଙ୍କ ବିଳାପ, ଗାନ୍ଧାରୀଙ୍କର ଶ୍ରୀକୃଷ୍ଣଙ୍କୁ ଅଭିଶାପ ପ୍ରଭୃତି ପ୍ରସଙ୍ଗ ବର୍ଣ୍ଣିତ ହୋଇଛି ।

କୁରୁକ୍ଷେତ୍ରଠାରେ ମହାଭାରତ ଯୁଦ୍ଧ ଶେଷ ହୋଇଯାଇଛି । ପାଣ୍ଡବମାନେ ବିଜୟର ଟୀକା ପିନ୍ଧିଛନ୍ତି । କୁରୁକୁଳର ନିଧନରେ କୁରୁଶ୍ରେଷ୍ଠ ଧୃତରାଷ୍ଟ୍ର ଶୋକାଭିଭୂତ ହୋଇପଡ଼ିଛନ୍ତି । ବ୍ୟାସ ମହାଭାରତରେ ସଞ୍ଜୟ ଧୃତରାଷ୍ଟ୍ରଙ୍କୁ ତାଙ୍କର ଏହି ଦୁର୍ଦ୍ଦିନରେ ସାନ୍ତ୍ୱନା ପ୍ରଦାନ କରିଛନ୍ତି ଏବଂ ବେଦବ୍ୟାସ ମଧ୍ୟ ତାଙ୍କୁ ଉପଦେଶ ଦେଇଛନ୍ତି । ମାତ୍ର ସାରଳାଙ୍କ ମହାଭାରତରେ ବେଦବ୍ୟାସ ଓ ସଞ୍ଜୟଙ୍କ ଉପଦେଶ ପ୍ରଦାନ ପ୍ରସଙ୍ଗମାନ ଆଦୌ ସ୍ଥାନ ପାଇନାହିଁ । ଉଭୟତ୍ର ବିଦୁର ଓ ଧୃତରାଷ୍ଟ୍ରଙ୍କ ମଧ୍ୟରେ ଧର୍ମ ବିଷୟକ କଥୋପକଥନ ବର୍ଣ୍ଣିତ ହୋଇଅଛି । ବିଦୁର ଧୃତରାଷ୍ଟ୍ରଙ୍କ ଶୋକମୋଚନ ପାଇଁ ବିଭିନ୍ନ ହିତୋପଦେଶ ପ୍ରଦାନ କରିଛନ୍ତି ।

ସାରଳା ମହାଭାରତରେ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ସାକ୍ଷାତ କରିବା ନିମିତ୍ତ ପଞ୍ଚୁପାଣ୍ଡବ ମାତା କୁନ୍ତୀ ଓ ପତ୍ନୀ ଦ୍ରୌପଦୀଙ୍କ ସହ ରଥରେ ବସି ଇନ୍ଦ୍ରପ୍ରସ୍ଥ ଗମନ କରିଛନ୍ତି । ଗରୁଡ଼ ପିଠିରେ ଆରୋହଣ କରି ସେମାନଙ୍କ ସହ ଯାଇଛନ୍ତି ପାଣ୍ଡବ ସଖା ଶ୍ରୀକୃଷ୍ଣ । ବାଟରେ ଶ୍ରୀକୃଷ୍ଣ ଭୀମଙ୍କୁ ପୁତ୍ର ଶୋକାତୁର ମହାବଳୀ ଧୃତରାଷ୍ଟ୍ର ନିକଟକୁ ଯିବାପାଇଁ ବାରଣ କରି କହିଛନ୍ତି—

"ଶ୍ରୀକୃଷ୍ଣ ଆଜ୍ଞ୍ୟାଦେଲେ ଭୀମସେନକଇଂ ଶୁଣ
ତୋତହୁ ପାଣ୍ଡବଂକୁ ବାବୁ ଆନ ସଖା ନାହିଂ ।
ଧୃତରାଷ୍ଟ୍ର ଗାନ୍ଧାରୀଙ୍କ ଯେ ଶତପୁତ୍ର କଷ୍ଟ
ତୋତେ ଦେଖି ଅନେକ କ୍ରୋଧ କରିବେ ଧୃତରାଷ୍ଟ୍ର ।
ଅନେକ ବଇକୁଲେ ହୋ ତୋତେ ରାଇବ କଟକ
ରହୋ ବୃକୋଦର ଯିବୁନାହିଂଟି ତାହାର ତହିଂକ ।
ଷଠବର ବଳିଷ୍ଠ ସେ ମହାବଳୀ ପ୍ରଚଣ୍ଡ
ମହାପର୍ବତ ସ୍ୱପନ୍ତେ ସେ ହୋଇଯିବ ମଶୀଗୁଣ୍ଡା ।"

ମାତ୍ର ବ୍ୟାସକୃତ ମହାଭାରତରେ ଶ୍ରୀକୃଷ୍ଣ ଭୀମସେନଙ୍କୁ ପୂର୍ବରୁ ଯାତ୍ରାପଥରେ ବାରଣ କରିଥିବା ପ୍ରସଙ୍ଗର ବର୍ଣ୍ଣନା ନାହିଁ । ଇନ୍ଦ୍ରପ୍ରସ୍ଥରେ ପହଞ୍ଚି ପାଞ୍ଚାଳ କୁମରଙ୍କୁ ନଦେଖି ପାଣ୍ଡବ ମାନଙ୍କ ସମେତ କୁନ୍ତୀ ଓ ଦ୍ରୌପଦୀ କ୍ରୋଧପ୍ରକାଶ ପୂର୍ବକ

ଶୋକରେ ଭୂଲୁଣ୍ଠିତ ହୋଇଛନ୍ତି । ଶ୍ରୀକୃଷ୍ଣ ସେମାନଙ୍କୁ ସାନ୍ତ୍ୱନା ଦେଇ ଯୁଦ୍ଧିଷ୍ଠ ସହିତ ହସ୍ତିନାପୁରକୁ ଗମନ କରିଅଛନ୍ତି । ପାଣ୍ଡବମାନଙ୍କ ଆଗମନର ବାର୍ତ୍ତା ବିଦୁରଠାରୁ ପାଇ ଧୃତରାଷ୍ଟ୍ର କ୍ରୋଧାନ୍ୱିତ ହୋଇ ପାଣ୍ଡବମାନଙ୍କୁ ସାକ୍ଷାତ୍ ନଦେବା ପାଇଁ ସ୍ଥିରକରି କହୁଛନ୍ତି—

"ବିଦୁର ବଚନେ ସେ ବୋଇଲେ ଧୃତରାଷ୍ଟ୍ର
କିମତେ ଅଇଲେ ମୋତେ ସୁମରାଇ ପୁତ୍ରକଷ୍ଟ ।

ମାଇଲେ କର୍ଣ୍ଣ ଶକୁନି ପୁଣି ଭୂରିଶ୍ରବା
ଆବର ଶତେପୁତ୍ର ଦ୍ରୋଣ ସେ ଗାଙ୍ଗବା ।
ମାଇଲେ ବନ୍ଧୁ ସୋଦର ମୋହର ସର୍ବସଖା
ମୋହର ବିପତ୍ତି ତାହାଙ୍କର ସମ୍ପଦ ସେ ଦେଖା ।

ଯାଆନ୍ତୁ ସେ ପାଣ୍ଡବେ ହୋ ଯେଣେ ମୋହୋର କିସ କାର୍ଯ୍ୟ
ସମସ୍ତେ ନିଷ୍କଳଂକ କଲେ ଯେବେ ସୁଖେ କରନ୍ତୁ ରାଜ୍ୟ ।"

ପୁତ୍ରଶୋକାତୁର ପିତାର ଏହା ହେଉଛି ମାର୍ମିକ ଅଭିବ୍ୟକ୍ତି । ଧୃତରାଷ୍ଟ୍ର ଏଠି ରାଜାନୁହେଁ, ରାଜଧର୍ମ ପାଳନ କରିବାକୁ ସେ ବ୍ୟର୍ଥ୍ୟାନ୍ତି । ଏଠାରେ ସେ ଜଣେ ସାଧାରଣ ମଣିଷ, ଯିଏ ପୁତ୍ରହନ୍ତା ଶତ୍ରୁର ମୂଳୋତ୍ପାଟନ କରିବା ନିମିତ୍ତ ଦୃଢ଼ପଣକର । ଯୁଦ୍ଧାନ୍ତେ କପଟାନ୍ତ କରି ବିନାଶ କରିବା ନିମିତ୍ତ ସେ ଭୀମକୁ ନିଜ କୋଳକୁ ଡ଼ାକିଛନ୍ତି । ମାତ୍ର ସର୍ବଜ୍ଞାତା ପୁରୁଷ ଶ୍ରୀକୃଷ୍ଣ ଧୃତରାଷ୍ଟ୍ରଙ୍କର କୌଶଳ ଜାଣି ଆଖଡ଼ାଶାଳରୁ ଏକ ଲୌହଭୀମ ଆଣାଇ ତାଙ୍କ କୋଳରେ ଦେଇଛନ୍ତି । ସେହି ଲୌହଭୀମକୁ ହାତରେ ଚିପି ପ୍ରତିଶୋଧପରାୟଣ ଧୃତରାଷ୍ଟ୍ର ତାକୁ ଚୂର୍ଣ୍ଣ କରିଦେଇଛି । ପୁତ୍ରସ୍ନେହାନ୍ଧ ଜଣେ ସାଧାରଣ ମଣିଷପାଇଁ ଏହାଠାରୁ ବଳି ବଡ଼ ପ୍ରତିଶୋଧ ଆଉ କ'ଣ ବା ହୋଇପାରେ । ଲୌହଭୀମକୁ ଧ୍ୱଂସକରି ଧୃତରାଷ୍ଟ୍ର ଭୀମର ଗୁଣ ନାହୁନି କାନ୍ଦିବା ସମୟରେ ଶ୍ରୀକୃଷ୍ଣ ତାଙ୍କୁ ପରିହାସ କରିବାକୁ ଛାଡ଼ିନାହାଁନ୍ତି । କବିଙ୍କ ଭାଷାରେ—

"ଶ୍ରୀକୃଷ୍ଣ ବୋଇଲେ ହୋ ଶୁଣସି ଧୃତରାଷ୍ଟ୍ର
ଭୀମକୁ ମାଇଲୁ ଯେବେ ଗଲାତ ପୁତ୍ରକଷ୍ଟ ।

ଆବର କ୍ରୋଧ ହୃଦୟେ କରୁ କିସ ଅର୍ଥେ
ବୃଦ୍ଧକାଳେ ରାଜ୍ୟଭୂଞ୍ଜ କରି ହୋ ନିଶ୍ଚିନ୍ତେ ।

ଭୀମର ନୟନେ ପାଣ୍ଡବେ ହୋଇଲେ ନିରମାଖୀ
କ୍ରୋଧ ସମ୍ଭାଳି ମହାରାଜା ହୋଇଲ ମହାସୁଖୀ ।

ଶ୍ରୀକୃଷ୍ଣର ବଚନେ ହସଇ ଧୃତରାଷ୍ଟ୍ର
କ୍ରୋଧ ଶାନ୍ତ ହୋଇ ପାଶୋରିଲା ପୁତ୍ରକଷ୍ଟ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଶୁଣ ମହାରାୟେ
ତୋହର ବୋଲେ କି ଭୀମ ହୋଇବଟି କ୍ଷୟେ ।
ଭୀମସେନ ବୋଇଲା ସୁଖୀ ହୋଇଲ ହେ ପିତା
ମୁହିଂଟି ଭୀମସେନ ତୋହୋର ଶତେ ପୁତହନ୍ତା ।"

ଶ୍ରୀକୃଷ୍ଣ ଓ ଭୀମସେନଙ୍କ ମୁଖରୁ ଏପରି ଛଳୋକ୍ତି ଶୁଣି ଶତପୁତ୍ରହରା ଧୃତରାଷ୍ଟ୍ର ନୀରବରେ ଅଶ୍ରୁମୋଚନ କରି କହୁଛନ୍ତି—

"ଧୃତରାଷ୍ଟ୍ର ବୋଇଲେ ମୁଂ କେହ୍ନେ ଦେହ ଧରିବି
ପୁତ୍ରଙ୍କ ଅଭାବେ ମୁଂ କିସ ଯେ କରିବି ।"

ବୃଦ୍ଧ ପିତା ନିମିତ୍ତ ଏହାଠାରୁ ବଳି ଅଧିକ ବେଦନା ବା ଆଉ କ'ଣ ଥାଇପାରେ ? କେବଳ ସାରଳା ମହାଭାରତରେ ନୁହେଁ, ବ୍ୟାସକୃତ ମହାଭାରତରେ ମଧ୍ୟ ଧୃତରାଷ୍ଟ୍ର ଚରିତ୍ରର ଏହି ପ୍ରତିଶୋଧପରାୟଣ ପ୍ରସଙ୍ଗଟି ସୁସ୍ପଷ୍ଟ ।

କେବଳ ଧୃତରାଷ୍ଟ୍ର ନୁହଁନ୍ତି, ପୁତ୍ର ଶୋକାତୁରା ଗାନ୍ଧାରୀ ମଧ୍ୟ ପାଣ୍ଡବମାନଙ୍କୁ ନିଜ ଚକ୍ଷୁର ଜ୍ୟୋତିରେ ଦହନ କରିବା ନିମିତ୍ତ ପ୍ରୟାସ କରିଛନ୍ତି । ତେଣୁ ପାଣ୍ଡବମାନଙ୍କୁ ଦେଖି ନିଜ ପୁତ୍ରଶୋକ ଭୁଲିବା କଥା ସେ କପଟରେ କହି ଅନ୍ଧପଟଳ ଖୋଲିବା ନିମିତ୍ତ ଗାନ୍ଧାରୀ ସେମାନଙ୍କୁ ଆହ୍ୱାନ କରିଛନ୍ତି । ମାତ୍ର ଶ୍ରୀକୃଷ୍ଣ ସହଦେବଙ୍କଠାରୁ ଗାନ୍ଧାରୀ ଅନ୍ଧପଟଳ ଖୋଲିବାର କାରଣ ବୁଝି ଧୃତରାଷ୍ଟ୍ରଙ୍କର ଏକମାତ୍ର ଜୀବିତ ପୁତ୍ର ଦୁର୍ଦ୍ଧର୍ଷକୁ ମାତାଙ୍କର ଅନ୍ଧପଟଳ ଖୋଲିବା ନିମିତ୍ତ ନିର୍ଦ୍ଦେଶ ଦେଇଛନ୍ତି । ଦୁର୍ଦ୍ଧର୍ଷ ମାତା ଗାନ୍ଧାରୀର ଅନ୍ଧପଟଳ ଖୋଲିଛି । ଚକ୍ଷୁ ମେଲି ଗାନ୍ଧାରୀ ଚାହିଁଛନ୍ତି । ସେ ଚାହାଁନ୍ତି ଚରମ ପ୍ରତିଶୋଧ ତାଙ୍କ ଚକ୍ଷୁଜ୍ୟୋତିରେ ସେ ଦହନ କରିବେ ପୁତ୍ରହନ୍ତା ପାଣ୍ଡବମାନଙ୍କୁ । ମାତ୍ର ସମ୍ମୁଖରେ ଠିଆ ହୋଇଛି ଦୁର୍ଦ୍ଧର୍ଷ ଗାନ୍ଧାରୀର ଅନ୍ତର ଲିଉଡ଼ି, ଏକୋଇର ବଳା ବସିକେଶନ । ତା'ଉପରେ ଦୃଷ୍ଟି ପଡ଼ିଛି । ଦୁର୍ଦ୍ଧର୍ଷ ତତ୍କ୍ଷଣାତ୍ ଜଳି ଉଠିଛି । ପାଣ୍ଡବମାନଙ୍କୁ ଧରି ଆଡ଼େଇ ହୋଇ ରହିଛନ୍ତି ଶ୍ରୀକୃଷ୍ଣ । ବିଦୁରଙ୍କଠାରୁ ଗାନ୍ଧାରୀ ଜଳିଯାଇଥିବା ନିଜପୁତ୍ର ଦୁର୍ଦ୍ଧର୍ଷର ସମ୍ବାଦ ଜାଣି ନିଜ କର୍ମକୁ ନିନ୍ଦା କରିଛନ୍ତି ଓ ଶ୍ରୀକୃଷ୍ଣ ମଧ୍ୟ ଗାନ୍ଧାରୀଙ୍କୁ ବୁଝାଇବାକୁ ଯାଇ କହୁଛନ୍ତି—

"ଶ୍ରୀକୃଷ୍ଣ ବୋଇଲେ ମାଗୋ ସେ ତୋହୋର ପୁତ୍ରଗୋଟି
ଶରଣ ପଶି ତାହାକୁ ରଖାକଲେ ପୁରଂଧ୍ରି ।
ଯେ ଥିଲା ତୋହର ଅନ୍ତର ଲିଉଡ଼ି
ତାହାକୁହିଁ ନାଶକଲୁ ବିପାକ କର୍ମ ତୋହର ।

ଯେବେ ବାତୁଲ୍ତ ଅନ୍ଧପଟଳ ବାନ୍ଧ ତୋହର ମୁଖଇ
ଯୁଧିଷ୍ଠିରଙ୍କି ଦହନ କଲେ ଧର୍ମ ନ ଗଛଇ ।
ଶ୍ରୀକୃଷ୍ଣ ବୋଇଲେ ଶୋ ପାଣ୍ଡବେ ତୋହର ବାଳ
ନିଜ ପୁତନ୍ତ୍ର ପାସୋର ସ୍ନେହାନ୍ତ ପ୍ରତିପାଳ ।

ଶ୍ରୀକୃଷ୍ଣଙ୍କ ବଚନେ ଗାନ୍ଧାରୀ କୋପ କଲ ଶାନ୍ତ
ପୁଣି ଅନ୍ଧପଟଳ ବାନ୍ଧିଲା ତତ୍‌କ୍ଷଣାନ୍ତ ।"

ମାତ୍ର ସଂସ୍କୃତ ମହାଭାରତରେ ନିଧନ ହୋଇଥିବା ପୁତ୍ରମାନଙ୍କର ଶବକୁ ଗାନ୍ଧାରୀ ଦିବ୍ୟ ଚକ୍ଷୁରେ ଦେଖିବାର ବର୍ଣ୍ଣନା ରହିଛି । ଏତଦ୍‌ବ୍ୟତୀତ ମୂଳ ମହାଭାରତରେ ଯୁଧିଷ୍ଠିର ଗାନ୍ଧାରୀଙ୍କ ନିକଟକୁ ଆସିବାର ଖବରପାଇ ସେ ଯୁଧିଷ୍ଠିରଙ୍କୁ ଅଭିଶାପ ଦେବାପାଇଁ ମନ ମଧ୍ୟରେ ସ୍ଥିର କରିଛନ୍ତି । ବେଦବ୍ୟାସ ଗାନ୍ଧାରୀଙ୍କ ମନୋଭାବକୁ ବୁଝିପାରି ଗାନ୍ଧାରୀଙ୍କ ସମୀପରେ ଉପସ୍ଥିତ ହୋଇଛନ୍ତି । ଯୁଦ୍ଧରେ 'ଧର୍ମର ଜୟ, ପାପର କ୍ଷୟ' ହେବା ନିମିତ୍ତ ପୂର୍ବେ ଦୁର୍ଯୋଧନଙ୍କୁ ଆଶୀର୍ବାଦ କରିଥିବା କଥା ଗାନ୍ଧାରୀଙ୍କୁ ସ୍ମରଣ କରାଇ ଦେଇ ବ୍ୟାସ ତାଙ୍କୁ କ୍ରୋଧ ସମ୍ବରଣ କରିବାପାଇଁ ଉପଦେଶ ଦେଇଛନ୍ତି । ମାତ୍ର ଶୋକସନ୍ତପ୍ତା ଗାନ୍ଧାରୀ ବ୍ୟାସଙ୍କ ନିକଟରେ ନିଜ ଦୁଃଖକୁ ପ୍ରକାଶ କରିବା ସମୟରେ ଭୀମ ଅଧର୍ମରେ ଦୁର୍ଯୋଧନ ଓ ଦୁଃଶାସନକୁ ନିହତ କରିଥିବା କଥା ପ୍ରକାଶ କରିଛନ୍ତି । ମାତା ଗାନ୍ଧାରୀଙ୍କ ନିକଟରେ ଭୀମ ପୂର୍ବର ସକଳ ବୃତ୍ତାନ୍ତ ବର୍ଣ୍ଣନା କରି ନିଜ ଭୁଲ ସ୍ୱୀକାର କରିଛି । ଯୁଧିଷ୍ଠିର ମଧ୍ୟ ଗାନ୍ଧାରୀଙ୍କ ପାଦତଳେ ପ୍ରଣାମ କରି ସକଳ ଦୋଷ ସ୍ୱୀକାର କରିଛନ୍ତି । ଗାନ୍ଧାରୀ ଅନ୍ଧପଟଳ ଟେକି ଯୁଧିଷ୍ଠିରଙ୍କ ପାଦକୁ ଟିକିଏ ଚାହିଁ ଦେଇଛନ୍ତି । ସଙ୍ଗେ ସଙ୍ଗେ ଯୁଧିଷ୍ଠିରଙ୍କ ପାଦ ଆଙ୍ଗୁଳିର ନଖଗୁଡ଼ିକ ପୋଡ଼ିଯାଇଛି । ଯୁଧିଷ୍ଠିରଙ୍କର ଏ ଦଶା ଦେଖି ଅର୍ଜୁନ ଶ୍ରୀକୃଷ୍ଣଙ୍କ ପଛପଟେ ଲୁଚିଯାଇଛନ୍ତି । ଗାନ୍ଧାରୀ ପାଣ୍ଡବଙ୍କ ଭୟ ଜାଣିପାରି ସେମାନଙ୍କପ୍ରତି ସଦୟ ହୋଇଛନ୍ତି । ଗାନ୍ଧାରୀ ଏଠାରେ ଦୈବୀଭାବାପନ୍ନ ନାରୀ । ମାତ୍ର ସାରଳା ମହାଭାରତରେ ଗାନ୍ଧାରୀ ସାଧାରଣ ରକ୍ତମାଂସ ଧାରିଣୀ ଏକନାରୀ ଯିଏକି ପୁତ୍ରମାନଙ୍କ ବିନାଶର ପ୍ରତିଶୋଧ ନେବପାଇଁ ଦୃଢ଼ ସଙ୍କଳ୍ପମନା । ମାତ୍ର ଦୁର୍ଭାଗ୍ୟ ବଶତଃ ପାଣ୍ଡବମାନଙ୍କ ଉପରେ ପ୍ରତିଶୋଧ ନେବାକୁଯାଇ ବ୍ରତଧାରିଣୀ ଗାନ୍ଧାରୀ ଏକମାତ୍ର ଜୀବତପୁତ୍ର ଦୁର୍ଦ୍ଦକ୍ଷକୁ ଦହନ କରିଛି । କୌଣସି ମାଆ ପାଇଁ ଏହାଠାରୁବଳି ଦୁଃଖ ହୁଏତ ଆଉକିଛି ନାହିଁ । ସୁତରାଂ ସଂସ୍କୃତ ମହାଭାରତ ଅପେକ୍ଷା ସାରଳା ଦୁର୍ଦ୍ଦକ୍ଷ ଦହନ ପ୍ରସଙ୍ଗଯୋଡ଼ି ମହାକାବ୍ୟକୁ ଅଧିକ ସମ୍ବେଦନଶୀଳ କରିପାରିଛନ୍ତି ।

ପାଣ୍ଡବଙ୍କ ସମେତ ଶ୍ରୀକୃଷ୍ଣ, ଧୃତରାଷ୍ଟ୍ର ଓ ଗାନ୍ଧାରୀ କୁରୁକ୍ଷେତ୍ରକୁ ଗମନ କରିଛନ୍ତି । ଉଭୟ କବିଙ୍କ ଲେଖାରେ କୁରୁକ୍ଷେତ୍ରର ବର୍ଣ୍ଣନା ଅତୀବ କରୁଣ ହୋଇ

ଉଠିଛୁ । କୁରୁ ରମଣୀମାନଙ୍କର ବିଳାପ ଉଭୟ ବ୍ୟାସ ଓ ସାରଳାଙ୍କ ହୃଦୟକୁ ବିଦାରି କରିଥିବା ବେଶ ଉପଲବ୍ଧି ହୁଏ । ଭୀଷ୍ମ ଦ୍ରୋଣ କର୍ଣ୍ଣ ଦୁର୍ଯ୍ୟୋଧନ, ଦୁଃଶାସନ ଅଭିମନ୍ୟୁଙ୍କ ସମେତ ଲକ୍ଷ ଲକ୍ଷ ରାଜା ଓ ସେମାନଙ୍କ ନିହତ ଶରୀର ଦେଖି ଗାନ୍ଧାରୀ ଦୁଃଖାଭିଭୂତ ହୋଇ ପଡ଼ିଛନ୍ତି । ସମସ୍ତଙ୍କୁ ଗୋଟି ଗୋଟି କରି ଦେଖି ସେମାନଙ୍କର ଗୁଣ ବାହୁନି ସେ ଶ୍ରୀକୃଷ୍ଣଙ୍କ ନିକଟରେ କାନ୍ଦି ଉଠିଛନ୍ତି । ତାଙ୍କ ନିକଟରେ ପରଆପଣାର ଭେଦଭାବ ନାହିଁ । ସେଠାରେ ଗାନ୍ଧାରୀ କନ୍ୟା ଭଗିନୀ, ଜାୟା, ମାତା, ସବୁକିଛି । ସେଠି କୁରୁପାଣ୍ଡବଙ୍କ ମଧ୍ୟରେ ଥିବା ଭେଦ ସେ ବୁଝନ୍ତି ନାହିଁ । "ମୋର ଦୁଇ ବଂଶକୁ ତୁ ନାଶକଲୁ" ବୋଲି ଶ୍ରୀକୃଷ୍ଣଙ୍କୁ ଦୋଷାରୋପ କରନ୍ତି । ଶ୍ରୀକୃଷ୍ଣ ଗାନ୍ଧାରୀଙ୍କୁ ପୂର୍ବଦୋଷ ବିଷୟରେ ସୂଚନା ଦେବା ସଙ୍ଗେ ସଙ୍ଗେ ମଧ୍ୟସ୍ଥି ହିସାବରେ ଦୁର୍ଯ୍ୟୋଧନର ସଭାତଳେ ପାଇଥିବା ଲଜ୍ଜାକଥା ସ୍ମରଣ କରାଇ ସେ କହନ୍ତି—

"ଯେ ଯାହାର କଲା କର୍ମ ବୁଝିବ ସେ ଆନ
ସେମାନେ ନ କଲେ କର୍ମେ ବିଦୂରବଚନ ।
ସେ ବେଳର କଥା ନ ପଶିଲା ତୋର କର୍ଣ୍ଣେ ।
ଏବେକେ ଶୋକାକାନ୍ଦିପାଇଁ କରୁ ଦେଖା ମନେ ।
× × × ×
ଶ୍ରୀକୃଷ୍ଣ ବୋଇଲେ ସଭାରେ ମୁହିଁ ପାଇଲି ହାଦେ ବଡ଼ ଲାଜ
ତେଣୁ ଏତ କରାଇଲି ଗୋ ପାଣ୍ଡବଙ୍କରେ କାର୍ଯ୍ୟ ।"

ଶ୍ରୀକୃଷ୍ଣଙ୍କ ମୁଖରୁ ଏପରି ବାକ୍ୟ ଶୁଣି ଗାନ୍ଧାରୀ ବିଶ୍ୱନିୟନ୍ତା ପ୍ରଭୁ ଶ୍ରୀକୃଷ୍ଣଙ୍କୁ ମହାଭାରତ ଯୁଦ୍ଧର ସୃଷ୍ଟିକର୍ତ୍ତା ରୂପେ ଦୋଷାରୋପ କରି ତାଙ୍କୁ ଅଭିଶାପ ଦେବାକୁ ପଶ୍ଚାଦପଦ ହୋଇ ନାହାଁନ୍ତି । କବି ସାରଳାଙ୍କ ଭାଷାରେ –

"ଶୁଣିଣ ବଇକ୍ତେଂ ଯେ ବୋଇଲେ ଗାନ୍ଧାରୀ
ତୁହି ସେ ନାଶ କଲୁ ବଂଶଯାକ ଦେବହରି ।
ଆନକଇଁ ଦୋଷତ ମୁଁ କୁଆରଇ ଦେଇ
ବେନିବଂଶ ଅନ୍ୟୋନ୍ୟ ଅନ୍ତ କରାଇଲୁ ତୁହି ।
× × × ×
ତୋହୋର ଧ୍ୟାନେ ନାଶ ଗଲାଟି ମୋର ବଂଶ
ଶୁଣ କୃଷ୍ଣ ଏହିମତେ ହେଉ ତୋହର ବଂଶନାଶ ।
ହେବ ସୋଦରେ ଯେ ଅନ୍ୟୋନ୍ୟ ଅନ୍ତ କରାଉ
ଯେହ୍ନମତ ତୋହ ବଂଶ ନାଶଯାଉ ।"

ସଂସ୍କୃତ ଓ ସାରଳା ଉଭୟ ମହାଭାରତରେ ଗାନ୍ଧାରୀ ଭୀରୁ ନୁହଁନ୍ତି ଏପରିକି ସୃଷ୍ଟିକର୍ତ୍ତା ଶ୍ରୀକୃଷ୍ଣଙ୍କୁ ଅଭିଶାପ ଦେବାକୁ ସେ ଟିକେ ହେଲେ କୁଣ୍ଠାବୋଧ କରନ୍ତିନାହିଁ ।

ସଂସ୍କୃତ ମହାଭାରତରେ ଗାନ୍ଧାରୀ ଶତପୁତ୍ରବତୀ, ମହାସୌଭାଗ୍ୟବତୀ, ଦେବୀ ତୁଲ୍ୟା । ଧୂଳିଧୂସରିତ ପୃଥିବୀର ସାଧାରଣ ନାରୀ ସାଙ୍ଗରେ ତାଙ୍କର ପରିଚୟ ଥିଲାପରି ମନେ ହୁଏ ନାହିଁ—ମାତ୍ର ସାରଳାଙ୍କ ଲେଖନୀରେ ସେ ଜଣେ ସାଧାରଣ ନାରୀ ଯାହାର କ୍ରୋଧ ଅଛି, ଦ୍ୱେଷ ଅଛି, ହିଂସା ଅଛି, ସ୍ୱାର୍ଥପରତା ଅଛି; ମାତ୍ର ତା ସହିତ ଦୟା, କ୍ଷମା ଓ ଭଲପାଇବା ମଧ୍ୟ ଅଛି । ଦୋଷ ଓ ଗୁଣର ସେ ଏକ ମଧୁର ସମନ୍ୱୟ । ସୁତରାଂ ସାରଳାଙ୍କ ଗାନ୍ଧାରୀ ଆମର ଅତି ଆପଣାର ଓ ଅତି ପରିଚିତ ପରି ।

ଏତଦ୍‌ବ୍ୟତୀତ ସଂସ୍କୃତ ମହାଭାରତରେ ଯୁଧିଷ୍ଠିର କୁରୁକ୍ଷେତ୍ର ରଣାଙ୍ଗନାରେ ନିହତ ବୀରମାନଙ୍କ ନିମିତ୍ତ ଜଳ ଓ ତିଳ ତର୍ପଣ କରିଥିବା ଉଲ୍ଲେଖ ଅଛି । ମାତ୍ର ସାରଳାଙ୍କ ମହାଭାରତରେ ଏହି ବର୍ଣ୍ଣନା ପରିଲକ୍ଷିତ ହୁଏ ନାହିଁ ।

ସାରଳା ଓ ବ୍ୟାସଙ୍କ ନାରୀପର୍ବକୁ ଅନୁଧ୍ୟାନ କଲେ ମୁଖ୍ୟ କଥାବସ୍ତୁରେ ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ମାତ୍ର ଯେଉଁ କେତେକ ପାର୍ଥକ୍ୟ ଆମର ଦୃଷ୍ଟିଗୋଚର ହୁଏ ତାହା ଉପରେ ଆଲୋଚନା ହୋଇସାରିଛି । କିନ୍ତୁ ଉଭୟଙ୍କ ବର୍ଣ୍ଣନା ବର୍ଣ୍ଣାଢ୍ୟ, ସ୍ୱତନ୍ତ୍ର । ନାରୀପର୍ବର ଛନ୍ଦେ ଛନ୍ଦେ ବିଳାପର ଧ୍ୱନି ଦେଖିବାକୁ ମିଳେ । ତେଣୁ ଏହି ପର୍ବଟି 'ଶୋକପର୍ବ' ନାମରେ ଅଭିହିତ ହେବାର ଯଥାର୍ଥତା ଯଥେଷ୍ଟ ଅଛି । ସାରଳାଙ୍କ 'ନାରୀପର୍ବ' ବ୍ୟାସଙ୍କ ନାରୀପର୍ବର ଭାଷାନ୍ତର ନ ହେଲେ ମଧ୍ୟ ଉଭୟଙ୍କର ସାରମର୍ମ ପ୍ରାୟ ଏକ ।

—*—

# ଶାନ୍ତିପର୍ବ

## ପ୍ରଫେସର ଡ଼ଃ ଗୋପାଳଚନ୍ଦ୍ର ମିଶ୍ର

---

ମୂଳସଂସ୍କୃତ ମହାଭାରତର ଦ୍ୱାଦଶ ପର୍ବ ଶାନ୍ତିପର୍ବ । ସାରଳା ମହାଭାରତରେ ଚତୁର୍ଦ୍ଦଶ ପର୍ବ ହେଉଛି ଶାନ୍ତିପର୍ବ । ମୂଳରେ ଶାନ୍ତିପର୍ବ ଓ ଆଶ୍ରମିକ ପର୍ବକୁ ମିଶାଇ ସାରଳାଙ୍କର ଶାନ୍ତି ପର୍ବ ରଚିତ । ସାରଳା ମହାଭାରତ ପ୍ରାଚୀନ ଓଡ଼ିଆ ସାହିତ୍ୟର ପ୍ରଭାବଶାଳୀ ଏବଂ ଜାତୀୟ ମହାକାବ୍ୟ ବୋଲି ସ୍ୱୀକୃତ ଏବଂ ସେହି ମହାକାବ୍ୟର ଶ୍ରେଷ୍ଠ ଆଲେଖ୍ୟ ଏବଂ ତାତ୍ପର୍ଯ୍ୟପୂର୍ଣ୍ଣ ପର୍ଯ୍ୟାୟ ହେଉଛି ଶାନ୍ତିପର୍ବ । ମହାଭାରତର ସର୍ବାପେକ୍ଷା କେନ୍ଦ୍ରିକ ଏବଂ ସିଦ୍ଧାନ୍ତକାରୀ ଚରିତ୍ର ହେଉଛନ୍ତି ପିତାମହ ଭୀଷ୍ମ ଏବଂ ସେହି ଭୀଷ୍ମ ଶରଶଯ୍ୟାଶାୟୀ ହୋଇ ଜଗତର ନ୍ୟାୟ ବିଚାର ପ୍ରତିଷ୍ଠା ପାଇଁ ସଂଗ୍ରାମ ବ୍ୟାପୃତ ଥିବା ପାଣ୍ଡବମାନଙ୍କୁ ରାଜଧର୍ମ ସମ୍ବନ୍ଧୀୟ ଉପଦେଶ ପ୍ରଦାନ କରିଛନ୍ତି । ମହାଭାରତରେ ଭୀଷ୍ମ ଏକ ମହନୀୟ ଚରିତ୍ର । ସୋମବଂଶୀରାଜା ଶାନ୍ତନୁଙ୍କ ଔରସରେ ଗଙ୍ଗାଙ୍କ ଗର୍ଭରୁ ସେ ସମ୍ଭୂତ । ଭୀଷ୍ମଙ୍କର ସେଥିପାଇଁ ଅନ୍ୟନାମ ଗାଙ୍ଗେୟ । ଠିକ୍ ଜନ୍ମପରେ ଗଙ୍ଗା ତାଙ୍କର ସ୍ୱଭାବ ବଶତଃ ପୂର୍ବପୁତ୍ରମାନଙ୍କ ସଦୃଶ ଅସ୍ୱଧର ଭୀଷ୍ମଙ୍କୁ ହତ୍ୟା କରିବା ପାଇଁ ଉଦ୍ୟତ ହୁଅନ୍ତେ ଶାନ୍ତନୁ ବିମର୍ଷ ଏବଂ ବିରକ୍ତିରେ ତାଙ୍କୁ ଗାଙ୍ଗୀ ବୋଲି ସମ୍ବୋଧନ କରିଥିଲେ । ଗଙ୍ଗା ଏକ ଦୁର୍ଦ୍ଦମନୀୟ ଚରିତ୍ର । ସେ ସ୍ୱାମୀ ଶାନ୍ତନୁଙ୍କୁ ପରିତ୍ୟାଗକରି ଶିବଙ୍କ ନିକଟକୁ ପ୍ରସ୍ଥାନ କରିଥିଲେ, ଏବଂ ଶାନ୍ତନୁ ଯେବେ ପ୍ରଶ୍ନକଲେ—

'ସେବେ ଯେ ଜାତକଲୁ ବାଳୁତ ପୁତ୍ରଗୋଟି
କେମନ୍ତେ ବଢ଼ିବ ସେ ନପାଇଲେ କ୍ଷୀର ଫୁଟି ।'

(ଆଦିପର୍ବ ୧ମ ଖଣ୍ଡ–ପୃ–୪୦

ଗଙ୍ଗା ସେତେବେଳେ ଉତ୍ତର ଦେଇଥିଲେ—

''ଖାଇଲେ ଖାଉ ମଲେ ମରୁ ମୋର କିସ ଗଲା ।'

ଜନନୀ ଗଙ୍ଗାଙ୍କର ଏ ଉକ୍ତି ଅନୁଯାୟୀ ଭୀଷ୍ମ ଇଚ୍ଛାମୃତ୍ୟୁର ଅଧିକାରୀ ହୋଇପାରିଥିଲେ । ଭୀଷ୍ମ ବେଦବେଦାଙ୍ଗ ପ୍ରଭୃତି ଅଧ୍ୟୟନ କରି ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ । ଶାନ୍ତନୁ ଗଙ୍ଗାଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେବାପରେ ଚିତ୍ରପ୍ରତିମା ଆଲିଙ୍ଗନ କରି ଚିତ୍ରାଙ୍ଗଦ ଏବଂ ବିଚିତ୍ରବୀର୍ଯ୍ୟ ନାମକ ଦୁଇପୁତ୍ର ଜାତ କରିଥିଲେ । ମାତ୍ର ଗଙ୍ଗାଙ୍କ ପ୍ରତି

ଉସ୍ଥ ଥିଲା । ସେ କେଣୁ ଏହି ଦୁଇପୁତ୍ରଙ୍କୁ ଗଙ୍ଗାଙ୍କଠାରୁ ଲୁଚ୍ଛାଇ ରଖିଥିଲେ । ପରେ ଗଙ୍ଗା ଏହି ଦୁଇପୁତ୍ରଙ୍କର ପଣ୍ଡିତମୂର୍ଖପାଇଁ ସେମାନେ ନିଃସନ୍ତାନ ହେବେ ବୋଲି ଅଭିଶାପ ଦେଲେ । ପଶ୍ଚିମାଞ୍ଚଳରେ ବଂଶରକ୍ଷାର୍ଥେ ଭୀଷ୍ମ ରାଜା ପଦ୍ମନାଭଙ୍କ ଅମ୍ବାକନ୍ୟାଙ୍କୁ ବିବାହ କରିବାପାଇଁ ବ୍ୟବସ୍ଥା ଦେଲେ । ଭୀଷ୍ମ ବରବେଶରେ ପିତା ଶାନ୍ତନୁଙ୍କ ଆଶୀର୍ବାଦ ଭିକ୍ଷା କରିବାକୁ ଯାଇ ଲକ୍ଷ୍ୟ କରିଥିଲେ ପିତାଙ୍କ ଚକ୍ଷୁଦ୍ୱୟ ଅଶ୍ରୁପ୍ଲାବିତ । ତାଙ୍କ ମୁଖରେ ବିଷାଦର ଛାୟା । ପିତାଙ୍କର ଏହି ମନୋଭାବ ଜାଣିପାରି ଭୀଷ୍ମ ଏହାର କାରଣ ଜିଜ୍ଞାସା କରିଥିଲେ । ଶାନ୍ତନୁ ନିଜ ପୁତ୍ର ସମକ୍ଷରେ ନିଜର ମନୋବେଦନା ଜଣାଇଲେ । ଶାନ୍ତନୁପର୍ବର କେନ୍ଦ୍ରିକ ଚରିତ୍ର ଭୀଷ୍ମଙ୍କର ଆଲେଖ୍ୟ ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ—

ବାବୁ ରେ ଯେବେ ବିଭାରେ ହୋଇବୁ ନନ୍ଦନ
ଅବଶ୍ୟ ପୁତ୍ର ଯେ ତୋହର ହୋଇବ ଉତପନ୍ନ
ବାବୁ ତୋହର ମାତା ଯେ ଶାପ ଦେଇଅଛି ମୋତେ
ଅବଶ୍ୟ ଶିରଚ୍ଛେଦନ ହୋଇବ ତୋହର ପୁତ୍ରଙ୍କର ହାତେ ।''

ଆଦିପର୍ବ

ପିତାଙ୍କର ଏତାଦୃଶ ଗୁରୁତ୍ୱପୂର୍ଣ୍ଣ ସଂକେତ ଶୁଣିନାମାତେ ଭୀଷ୍ମ ଆଜୀବନ ବ୍ରହ୍ମଚର୍ଯ୍ୟ ରହିବାପାଇଁ ପ୍ରତିଜ୍ଞା କରିଥିଲେ । ସେଥିପାଇଁ 'ଭୀଷ୍ମଙ୍କ ପ୍ରତିଜ୍ଞା' ବୋଲି ଏକ ପୌରାଣିକ ଆଖ୍ୟା ଆମ ସଂସ୍କୃତିରେ ପ୍ରଚାରିତ ହୋଇଛି । ଭୀଷ୍ମଙ୍କର ପ୍ରତିଜ୍ଞାର ସ୍ୱରୂପ ଏହିପରି—

ପୁତ୍ର ସେ ରକ୍ଷା ଯେ କରଇ ନିଜ ବଂଶ
ମୋହର ପୁତ୍ରରେ ଯେବେ ଶାନ୍ତନୁ ପ୍ରାପ୍ତେ ପିତା ଯିବେ ନାଶ ।
ଆବର ବିଭାଯୋଗେ ମୋର କିସ ପ୍ରୟୋଜନ ।
ଛାଡ଼ିଲେ ମାୟା ମୋତେ ନୋହୁ ଯେ ସନ୍ତାନ ।
ତାହାଣ ବ୍ରତେକ ଶପ୍ତେ ଓଳନ୍ଦନ ହୋଇ ।
ଦାଗ ସଂଘନରେ ଭୀଷ୍ମେ ସଂକଳ୍ପ କରଇ ।

ଶରୀରେ ଅସ୍ପୃଷ୍ଟ ଥାଇଁ ମୋହର ଯେତେକ କାଳପର୍ଯ୍ୟନ୍ତେ
ସତ୍ୟ ସତ୍ୟ ତିନିବାର ସତ୍ୟ ଅଲଂଘିତ ନିୟମ ଅଛି ମୋତେ ।
ଯେତୁ ଯେତୁ ଭାର୍ଯ୍ୟା ପୁତ୍ର ସନ୍ତାନ ହିଁ ପଛେ ଯେତୁ
ଯେମନ୍ତେ ଶାପ୍ୟେନନ୍ତୁ ମୋର ତର ଆସୁ ଉତ୍ତ ।

(ଆଦିପର୍ବ-ପ୍ରଥମଖଣ୍ଡ)

ଏହାପରେ ଭୀଷ୍ମ ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଥିଲେ । ଫଳରେ କ୍ଷୁବ୍ଧାଚିତା ଅମ୍ବାକୁ ଶାଳ୍ୱ, ବୀରବାହୁ ଜଣ ଜଣ କରି ଭୀଷ୍ମଙ୍କ ଉପରେ ପ୍ରତ୍ୟାଖ୍ୟାନ କରିଥିଲେ ।

ପ୍ରତ୍ୟାଖ୍ୟାତା ଅମ୍ବା ପିତାଙ୍କ ସୂଚନା କ୍ରମେ ଭୀଷ୍ମଙ୍କ ନିକଟରେ ଉପସ୍ଥିତ ହେଲେ । ମାତ୍ର ପ୍ରତିଜ୍ଞାବଦ୍ଧ ଭୀଷ୍ମ ଅମ୍ବାଙ୍କ ପ୍ରତି ବିରକ୍ତିରେ ଲାଞ୍ଛନା ପ୍ରୟୋଗ କରିଥିଲେ । ଭୀଷ୍ମଙ୍କ ଦ୍ୱାରା ଅପମାନିତା ଅମ୍ବା ଗୁରୁ ପର୍ଶୁରାମଙ୍କ ଶରଣାପନ୍ନ ହେଲେ । ପର୍ଶୁରାମ ଭୀଷ୍ମଙ୍କୁ ଅମ୍ବାଙ୍କୁ ପତ୍ନୀରୂପେ ଗ୍ରହଣ କରିବାଲାଗି ଅନୁରୋଧ କରିଥିଲେ । ତଥାପି ଭୀଷ୍ମ ତାଙ୍କ ପ୍ରତିଜ୍ଞାରେ ଅବିଚଳିତ ପରି ପର୍ଶୁରାମଙ୍କ ଅନୁରୋଧକୁ ମଧ୍ୟ ଉପେକ୍ଷା କରିଥିଲେ । ଏହି ସମଗ୍ର ନାଟକୀୟ ଘଟଣାପରେ ଅମ୍ବା ଅନନ୍ୟୋପାୟ ହୋଇ ନୈରାଶ୍ୟରେ ପ୍ରୟାଗ କ୍ଷେତ୍ରରେ ମାଧବଙ୍କୁ ଆରାଧନା କରିଥିଲେ ଏବଂ ଭୀଷ୍ମଙ୍କୁ ଜନ୍ମେ ଜନ୍ମେ ସଂହାର କରିବାଲାଗି ପ୍ରାର୍ଥନାରେ ବ୍ୟାପୃତ ରହି ଶେଷରେ ଆତ୍ମ ବିସର୍ଜନ କରିଥିଲେ । ଅମ୍ବାଙ୍କର ଏହି ଅଭିଶାପ ଭୀଷ୍ମଙ୍କ ଜୀବନ ନାଟକରେ ଅନେକ ପ୍ରତିହିଂସା ସୃଷ୍ଟି କରିଥିଲା । କାରଣ ଅମ୍ବାଙ୍କର ଅଭିଶାପ ଜର୍ଜରିତ ଭୀଷ୍ମ ମହାଭାରତ ଯୁଦ୍ଧରେ ଶିଖଣ୍ଡୀରୂପୀ ଅମ୍ବାଙ୍କ ଦର୍ଶନରେ ଶରତ୍ୟାଗ କରି ମୃତ୍ୟୁପର୍ଯ୍ୟନ୍ତ ଶରଶଯ୍ୟାସୀନ ହୋଇଥିଲେ । ଏହି ପ୍ରସଙ୍ଗ ସଂସ୍କୃତ ମହାଭାରତରେ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ପରିପ୍ରେକ୍ଷୀରେ ବର୍ଣ୍ଣିତ ହୋଇଅଛି । ରାଜା ଶାନ୍ତନୁ ଏକଦା ଯମୁନା ନଦୀ ତଟରେ ବିହାର କରୁଥିବା ସମୟରେ ଅପୂର୍ବ ସୁନ୍ଦରୀ ଦାସରାଜ କନ୍ୟା ସତ୍ୟବତୀଙ୍କୁ ନୌକାଚାଳନା କରିବାର ଦେଖି ତାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କ ପ୍ରତି ଆସକ୍ତ ହୋଇଥିଲେ ଏବଂ ତାଙ୍କୁ ବିବାହ କରିବାଲାଗି ପ୍ରସ୍ତାବ କଲେ । ସତ୍ୟବତୀଙ୍କର ପିତା ରାଜାଙ୍କର ପ୍ରସ୍ତାବରେ ଆନନ୍ଦିତ ହେଲେ ସତ୍ୟ ମାତ୍ର ସେ କନ୍ୟା ପ୍ରଦାନ କରିବା ନିମିତ୍ତ ଗୋଟିଏ ସର୍ତ୍ତ ରଖିଥିଲେ । ସର୍ତ୍ତଟି ହେଲା— ସତ୍ୟବତୀଙ୍କ ପୁତ୍ରହିଁ ଶାନ୍ତନୁଙ୍କ ପରେ ସୋମବଂଶର ସିଂହାସନ ଅଧିକାରୀ ହେବ । ଶାନ୍ତନୁ ଏକ ସମସ୍ୟାର ସମ୍ମୁଖୀନ ହେଲେ, କାରଣ ସେ ପୁତ୍ର ଭୀଷ୍ମପ୍ରତି ବିଶେଷ ଆକୃଷ୍ଟ ଥିଲେ । ମାତ୍ର ଭୀଷ୍ମ ପିତା ଶାନ୍ତନୁଙ୍କର ମନୋବେଦନାର କାରଣ ବୁଝିପାରି ସଙ୍ଗେ ସଙ୍ଗେ ଦାସରାଜାଙ୍କର ଦ୍ୱାରସ୍ଥ ହେଲେ ଏବଂ ପିତାଙ୍କ ଅନ୍ତେ ସେ କଦାପି ରାଜସିଂହାସନ ଦାବୀ କରିବେ ନାହିଁ ବୋଲି ପ୍ରତିଜ୍ଞା କଲେ ଏବଂ କାଳେ ସେ ବିବାହ କଲେ ତାଙ୍କର ପୁତ୍ରମାନେ ସିଂହାସନ ପାଇଁ ପ୍ରାର୍ଥୀ ହେବେ ସେହି ଆଶଙ୍କାରେ ମଧ୍ୟ ପ୍ରତିଜ୍ଞା କଲେ ଯେ ସେ ଆଜୀବନ ବ୍ରହ୍ମଚାରୀ ରହିବେ । ଶାନ୍ତନୁ ଏବଂ ସତ୍ୟବତୀଙ୍କର ବିବାହ ସମ୍ପାଦିତ ହୋଇଥିଲା ଏବଂ ପୁତ୍ର ଭୀଷ୍ମଙ୍କର ଏତାଦୃଶ ନିଃସ୍ୱାର୍ଥପରତାରେ ଅଭିଭୂତ ହୋଇପଡ଼ିଥିଲେ । ରାଜର୍ଷି ଶାନ୍ତନୁ ଭୀଷ୍ମଙ୍କୁ ବର ପ୍ରଦାନ କରିଥିଲେ ଯେ ତାଙ୍କର ସ୍ୱଚ୍ଛନ୍ଦ ମୃତ୍ୟୁ ହେବ । ସେହି ଶାନ୍ତନୁ ଏବଂ ସତ୍ୟବତୀଙ୍କ ଔରସରେ ଜାତ ଚିତ୍ରବୀର୍ଯ୍ୟ ଏବଂ ବିଚିତ୍ରବୀର୍ଯ୍ୟଙ୍କର ପ୍ରସଙ୍ଗ ମଧ୍ୟ ଏକ ଅସମାପିକା ନାଟକର ଏକ ଏକ ଦୃଶ୍ୟ ବୋଲି ପ୍ରତୀତ ହୁଏ । ଅବିବାହିତ ଅବସ୍ଥାରେ ପ୍ରଥମେ ଚିତ୍ରବୀର୍ଯ୍ୟ ଏବଂ ଦ୍ୱିତୀୟରେ ବିଚିତ୍ରବୀର୍ଯ୍ୟ ବିବାହିତ ଅବସ୍ଥାରେ ଇହଲୀଳା ସାଙ୍ଗ କରିଥିଲେ । ଏହା ଫଳରେ ସୋମବଂଶ ଲୋପ ପାଇବାକୁ ବସିଲା । ସତ୍ୟବତୀ ଏହାପରେ ପରାଶରଙ୍କ ସହିତ

ପରାମର୍ଶ କରି ଅମ୍ବିକା ଓ ଅମ୍ବାଳିକାଙ୍କ ସହବାସରେ ପୁତ୍ର ଉତ୍ପନ୍ନ କରାଇବା ପାଇଁ ଭୀଷ୍ମଙ୍କୁ ଅନୁରୋଧ କଲେ । ମାତ୍ର ପିତୃଭକ୍ତ ଭୀଷ୍ମ ନିଜ ପ୍ରତିଜ୍ଞାରେ ଅଟଳ ଏବଂ ଅବିଚଳିତ ରହିଥିଲେ । ଭୀଷ୍ମ ହିଁ ମହାଭାରତର ସମସ୍ତ ଘଟଣାପ୍ରବାହର ଏକ ପ୍ରଭାବଶାଳୀ ଚରିତ୍ର । ସେ ଥିଲେ କୁରୁପାଣ୍ଡବଙ୍କ ପିତାମହ । ସେ କୁରୁପାଣ୍ଡବଙ୍କର ଅସ୍ତ୍ରଶିକ୍ଷା ପାଇଁ ପ୍ରଥମେ କୃପାଚାର୍ଯ୍ୟ ଏବଂ ପରେ ଦ୍ରୋଣାଚାର୍ଯ୍ୟଙ୍କୁ ଗୁରୁରୂପେ ବରଣ କରିଥିଲେ । ମାତ୍ର ଘଟଣାର ବିଚିତ୍ର ଜଟିଳତା ମଧ୍ୟରେ କୁରୁପାଣ୍ଡବଙ୍କର ଶତ୍ରୁତା ଆରମ୍ଭ ହେଲା । ସେମାନଙ୍କ ମଧ୍ୟରେ ଶାନ୍ତି ପ୍ରତିଷ୍ଠା ଏବଂ ସମସ୍ୟାର ସମାଧାନ ପାଇଁ ଭୀଷ୍ମ କମ ଉଦ୍ୟମ କରିନଥିଲେ । ଶେଷରେ ଭୀଷ୍ମ କୌରବମାନଙ୍କର ସମର୍ଥକ ରୂପେ ଆବିର୍ଭୂତ ହେଲେ । ତଥାପି ପାଣ୍ଡବମାନଙ୍କ ପ୍ରତି ତାଙ୍କର ସ୍ନେହ ଶ୍ରଦ୍ଧାର ଅଭାବ ନଥିଲା । ସେ ବରାବର ଅହଂକାରୀ କୌରବମାନଙ୍କୁ ଧର୍ମ ପଥରୁ ବିଚ୍ୟୁତ ହେବାଲାଗି ପରାମର୍ଶ ଦେଇଛନ୍ତି ଏବଂ କୁରୁ ସଭାରେ ଦ୍ରୌପଦୀଙ୍କୁ ବିବସନ କରିବା ସମୟରେ ସେ ବ୍ୟଥିତ ଏବଂ ମର୍ମାହତ ହୋଇଥିଲେ । ପାଣ୍ଡବମାନଙ୍କର ଶୌର୍ଯ୍ୟ ବୀର୍ଯ୍ୟ ଏବଂ ନ୍ୟାୟ ପରାୟଣତା ଭୀଷ୍ମଙ୍କୁ ବରାବର ଅଭିଭୂତ କରିଥିଲା । ଉଭୟ କୌରବ ଏବଂ ପାଣ୍ଡବମାନଙ୍କୁ ଯୁଦ୍ଧରୁ ନିବୃତ୍ତ ହେବାପାଇଁ ସେ ସତ୍ ଉପଦେଶ ଦେଇଥିଲେ । ମାତ୍ର ଅହଂକାରୀ, ଉଦ୍ଧତ, ସ୍ୱାର୍ଥପର କୌରବମାନେ ଯୁଦ୍ଧଂ ଦେହି ଡାକ ଦେଲେ । ପାଣ୍ଡବମାନେ କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ ଧର୍ମାନୁମୋଦିତ ପନ୍ଥାର ଆଶ୍ରୟ ନେଇଥିଲେ । ଭୀଷ୍ମ କୌରବମାନଙ୍କର ସମର୍ଥକ, ତଥାପି ଯୁଦ୍ଧର ଅବ୍ୟବହିତ ପୂର୍ବରୁ ପରଂପରା ସୂତ୍ରରେ ପାଣ୍ଡବ ଭ୍ରାତାଗଣ ପିତାମହ ଭୀଷ୍ମଙ୍କ ଠାରୁ ଆଶୀର୍ବାଦ ଭିକ୍ଷା କରିଥିଲେ । ଭୀଷ୍ମ ପାଣ୍ଡବମାନଙ୍କୁ କଲ୍ୟାଣ କଲେ ଏବଂ ଭୀଷ୍ମଙ୍କର ଆଶୀର୍ବାଣୀ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ —

ଭୀଷ୍ମେ ବୋଇଲେ ତୋର ମନବାଞ୍ଛା ସିଦ୍ଧ ହୋଉ
ଆମ୍ଭର ଆଶୀ ଯେବେ ବୃଥା ଶତ୍ରୁ କ୍ଷୟେ ଯାଉ
ହସ୍ତିନା, ଜଇନ୍ତା, ଇନ୍ଦ୍ରପ୍ରସ୍ଥ, ଯମପ୍ରସ୍ଥ ବାରୁଣାବନ୍ତ
ଯେ ପଞ୍ଚ କଟକେ ହୁଅରୁ ଏକଛତ୍ର ।"

(ଭୀଷ୍ମପର୍ବ)

ନିଜ ପକ୍ଷ ରକ୍ଷାକରିବାପାଇଁ ଯୁଧିଷ୍ଠିରଙ୍କୁ ଉପଦେଶ ଦେଇ ସେ ଦଶଦିନ ପରେ ଶିଖଣ୍ଡି ଦର୍ଶନରେ ଶରତ୍ୟାଗ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ମହାଭାରତ ଯୁଦ୍ଧରେ ପ୍ରଥମ ଦଶଦିନ ମହାବୀର ଭୀଷ୍ମ କୌରବ ସେନାଙ୍କର ସେନାପତି ରୂପେ ଅବତୀର୍ଣ୍ଣ ହୋଇଥିଲେ । ଦଶଦିନ ପରେ ଶିଖଣ୍ଡୀ ଦର୍ଶନରେ ଭୀଷ୍ମ ଶରତ୍ୟାଗ କଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ଶରଶଯ୍ୟା କରିଥିଲେ । ଶାନ୍ତି ପର୍ବରେ ସେହି ଭୀଷ୍ମ ହିଁ ନୀତିବାକ୍ୟର ପ୍ରବକ୍ତା ରୂପେ ପ୍ରତିଷ୍ଠିତ ।

ଆଲୋଚ୍ୟ ଶାନ୍ତିପର୍ବର ସଂକ୍ଷିପ୍ତସାର ହେଉଛି—ମହାଭାରତ ଯୁଦ୍ଧର ପରିସମାପ୍ତି ଧୃତରାଷ୍ଟ୍ରଙ୍କ ଗହଣରେ ଯୁଧିଷ୍ଠିରଙ୍କର ଶୋକୋଚ୍ଛ୍ୱାସ—ରାଜତ୍ୱ ପାଇଁ ତାଙ୍କର ଅନିଚ୍ଛା—ଶ୍ରୀକୃଷ୍ଣ ଏବଂ ଭାଇମାନଙ୍କର ବହୁତ ବୁଝାଇବାପରେ ଯୁଧିଷ୍ଠିରଙ୍କର ହସ୍ତିନା ଗମନ,—ଉତ୍ତରାୟଣ ଅପେକ୍ଷାରେ ଭୀଷ୍ମଙ୍କର ଜୀବନ ଧାରଣ—, ଶ୍ରୀକୃଷ୍ଣଙ୍କ ଅନୁରୋଧକ୍ରମେ ଯୁଧିଷ୍ଠିରଙ୍କୁ ରାଜଧର୍ମ ପ୍ରଭୃତି ନୀତି ବ୍ୟାଖ୍ୟାନ ପାଇଁ ଭୀଷ୍ମଙ୍କର ସେହି ଉପଦେଶାବଳୀର ତାତ୍ପର୍ଯ୍ୟ—ଭୀଷ୍ମଙ୍କର ଦେହତ୍ୟାଗ—ଦୁର୍ବାଶାଙ୍କର ଅଭିଶାପ—ଶାମ୍ବ ରୋଗଗ୍ରସ୍ତ—ଚନ୍ଦ୍ରଭାଗାଠାରେ ତାଙ୍କର ତପସ୍ୟା ଏବଂ ରୋଗମୁକ୍ତ—ସାରଳା ମହାଭାରତରେ ଶାନ୍ତିପର୍ବରେ ଶାମ୍ବଙ୍କ ଶାପମୁକ୍ତ ଘଟଣା ମୂଳ ଭାରତରେ ନଥିବାର ଜଣାଯାଏ

ଶାନ୍ତି ପର୍ବର ବିଶଦ୍ ଅନୁଶୀଳନ ମଧ୍ୟ ଏଠାରେ ଉଲ୍ଲେଖଯୋଗ୍ୟ—ପାଣ୍ଡବଙ୍କର ଭୀଷ୍ମଙ୍କ ନିକଟକୁ ଗମନ ଓ ନୀତିବାକ୍ୟ ଶ୍ରବଣ—

ବଇବସ୍ୱତ ମନୁ ରାଜା ଅଗସ୍ତିଙ୍କ ପଦ ପୂଜାକରି ଶାନ୍ତି ପର୍ବର ବିଷୟବସ୍ତୁ ଜାଣିବାକୁ ଇଚ୍ଛା କରିବାରୁ ବ୍ରହ୍ମବେତ୍ତା ଅଗସ୍ତି ଶ୍ରୀକୃଷ୍ଣଙ୍କ ସହିତ ପଞ୍ଚପାଣ୍ଡବଙ୍କ କଥା କହିବା ଆରମ୍ଭ କଲେ । ଭୀଷ୍ମଙ୍କ ଶରଶଯ୍ୟା ନିକଟକୁ ଯୁଧିଷ୍ଠିର ଯିବାରୁ ଭୀଷ୍ମ ଦୁଇ ଚକ୍ଷୁ ଖୋଲି ଯୁଧିଷ୍ଠିରଙ୍କ ମୁଖମଣ୍ଡଳକୁ ଲକ୍ଷ୍ୟ କରି ଏବେ ନିଷ୍କଣ୍ଟକ ରାଜ୍ୟଭୋଗ କର ବୋଲି କହି ଧର୍ମରାଜଙ୍କର ଆସିବାର କାରଣ ଜିଜ୍ଞାସା କଲେ । ପାଣ୍ଡବମାନେ ଭୀଷ୍ମଙ୍କୁ କୁରୁକୁଳର ମୁଖ୍ୟ ପୁରୁଷ ରୂପେ ସମ୍ବୋଧନ କରି କହିଲେ ଆମ୍ଭମାନଙ୍କର ହିତପାଇଁ ତୁମେ ଜୀବନ ଦେଲ । ସମ୍ମୁଖ ଯୁଦ୍ଧରେ ତୁମପରି ଯୋଦ୍ଧାକୁ କିଏ ଜିଣିବ ? ହେ ଭୀଷ୍ମ ଦେବ ! ଆମ୍ଭମାନଙ୍କୁ ତୁମେ ସର୍ବଦା ଦୟା ଦେଖାଇ ଆସିଛ । ଏହା ପ୍ରଥମ ଦିନର ଶତ୍ରୁ ମାରି ପଶୁକଣ୍ଟକରେ ରାଜା ହେବା କଥାରୁ ଜଣାଯାଏ । ଏକଥା ଶୁଣିବା ପରେ ଭୀଷ୍ମ କହିଲେ ହେ ଧର୍ମସୁତ ! ଏଥର ନିଷ୍କଣ୍ଟକ ରାଜ୍ୟ ଶାସନ କର । ଶ୍ରୀକୃଷ୍ଣ ତୁମର ସହାୟ ଥିବାରୁ କିଛି ଭୟ ନାହିଁ ଏବଂ କୌରବକୁଳ ନାଶ ହୋଇଥିବାରୁ ଆଉ କିଛି ଚିନ୍ତା ନାହିଁ । ଏବେ ରାଜ୍ୟ ପାଳନ କରିବା ତୁମର କର୍ତ୍ତବ୍ୟ । ସର୍ବଦା ଧର୍ମକୁ ଆଦରି କାର୍ଯ୍ୟ କରିବ । ଅଧର୍ମକୁ ଭୁଲେ ହେଲେ ବି ପ୍ରଶ୍ରୟ ଦେବନାହିଁ । ରାଜ୍ୟର ପ୍ରଜାଙ୍କୁ ସୁଖ ଦେବାହିଁ ରାଜାର ଧର୍ମ ବା ସୁଖ । । ଯେଣୁ ପ୍ରଜାପାଳନର ଉପଯୁକ୍ତ କାର୍ଯ୍ୟ କଲେ କେହି ଦୁଃଖ କରିବ ନାହିଁ । ପ୍ରକୃତ ନ୍ୟାୟ ବା ଧର୍ମାନୁସାରେ ପ୍ରଜାଙ୍କୁ ପାଳିଲେ ଇନ୍ଦ୍ର ବୃଷ୍ଟି କରେ । ଅନ୍ୟାୟୀ ହେଲେ ପ୍ରଜାଙ୍କୁ ବିପତ୍ତି ଭୋଗିବାକୁ ପଡ଼େ । ପ୍ରଜାପାଳନ ହିଁ ରାଜାର ଧର୍ମ । ତେଣୁ ପ୍ରଜାଙ୍କୁ ସୁଖରେ ରଖିଲେ ତାହା ରାଜାର ପ୍ରଶଂସା ହୋଇଥାଏ ରାଜ୍ୟର ଶାସନ ଭାର ଧାର୍ମିକ ଲୋକ ହାତରେ ଦେଲେ ପ୍ରଜାବର୍ଗ ସୁଖରେ ରହିବେ । ଦୂତ ପ୍ରେରଣ କରି ରାଜ୍ୟରେ ଘଟୁଥିବା କାର୍ଯ୍ୟ ଅକାର୍ଯ୍ୟ ତଦାରଖ କରୁଥିବ । ସେ

ଅନ୍ୟାୟ ଆଚରଣ କରୁଥିବ ତାକୁ ଦଣ୍ଡ ଦେବା ହେବ ତୁମର କର୍ତ୍ତବ୍ୟ । ଯେ ଅନ୍ୟାୟ ଅନୀତି କାର୍ଯ୍ୟରେ ଲିପ୍ତ ଥିବ ତାକୁ ଦଣ୍ଡ ଦେଲେ ଦୋଷନାହିଁ ଏବଂ ଦୋଷ ଅନୁସାରେ ଦଣ୍ଡ ପ୍ରଦାନ କରିବ । ନଳ କାଠିର ଲମ୍ବ କୋଡ଼ିଏ ହାତକରି ପଞ୍ଚବିଂଶ ନଳରେ ଏକମାଣ ଏବଂ କୋଡ଼ିଏମାଣରେ ଏକବାଟି ବୋଲି ସ୍ଥିର କରି ଜମି ମାପ କରିବ । ବାଟିକ କିଛି କର ସ୍ୱରୂପ ଗ୍ରହଣ କରିବ । ରାଜ୍ୟର ସ୍ଥାନେସ୍ଥାନେ ପୁଷ୍କରିଣୀ ବା କୂପ ଖୋଳାଇଥିବ । ଇନ୍ଦ୍ର ବୃଷ୍ଟି ନ କଲେ ମଧ୍ୟ କୃଷି କାର୍ଯ୍ୟ ଯେପରି ସୁରୁଖୁରୁରେ ସମ୍ପାଦନ ହୋଇପାରେ । ପ୍ରଜାର, ଅଳ୍ପ ଦୋଷକୁ ଧରିବନାହିଁ । ଅନାଥ ଲୋକଙ୍କୁ ଘର ଦେଇ ରହିବାର ବ୍ୟବସ୍ଥା କରିବ । କପଟ ନକରି ବା ମନରେ କୌଣସି ଦ୍ୱିଧା ନରଖି ବ୍ରାହ୍ମଣଙ୍କୁ ଦାନ ଦେବ । ଶିବଙ୍କ ନିମିତ୍ତ ଗାଈ ଦୁହିଁବ । ନଦୀମାନଙ୍କରେ ନୌକା ରଖିଥିବ । ଶୀତଦିନରେ ଦକ୍ଷିଣ ପଟେ ଘର ତିଆରି କରିବ । ରାଜ୍ୟର ମଝିରେ ମଝିରେ ନିଆଁ ଜାଳିବ । ପଥକ୍ଳାନ୍ତ ପଥିକ ଯେପରି ଶୀତଦିନରେ କଷ୍ଟ ଅନୁଭବ ନକରେ । ଖରାଦିନରେ ପଣାପାଣି, ଛତା ଯୋତା ଆଦି ଅଣ୍ଡା ପ୍ରଦାନ କରୁଥିବା ବସ୍ତୁମାନ ଦାନ କରିବ । ଯଦି ବାଟୋଇ ଏହିପରି ସୁଖ ସବୁ ପାଏ ତେବେ ସେ ରାଜାଙ୍କୁ କଲ୍ୟାଣ କରିବେ । ସେମାନଙ୍କର ମନ ସନ୍ତୋଷହିଁ ରାଜାପାଇଁ ଶୁଭକାର୍ଯ୍ୟ । ତେଣୁ ଏସବୁ ଚିନ୍ତାକରି ରାଜ୍ୟକାର୍ଯ୍ୟ କରିବ । ପ୍ରଜାମାନଙ୍କ ମୁଖରେ ଯଦି ରାଜାର ସାଧୁତ୍ୱର ପ୍ରକାଶ ପାଏ ତେବେ ସେ ରାଜାକୁ ଯମ ମଧ୍ୟ ଦଣ୍ଡି ପାରେ ନାହିଁ । ରାଜ୍ୟରେ ଉପୁଜୁଥିବା କଳିର ସମାଧାନ ପାଇଁ ସ୍ୱାଇଙ୍କୁ ପଠେଇବ । ଦୂତଠାରୁ ଦିନରେ ତିନିଥର ରାଜ୍ୟର ଭଲମନ୍ଦ ଖବର ଶୁଣିବ । ନିଜ ବିଶ୍ୱାସୀ ଲୋକଦ୍ୱାରରେ ନିଯୋଗ ପାଇ ମତଫୁଲ ପଠେଇବୁ କିନ୍ତୁ ସେ ଲୋକକୁ କୌଣସି ଅଧିକାର ବା ତାକୁ ଦଣ୍ଡ ଦେବୁ ନାହିଁ । ଧନଶ୍ରେଷ୍ଠ……।

ପାଞ୍ଚବର୍ଷର ଘୋଡ଼ାପାଇଁ ପଚିଶ ବର୍ଷର ରାହୁତ । ପଚିଶ ବର୍ଷର ପଦାତିକ । ସତର ବର୍ଷର ହାତୀ ପାଇଁ ବଳିଷ୍ଠ ମାହୁନ୍ତ । ଘୋଡ଼ା ହାତୀ ଏବଂ ପଦାତିକ ସୈନ୍ୟମାନଙ୍କୁ ସବୁବେଳେ ସଜାଗ କରି ରଖିଥିବୁ । ବେଳ ଗଡ଼ିଲେ ତାର ସଦ୍ ବ୍ୟବହାର କରିବୁ । କୋଟୁଆଳକୁ ସର୍ବଦା ସଜାଗ ରହିବା ପାଇଁ ଆଦେଶ ଦେଉଥିବ । ଅନ୍ୟରାଜ୍ୟ ପ୍ରତିଦୃଷ୍ଟି ଦେବ ନାହିଁ । ପଣ୍ଡିତର ମୁଖରୁ ପୁରାଣ ଶାସ୍ତ୍ର ଶୁଣୁଥିବ । ସ୍ତ୍ରୀ ଜାତିକୁ କେବେ କି ବିଶ୍ୱାସ କରିବ ନାହିଁ । ବଳିଷ୍ଠ ଯୋଦ୍ଧାମାନଙ୍କୁ ପୁରସ୍କାର ଦେବା ସହ ଅଜ୍ଞାତ ଗସ୍ତ ଦେଲେ ତାହାକୁ ବିଶ୍ୱାସ କରିବ ନାହିଁ । ପାରିଧି ସମୟରେ ଯୋଗୀଭାବ ରଖିବ । ଦେବତା ବ୍ରାହ୍ମଣଙ୍କ ପଦପୂଜା ପ୍ରତିଦିନ କରୁଥିବ । ଧର୍ମରକ୍ଷା ପାଇଁ ଏକାଦଶୀ ବ୍ରତ ପାଳିବା ସଙ୍ଗେ ସଙ୍ଗେ ଅଚିହ୍ନା ବିଦେଶୀ ଲୋକକୁ ନିଜ ରାଜ୍ୟରେ ପ୍ରବେଶ କରିବାପାଇଁ ସୁଯୋଗ ଦେବନାହିଁ । ଯାଗଯଜ୍ଞରେ ଆହୁତି ଦେବା ସହ ଶତ୍ରୁଙ୍କୁ ଉପଯୁକ୍ତ ଦଣ୍ଡ ପ୍ରଦାନ କରିବ । ରାଜ୍ୟରେ ଥିବା ଦୁଷ୍ଟଦାନବଙ୍କୁ ନାଶ କରିବ । ଏଥିରେ ରାଜାର କିଛି ବ

ଦୋଷ ଉଦ୍ଭବ ନାହିଁ । ଗୁରୁଜନମାନଙ୍କୁ ମୁଖ୍ୟ ରୂପେ ଗ୍ରହଣ କରି ପରସ୍ତ୍ରୀ ବା ପରଧନ ପ୍ରତି ଦୃଷ୍ଟି ଦେବନାହିଁ । ମନ୍ତ୍ରୀଙ୍କୁ ରାଜ୍ୟର ସବୁ ଭଲ ମନ୍ଦ ଦାୟିତ୍ୱ ଅର୍ପଣ କରୁଥିବ । କୃଷକ ଶ୍ରେଣୀର ଲୋକଙ୍କ ଧନ ପ୍ରତି ଦୃଷ୍ଟି ନଦେଇ ଗୋଶାଳା ଓ ବ୍ରାହ୍ମଣ ଶାସନମାନ କରାଇବ । ଗୋରୁମାନଙ୍କର ଚରିବା ପାଇଁ ବହୁ ସ୍ଥାନ ଛାଡ଼ି ଦେବ । ତୀର୍ଥ ସ୍ଥାନ ମାନଙ୍କରେ ଅନ୍ନଛତ୍ର ଖୋଲୁଥିବ । ଘୋଡ଼ା ଓ ହାତୀମାନଙ୍କ ରକ୍ଷଣାବେକ୍ଷଣ ନିମିତ୍ତ ଧନ ଦେବା ସଙ୍ଗେ ସଙ୍ଗେ ଗୋପାଳ-ମାନଙ୍କର ସୁଖ ସୁବିଧା ବୁଝୁଥିବ । ଲୋକର ଗୁଣ ଦେଖି ପୂଜା କରିବ । କବିମାନଙ୍କ ପ୍ରତି କୃପଣ ଭାବ ପ୍ରଦର୍ଶନ କରିବ ନାହିଁ । ଏହିପରି ରାଜ୍ୟଶାସନରେ ବିବିଧ ଉପଦେଶମାନ ଦେଇ ଭୀଷ୍ମଦେବ ଶ୍ରୀକୃଷ୍ଣ ଓ ଯୁଧିଷ୍ଠିରଙ୍କ ମୁଖକୁ ଚାହିଁଲେ ଓ ହେ କୃଷ୍ଣ ! ମୁଁ ତୁମର ଶରଣ ଯାଉଛି କହି ପ୍ରାଣତ୍ୟାଗ କଲେ ।

## ଦୁର୍ଯ୍ୟୋଧନାଦି ଓ ଭୀଷ୍ମଙ୍କ ପିଣ୍ଡଦାନ—

ବ୍ରହ୍ମବେତ୍ତା ଅଗସ୍ତି ମୁନି ମନୁଙ୍କୁ କୌରବମାନଙ୍କର ଓ ଭୀଷ୍ମଙ୍କର ପିଣ୍ଡଦହନ କାର୍ଯ୍ୟ କିପରି ସମାପନ ହେଲା ସେ ସମ୍ପର୍କରେ ସୂଚନା ଦେବାକୁ ଯାଇ କହିଲେ— ଶ୍ରୀକୃଷ୍ଣଙ୍କୁ ଦେଖିସାରି ଭୀଷ୍ମ ପ୍ରାଣତ୍ୟାଗ କଲାପରେ ଯୁଧିଷ୍ଠିର ଗାନ୍ଧାରୀ ଓ ଧୃତରାଷ୍ଟ୍ରଙ୍କ ନିକଟକୁ ଯାଇ ସାନ୍ତ୍ୱନା ଦେଲେ । ଏହାପରେ ଗାନ୍ଧାରୀ ଫାଲଗୁନଙ୍କୁ ମୃତ ପୁତ୍ରମାନଙ୍କର.......... । ଗାନ୍ଧାରୀଙ୍କର କଥାପୁଣି ପଞ୍ଚପାଣ୍ଡବମାନେ ମୃତ କୌରବମାନଙ୍କୁ ନେଇ ଅଗ୍ନିରେ ଦହନ କଲେ । ଯୁଧିଷ୍ଠିର କହିଲେ ବ୍ୟାସସହୋଦର ନିକଟକୁ ଦୁର୍ଯ୍ୟୋଧନର ଶବକୁ ଆଣିବାର ବ୍ୟବସ୍ଥା କର । ଏ ଆଦେଶ ପାଇବା ମାତ୍ରକେ ଭୀମସେନ.......... । କୌରବ ଶରୀରଗୁଡ଼ିକ ଓ ସେମାନଙ୍କର ଜ୍ଞାତିକୁଟୁମ୍ବ ଆଦି ସମସ୍ତ ଶବକୁ ଏହା ଉପରେ ଶୋଇଦେବା ପରେ ଅଗ୍ନିସଂଯୋଗ କରିବା ପାଇଁ ଶ୍ରୀକୃଷ୍ଣ କହିଲେ । ସେହି ସମୟରେ ଦକ୍ଷିଣଦିଗରେ ଧୀର ପବନ ବହୁଥିଲା ଏବଂ ଫାଲଗୁନ ଅଗ୍ନିବାଣ ସଂଯୋଗ କଲେ । ସେହି ଅଗ୍ନି ଧୀରେ ଧୀରେ ବିକଶିତ ହୋଇ ମହାତେଜ ଧାରଣ କରି ବାରଯୋଜନ ଆକାର ଧାରଣ କଲା । ମୃତପିଣ୍ଡଗୁଡ଼ିକ ଅଶ୍ୱମେଧ ଯଜ୍ଞରେ ଅହୁତି ଦେବାପରି ବୋଧ ହେଲେ । .........ତାହା ଯେପରି ଧୀରେ ଧୀରେ ବ୍ୟାପିଗଲା ସେହିପରି ଆକାଶସାରା ଏ ଅଗ୍ନି ବ୍ୟାପିଗଲା । ଏହା ଦେଖି ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କୁ ଜ୍ୟେଷ୍ଠ ହିସାବରେ ଏବଂ ପୁତ୍ରମାନଙ୍କ ଅଭାବରେ ବା ବିରହରେ ଆମେ କିପରି ଜୀବନ ଯାପନ କରିବୁ ବୋଲି କହିଲେ । ତେଣୁ ପୁତ୍ରମାନଙ୍କୁ ସ୍ମରଣ କରି ଏ ଅଗ୍ନିରେ ଆମେ ଝାସ ଦେବୁ ବୋଲି କହିଲେ । ଏକଥା ଶ୍ରବଣ କରି ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ତାତ ମାତ ରୂପେ ସମ୍ବୋଧନ କରି କହିଲେ—ମୁଁ କଅଣ ତୁମ୍ଭର ପୁତ୍ରପରି ନୁହେଁକି ? ଏକଥା ଶୁଣି ଧୃତରାଷ୍ଟ୍ର ଓ ଗାନ୍ଧାରୀ ନିଜ ନିଜର ପୁତ୍ରଶୋକ ଭୁଲିଯିବା

କଥା ପ୍ରକାଶ କରି ତାଙ୍କର ପରମାତ୍ମୁ ସ୍ମରଣ କରି ମଙ୍ଗଳ କାର୍ଯ୍ୟରେ ନିଯୁକ୍ତ ହେବା ପାଇଁ କଲ୍ୟାଣ କଲେ ଏବଂ ଧୃତରାଷ୍ଟ୍ର କହିଲେ ତୋର ଏ କଥା ଶୁଣି କିଏ ଜୀବନ ରଖିଛୁ ଏବଂ ତୋର ସମସ୍ତ ସମ୍ପଦକୁ ଆଖିରେ ଦେଖୁଛୁ ? ଏହା ପରେ ମହାରାଜ ଅନେକ ଦାନ ଧର୍ମ କରି ବାରଦିନରେ ପିତୃକାର୍ଯ୍ୟ ସମାପ୍ତ କଲେ ।

## ଯୁଧିଷ୍ଠିରଙ୍କ ରାଜ୍ୟ ଅଭିଷେକ –

ଏହା ପରେ ଯୁଧିଷ୍ଠିରଙ୍କର ଅଭିଷେକ ନିମିତ୍ତ ସମସ୍ତ ପ୍ରକାର ଆୟୋଜନ କରି ଶ୍ରୀକୃଷ୍ଣ ବନ୍ଧୁବର୍ଗଙ୍କ ସହିତ ନିଜ ପୁରକୁ ପ୍ରବେଶ କଲେ । ବୈଶାଖମାସ ଶୁକ୍ଳପକ୍ଷ ତୃତୀୟା ତିଥି ରୋହିଣୀ ନକ୍ଷତ୍ର ଏବଂ ବୃହସ୍ପତି (ଗୁରୁବାର) ବାରରେ ଅଭିଷେକ ଉତ୍ସବ ହେବାର ସ୍ଥିର କରାଗଲା । ଏହା ପରେ ଯୁଧିଷ୍ଠିର ସ୍ମରଣ କରନ୍ତେ ଷାଠିଏ ସହସ୍ର ଶିଷ୍ୟ ଘେନି ବ୍ୟାସଦେବ ସେଠାରେ ଉପସ୍ଥିତ ହେଲେ । ଧର୍ମପୁରୋହିତଙ୍କ ସହିତ ଲକ୍ଷେ ବ୍ରାହ୍ମଣ ବଶିଷ୍ଠ ମାରକଣ୍ଡଙ୍କ ମେଳରେ ମୁନିମାନେ ଆସିଲେ । ସୁଦେବଙ୍କ ସହିତ ଅଶୀ ହଜାର ଏବଂ ଅଗସ୍ତି ମହାଋଷି ନଅ ଲକ୍ଷଧରି ଉପସ୍ଥିତ ହେଲେ । ବିଶ୍ୱାମିତ୍ର ନଅହଜାର ଶିଷ୍ୟଧରି ସୁମନ୍ତ ହଜାର ଶିଷ୍ୟଧରି ବିଜେ ହେଲେ । ମାର୍କଣ୍ଡ ଋଷି ଅଷ୍ଟବ୍ରତେକ ଶିଷ୍ୟ ଘେନି, ଋଷ୍ୟଶୃଙ୍ଗ ନଅ ହଜାର ବାଳ ଶିଷ୍ୟ ଅଷ୍ଟାବକ୍ର ଲକ୍ଷେ ଶିଷ୍ୟ, ପୁଲସ୍ତ୍ୟ ପାଞ୍ଚ ଅଷ୍ଟବ୍ରତ ଶିଷ୍ୟ ଘେନି ଉପସ୍ଥିତ ହେଲେ । ଲୋମଶ ଋଷି ନଅ ହଜାର ଶିଷ୍ୟ , କଣ୍ୱ ମୁନି ଅର୍ବୁଦଶିଷ୍ୟ, ଅଜପା ଦୁଇଲକ୍ଷ, ସତ୍ୟପା ଲକ୍ଷେ ଶିଷ୍ୟ, ଅତ୍ରି ମହାମୁନି ଲକ୍ଷେ ବ୍ରାହ୍ମଣ, ଗର୍ଗଋଷି ପାଞ୍ଚ ଅଷ୍ଟବ୍ରତ ଶିଷ୍ୟ, ସୁଦେବ, ବାମଦେବ ଓ କଷଣ ତିନିଲକ୍ଷବ୍ରାହ୍ମଣଙ୍କ ମେଳରେ, ବାମଦେବ ପାଞ୍ଚଲକ୍ଷ ବ୍ରାହ୍ମଣ ଘେନି ଏକ ଅରଣ୍ୟରେ ଯେତେ ଋଷିଥିଲେ ସମସ୍ତେ ଯୁଧିଷ୍ଠିରଙ୍କର ପାଟାଭିଷେକ ସମୟରେ ଉପସ୍ଥିତ ହେଲେ । କିଏ କୌପୀନ ଧାରଣ କରି ହାତରେ କମଣ୍ଡଳୁ, ଜପାମାଳି ଏବଂ ଦେହରେ ଭସ୍ମ ଲେପନ କରି, କିଏ ନିକାଛା ଭିଡ଼ି କାଖରେ ପୋଥି ଛତା ଧାରଣକରି ହାତରେ କୁଶ ବିଡ଼ାଧରି ଦେହରେ ଉତ୍ତରୀ ପକାଇ ଦେବର୍ଷି, ବ୍ରହ୍ମର୍ଷି ଓ ରାଜର୍ଷିମାନେ ପଞ୍ଚ ଅଭିଷେକ କରି ଯୁଧିଷ୍ଠିରଙ୍କୁ ବନ୍ଦାଇଲେ । ଏହି ସମୟରେ ସେମାନେ ଶଙ୍ଖ ବଜାଇବା ସଙ୍ଗେ ସଙ୍ଗେ ନାନା ପ୍ରକାର ମଙ୍ଗଳ ଧ୍ୱନି ଉଚ୍ଚାରଣ କଲେ । ଏହି ପରେ ଅବନ୍ତି ମନୁଙ୍କ କହିଲେ ଯୁଧିଷ୍ଠିରଙ୍କର ଅଭିଷେକ ସମୟରେ ପାପ ନାଶ ପାଇଁ ସମସ୍ତ ଧ୍ୱନିଦେଇ ବନ୍ଦାପନା ବିଧି ସାରିବା ପରେ ଧର୍ମରାଜ ଯୁଧିଷ୍ଠିର ଦିବ୍ୟ ବେଶ ଧାରଣ କରି ଆସନରେ ବିଜେକଲେ । ଗଳାରେ ରୁଦ୍ରାକ୍ଷ ମାଳ, କଣ୍ଠରେ ତୁଳସୀ, ହାତରେ କୁଶବଟୁ, ତମ୍ବାପାଣି ଶୁଦ୍ଧ୍ୟବସ୍ତ୍ର ପରିଧାନ କରି ତାଙ୍କର ଶରୀର ଶୋଭାପାଉଥିଲା । ପ୍ରଚଣ୍ଡ ଅଗ୍ନି ଜାଳି କର ପ୍ରସାର ପୂର୍ବକ ଋଷିଙ୍କ ଆଗରେ ବସିଲେ । ଋଷି ତାଙ୍କୁ କଣ୍ଠ୍ୟ ଉତ୍ତରୀ ଓ କଣ୍ଠସ୍ଥ ପଇତାରେ ମଣ୍ଡନ କରିବା

ସଙ୍ଗେ ସଙ୍ଗେ ଋକ୍, ଯଜୁ, ସାମ ଓ ଅଥର୍ବ ଆଦି ଚତୁର୍ବେଦ ସହ ଅଜପା ଗାୟତ୍ରୀ ମହାମନ୍ତ୍ର କଲ୍ୟାଣ କରିବା ବେଳେ ଉଚ୍ଚାରଣ କଲେ । ଧୃତରାଷ୍ଟ୍ର ଏହିପରି ଗଦ୍‌ଗଦ ଧ୍ୱନି ସବୁ ଶୁଣି ବହୁତ କଷ୍ଟ ଅନୁଭବ କରିବା ସଙ୍ଗେ ସଙ୍ଗେ ନିଜ ସୌଭାଗ୍ୟ ଓ ଦୈବର ବିଧାନକୁ ଦୋଷ ଦେଇ ଚିତ୍ରପଟ ଦେଖାଇ ଦୂରେଇ ଦେବାପରେ ପୁତ୍ରମାନଙ୍କର ବିରହକୁ ମନେପକାଇ ସନ୍ତାପି ହେଲେ । ଏହାପରେ ଗାନ୍ଧାରୀ ଧୃତରାଷ୍ଟ୍ରଙ୍କୁ କହିଲେ ହେ ସ୍ୱାମୀ । ଏହିପରି ଯେତେ ଦିନ ବଞ୍ଚିରହିବା କେବଳ କଷ୍ଟ ପାଇବା ହିଁ ଜୀବନରେ ସାରହେବ । ତେଣୁ ଏ ଅଭିଷେକ ଉତ୍ସବ ଶେଷ ହେବାପରେ ଆମେ ସମୁଦ୍ରରେ ଝାସଦେଇ ଜୀବନ ହାରିବା । ଏହା ପରେ କବି ଧର୍ମରାଜ ଯୁଧିଷ୍ଠିରଙ୍କ ଅଭିଷେକକାଳୀନ ସାଜସଜା ସମ୍ପର୍କରେ ସୂଚନା ଦେବା ପ୍ରସଙ୍ଗରେ ବିଦୁର ଯେପରି ସମସ୍ତ କାର୍ଯ୍ୟ ବୁଝାଇ ଥିଲେ ସେ ସମସ୍ତର ବିବରଣୀ ପ୍ରଦାନ କରାଯାଇଛି । ଶ୍ୱେତରଙ୍ଗର ହାତୀ, ଅଶ୍ୱ, ଚାମର, ଛତ୍ର, ଅଳଙ୍କାର, ନେତ, ବସ୍ତ୍ର, କଳସ, ଶ୍ରୀଫଳ ଦୀପ, ବଳିତା, ଶହେଟି ଝୁମ୍ପା, ସୁଗନ୍ଧ ଚନ୍ଦନ, ଦୂର୍ବାଦଳ ଲକ୍ଷ ଲକ୍ଷ ଫୁଲ, ଗୁଞ୍ଜ, ବାଦ୍ୟସା, ଶଙ୍ଖଚଳ, ସିଂହାସନ, ମୃଗ, ଗଣ୍ଡା, ଗାଈ, ଶହେଲକ୍ଷ ଷଣ୍ଢ, ଛଣାଣ, ପାଟ, ଶୁଆଶାରୀ, ଏବଂ କଦଳୀ ବୃକ୍ଷ ରୋପଣ କରି ଶ୍ୱେତବର୍ଣ୍ଣର ପାତ୍ରରେ ସୁରା, ଅଶ୍ୱମେଧରେ ଗୁଆ ଘିଅର ଆହୁତି ପାତ୍ର, ବ୍ରାହ୍ମଣଙ୍କ ଦ୍ୱାରା ବେଦଗାନ କରାଯାଉଥିଲା । ଏହିପରି ଅନୁଧ୍ୟାନ କଲେ ପ୍ରମାଣିତ ହେବ ଯେ ସାରଳାଙ୍କ ଶାନ୍ତି ପର୍ବ ଉଭୟ ମୌଳିକ ଉପାଦାନ ଏବଂ ବିଷୟ ସ୍ୱାତନ୍ତ୍ର୍ୟ ନେଇ ପରିଲକ୍ଷିତ ।



# ଆଶ୍ରମିକ ପର୍ବ

## ଅଧ୍ୟାପକ ହରିହର କାନୁନ୍‌ଗୋ:

ପଞ୍ଚଦଶ ଶତାବ୍ଦୀର ସାରଳାଦାସଙ୍କ ମହାଭାରତ (୧) ବ୍ୟାସଙ୍କ ମୂଳ ମହାଭାରତର ଅକ୍ଷରଶଃ ଅନୁବାଦ ନୁହେଁ । ବରଂ ସାରଳାଙ୍କର ଏହା ନିଜସ୍ୱ ସୃଷ୍ଟି ଭଳି ପ୍ରତୀତ ହୁଏ । ବ୍ୟାସଙ୍କ ମହାଭାରତରୁ ସାରଳା କେତେକ ଉପାଦାନ ସଂଗ୍ରହକରି ଆପଣାର ମୌଳିକ ଚିନ୍ତା ଚେତନା ଭିତରେ ନୂତନତାର ପରିପ୍ରକାଶ ଘଟାଇଛନ୍ତି । ସାରଳା ମହାଭାରତର ଆଶ୍ରମିକ ପର୍ବରେ ଯେଉଁ ଅଧ୍ୟାୟ ଗୁଡ଼ିକ ବର୍ଣ୍ଣିତ ହୋଇଛି, ତାହା ମୂଳମହାଭାରତର କେତେକ ଘଟଣା ସହିତ ସାମ୍ୟ ଓ କେତେକ ସ୍ଥଳରେ ବୈଷମ୍ୟ ପରିଲକ୍ଷିତ ହୋଇଛି ।

ଯଦୁବଂଶ ଧ୍ୱଂସ ବିବରଣୀ ପ୍ରସଙ୍ଗରେ ଶ୍ରୀମଦ୍ ଭାଗବତ ଏକାଦଶସ୍କନ୍ଧ ପ୍ରଥମ ଅଧ୍ୟାୟରେ (୨) ଯାହା ବର୍ଣ୍ଣିତ ଅଛି, ତାହା ସାରଳାଙ୍କ ଆଶ୍ରମିକ ପର୍ବର ପ୍ରଥମ ଅଧ୍ୟାୟରେ ରୂପାୟିତ । ଶ୍ରୀକୃଷ୍ଣଙ୍କର ପୁତ୍ର ଶାମ୍ବ ଆଗରେ ଦୁର୍ବାସା ମୁନି ତୀର୍ଥର ଆଦେଶକୁ ପ୍ରକାଶ କରି ସ୍ୱର୍ଗପୁରକୁ ଚାଲିଗଲେ । ଶାମ୍ବ ଦ୍ୱାରକାରେ ପହଞ୍ଚିଲା ପରେ କୃଷ୍ଣ ବଳରାମ ମିଳିସାରି ସେଠାରେ ଉତ୍ସବର ଆୟୋଜନ କରି ଅର୍ଘ୍ୟ ବନ୍ଦାପନା ଇତ୍ୟାଦି କରାଇଲେ । ଚୈତ୍ର ମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଶନିବାର ଅଶ୍ୱିନୀ ନକ୍ଷତ୍ର ଭୋଗଦିନ ଏହି ସବୁ ଉତ୍ସବର ସମାପ୍ତି ପରେ ସୃଷ୍ଟିକର୍ତ୍ତା ବ୍ରହ୍ମା ଅଷ୍ଟବସୁ ଋଷିଙ୍କୁ ଡାକି ଆଦେଶ ଦେଲେ ଯେ ଶ୍ରୀକୃଷ୍ଣ ମର୍ତ୍ତ୍ୟରେ ରହି କ'ଣ କରୁଛନ୍ତି ଦେଖିବା ପାଇଁ । ପୃଥିବୀର ଭାର ନିବାରଣ

---

(୧) Dr. K. C. Panigrahi History of Orissa, 1981, P. 190 କୃଷ୍ଣଚନ୍ଦ୍ର ପାଣିଗ୍ରାହୀ—ସାରଳା ସାହିତ୍ୟର ଐତିହାସିକ ଚିତ୍ର, ପୃ.୧୨ ଓ ଡଃ ଆର୍ତ୍ତବଲ୍ଲଭ ମହାନ୍ତି—ମାଦଳାପାଞ୍ଜି (ରାଜଚୋରିତ ଇତିହାସ) ପୃ ୪୭, ୪୮,

(୨) "ଶାମ୍ବକୁ ନାରୀ ବେଶ କରି । ଅନେକ ଅଳଙ୍କାର ଭରି"
ପ୍ରସବଗର୍ଭ ପ୍ରାପ୍ତ କରି । ଉଦରେ ଲୌହପାତ୍ର ଭରି ॥
(ଶ୍ରୀମଦ୍ ଭାଗବତ, ଏକାଦଶସ୍କନ୍ଧ, ପ୍ରଥମ ଅଧ୍ୟାୟ)

ସ : ଦ୍ର→"ଏହି ପ୍ରବନ୍ଧ ପ୍ରସ୍ତୁତରେ ଗୀତା ପ୍ରେସରେ ୧୯୫୮ ମସିହାରେ ମୁଦ୍ରିତ ପ୍ରଥମ ସଂସ୍କରଣ ମୂଳ ମହାଭାରତ ଏବଂ ଡଃ. ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ ସଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ ସାରଳା ମହାଭାରତରୁ ଉଦ୍ଧୃତ ଗୁଡ଼ିକ ବ୍ୟବହୃତ ହୋଇଅଛି ।"

ପରେ ମଧ୍ୟ ସ୍ୱୟଂ କୃଷ୍ଣ କାହିଁକି ମର୍ତ୍ତ୍ୟରୁ ସ୍ୱର୍ଗପୁରକୁ ଆସୁନାହାଁନ୍ତି । ତେଣୁ ଶ୍ରୀକୃଷ୍ଣଙ୍କର ସ୍ୱର୍ଗଗମନ ସମୟରେ ତାହାଙ୍କ ଦୋଷରୁ ସମସ୍ତ ବଂଶ ନାଶ ହୋଇଯିବ ବୋଲି ଅଭିଶାପ ଦେଲେ (୩) ପିତାଙ୍କର ଏହି ପ୍ରକାର ବଚନ ଶୁଣି ମହାତ୍ମା ଅଷ୍ଟବକ୍ର ଋଷି ଦ୍ୱାରକାର ଦ୍ୱାରବତୀ ପୁରରେ ପ୍ରବେଶ ହେଲେ । ତାହାଙ୍କୁ ଦ୍ୱାରବତୀ ପୁରରେ ଦେଖି ଯଦୁବାଳକମାନେ ଉପହାସ କରିବାକୁ ଲାଗିଲେ । ଯଦୁବଂଶ ସଭାରେ ଉପସ୍ଥିତ ଥିବା ଯାଦବମାନଙ୍କୁ ଦେଖି ସେହି ମହାତ୍ମାଙ୍କୁ ଅଷ୍ଟବକ୍ର ମହାଗର୍ବରେ ଭୟଙ୍କର ହୋଇଉଠିଲେ । ଯେଉଁ ଦ୍ୱାରବତୀ ପୁରକୁ ଯମ ପଶିପାରେ ନାହିଁ, ସେଠାରେ ମର୍ତ୍ତ୍ୟଗର୍ବ ଋଷି ପ୍ରବେଶ କରି ଆପଣାର ଧାର୍ମିକତା ପ୍ରକାଶ କରିବାରୁ ଯଦୁବାଳକମାନେ ଖେଳେଣି କରିବାକୁ ଲାଗିଲେ ଏବଂ କୌତୁହଳରେ ଶାମ୍ବକୁ ତାକ ତା ପେଟରେ ଲୁହାର କପୋଖ (କଡ଼ାହସ୍ତାନ କଡ଼େଇ) ବାନ୍ଧି ଗର୍ଭବତୀ ସ୍ତ୍ରୀ ବେଶରେ ସଜାଇ (୪) ସେହି ମୁନିଙ୍କ ସମ୍ମୁଖରେ କରଯୋଡ଼ି ଜଣାଇଲେ ଯେ ଦଶ ମାସ ସମ୍ପୂର୍ଣ୍ଣ ହୋଇ ମଧ୍ୟ ଏହାର ଗର୍ଭରୁ ପୁତ୍ର କମ୍ବା କନ୍ୟା ଜାତ ହେଉନାହିଁ କାହିଁକି ? (୫) ତ୍ରିକାଳଦର୍ଶୀ ମହାମୁନି ଧ୍ୟାନରେ ବସି ଆପଣାର ଯୋଗବଳରେ ଉପହାସ କଥା ସବୁ ଜାଣିପାରି ଅଭିଶାପ ଦେଲେ ଯେ ଏହି ଗର୍ଭରେ ଯାହା ଅଛି, ତାହା ସମସ୍ତ ଯାଦବ ବଂଶକୁ ନାଶ କରିବ (୬) ଏବଂ କୃଷ୍ଣଙ୍କ ସହିତ ତାଙ୍କର ସାତପୁରୁଷ ଯଦୁବଂଶ ମଧ୍ୟ ଏହି ଭଳି ନାଶ ହେବ । ଶେଷରେ ମହାମୁନି ଏଭଳି ଅପମାନ ପାଇଥିବାରୁ ଆଉ ଦ୍ୱାରକାପୁରକୁ ପ୍ରବେଶ କଲେ ନାହିଁ । ଏଣେ ଉପହାସ କରିଥିବା ଯାଦବମାନେ ଆପଣାର କୃତକର୍ମ ଯୋଗୁଁ ବିନାଶର କାରଣ ବିଷୟ ସବୁ ସବିସ୍ତାର ଶ୍ରୀକୃଷ୍ଣଙ୍କୁ ଜଣାଇଲେ । ଏହିକି ବେଳେ ପୂର୍ବରୁ ଗାନ୍ଧାରୀଙ୍କଠାରୁ ବଂଶନାଶ ପାଇଁ ଅଭିଶାପ ପାଇଥିବା କଥା ଶ୍ରୀକୃଷ୍ଣଙ୍କର

---

(୩) "ଯେମନ୍ତେ ଶ୍ରୀକୃଷ୍ଣ ହୋ ଅସନ୍ତ ଆକାଶେ
କୁଟୁମ୍ବ ନାଶ ଯାଉ ତାହାର ହିଁ ଦୋଷେ ।" ୧୨ (ସା, ମ, ଆଶ୍ରମିକ ପର୍ବ, ପୃ. ୨)

(୪) ଲୁହାର କପୋଖସ୍ତେ ଆଣିଲେ କୃଷ୍ଣଙ୍କ ଭୁମରେ
ଶାମ୍ବକଉଁ ସନ୍ନିବେଶ କରନ୍ତି ଅବସ୍ଥରେ । ୧୮ ।" (ଏଜନ୍-ପୃ. ୨)

(୫) ପୁତ୍ର ହୋଇଚି ଅବା କଣ ହୋଇବ ଜାତ
କହିବା ମହାମୁନି ସ୍ୱେଥର ତଦନ୍ତ । ୨୪ । (ଏଜନ୍, ପୃ-୩)

(୬) "ଅଷ୍ଟାବକ୍ର ବୋଇଲେ ସ୍ୱେହାର ଯିବ ଅଛି ଗର୍ଭେ
ତେଣେ ନାଶଯିବ ତୁମ୍ଭେ ସହସ ଯାଦବେ ।" । ୨୭ । (ଏଜନ୍ ପୃ-୩)

ମନେପଡ଼ିଗଲା (୭) ତାପରେ ମନ୍ତ୍ରୀ ଅକ୍ରୂରଙ୍କୁ ଇନ୍ଦ୍ରପ୍ରସ୍ଥ ପଠାଇ ପାଣ୍ଡବ ମାନଙ୍କ ଆଗରେ ଏ ବୃତ୍ତାନ୍ତ ଜଣାଇ ଭୀମସେନଙ୍କୁ ଡାକି ଆଣିବା ପାଇଁ କହିଲେ । ଶ୍ରୀକୃଷ୍ଣଙ୍କ ଆଜ୍ଞାନୁସାରେ ହସ୍ତିନାରୁ ଅକ୍ରୂର ଭୀମଙ୍କୁ ଡାକି ଦ୍ୱାରକାରେ ପହଞ୍ଚିବାକ୍ଷଣି ସେ ଆନନ୍ଦରେ ଭୀମଙ୍କୁ ଆଲିଙ୍ଗନ କଲେ ଏବଂ ଆପଣାର ଆତ୍ମା ସାର୍ଥକ କରିବା ପାଇଁ ପାଖରେ ଥିବା ସେହି ଲୁହାର କପୋଗଟିକୁ ଦେଖାଇ ଦ୍ୱାରକା ଠାରୁ ୯୨୦ ଯୋଜନ ଦୂର ସମୁଦ୍ର କୂଳରେ ଥିବା ନୀଳଗିରି ପର୍ବତରେ ଘଷି ଘଷି ନଷ୍ଟ କରିଦେବା ପାଇଁ କହିଲେ । ଶ୍ରୀକୃଷ୍ଣଙ୍କ ବାକ୍ୟ ଅନୁସାରେ ମହାବଳୀ ଭୀମ ସେହି କପୋଗକୁ ନେଇ ପର୍ବତ ଉପରେ ୧୧ ବର୍ଷ କାଳ ଘଷିବାରୁ ଜଳ ଉପରେ ପଡ଼ିଥିବା ଲୁହା ଗୁଣ୍ଡ ଏକତ୍ର ହୋଇ ଭୂଭାଗ ସୃଷ୍ଟି ହେବା ଫଳରେ ତା ଉପରେ ସନ୍ତୁଗବଣ ଦେଖାଦେଲା । ଘଷି ସାରିବାପରେ ହାତରେ ଥିବା ଅବଶିଷ୍ଟ ଲୁହା ଅଂଶ ଆଉ ଘଷି ନହେବାରୁ ତାହାକୁ ହେୟଜ୍ଞାନ କରି ସମୁଦ୍ର ଭିତରକୁ ଫୋପାଡ଼ି ଦିଅନ୍ତେ, ତାହାକୁ ଏକ ଖାଦ୍ୟ ମନେକରି ଜଳଙ୍ଗ ମାଛ ଗିଳିଦେଲା । ଏହାର ରହସ୍ୟ ଯୁଧିଷ୍ଠିର ସହଦେବଙ୍କୁ ପଚାରିଲେ ଯେ ଅଷ୍ଟବକ୍ର ଋଷିଙ୍କ ଅଭିଶାପ ଫଳିବ ବା କିପରି ? ଉତ୍ତରରେ ସହଦେବ କହିଲେ ଯେ ବେଣ୍ଟପୁର ରାଜ୍ୟର କୃତ୍ତିବ ନାମକ କୈବର୍ତ୍ତର ସୂତାରେ ସେହି ଜଳଙ୍ଗ ଧରାହେଲା ପରେ ତାର ପତ୍ନୀ କୁସଲୀକୁ ଡାକି ମିତ୍ର ଜାରାଶବର ଘରକୁ ସେ ମାଛଟିକୁ ଦେଇପଠାଇଲା । ବନମଧ୍ୟରେ ସେହି ଶବର ମୃଗଟିଏ ଦେଲା । ଶବରୁଣୀ ସେହି ମାଛଟିକୁ କାଟନ୍ତେ ଲୁହାର ଅବଶିଷ୍ଟାଂଶ ତା ପେଟରୁ ବାହାରିବାରୁ ଶବର ଅତି ଆନନ୍ଦରେ କମାର ଶାଳରେ ଶର ଗୋଟିଏ ତିଆରି କଲା । ସେହି ଶରହିଁ ଶ୍ରୀକୃଷ୍ଣଙ୍କ ପ୍ରାଣ ନାଶର କାରଣ ହେଲା । ଜାରାର ପୂର୍ବ ଜନ୍ମ ବୃତ୍ତାନ୍ତ ପ୍ରସଙ୍ଗରେ ସହଦେବ କହିଲେ ଯେ ସେ ଥିଲା ତ୍ରେତୟା ଯୁଗରେ ଅଙ୍ଗଦ । ସେ ରାବଣର ଶିରି ମୁକୁଟ ସ୍ୱୟଂ ରାମଚନ୍ଦ୍ରଙ୍କୁ ପ୍ରଦାନ କରିବାରୁ ସନ୍ତୁଷ୍ଟ ରାମଚନ୍ଦ୍ର ଅତ୍ୟନ୍ତ ଖୁସି ହୋଇ ବର ଯାଚିବାରୁ ଅଙ୍ଗଦ ପିତୃ ହତ୍ୟାର ପ୍ରତିଶୋଧ ନେବା ପାଇଁ ବର ମାଗିଥିଲା । ସେତିକବେଳେ ରାମଚନ୍ଦ୍ର କହିଥିଲେ ଯେ ତାଙ୍କୁ ଦ୍ୱାପର ଯୁଗରେ କଳ୍କୀଅବତାରରେ ଜାରାଶବର ରୂପେ ବଧ କରିବ । ସହଦେବଙ୍କଠାରୁ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ପ୍ରାଣନାଶ ହେବା ବିଷୟ ଜାଣି ଦୁଃଖ

---

(୭) ସ୍ନେହସନେକ ଶାପ ପାଇଲୁ ନର ଯାହା
ଗାନ୍ଧାରୀର ଶାପ୍ୟ ହରି ଛଡ଼ାଇଲେ ତାହା । ୪୧ । (ଏକନ୍ଦ, ପୃ-୪)

× × ×

ତୋହର କାନେ ନାଶ ଗଲାଟି ମୋର ବଂଶ
ହେ କୃଷ୍ଣ ସ୍ନେହମତ ହେଉ ତୋହୋର ବଂଶ ନାଶ । ୧୬୨ ।"
(ସା. ମ, ନାରୀପର୍ବ ପୃ-୨୧)

କରିବାରୁ ସହଦେବ ଉତ୍ତର ଦେଲେ ଯେ ଆମ ସମସ୍ତଙ୍କର ମଧ୍ୟ ତାହାଙ୍କ ପଛେ ପଛେ ପ୍ରାଣ ନାଶ ହେବ । ଏହି ପ୍ରସଙ୍ଗ ବ୍ୟାସଦେବଙ୍କ ମହାଭାରତର ଆଶ୍ରମବାସିକ ପର୍ବରେ ବର୍ଣ୍ଣିତ ହୋଇନାହିଁ । ବରଂ ଏହା ସାରଳାଙ୍କ କଳ୍ପନା ପ୍ରସୂତ ବୋଧହୁଏ ।

ସାରଳା ମହାଭାରତ ଆଶ୍ରମିକ ପର୍ବର ଦ୍ୱିତୀୟ ଅଧ୍ୟାୟରେ ଧୃତରାଷ୍ଟ୍ରଙ୍କର, ବନଗମନ ଉଦ୍‌ଯୋଗ ବିଷୟ ବର୍ଣ୍ଣିତ । ପାଣ୍ଡବମାନଙ୍କର ରାଜ୍ୟ ଲାଭପରେ ଓ ଯୁଧିଷ୍ଠିର ରାଜା ହୋଇ ଧୃତରାଷ୍ଟ୍ରଙ୍କୁ ରାଜଭୋଗରେ ରଖିଲେ ମଧ୍ୟ ସେ ପାଣ୍ଡବମାନଙ୍କର ଅନ୍ନ ଖାଉଛନ୍ତି ବୋଲି ନିଜକୁ ଲଜ୍ଜିତ ତଥା ଅପମାନିତ ମନେ କଲେ । ପାଣ୍ଡବମାନଙ୍କଦ୍ୱାରା କୁରୁବଂଶ ନାଶ ହେବା ଦେଖି ପୁତ୍ର ଶୋକରେ ଅଧୀର ହୋଇ ବ୍ୟାସଙ୍କ ପରାମର୍ଶକ୍ରମେ ଆଶ୍ରମ ଜୀବନଯାପନ ପାଇଁ ବନଗମନର ଉପାୟ ଚିନ୍ତା କଲେ । କିନ୍ତୁ ଯୁଧିଷ୍ଠିର ଆପଣାର ମହତ୍ତ୍ୱ ଗୁଣରେ ଧୃତରାଷ୍ଟ୍ରଙ୍କୁ ସନ୍ତୁଷ୍ଟ କରି ରାଜ୍ୟ ସମର୍ପଣ ବିଷୟ ଭୀମସେନଙ୍କୁ କହନ୍ତେ, ସେ କ୍ରୋଧାନ୍ୱିତ ହେଲେ ଏବଂ ଆପଣାର ପୂର୍ବ ଦୁଃଖଦ ସ୍ମୃତି ସ୍ମରଣ କଲେ (୮) । ଭୀମର କଟାକ୍ଷ ବଚନ ଶୁଣି ଧୃତରାଷ୍ଟ୍ର ଓ ଗାନ୍ଧାରୀ ବାନପ୍ରସ୍ଥ ଜୀବନ ଯାପନ ଓ ତୀର୍ଥଭ୍ରମଣ କରିବା ପାଇଁ କହିଲେ । କିନ୍ତୁ ଯୁଧିଷ୍ଠିର ଧୃତରାଷ୍ଟ୍ରଙ୍କୁ ଅତି ଆପଣାର କରିଥିବାରୁ କିପରି ବନବାସ ଯିବେ, ଏହି କଥା ଯୁଧିଷ୍ଠିରଙ୍କୁ କହିବା ପାଇଁ ସଙ୍କୋଚ ବୋଧ କଲେ । ଗାନ୍ଧାରୀଙ୍କ ପରାମର୍ଶ ଅନୁଯାୟୀ ଧୃତରାଷ୍ଟ୍ର ଯୁଦ୍ଧରେ ନାଶ ହୋଇଥିବା ଶତପୁତ୍ର, ବନ୍ଧୁ, ସହୋଦରଙ୍କ ମୁକ୍ତି ନିମନ୍ତେ ଗୟାରେ ଶ୍ରାଦ୍ଧ ଦେବା ପାଇଁ ଧନ ପ୍ରାପ୍ତି ଆଶାରେ ବିଦୁରକୁ କହନ୍ତେ, ସେ ଯୁଧିଷ୍ଠିରଙ୍କୁ ଜଣାଇଲେ । କାର୍ତ୍ତିକ ମାସ ଶୁକ୍ଳ ପକ୍ଷ ଗୁରୁବାର କୃତ୍ତିକା ନକ୍ଷତ୍ର ଅନ୍ତରେ ରୋହିଣୀ ୧୩ ଦଣ୍ଡ ଭୋଗ ସମୟରେ ଓ ତୁଳା ସଂକ୍ରାନ୍ତି ରାତିଦଣ୍ଡ ବୃହସ୍ପତି ବେଳାରେ ଧୃତରାଷ୍ଟ୍ର ବାନପ୍ରସ୍ଥ ଯିବାପାଇଁ ସ୍ଥିର କଲେ । କିନ୍ତୁ ତାହାଙ୍କର ବନଗମନ ଯିବା ପ୍ରସ୍ତାବ ଶୁଣି ଭୀମ କ୍ରୋଧରେ ଧନ ଦେବାପାଇଁ ରାଜି ନ ହେବାରୁ ଯୁଧିଷ୍ଠିର ବହୁତ ବୁଝାଇଲେ ଏବଂ ଶେଷରେ ଭୀମ ପୂର୍ବଭଳି ଅବୁଝା ରହିବାରୁ ନକୁଳ ତଥା ଅର୍ଜ୍ଜୁନଙ୍କର ଅଂଗଧନ ବିଦୁର ହାତରେ ପଠାଇଲେ ଧୃତରାଷ୍ଟ୍ରଙ୍କୁ ଦେବା ପାଇଁ । ବିଦୁର ଧୃତରାଷ୍ଟ୍ରଙ୍କୁ ଧନ ଦେବାପରେ ଏକାଦଶ ଦିନରେ ସେ ଶ୍ରାଦ୍ଧ ସଙ୍କଳ୍ପ କଲେ । ଭସ୍ମ ବୋଳେଇ ଶରୀରରେ ଗୈରିକ ବସନ ପରିଧାନ କରି ହାତରେ ରୁଦ୍ରାକ୍ଷମାଳା ଓ କମଣ୍ଡଳୁ, ଭାଖରେ ମୃଗ ଚର୍ମର ଛତିରୀ, କାନରେ ତମ୍ବା କୁଣ୍ଡଳ

---

(୮) ପୁଣି ହେଂ ଅନ୍ଧକଇଂ ଯୁଧେଷ୍ଠି ରାଜ୍ୟ ସମର୍ପଇ । ୨୫ ।

× × × ×

କେତେ କେତେ ଦୁଃଖ ଆମ୍ଭେ ପାଇଲୁ ଭ୍ରମି ବନେ
ତେବେ ହେଂ ଧୃତରାଷ୍ଟ୍ରର ଦୟା ନ ବସିଲା ମନେ । ୨୭ ।”

(ସା· ମ, ଆ. ପ· ପୃ. ୧୫)

ପ୍ରଭୃତି ଧାରଣ କରି ତପସ୍ୱୀ ରୂପରେ ବନଗମନ ପାଇଁ ପ୍ରସ୍ତୁତ ହେଲେ । ଶ୍ୱେତଗଜ କନ୍ୟା ସେମାନଙ୍କ ସହିତ ବନକୁ ଯିବାପାଇଁ ଇଚ୍ଛା କରନ୍ତେ ପାଣ୍ଡବ ସ୍ୱାମୀମାନେ ବାରଣ କଲେ । ଫଳରେ କୁନ୍ତୀ ଏକାନ୍ତରେ ଯୁଧିଷ୍ଠିରଙ୍କୁ କହିଲେ "ଅନ୍ଧ ଅନ୍ଧୁଣୀ ଦୁହେଁ ଜଙ୍ଗଲ ଭିତରେ ଚାଲିବେ କିପରି ? ବରଂ କଷ୍ଟପାଇ ଅଭିଶାପ ଦେଲେ, ତାହା ତୁମ୍ଭମାନଙ୍କ ଉପରେ ଫଳିବ ।" ତେଣୁ ସେ ନିଜେ ସେମାନଙ୍କ ସଙ୍ଗରେ ରହି ପଥ ଦେଖାଇ ମନ ଜାଣି ଖାଦ୍ୟ ପାନୀୟର ବ୍ୟବସ୍ଥା କରିବେ । ମାତା କୁନ୍ତୀଙ୍କର ଏ ପ୍ରକାର ବଚନ ଶୁଣି ପାଣ୍ଡବମାନେ ସନ୍ତୁଷ୍ଟ ହେଲେ ଏବଂ ପୂର୍ବ ନିର୍ଦ୍ଧାରିତ ସମସ୍ତ ଅନୁସାରେ (୯) ଧୃତରାଷ୍ଟ୍ର, ଗାନ୍ଧାରୀ, କୁନ୍ତୀ, ବିଦୁର ଓ ସଞ୍ଜୟ ପ୍ରଭୃତି ପାଞ୍ଚଜଣ ରାଜ୍ୟ ପରିତ୍ୟାଗ କରି ବନକୁ ଗମନ କଲେ (୧୦) । ଆଗରେ ସଞ୍ଜୟ, ବିଦୁର ଏବଂ ପଛରେ ଚାଲିଥାନ୍ତି କୁନ୍ତୀ । ଗାନ୍ଧାରୀ ମଧ୍ୟ କୁନ୍ତୀଙ୍କ କାନ୍ଧରେ ହାତ ପକାଇ ଚାଲୁଥାନ୍ତି । ଅନ୍ଧଅନ୍ଧୁଣୀ ଦୁହେଁ ବଣ ମଧ୍ୟରେ ଯିବାବେଳେ ଯେଉଁ ବୃକ୍ଷଡ଼ାଳ ତାଙ୍କ ଦେହରେ ବାଜୁଥିଲା, ତାର ପତ୍ର ଭକ୍ଷଣ କରୁଥାନ୍ତି । ସେମାନେ ତମସାନଦୀ କୂଳେ କୂଳେ ବହୁ ଦେଶ, ଗିରି ଓ କନ୍ଦର ପ୍ରଭୃତି ବୁଲି କନ୍ଦମୂଳ ପତ୍ର ଭକ୍ଷଣ କରି ରାତିରେ କୋମଳ ପତ୍ର ଉପରେ ଶୟନ କରିଥାନ୍ତି । ଏହିଭଳି * ମାସ * ଦିନ ଅତିବାହିତ ହେଲାପରେ ସେମାନେ ଗୟା ତୀର୍ଥରେ ପ୍ରବେଶ କଲେ । ସେଠାରେ ପାତାଳରୁ ପ୍ରବାହିତ ହୋଇଥିବା ଶୋଣଭଦ୍ରା ନଦୀରେ ସ୍ନାନ ସାରି ସାକ୍ଷୀଥିବା ବ୍ରହ୍ମାଙ୍କ କନ୍ୟା ଫଲ୍ଗୁ ନାମକ ତୀର୍ଥରେ ଦେବତାଙ୍କୁ ଦର୍ଶନ କରି ବ୍ରାହ୍ମଣମାନଙ୍କୁ ଦାନ କଲେ । ଏହି ମହାତୀର୍ଥରେ ଥିବା ରାମଘାଟ କୁଣ୍ଡରେ ଆପଣାର ସୋମଗୋତ୍ର ପାଇଁ ବାଲିରେ ପିଣ୍ଡ ଦେବା ସଙ୍ଗେ ସଙ୍ଗେ ଭୀଷ୍ମ, ଭୂରିଶ୍ରବା, ବାହ୍ଲୀକ, ସୋମଦତ୍ତ, ଶୈଲ୍ୟ, କର୍ଣ୍ଣ ଶକୁନି, ବିରାଟ, ଦ୍ରୁପଦ, ଅଭିମନ୍ୟୁ, କୁନ୍ତିଭୋଜ ପ୍ରଭୃତିଙ୍କ ସହିତ ନିଜର ଶତପୁତ୍ର ତଥା ଅନ୍ୟାନ୍ୟ ଆତ୍ମୀୟ ବନ୍ଧୁମାନଙ୍କୁ ସେ ବାଲିପିଣ୍ଡ ଦେଇ ସନ୍ତୁଷ୍ଟ କଲେ । ଗୟାରେ ସେ ଶ୍ରାଦ୍ଧଦେବା ଫଳରେ ସ୍ୱର୍ଗଗାମୀ ଆତ୍ମୀୟ ସ୍ୱଜନମାନେ ମୁକ୍ତିଲାଭ କଲେ । ବିଦୁର, ସଞ୍ଜୟ ଆପଣା ପିତୃକାର୍ଯ୍ୟ ସମାପନ ପରେ ଗାନ୍ଧାରୀଙ୍କ ସହିତ କୁନ୍ତୀ ମଧ୍ୟ ଶ୍ରାଦ୍ଧ ଦେଲେ । ପୁରିକତୀର୍ଥରେ ତିନିଦିନ ରହି ସେମାନେ ପ୍ରୟାଗ ତୀର୍ଥକୁ ଚାଲିଗଲେ । ଗଙ୍ଗା, ଯମୁନା ଓ ସରସ୍ୱତୀଙ୍କର ସଙ୍ଗମସ୍ଥଳ ପ୍ରୟାଗ ତୀର୍ଥରେ ସ୍ନାନ ସାରି ଯଥାବିଧିରେ ସେମାନେ ପିଣ୍ଡଦାନ କରିବାପରେ ମାଧବଙ୍କ ଦର୍ଶନ ପାଇ ମକର ମାସଟି ସେଠାରେ ବିତାଇଲେ । କଳପି ନାମକ ରାଜା ଧୃତରାଷ୍ଟ୍ରଙ୍କୁ

---

(୯) ସା. ମ. ଆଶ୍ରମିକ ପର୍ବ, ପୃ. ୧୯ ଓ ପୃ. ୩୪

(୧୦) "ଧୃତରାଷ୍ଟ୍ର ଗାନ୍ଧାରୀ କୋଇନ୍ତୀ ବିଦୁର ସଞ୍ଜୟେ
ରାଜ୍ୟଛାଡ଼ି ପାଞ୍ଚେ ହେଂ ବନକୁ ଗମନ କଲେ । ୨୩୭ ।"

(ସା. ମ. ଆ. ପ. ପୃ. ୩୨)

ସେଠାରେ ଦେଖି ପୁଣ୍ୟବନ୍ତ ରାଜାବୋଲି ତାହାଙ୍କୁ ଶରୀର ସେବା ପରିବର୍ତ୍ତେ ତୀର୍ଥ ସେବା କରିବା ପାଇଁ ପରାମର୍ଶ ଦେବାରୁ ଧୃତରାଷ୍ଟ୍ର ବିଭିନ୍ନ ତୀର୍ଥରେ ସେବାକରି ନାରଦ ମୁନିଙ୍କ ନାରଦ ପର୍ବତରେ ଭେଟିଲେ । ନାରଦମୁନି ଧୃତରାଷ୍ଟ୍ରଙ୍କୁ ଦେଖି କହିଲେ ଯେ ଆପଣାର ତପସ୍ୟାବଳରେ ବନକୁ ଆସି ତୀର୍ଥ କରିବା ସଙ୍ଗେ ସଙ୍ଗେ ସ୍ୱର୍ଗରେ ଥିବା ଉମର ଭାଇ ପଣ୍ଡୁଙ୍କର ସାକ୍ଷାତ ପାଇପାରିବ । ପୁଣି ଅଶୌଚ କର୍ମରେ ସ୍ୱର୍ଗପ୍ରାପ୍ତି ସମ୍ଭବ ନୁହେଁ । ଏହିଭଳି ଜ୍ଞାନପୂର୍ଣ୍ଣ ତଥ୍ୟ ପରିବେଷଣ କରିବା ସମୟରେ ବ୍ୟାସଦେବ ପ୍ରବେଶ ହୁଅନ୍ତେ, ଧୃତରାଷ୍ଟ୍ର ପ୍ରଣାମ କରି ଆପଣାର ବନବାସ ଦୁଃଖ ଜିଜ୍ଞାସା କଲେ । ଉତ୍ତରରେ ବ୍ୟାସଦେବ କହିଲେ ଯେ ତୋର ଭଲ କର୍ମ ହେତୁ ବନବାସ ଲଭିଛୁ । କାରଣ କ୍ଷତ୍ରିୟମାନଙ୍କର ଯୁଦ୍ଧରେ ମୃତ୍ୟୁ ହେବା ହିଁ ଶ୍ରେଷ୍ଠଗତି । ତୁ ଆଜନ୍ମ ଅନ୍ଧ ହୋଇଥିବାରୁ ଯୁଦ୍ଧରେ ମୃତ୍ୟୁ ହେବା ଅସମ୍ଭବ । ଚଳ୍ପାଶୂନ୍ୟ ଭାବରେ ବନବାସ କରିବା ପାଇଁ ବ୍ୟାସଦେବ ଆଦେଶ ଦେବାପରେ ଉକ୍ତ ପାଞ୍ଚଜଣ ବନବାସୀ ଗଙ୍ଗାକୂଳରେ ଥିବା ବକୁଳ, ମାଧବୀ ଓ ନାଗେଶ୍ୱର ପ୍ରଭୃତି ଲତାବିମାନ ଭିତରେ ପ୍ରବେଶ କରି ବସନ୍ତ କୋକିଳର ମଧୁରବାଣୀ ଶୁଣିବାକୁ ପାଇଲେ । ହସ୍ତୀ, ମୃଗ, ଘୋଡ଼ା ଓ ବାଘୁଟିଆ ପ୍ରଭୃତି ବଣୁଆଁମାନେ ସେଠାରେ ବୁଲୁଥିବାର ଦେଖି କୁରୁରାଜା ଧୃତରାଷ୍ଟ୍ର ପର୍ଣ୍ଣକୁଟୀର ନିର୍ମାଣ କରି ଫଳମୂଳ ଦ୍ୱାରା ଦିନ କାଟିଲେ । ନାରଦ ପର୍ବତରୁ ବ୍ୟାସଙ୍କୁ ଇନ୍ଦ୍ରପ୍ରସ୍ଥରେ ପ୍ରବେଶ ହେବା ଦେଖି ଯୁଧିଷ୍ଠିରଙ୍କ ଭ୍ରାତୃବର୍ଗମାନେ ତାହାଙ୍କ ପଦ୍ମପାଦରେ ଦ୍ରବ୍ୟ ପୂଜା କଲେ । ଗଙ୍ଗା କୂଳରେ ପଞ୍ଚବନବାସୀଙ୍କୁ ଦେଖିଥିବା ବିଷୟ ବ୍ୟାସଦେବ କହିବାରୁ ଯୁଧିଷ୍ଠିର ସେମାନଙ୍କୁ ଦେଖିବା ପାଇଁ ଇଚ୍ଛା କଲେ ।

ବ୍ୟାସଙ୍କ ପରାମର୍ଶରେ ପଞ୍ଚୁପାଣ୍ଡବ ସସୈନ୍ୟେ ଗଙ୍ଗାକୂଳରେ ପହଞ୍ଚିଲେ । କୌରବ ବଂଶର ଶହେ ଭାଇଙ୍କ ବିଧବା ସ୍ତ୍ରୀମାନେ ମଧ୍ୟ ସେମାନଙ୍କ ପଛେ ପଛେ ଗ୍ଲଲେ । ବିଦୁର ଧୃତରାଷ୍ଟ୍ରଙ୍କୁ ସେମାନଙ୍କର ଆଗମନର ବାର୍ତ୍ତା ଜଣାଇ ଦେଲେ । ସେଠାରେ ପଦ୍ମଞ୍ଜଳିପରେ ଶାଶୁ ଗାନ୍ଧାରୀଙ୍କୁ ଦେଖି ଗ୍ଳାନିମନ୍ତ ସହିତ ବିଧବାପୁର ନାରୀମାନେ ଶୋକ କରିବାକୁ ଲାଗିଲେ । ବ୍ୟାସଦେବଙ୍କ ଧ୍ୟାନମନ୍ତ୍ରବଳରେ କୌରବ ଓ ପାଣ୍ଡବମାନଙ୍କ ପକ୍ଷରୁ ଭୀଷ୍ମ, ଦ୍ରୋଣ, ଭୁରିଶ୍ରବା, ବାହ୍ଲୀକ, ସୋମଦତ୍ତ, କର୍ଣ୍ଣ, ଦୁର୍ଯୋଧନ ଏବଂ ଦ୍ରୁପଦ, ଶିଖଣ୍ଡି, ଧୃଷ୍ଟଦ୍ୟୁମ୍ନ ତଥା ଅଭିମନ୍ୟୁ ପ୍ରଭୃତି ଆସନ୍ତେ ଯୁବତୀମାନେ ନିଜ ନିଜ ସ୍ୱାମୀଙ୍କୁ ବରଣ କଲେ । ରାତି ପାହିଲା ପରେ ସ୍ୱାମୀମାନେ ଶୂନ୍ୟବାସୀ ହୋଇଯିବାରୁ ବିଧବା ଯୁବତୀମାନେ ପୁଣି ବ୍ୟାସଙ୍କ ନିକଟରେ କ୍ରନ୍ଦନ କଲେ ଏବଂ ଆପଣାର ଶରୀରକୁ ସ୍ୱର୍ଗଗାମୀ କରାଇବାପାଇଁ ପ୍ରାର୍ଥନା କଲେ । ଏହି ସମୟରେ କୃଷ୍ଣଙ୍କ ବୃଷ୍ଣିଆହା ବୃଷ୍ଣି କୁଳରେ ଜାତ ହୋଇ ଐଶ୍ୱର୍ଯ୍ୟଶାଳୀ, ଜ୍ଞାନ ତଥା ବୁଦ୍ଧିମନ୍ତ ଥିଲେ । ନିର୍ଭୀକ ମହାମନ୍ତ୍ର ବଳରେ ସେ କୌଣସି ଅପରାଧରେ ମହାଦୋଷୀ ହୋଇ ଅଭିଶାପରେ

ମନୁଷ୍ୟ ଜନ୍ମ ପାଇଥିଲେ । ମହାମୁନି ନିଜ ନିକର ସ୍ତ୍ରୀ ମାନଙ୍କୁ ଗ୍ରହଣ କରିବା ପାଇଁ ଆଦେଶ କରନ୍ତେ, ସେମାନେ କନ୍ୟାଙ୍କ ସହିତ ପିତୃ ଲୋକକୁ ଗମନ କଲେ । (୧୧) ।

ସେହି ନାରୀମାନେ ପିତୃଲୋକକୁ ଯିବାଫଳରେ ତାହାଙ୍କ ସ୍ୱାମୀମାନେ ବୈକୁଣ୍ଠରେ ନିବସି କୃଷ୍ଣଙ୍କ ଯୋଗୁଁ ପିତୃଲୋକରେ ସ୍ଥାନ ପାଇଲେ । ଧୃତରାଷ୍ଟ୍ର, ବିଦୁର ଓ ସଞ୍ଜୟ ପ୍ରଭୃତି ସେହି ପାଣ୍ଡବ ମାନଙ୍କର ଆଶ୍ରିତ ହେଲେ । ଯୁଧିଷ୍ଠିର ରାଇ, ମନ୍ତ୍ରୀ ଓ ସୈନ୍ୟମାନଙ୍କ ସହିତ ଧୃତରାଷ୍ଟ୍ରଙ୍କ ନିକଟରେ ପହଞ୍ଚି ବିଦୁରଙ୍କ ବିଷୟ ପଚାରନ୍ତେ, ସେ କହିଲେ ବିଦୁର ଗତ ଦୁଇମାସ ହେବ ଉତ୍ତରାଂଗୁଳରେ ରହିଛନ୍ତି । ସେ ସମୟରେ ବିଦୁର ଯୁଧିଷ୍ଠିରଙ୍କୁ ଦେଖିଦେଇ ବଣକୁ ଫେରି ଯାଉଥିବା ଜାଣି, ଯୁଧିଷ୍ଠିର ତାର ଅନୁଧାବନ କଲେ । ବଣରେ ଥିବା ଜମ୍ବୁ ବୃକ୍ଷ ତଳେ ବିଦୁର ଯୁଧିଷ୍ଠିରଙ୍କୁ ଦେଖି କୃଷ୍ଣ କୃଷ୍ଣ ଉଚାରଣ କରି ଉର୍ଦ୍ଧ୍ୱଗତିରେ ପ୍ରାଣତ୍ୟାଗ କଲା ପରେ ତାହାର ଆତ୍ମା ଯୁଧିଷ୍ଠିରଙ୍କ ଆତ୍ମାରେ ଲୀନ ହୋଇଗଲା । (୧୨) ବିଦୁରଙ୍କ ମର ଶରୀରକୁ କୋଳରେ ଧରି ଅଶ୍ରୁପୂର୍ଣ୍ଣ ନୟନରେ ଗୁଣଗାନ କରି ସତ୍କାର ନିମନ୍ତେ ଯୁଧିଷ୍ଠିର କାଠରେ ଅଗ୍ନି ସଂଯୋଗ କରନ୍ତେ, ତାହା ଆଦୌ ନ ପୋଡ଼ିବାରୁ ଶୂନ୍ୟବାଣୀ ହେଲା ଯେ ସେହି ବ୍ରହ୍ମଜ୍ଞାନୀ ଶରୀରକୁ ଦହନ ନକରି ଭୂଗର୍ଭରେ ପୋତି ଦେବା ପାଇଁ । (୧୩) ଶୂନ୍ୟବାଣୀ ଅନୁସାରେ ଯୁଧିଷ୍ଠିର ଭୂମିରେ ପୋତି ପକାଇ ଧୃତରାଷ୍ଟ୍ରଙ୍କ ପାଖକୁ ଫେରିଗଲେ । ଧୃତରାଷ୍ଟ୍ରଙ୍କ ପରାମର୍ଶରେ ଯୁଧିଷ୍ଠିର ହସ୍ତିନାକୁ ଫେରିଆସି ଦୁଃସମ୍ବାଦ ରାଇମାନଙ୍କୁ ଜଣାନ୍ତେ, ସମସ୍ତେ ଶୋକାକୁଳ ହୃଦୟରେ ତାହାର ଗୁଣଗାନ କଲେ ।

ବିଦୁରଙ୍କ ମୃତ୍ୟୁର ବର୍ଷକ ପରେ ଜ୍ୟେଷ୍ଠ କୃଷ୍ଣପକ୍ଷ ଅମାବାସ୍ୟା ରବିବାର କୃତ୍ତିକା ନକ୍ଷତ୍ର ଦିନରେ ଗଙ୍ଗା କୂଳସ୍ଥ ପର୍ବତ ଉପରେ ଥିବା ବୃକ୍ଷ ଡାଳସବୁ ପରସ୍ପର ଭିତରେ ଘଷି ହୋଇ ଅଗ୍ନି ସଂଯୋଗ ହୁଅନ୍ତେ, ବଣଗୁଡ଼ିକ ଖୁବ୍ ଜୋରରେ ଜଳିବାକୁ ଆରମ୍ଭ କଲା । ବଣରେ ଏଭଳି ଭୟଙ୍କର ଅଗ୍ନି ସଂଯୋଗ ଦେଖି ସଞ୍ଜୟ ଧୃତରାଷ୍ଟ୍ରଙ୍କୁ

---

(୧୧) ଶୁଣିବା ପୁରୁଷେ କନ୍ୟାଙ୍କର ହାତଧରି
ପିତୃଲୋକେ ବସିଲେ ଯାଇଁ ନୁଆରଲେ ସ୍ୱର୍ଗପୁରୀ । ୯୨
(ସା. ମ, ଆ-ପ, ପୃ-୪୭)

(୧୨) "ଯୁଧିଷ୍ଠିରଙ୍କ ଆତ୍ମାସ୍ତେ ବେଗେ ପଶିଲା ତାର ପ୍ରାଣ
ରଜା ବୋଇଲା ମୋହର ତେଜ ତ ଦୁଗୁଣ । ୪୭ ।"
(ସା. ମ, ଆ. ପ, ପୃ-୫୦)

(୧୩) "ବ୍ରହ୍ମଜ୍ଞାନୀ ସେ ଅଟଇ ହୃଅସି ମୁକ୍ତିକା
ଭୂ ସ୍ନେହ ବିଳମ୍ବ ନକରନ୍ତି ସେକା । ୭୯ ।"
(ସ. ମ, ଆ. ପ, ପୃ-୫୨)

ଝଜ ପିଠିରେ ବସାଇ ଅନ୍ୟତ୍ର ନେଇଯିବା ପାଇଁ କହିଲେ । କିନ୍ତୁ ବଳଶୂନ୍ୟ ଧୃତରାଷ୍ଟ୍ର ସେହି ଭୟଙ୍କର ବନାଗ୍ନି ଭିତରୁ ଖସିଯିବାର ଉପାୟ ନଦେଖି ସଞ୍ଜୟଙ୍କୁ ପଳାଇ ଯିବା ପାଇଁ ଉପଦେଶ ଦେଲେ । ମୁହୂର୍ତ୍ତିକ ଭିତରେ ବନାଗ୍ନି ସ୍ୱରଆଡ଼େ ମାଡ଼ିଗଲା । ସଞ୍ଜୟ ଭୟରେ ପଳାଇ ଯିବାପରେ ଧୃତରାଷ୍ଟ୍ରଙ୍କ ପର୍ଣ୍ଣକୁଟୀରରେ ଅଗ୍ନି ଲାଗିଯିବାରୁ ଗାନ୍ଧାରୀ, ଧୃତରାଷ୍ଟ୍ର ଓ କୁନ୍ତୀ ପୋଡ଼ି ହୋଇ ଅଗ୍ନି ଗର୍ଭରେ ଲୀନ ହୋଇଗଲେ । (୧୪) ଜ୍ୟେଷ୍ଠ ମାସ କୃଷ୍ଣପକ୍ଷ ଅମାବାସ୍ୟା ରବିବାର ଦିନ ଗାନ୍ଧାରୀଙ୍କ ଜନ୍ମ ହୋଇ ଥିବାରୁ, ସେହିଦିନ ତାଙ୍କର ପ୍ରାଣ ଗଲା । ନାରଦ ମୁନି ହସ୍ତିନାରେ ପହଞ୍ଚିବା ପରେ ତାହାଙ୍କୁ ପୂଜା କଲେ ଏବଂ ଯୁଧିଷ୍ଠିର ଅନ୍ତଦୁଃଖରେ ଭୃଗୁଋଷିଙ୍କ ଶାପଗ୍ରସ୍ତ ସର୍ବଗ୍ରାସୀ ଅଗ୍ନି ଦେବତାଙ୍କର କୋପ ବିଷୟ ଜାଣି ଆପଣା ମନକୁ ଶାନ୍ତ କରିଦେଲେ । ତାପରେ ଧର୍ମ୍ମ ପୁରୋହିତଙ୍କୁ ଡକାଇ ପିତାମାତାଙ୍କ ପ୍ରେତକାର୍ଯ୍ୟ ସମାପନ କରିବା ପାଇଁ ଧୃତରାଷ୍ଟ୍ରଙ୍କ ମୃତ ସ୍ଥାନକୁ ପଠାଇଲେ । ସେଠାରେ ଅସ୍ଥି ଚର୍ମ କିଛି ନପାଇବାରୁ ଗଙ୍ଗା କୂଳରେ ଯୁଧିଷ୍ଠିର ହାତୀ, ଘୋଡ଼ା, ଗାଈ, ଭୂମିଦାନ ଭୋଜନ ଓ ଅନ୍ନଦାନ ପ୍ରଭୃତି କରି ପିତୃକାର୍ଯ୍ୟ ସମାପନ ପରେ ହସ୍ତିନାକୁ ଫେରିଗଲେ । ଏହିଠାରୁ ଆଶ୍ରମିକ ପର୍ବର ସମାପ୍ତି ଘଟାଇଛନ୍ତି ସାରଳା ଦାସ ତାହାଙ୍କ ମହାଭାରତରେ ।

ବ୍ୟାସ ଦେବଙ୍କ ମହାଭାରତର ଆଶ୍ରମ ବାସିକ ପର୍ବ ଏହି ବିଷୟ ଉପରେ ଆଧାରିତ ହେଲେହେଁ ତହିଁରେ ପ୍ରାରମ୍ଭ ଓ ପରିସମାପ୍ତି ମଧ୍ୟରେ ବହୁ କିଛି ଅଧିକ ବର୍ଣ୍ଣନା ଦେଖାଯାଏ । ସାରଳା ମହାଭାରତର ଶ୍ରୋତା ବଇବସ୍ୱତ ମନୁ ଓ ବକ୍ତା ଅଗସ୍ତି ମୁନି । କିନ୍ତୁ ବ୍ୟାସଙ୍କ ମହାଭାରତରେ ଶ୍ରୋତା ଜନ୍ମେଜୟ ଓ ବକ୍ତା ବୈଶମ୍ପାୟନ । ମାତ୍ର ସାରଳା ମହାଭାରତର ଆଶ୍ରମିକ ପର୍ବରେ ବକ୍ତାର ଆସନକୁ ଓହ୍ଲାଇ ଆସିଛନ୍ତି ନନେ ଶୃଙ୍ଗମୁନି ଏବଂ ସେ ଆରମ୍ଭ କରିଛନ୍ତି—

"ଶୁଣ ହୋ ସୁଜନଜନେ ଶାମ୍ବ ଭୁମରର କଥା
ଶ୍ରୀମହାଭାରଥ ସ୍ନେହ ମଧୁର ରସ ଗୀତା । ୧ ।"

(ସା. ମ, ଆ ପ, ପୃ-୧)

---

(୧୪) ଦେଖ ଦେଖ ବହ୍ନିତ ଯେ ପଡୁଅଛୁ ଧାଇଁ
ଭୟେଣ ସଞ୍ଜୟେ ତହୁଁ ଗଲେକ ପଳାଇ । ୧୪ ।
ଧାଡକାରେ ଆସି ଲାଗିଲା ପର୍ଣ୍ଣକୁଟୀ
ଦହନ ହୋଇଲେ ତହିଁ ଗାନ୍ଧାରୀ ଧୃତରାଷ୍ଟ୍ରି । ୧୫ ।
ଦଇବ ଦଇବ ବୋଲି ସୁମରଣ କୋନ୍ତୀ
ତାହାଙ୍କ ଉପରେ ଅଗ୍ନି ପଡ଼ିଲା ଭଡ଼ତି । ୧୬ ।

(ସା. ମ, ଆ. ପ, ପୃ-୫୪)

ମହାଭାରତ ଯୁଦ୍ଧ ଶେଷରେ ପାଣ୍ଡବ ମାନଙ୍କର ରାଜ୍ୟ ଲାଭ ପରେ ଧୃତରାଷ୍ଟ୍ର ଓ ଗାନ୍ଧାରୀ ରାଜପୁରରେ ଅବସ୍ଥାନ କରୁଥିଲେ । ଯୁଧିଷ୍ଠିର ଆଦି ପାଣ୍ଡବ ମାନେ ସେମାନଙ୍କୁ ଭକ୍ତିପୂତ ସେବା କରୁଥିଲେ ଏବଂ ଧୃତରାଷ୍ଟ୍ରଙ୍କୁ ରାଜଯୋଗ୍ୟ ଶଯ୍ୟା, ମହାମୂଲ୍ୟ ବସ୍ତ୍ର, ଆଭରଣ, ନାନାବିଧ ଭକ୍ଷ୍ୟ ଓ ଭୋଜ୍ୟଦ୍ରବ୍ୟ ପ୍ରଦାନ କରୁଥିଲେ ଏବଂ କୁନ୍ତୀ ଗାନ୍ଧାରୀଙ୍କୁ ଗୁରୁଙ୍କ ସଦୃଶ ସମ୍ମାନ ଦେଖାଉଥିଲେ । ସାରଳା ମହାଭାରତରେ ମଧ୍ୟ ଯୁଧିଷ୍ଠିରଙ୍କର ଦାନ ବିଷୟରେ ଅନୁରୂପ ବର୍ଣ୍ଣନା ରହିଛି । ଯୁଧିଷ୍ଠିର ଧୃତରାଷ୍ଟ୍ରଙ୍କୁ ଧନ ସମ୍ପତ୍ତି ଦେଇ ସନ୍ତୁଷ୍ଟ କରିବାକୁ ଇଚ୍ଛା କରି ଭାଇମାନଙ୍କର ମତ ନିଅନ୍ତେ ଭୀମସେନ ଅନିଚ୍ଛା ପ୍ରକାଶ କଲେ ଏବଂ ଅର୍ଜ୍ଜୁନ ଏଥିରେ ସମ୍ମତ ହୋଇ ଭଣ୍ଡାର ଘରୁ ଧନ ଦେଲେ । ଭୀମର ଭଣ୍ଡିରେ ଥିବା ଅଂଶ ଯୋଗୁଁ ସେ କୋପ କରିପାରେ ଭାବି ଆପଣାର ଅଂଶଧନ (ନିଜସ୍ୱ) ଦେବାପାଇଁ ପ୍ରସ୍ତାବ କଲେ । ତହୁଁ ଯୁଧିଷ୍ଠିର ବିଦୁରଙ୍କ ହସ୍ତରେ ସୁବର୍ଣ୍ଣର ତଣ୍ଡୁଳ, ତେଲ, ମେଣ୍ଢା, ମୃଗ, ବସ୍ତ୍ର, ଅଳଙ୍କାର ଓ ବିଭିନ୍ନ ରତ୍ନ ପ୍ରେରଣ କଲେ (୧୫) ପଶାଖେଳ ଜନିତ କ୍ଳେଶ ଭୀମଙ୍କ ମନରୁ ଦୂର ହୋଇ ନଥିବାରୁ କେବଳ ତାହାଙ୍କ ବ୍ୟତୀତ ଅନ୍ୟ ଭାଇମାନେ ଯୁଧିଷ୍ଠିରଙ୍କ କଥାମାନି ଧୃତରାଷ୍ଟ୍ରଙ୍କ ଯତ୍ନ ନେଉଥିଲେ । ସାରଳା ମହାଭାରତରେ ଯୁଧିଷ୍ଠିର ଧୃତରାଷ୍ଟ୍ରଙ୍କର ସେବା କରିବା ବିଷୟରେ ବର୍ଣ୍ଣନା ଅଛି (୧୬) ।

---

(୧୫) "ଶୟନାନି ମହାର୍ହାଣି ବାସଂସ୍ୟାଭରଣାନି ଚ
ରାଜାର୍ହାଣି ଚ ସର୍ବାଣି ଭକ୍ଷ୍ୟ ଭୋଜ୍ୟାନ୍ୟନେକଶଃ ।" ୧୦ ।
ମୂଳ ମହାଭାରତ ଆଶ୍ରମ ବାସିକ ପର୍ବ, ପ୍ରଥମ ଅଧ୍ୟାୟ ପୃ ୬୯୫)

× × ×

ସା. ମ, ଆ· ପ, ପୃ-୨୩/୧୧୫ ପଦ

(୧୬) " ସର୍ବଶେଷ ମବର୍ତ୍ତନ୍ତ ଭୀମମେକଂ ତଦାବିନା
ନହି ତତ୍ ତସ୍ୟ ବୀରସ୍ୟ ହୃଦୟାଦ୍ୱ୍ୟପସର୍ପତି
ଧୃତରାଷ୍ଟ୍ରସ୍ୟ ଦୁର୍ବୁଦ୍ଧ୍ୟା ଯଦ୍‌ବୃତ୍ତଂ ଦ୍ୟୁତକାରିତମ୍ । ୨୨ ।" (ବ୍ୟାସଙ୍କ
ମ ହାଭାରତ-ଆଶ୍ରମବାସିକ ପର୍ବ, ପ୍ର : ଅ, ପୃ ୬୯୫)

× × ×

ଅନେକ ବିନୟେ ସେ ଧୃତରାଷ୍ଟ୍ରେ ହୁଅନ୍ତି ଯୁଧିଷ୍ଠି
ପଣ୍ଡୁଙ୍କଠଂ ଅଧିକ ସେବଇ ଧୃତରାଷ୍ଟ୍ରି । ୧୪ ।
ଧୃତରାଷ୍ଟ୍ରଙ୍କୁ ନିତ୍ୟେ ହେଁ ଶଙ୍କୁଳନ୍ତି ଯୁଧିଷ୍ଠି
ନିଜ ରାଜ୍ୟ ଭୋଗ ସମର୍ପିଲେ ଧୃତରାଷ୍ଟ୍ରି । ୧ (ସା. ମ, ଆ, ପ,
(ପୃ୧୪, ୧୫)

ଧୃତରାଷ୍ଟ୍ର ବ୍ରାହ୍ମଣମାନଙ୍କୁ ଯଥାଯୋଗ୍ୟ ଧନ ଦାନ କରିବା ପରେ ଗାନ୍ଧାରୀ ପୁତ୍ରମାନଙ୍କ ବିବିଧ ଶ୍ରାଦ୍ଧ କାର୍ଯ୍ୟ ପାଇଁ ସେମାନଙ୍କୁ ଅଭିଳଷିତ ବସ୍ତୁ ପ୍ରଦାନ କରିଥିଲେ । ସାରଳାଦାସ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କର ଶ୍ରାଦ୍ଧଦାନ ବିଷୟରେ ଉଲ୍ଲେଖ କରିଛନ୍ତି । (୧୭) ।

ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କ ବ୍ୟବହାରରେ ସନ୍ତୁଷ୍ଟ ହୋଇ ପରୋକ୍ଷ ଭାବରେ ପାଣ୍ଡବମାନଙ୍କର ଯୁଦ୍ଧରେ ଅପରାଜୟ, ଅପରିମିତ ଆୟୁ କାମନା କରି ପୁତ୍ରଶୋକ ପରିତ୍ୟାଗ କରିଛନ୍ତି । ସେହିଭଳି ସାରଳା ମହାଭାରତରେ ଯୁଧିଷ୍ଠିରଙ୍କ ପାରଦର୍ଶିତା ଯୋଗୁଁ ଧୃତରାଷ୍ଟ୍ର ହୋଷରୋଷ ନକରି ସମ୍ମାନ ଦେଖାଇଛନ୍ତି (୧୮) । ବ୍ୟାସଙ୍କ ମହାଭାରତ ଅନୁସାରେ ଭୀମସେନ ଧୃତରାଷ୍ଟ୍ରଙ୍କୁ କିଛି କହି ନପାରି ଆପଣାର ବିରକ୍ତି ଓ ଅନିଚ୍ଛାସତ୍ତ୍ୱେ ଯୁଧିଷ୍ଠିରଙ୍କ ସେବା କରିଛନ୍ତି । କିନ୍ତୁ ସାରଳାଦାସ ଭୀମଙ୍କର ସାହାଯ୍ୟ ଓ ସେବା ବିଷୟ ଉଲ୍ଲେଖ ନକରି ବରଂ ଧୃତରାଷ୍ଟ୍ରଙ୍କ ପ୍ରତି ତାହାଙ୍କ ଆକ୍ଷେପୋକ୍ତି ବର୍ଣ୍ଣନା କରିଛନ୍ତି (୧୯) ।

ଧୃତରାଷ୍ଟ୍ରଙ୍କ ଜପ ଓ ତପର ମାହାତ୍ମ୍ୟ ଓ ରାଜ୍ୟରେ ତାହାର ପ୍ରଭାବ ବିଷୟ ମୂଳମହାଭାରତରେ ଥିବାବେଳେ ସାରଳା ମହାଭାରତରେ କୁନ୍ତୀ ସେହି ଜପ-ତପର

---

(୧୭) ଶିଷ୍ୟବୃତ୍ତିଂ ସମାପନ୍ନାନ୍ ଗୁରୁବତ୍ ପ୍ରତ୍ୟପଦ୍ୟତ ।
ଗାନ୍ଧାରୀ ଚୈବ ପୁତ୍ରାଣାଂ ବିବିଧୈଃ ଶ୍ରାଦ୍ଧକର୍ମଭିଃ । ୧୨ ।
(ବ୍ୟା, ମ, ଦ୍ୱିତୀୟ ଅଧ୍ୟାୟ, ପୃ, ୩୧୭)

× × ×

ସେ ଅର୍ଥର ଦେବତାଙ୍କୁ କଲେ ଦରଶନ
ବ୍ରାହ୍ମଣଙ୍କ ହାତରେ ଯୋକାୟେ ଦିଲେ ଦାନ । ୧୫ ।
କଲେ ପିତୃକାର୍ଯ୍ୟ ତହୁଂ ବିଦୁର ସଞ୍ଜୟେ
ଗାନ୍ଧାରୀ ସହିତେ ଶ୍ରାଦ୍ଧ କରନ୍ତି କୋଇନ୍ତାୟେ । ୨ ।
(ସା, ମ, ଆ, ପ, ପୃ, ୩୫, ୩୭)

(୧୮) ବ୍ୟାସଙ୍କ ମହାଭାରତ, ଦ୍ୱିତୀୟ ଅଧ୍ୟାୟ । (୨୦ ପଦ, ପୃ, ୩୧୭)

× × ×

ପୁତ୍ରନ୍ତି ପାଣ୍ଡୋଙ୍କ ଯୁଧେଷ୍ଟି ଭଗତେ
ସେହିକା ଯୁଧେଷ୍ଟି ହୋଇଲେ ତାହାଙ୍କ ଶତେ ପୁତ୍ରେ । ୨୪ ।
ସା, ମ, ଆ, ପ, ପୃ, ୧୫)

(୧୯) ସା. ମ, ଆଶ୍ରମିକ ପର୍ବ, ୨୦, ୨୧,

ମାହାତ୍ମ୍ୟ ଜନ୍ମ ଜନେ ପଥ ଦେଖାଇବା ପାଇଁ ସେମାନଙ୍କ ସଙ୍ଗରେ ବନକୁ ଯାଇଛନ୍ତି (୨୦) ।

ରାଜର୍ଷି ମାନଙ୍କର ଯୁଦ୍ଧରେ ନଚେତ୍ ଅରଣ୍ୟରେ ପ୍ରାଣତ୍ୟାଗ ହେବା ବିଷୟ ବ୍ୟାସଙ୍କଠାରୁ ଶୁଣି ଯୁଧିଷ୍ଠିର ତଥାସ୍ତୁ କହନ୍ତେ, ବୃଦ୍ଧେ ବନଗମନ କରିଛନ୍ତି । ସାରଳାଙ୍କ ବର୍ଣ୍ଣନାରେ ଅନୁରୂପ ଘଟଣାର ବର୍ଣ୍ଣନା ଥିବା ଭଳି ଜଣାପଡ଼େ (୨୧) । ଧୃତରାଷ୍ଟ୍ରଙ୍କ ବନଗମନ ପୂର୍ବରୁ ଯୁଧିଷ୍ଠିରଙ୍କ ରାଜ୍ୟ ପାଳନ କରିବା ବିଷୟ ଉଭୟ ମହାଭାରତରେ ସ୍ପଷ୍ଟ (୨୨) ।

ରାଜ୍ୟ ପାଳନର ଉପଦେଶ ଦେବାପରେ ଧୃତରାଷ୍ଟ୍ର କୁରୁଜାଙ୍ଗଳଙ୍କ ଠାରୁ ବିଦାୟ ନେଇ ବନ ଭୂମିରେ ଶେଷ ଜୀବନଯାପନ କରିବାକୁ ଅଭିଳାଷ ପୋଷଣ କରି ସେମାନଙ୍କର ଅନୁମତି କାମନା କଲେ । କିନ୍ତୁ ସାରଳା ମହାଭାରତ ଅନୁସାରେ

---

(୨୦) "ଯଥା ତବ ପ୍ରିୟଂ ରାଜଂ ଚକର୍ଷାମି ପରଂ ତପ
ଯଦବ୍ରହମନୁ ରାହେୟା ଭବତୋ ଦସ୍ଯିତୋ ଅପିବା । ୮୪ ।"
(ବ୍ୟା, ମ, ତୃତୀୟ ଅଧ୍ୟାୟ, ପୃ. ୩୯୯)

× × ×

ବୋଇଲାସ୍ତେ ମଣାଇଲେ ଯତ୍ନଂ ରାସ୍ତେ ଯୁଧିଷ୍ଠିି
ଛାଡ଼ିଲେ ମନବ୍ୟଥା ହୋଇଲେ ସବେ ତୁଷ୍ଟି । ୨୦୦ ।
ସା. ମ, ଆ, ପ, ପୃ, ୨୯)

(୨୧) ":ଏତାବଦୁକ୍ତ୍ୱା ବଚନ ମନୁମାନ୍ୟ ଚ ପାର୍ଥିବମ୍ ।
ତଥ୍ୟାସ୍ତିତ ଚ ତେନୋକ୍ତଃ କୌନ୍ତେୟେନ ଯଶୋବନମ୍" । ୧୮ ।
ବ୍ୟା, ମ, ଚତୁର୍ଥ ଅଧ୍ୟାୟ, ପୃ ୩୯୯)

× × ×

ବାବୁ ଶତେ ପୁତ୍ର ତୋହର ବଧ କଲେ ଯେ ପାଣ୍ଡବେ
ଆପଣେ ବାନପ୍ରସ୍ଥ କରି ଯା ଯେଥେ ନରହ ରାଜଦେବୋ । ୯ ।"
(ସା, ମ, ଆ, ପ, ପୃ, ୧୪)

(୨୨) "ଏବ ମେତନ୍ମହାବାହୋ ଯଥା ବଦସି ଭାରତ
ରାଜାସ୍ତଂ ବୃଦ୍ଧତାଂ ପ୍ରାପ୍ତଃ ପ୍ରମାଣେ ପରମେଷ୍ଠିତଃ" । ୧୦ ।
ବ୍ୟାସ, ଚତୁର୍ଥ ଅଧ୍ୟାୟ, ପୃ, ୩୯୯)

× × ×

"ତୁହେ ଯୁଧିଷ୍ଠି ପାଳିବୁ ନା ରାଜଧର୍ମେ
ଯେଣେଟି ଭକ୍ତେ ସେବନ୍ତୁ ସଦକର୍ମେ । ୧୫୭" ।
ସା, ମ, ଆ, ପ, ପୃ, ୨୭)

ଧୃତରାଷ୍ଟ୍ର ବଂଶକ୍ଷୟର ଦୁଃଖରେ ମି୍ରୟମାଣ ହୋଇ ପାଣ୍ଡବମାନଙ୍କର ସେବା ସତ୍ତ୍ୱେ ବନଗମନ ଇଚ୍ଛାପୋଷଣ କର ବିଦୁରଙ୍କ ହସ୍ତେ ସେହି ବାର୍ତ୍ତା ପାଣ୍ଡବମାନଙ୍କ ନିକଟକୁ ପଠାଇଛନ୍ତି (୨୩) ।

ଧୃତରାଷ୍ଟ୍ର ତାହାଙ୍କ ପ୍ରଜାଗଣଙ୍କଠାରୁ ବନଗମନ ନିମିତ୍ତ ବିଦାୟ ନେବାବେଳେ ତାହାଙ୍କ ପୂର୍ବକୃତ କର୍ମର କ୍ଷମା ମାଗି ଅନୁମତ ନେଉଛନ୍ତି (୨୪) । ମାତ୍ର ସାରଳାଦାସଙ୍କ ମହାଭାରତରେ ଧୃତରାଷ୍ଟ୍ର କେବଳ ରାଜା ଯୁଧିଷ୍ଠିରଙ୍କୁ ବିଦୁରଙ୍କ ଜରିଆରେ ଜଣାଇ ଓ ତାହାଙ୍କୁ ଏଥିପାଇଁ ସମ୍ମତ କରାଇ ତାହାଙ୍କ ପ୍ରଦତ୍ତ ଅଙ୍ଗଧନ ସହିତ ସଞ୍ଜୟ, ବିଦୁର, କୁନ୍ତୀ, ଗାନ୍ଧାରୀଙ୍କ ସଙ୍ଗରେ ଘେନି ଧୃତରାଷ୍ଟ୍ର ବନକୁ ଯାଇଛନ୍ତି (୨୫) ।

ଅମ୍ବିକା ନନ୍ଦନ ଧୃତରାଷ୍ଟ୍ର ଭୀଷ୍ମ, ଦ୍ରୋଣ ସୋମଦତ୍ତ, ବାହ୍ଲୀକ, ଆପଣାର ପୁତ୍ରଗଣ, ଜୟଦ୍ରଥ ଓ ନିହତ ସୁହୃଦ୍ ମାନଙ୍କୁ ଶ୍ରାଦ୍ଧ ଦେବାପାଇଁ ଆବଶ୍ୟକୀୟ ଅର୍ଥ ଆଣିବା ନିମନ୍ତେ ବିଦୁରକୁ ଯୁଧିଷ୍ଠିରଙ୍କ ନିକଟକୁ ପଠାଇଲେ ଏବଂ କାର୍ତ୍ତିକପୂର୍ଣ୍ଣିମା ଦିନ ବନଗମନ ପାଇଁ ପ୍ରସ୍ତୁତ ହୋଇଥିବା ବିଷୟ ବିଦୁର ଜଣାଇ ଦେଲେ (୨୬) । ସାରଳା

---

(୨୩) ସରଳା ବଚନ ଶୁଣିଣ ମସ୍ତପତ୍ତି
ବିଦୁର ମହାତମାକୁ ସେ ହକାରିଲେ କଥି । ୫୩ ।
ଯାଅସି ମହାତମା ହୋ ଯୁଜେଷ୍ଠିକ ବୋଲ । ୫୪ ।
(ସା, ମ, ଆ, ପ, ପୃ, ୧୮)

(୨୪) ଅନୁଜାନୀତ ଭଦ୍ରଂବୋ ବ୍ରଜାବ ଶରଣଂ ତବଃ
ଅସ୍ୟଂ ଚ କୌରବୋ ରାଜା କୁନ୍ତୀ ପୁତ୍ରୋ ଯୁଧିଷ୍ଠିରଃ । ୧୦ ।
(ବ୍ୟା, ମ, ନବମ ଅଧ୍ୟାୟ, ପୃ, ୪୦୩)

(୨୫) ସା. ମ. ଆଶ୍ରମିକ ପର୍ବ, ପୃ, ୩୧/ପୃ, ୧୮

(୨୬) ବିଦୁରଂ ପ୍ରେଷୟାମାସ ଯୁଧିଷ୍ଠିର ନିବେଶନମ୍ । ୧ ।
× × ×
ଧୃତରାଷ୍ଟ୍ରେ । ମହାରାଜୋ ବନବାସାୟ ଦୀକ୍ଷିତଃ ।
ଗମିଷ୍ୟତି ବନଂ ରାଜନ୍ନାଗତାଂ କାର୍ତ୍ତିକୀମିମାମ୍ । ୩ ।
(ବ୍ୟା, ମ, ଏକାଦଶ ଅଧ୍ୟାୟ ପୃ, ୪୦୫
× × ×
ସତ୍ତ୍ୱାଂ କୁରୁକୁଳ ଶ୍ରେଷ୍ଠ କଂ ତଦର୍ଥମଶ୍ରିଷ୍ୟତି
ଶ୍ରାଦ୍ଧମିଚ୍ଛତି ଦାତୁଂ ସ ଗାଙ୍ଗେୟସ୍ୟ ମହାତ୍ମନଃ । ୪ ।
ଦ୍ରୋଣସ୍ୟ ସୋମଦତ୍ତସ୍ୟ ବାହ୍ଲୀକସ୍ୟ ଚ ଧୀମତଃ
ପୁତ୍ରାଣାଂ ଚୈବ ସର୍ବେଷାଂସ୍ୱେ ସ୍ୱକୀୟ ସୁହୃଦୋହତାଃ ୫ ।
(ବ୍ୟା, ମ, ଏକାଦଶ ଅଧ୍ୟାୟ, ପୃ, ୪୦୫)

ମହାଭାରତରେ ମଧ୍ୟ ଅନୁରୂପ ବର୍ଣ୍ଣନା ରହିଛି । ବିଦୁର ଯେଉଁଦିନ ପାଣ୍ଡବମାନଙ୍କ ନିକଟକୁ ଧୃତରାଷ୍ଟ୍ରଙ୍କର ବନଗମନ ସମ୍ବାଦ ନେଇ ଯାଇଥିଲେ ସେ ଦିନ ଥିଲା କାର୍ତ୍ତିକ ମାସ ଶୁକ୍ଳ ପଞ୍ଚମୀ ଗୁରୁବାର ରୂଳା ସହାନ୍ତ ଏବଂ ଯୁଧିଷ୍ଠିରଙ୍କ ବାକ୍ୟରୁ ଜଣାଯାଏ ଯେ ଦଶଦିନ ମଧ୍ୟରେ ଶ୍ରାଦ୍ଧ କାର୍ଯ୍ୟ ଶେଷ କରି ପୂର୍ଣ୍ଣିମା ଦିନ ଧୃତରାଷ୍ଟ୍ର ବନଗମନ କରିବେ (୨୭) । ତେଣୁ ବ୍ୟାସଙ୍କ ପ୍ରଦତ୍ତ ବନଗମନ ଦିବସ ସହିତ ସାରଳାଙ୍କର ପ୍ରଦତ୍ତ ବନଗମନ ଦିବସର ମେଳ ରହିଅଛି । ଏତଦ୍‌ବ୍ୟତୀତ ଯୁଧିଷ୍ଠିର ଓ ଅର୍ଜ୍ଜୁନ ବିଦୁରଙ୍କର ଧନ ମାଗିବା କଥା ଶୁଣି ଦେବାପାଇଁ ସ୍ୱୀକାର କରନ୍ତେ ଭୀମସେନ ପ୍ରତିବନ୍ଧିତା ପ୍ରକାଶକରି ମହାଭାରତରେ ଅର୍ଜ୍ଜୁନଙ୍କୁ ଏବଂ ସାରଳା ମହାଭାରତରେ ଯୁଧିଷ୍ଠିରଙ୍କୁ ଆକ୍ଷେପ କରିଛନ୍ତି(୨୮) । ପୁଣି ମାତା କୁନ୍ତୀ ଆପଣା ପୁତ୍ର କର୍ଣ୍ଣର ଶ୍ରାଦ୍ଧ ଦେବା ବିଷୟ ଉଭୟତ୍ର ସମାନ(୨୯) । କିନ୍ତୁ ଭୀମ ଏବଂ ଯୁଧିଷ୍ଠି

(୨୭) ବନ୍ଧୁ ମଇତ ରଣେ ପଡ଼ିଲେ ସକଳ ।୫୪।
ବାହ୍ଲୀକ ଭୂରିଶ୍ରବା ଯେ ଅନନ୍ତ ଆମ୍ଭ ଅଜା
ଭୀଷ୍ମ ଜ୍ୟେଷ୍ଠ ପିତା ଆସ୍ତନ୍ତୁର ଅଗ୍ରଜା । ୫୫ ।
ସେହିମାନଙ୍କ ଶ୍ରାଦ୍ଧ ଦେବାକୁ ମୋହର ଇଚ୍ଛା
ଧନେଣ କାର୍ଯ୍ୟ ଯେ ହୋଇବାକ ମନବାଞ୍ଛା । ୫୭ ।
କୋଇନ୍ତା ଦେବୀଙ୍କର ପଞ୍ଚ ପୁତ୍ରନ୍ତ ବସାଇ
ଶ୍ରାଦ୍ଧକରିଂ, ବଦୂର ଧନ କରୁ ମାଗ ହୋ ଯାଇଁ । ୫୮ ।
କାର୍ତ୍ତିକ ପୂର୍ଣ୍ଣିମା ଆଜକୁ ଆବର ଦିନ ଦଶ
ଦଶଗୁଣେ ଶ୍ରାଦ୍ଧ କରି ପିତୃଲୋକେ ତୋଷ । ୧୨୭ ।
(ସା. ମ, ଆ, ପ, ପୃ, ୧୮, ୨୩)

(୨୮) "ଭୀମସେନସ୍ତୁ ସକ୍ରୋଧଃ ପ୍ରୋବାଚେଦଂ ବଚସ୍ତଦା ।
ବୟଂ ଭୀଷ୍ମସ୍ୟ ଦାସ୍ୟାମଃ ପ୍ରେତକାର୍ଯ୍ୟଂ ତୁ ଫାଲଗୁନ" । ୧୭ ।
(ବ୍ୟା. ମ, ଏକାଦଶ ଅଧ୍ୟାୟ, ପୃ ୪୪୫)

× × ×

"ଯୁଧିଷ୍ଠିରଙ୍କ ବଚନ ଶୁଣି ବୀର ଭୀମସେନ
କୋପଭର ହୋଇଣ ସେ ବୋଲଇ ବଚନ । ୭୮ ।"
(ସା. ମ, ଆ. ଧ, ପୃ ୨୦)

(୨୯) ଅନ୍ୟେଷାଂ ଚୈବ ସର୍ବେଷାଂ କୁନ୍ତୀ କର୍ଣ୍ଣାୟ ଦାସ୍ୟତି । ୧୭ ।
(ବ୍ୟା· ମ ଏକାଦଶ ଅଧ୍ୟାୟ ପୃ ୪୦୫)

× × ×

କର୍ଣ୍ଣକରି ଶ୍ରାଦ୍ଧ ଦେଉ ତାହାର ଯେ ମାତା
ଧୃତରାଷ୍ଟ୍ରେ କରନ୍ତୁ ସେ ନିଜ ପୁତ୍ର ଚନ୍ତା । ୯୨ ।
(ସା. ମ, ଆ. ପ, ପୃ ୨୧)

ଦୃଷ୍ଟାନ୍ତ ଦେଇ ବ୍ୟାସଙ୍କର ମହାଭାରତରେ ପାଣ୍ଡବମାନେ ମୃଗ ଚର୍ମ ପରିହିତ ହୋଇ ପାଞ୍ଚାଳୀଙ୍କ ସହିତ ବନବାସୀ ହେବାବେଳେ ଧୃତରାଷ୍ଟ୍ରଙ୍କଠାରୁ କୌଣସି ସମବେଦନା ପାଇନାହାଁନ୍ତି ଏବଂ ସେହି କଥାର ପ୍ରତିଧ୍ୱନି ସ୍ୱରୂପ ସାରଳା ମହାଭାରତରେ ମଧ୍ୟ ଭୀମଙ୍କର ଉକ୍ତି ହୋଇଛି କୁରୁସଭା ତଳେ ଦ୍ରୌପଦୀଙ୍କୁ ଦୁଃଶାସନ ଉଲଗ୍ନ କଲେହେଁ ସେଠାରେ ଉପସ୍ଥିତ ଥିବା ମହାରାଜା ଧୃତରାଷ୍ଟ୍ର ତଳେ ହେଲେ ସହାନୁଭୂତି ଦେଖାଇ ନାହାନ୍ତି । ତେଣୁ ଉଭୟତ ପାଣ୍ଡବ ମାନଙ୍କର ଅସହାୟ ଅବସ୍ଥାରେ ଧୃତରାଷ୍ଟ୍ର ସାହାଯ୍ୟ କରିନଥିବା ସ୍ପଷ୍ଟ ଏବଂ ଜଣେ ରକ୍ତମାଂସ ଧାରୀ ମନୁଷ୍ୟ ଭାବରେ ଭୀମଙ୍କର ଏହି ଯୁକ୍ତି ଯଥାର୍ଥ(୩୦) ।

ଶେଷରେ ଅର୍ଜ୍ଜୁନଙ୍କ ପ୍ରବୋଧନା ବାକ୍ୟରେ ଭୀମ ଶାନ୍ତ ହେଲେ ଏବଂ ବିଦୁରଙ୍କ ପ୍ରସ୍ତାବ ଗ୍ରହଣ କରି ଯୁଧିଷ୍ଠିର ଆପଣାର ସଞ୍ଚୟରୁ ଧନ ଦେବାକୁ ଅଂଗୀକୃତ ହେଲେ । (୩୧)

ବ୍ୟାସ ଦେବଙ୍କ ମହାଭାରତର ତ୍ରୟୋଦଶ ଅଧ୍ୟାୟରୁ ସପ୍ତଦଶ ଅଧ୍ୟାୟ ଭିତରେ ବିଦୁର ଧୃତରାଷ୍ଟ୍ରଙ୍କ ପ୍ରତି ଉଦାର ବଚନ ପ୍ରକାଶ, ଧୃତରାଷ୍ଟ୍ରଙ୍କ ଦ୍ୱାରା ଯୁଦ୍ଧରେ ନିହତ ବ୍ୟକ୍ତିଙ୍କ ଶ୍ରାଦ୍ଧ ପ୍ରଦାନ, ଗାନ୍ଧାରୀଙ୍କ ସହିତ ଧୃତରାଷ୍ଟ୍ରଙ୍କ ବନଗମନ ଓ ନଗରବାସୀଙ୍କଠାରୁ ବିଦାୟ, କୁନ୍ତୀଙ୍କ ବନଗମନକୁ ପାଣ୍ଡବମାନଙ୍କର ନିବୃତ୍ତିକରଣ ଓ ସେମାନଙ୍କୁ କୁନ୍ତୀଙ୍କର ଅନୁନୟ ବାକ୍ୟ ପ୍ରଦର୍ଶନ ବିଷୟ ବର୍ଣ୍ଣିତ ଅଛି ଏବଂ ସାରଳାଦାସ ମହାଭାରତରେ ଆଶ୍ରମିକ ପର୍ବ ସହ ଏହା ସାମ୍ୟ ପରିଲକ୍ଷିତ ହୁଏ । କିନ୍ତୁ ଅଷ୍ଟାଦଶ

---

(୩୦) "କୃଷ୍ଣାଜିନୋପ ସଂବୀତୋ କୃତାଭରଣ ଭୂଷଣଃ ।
ସାର୍ଦ୍ଧ ପାଞ୍ଚାଳ ପୁତ୍ରା ତ୍ୱଂ ରାଜାନମୁପଜଗ୍ମି ବାନ୍ । ୨୨ ।"
(ବ୍ୟା. ମ; ଏକାଦଶ ଅଧ୍ୟାୟ ପୃ ୪୦୫)

× × ×

"ପାଞ୍ଚଭାଇନ୍ତ ବସାଇଲେ ଭୃତ୍ୟପଣେ ସଭା ତଳେ
କାହିଁ ତୁମ୍ଭ ତାହାର ପ୍ରୀତି ଥିଲାଟି ସେକାଳେ । । ୨ ।"
(ସା· ମ, ଆ. ପ, ପୃ ୨୦)

(୩୧) ମମ କୋଷାଦଢ-ବିଭ୍ରେମା ଭୁଦ୍‌ଭୀମଃ ସୁଦୁର୍ମନାଃ । ୫ ।
(ଏକାଦଶ ଅଧ୍ୟାୟ)

× × ×

"ଭଣ୍ଡାର ଧନ ଯେବେ ଦେବାର ହୋଇଲା ବାଣୀ
ଆମ୍ଭର ଯିସ ଅଙ୍ଗଧନ ଅଛି ଦେବାର ମିଳଇ ଦ୍ୱେ ବଧି ୧୧୩ ।"
(ସା· ମ, ଆ. ପ, ପୃ ୨୨)

ଅଧ୍ୟାୟରେ ବର୍ଣ୍ଣିତ ଗାନ୍ଧାରୀଙ୍କ ସହିତ କୁନ୍ତୀଙ୍କର ଗଙ୍ଗା ତଟରେ ବାସ ପ୍ରସଙ୍ଗଟି ସାରଳା ମହାଭାରତରେ ମଧ୍ୟ ସେହିଭଳି ପ୍ରକଟିତ (୩୨) ।

ଊନବିଂଶ ଅଧ୍ୟାୟ ଠାରୁ ପଞ୍ଚବିଂଶ ଅଧ୍ୟାୟ ମଧ୍ୟରେ ଧୃତରାଷ୍ଟ୍ର ପ୍ରଭୃତଙ୍କର ଶତଯୂପଙ୍କ ଆଶ୍ରମରେ ବାସ, ଦେବର୍ଷିନାରଦଙ୍କ ଦ୍ୱାରା ଧୃତରାଷ୍ଟ୍ରଙ୍କ ଭବିଷ୍ୟଗତ ସମ୍ପର୍କରେ ବର୍ଣ୍ଣନ, ଧୃତରାଷ୍ଟ୍ରଙ୍କ ପାଇଁ ପାଣ୍ଡବଗଣ ଓ ପ୍ରଜାମାନଙ୍କର ଚିନ୍ତା, ଦ୍ରୌପଦୀ, ସହଦେବଙ୍କ ସହ ଯୁଧିଷ୍ଠିରଙ୍କ ବନଗମନ ଇଚ୍ଛା, ସୈନ୍ୟ ଓ ଅନୁଚରଙ୍କ ସହିତ ଯୁଧିଷ୍ଠିରଙ୍କ ବନଗମନ, ପାଣ୍ଡବମାନଙ୍କର କୁରୁକ୍ଷେତ୍ରକୁ ଆଗମନ, ବଣରେ ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୁନ୍ତୀଙ୍କ ସହିତ ପାଣ୍ଡବଙ୍କର ସାକ୍ଷାତ ଓ ସଞ୍ଜୟ ପ୍ରଭୃତି ପାଣ୍ଡବଙ୍କ ସହ ଆପଣା ପତ୍ନୀମାନଙ୍କର ସାକ୍ଷାତ ପ୍ରସଙ୍ଗସବୁ ଉଲ୍ଲିଖିତ ଏବଂ ଷଡ଼ବିଂଶ ଅଧ୍ୟାୟରେ ବର୍ଣ୍ଣିତ ଯୁଧିଷ୍ଠିରଙ୍କ ଶରୀରରେ ବିଦୁରଙ୍କ ପ୍ରବେଶ ଘଟଣାଟି ଉଭୟ ମହାଭାରତରେ ସମାନ । (୩୩)ପୁଣି ସପ୍ତବିଂଶ ଅଧ୍ୟାୟ ଠାରୁ ଦ୍ୱାତ୍ରିଂଶ ଅଧ୍ୟାୟ ମଧ୍ୟରେ ଯୁଧିଷ୍ଠିର ପ୍ରଭୃତଙ୍କର ମୁନି ଆଶ୍ରମକୁ ଗମନ, ବିଦୁର ଯୁଧିଷ୍ଠିରଙ୍କୁ ବ୍ୟାସଙ୍କ ଧର୍ମର ସ୍ୱରୂପ ପ୍ରତିପାଦନ ଓ ଅଭିଷ୍ଟବସ୍ତୁ ଦାନ, ମୃତ ବନ୍ଧୁଙ୍କ ପାଇଁ ଧୃତରାଷ୍ଟ୍ରଙ୍କ ମନରେ ଦୁଃଖ, କୁନ୍ତୀଙ୍କ ଦ୍ୱାରା କର୍ଣ୍ଣଜନ୍ମର ଗୁପ୍ତ ରହସ୍ୟ ପ୍ରକଟନ, ବ୍ୟାସଙ୍କ ଦ୍ୱାରା ଧୃତରାଷ୍ଟ୍ର ପ୍ରଭୃତିଙ୍କର ପୂର୍ବଜନ୍ମ ପରିଚୟ ପ୍ରଦାନ ଓ ଗଙ୍ଗାତଟକୁ ଗମନ, ନିହତ କୌରବ ପାଣ୍ଡବ ବୀରମାନଙ୍କର ଗଙ୍ଗାଜଳରୁ ଉଦ୍ଧାର, ପର ଲୋକଗତ ବ୍ୟକ୍ତିମାନଙ୍କ ସହ ପୁନର୍ମିଳନ, ଗଙ୍ଗାଜଳରେ

---

(୩୨) ବ୍ୟାସଙ୍କ ମହାଭାରତ, ଅଷ୍ଟାଦଶ ଅଧ୍ୟାୟ, ୨୫ପଦ, ପୃ ୪୧୦

× × ×

ବ୍ୟାସେ ବୋଇଲେ ବାରୁ ଶୁଣ ରାୟେ ଯୁଧିଷ୍ଠି
ଗଙ୍ଗାକୂଳେ ଦେଖିଲୁ ତୋହୋର ଦେହୁଡ଼ା ଧୃତରାଷ୍ଟ୍ରି । ୭୦ ।

(ସା, ମ, ଆ,ପ, ପୃ ୩୯)

(୩୩) ଧାଶେଷ ବିଦୁରୋଧ୍ୟମାନ ଗାତ୍ରୈର୍ଗାତ୍ରାଣି ନୈବଶ
ପ୍ରାଣାନ୍ ପ୍ରାଣେଷୁ ଚ ଦଧଦିନ୍ଦ୍ରିୟାଣୀନ୍ଦ୍ରିୟେଷୁ ଚ । ୨୭ ।
ସ ଯୋଗବଲମାସ୍ଥାୟ ବିବେଶ ନୃପତେସ୍ତନୁ
ବିଦୁରୋଧର୍ମରାଜସ୍ୟ ତେଜସା ପ୍ରଜ୍ୱଳନ୍ନିବ । ୨୮ ।

(ବ୍ୟା. ମ, ଷଡ଼ବିଂଶ ଅଧ୍ୟାୟ ପୃ· ୪୧୭)

× × ×

ଯୁଧିଷ୍ଠିଙ୍କ ଆସ୍ୱାସ୍ୟେ ବେଗେ ପଶିଲା ତାର ପ୍ରାଣ
ରାଜା ବୋଇଲା ମୋହର ତେଜ ତ ଦୁଗୁଣ । ୪୭ ।
ଜାଣିଲା ବିଦୁରସେ ପଶିଲେ ମୋହୋର ଗର୍ଭେ
କମ୍ପିତ ଶରୀର ମୋହୋର ବଢ଼ିମା ଗୁଣ ସ୍ନେହ । ୪୭ ।

(ସା. ମ, ଆ. ପ, ପୃ. ୫୦)

ଲୁଚଥିବା ବଧବାମାନଙ୍କର ସ୍ୱମତଲୋକ ପ୍ରାପ୍ତି ପ୍ରସଙ୍ଗ ଶୁଦ୍ଧ ବ୍ୟାସଙ୍କ ମହାଭାରତରେ ପ୍ରତିଫଳିତ । ବଧବାମାନଙ୍କର ସ୍ୱପତି ଲୋକ ପାପ୍ତି ପ୍ରସଙ୍ଗଟି ଉଭୟ ମହାଭାରତରେ ସ୍ପଷ୍ଟ(୩୪) ।

ଚତୁର୍ତ୍ରିଂଶ ଅଧ୍ୟାୟରୁ ସପ୍ତତ୍ରିଂଶ ଅଧ୍ୟାୟ ମଧ୍ୟରେ ମୃତ ପୁରୁଷମାନଙ୍କର ସ୍ୱ ଶରୀରରେ ଆବିର୍ଭାବ, ଜନ୍ମେଜୟଙ୍କର ପିତୃ ଦର୍ଶନ ପ୍ରାପ୍ତି, ଧୃତରାଷ୍ଟ୍ରଙ୍କ ଦ୍ୱାରା ପାଣ୍ଡବ ମାନଙ୍କୁ ଯିବାପାଇଁ ଆଦେଶ ଓ ପାଣ୍ଡବ ମାନଙ୍କର ସଦଳବଳେ ହସ୍ତିନାପୁର ଗମନ (୩୫) ବିଷୟ ବର୍ଣ୍ଣିତ । ଏତଦ୍ ବ୍ୟତୀତ ଧୃତରାଷ୍ଟ୍ର, ଗାନ୍ଧାରୀ ଓ କୁନ୍ତୀଙ୍କର ଦାବାଗ୍ନିରେ (୩୬) (ଅଷ୍ଟତ୍ରିଂଶ ଅଧ୍ୟାୟ), ଯୁଧିଷ୍ଠିରଙ୍କ ଦ୍ୱାରା ସେମାନଙ୍କର ଅସ୍ଥି ବିସର୍ଜନ ଓ

---

(୩୪) "ଯା ଯାଃ ପତିକୃତାନ୍ ଲୋକା
ନିଚ୍ଛନ୍ତ ପରମସ୍ତ୍ରିୟଃ
ତା ଜାହ୍ନବୀଜଳଂ କ୍ଷିପ୍ର
ମବଗାହନ୍ତୁ ତନ୍ଦ୍ରିତାଃ । ୧୯ ।"
(ବ୍ୟା. ମ, ତ୍ରୟୋତ୍ରିଂଶ ଅଧ୍ୟାୟ ପୃ. ୪୨୨)

× × ×

"ଶୁଣିଣ ପୁରୁଷେ କନ୍ୟାଙ୍କର ହାତ ଧରି
ପିତୃଲୋକେ ବସିଲେ ଯାଇଁ କୁଆଡ଼ଲେ ସ୍ୱର୍ଗପୁରୀ । ୯୨ ।"
(ସା ମ, ଆ. ପ, ପୃ. ୪୭)

(୩୫) ନଗରଂ ହସ୍ତିନାପୁରଂ ପୁନରାୟାନ୍ତୁ ସବାନ୍ଧବାଃ । ୫୩ ।
(ବ୍ୟା. ମ, ଷଟ୍‌ତ୍ରିଂଶ ଅଧ୍ୟାୟ ପୃ.୪୨୫)

× × ×

ଅନୁଦିନେ ହସ୍ତିନାପୁରେ ପରବେଶ
ସେଠାରୁ ଅନନ୍ୟରେ ହୋଇଲା ଆଶ୍ରମବାସ ଶେଷ । ୩୨ ।
(ସା· ମ, ଆ, ପ. ପୃ ୫୫)

(୩୬) ଅଥ ବାୟୁଃ ସମୁଦ୍‌ଭୂତୋ ଦାବାଗ୍ନିରଭବନ୍ମହାନ୍
ଦଦାହ ତଦ୍‌ବନଂ ସର୍ବଂ ପରିଗୃହ୍ୟ ସମନ୍ତତଃ । ୧୯ ।
(ବ୍ୟା. ମ, ସପ୍ତତ୍ରିଂଶ ଅଧ୍ୟାୟ ପୃ. ୪୨୭)

× × ×

ସେ ପର୍ବତ ଉପରେ ବୃକ୍ଷେ ଡାଳେ ଡାଳେ ଘଷି
ଅଗ୍ନି ବାହାର ହୋଇଲା ତେଜ ପରକାଶି । ୪ ।
ଆକାଶେ ବଢ଼ାଇଲା ଦବାନଳ ତେଜ ମୂର୍ତ୍ତି
ପୋଡ଼ିଲା ବନସ୍ତ ସେ ଲାଗିଲା ଗଗନ ଗତି । ୫ ।
(ସା. ମ, ଆ, ପ, ପୃ. ୫୩)

ଶ୍ରାଦ୍ଧ କର୍ମ ସମାପନ (ଊନତ୍ରିଂଶ ଅଧ୍ୟାୟ) ବିଷୟ ମୂଳମହାଭାରତରେ ଓ ସାରଳା ମହାଭାରତରେ ସାମ୍ୟ ଥିବା ଦେଖାଯାଏ ।

ବ୍ୟାସଙ୍କ ମହାଭାରତରେ ମହାବାୟୁ ଉତ୍ପନ୍ନ ହୋଇ ଦାବାଗ୍ନିରେ ପରିଣତ ହୋଇ ବଣର ଚତୁର୍ପାର୍ଶ୍ୱ ଭସ୍ମ କଲା । ମାତ୍ର ସାରଳା ମହାଭାରତ ଅନୁସାରେ ବନରେ ଥିବା ବୃକ୍ଷ ମାନଙ୍କର ପରସ୍ପର ଘର୍ଷଣ ଜନିତ ବନାଗ୍ନି ଉତ୍ପନ୍ନ ହୋଇ ପର୍ଣ୍ଣକୁଟୀରରେ ଲାଗିବା ସଙ୍ଗେ ସଙ୍ଗେ ତନ୍ମଧ୍ୟରେ ଥିବା ଗାନ୍ଧାରୀ, କୁନ୍ତୀ ଓ ଧୃତରାଷ୍ଟ୍ରଙ୍କ ଶରୀରକୁ ଭସ୍ମ କରିଦେଲା ।

ସଞ୍ଜୟଙ୍କର ସେ ବନାଗ୍ନି ତ୍ୟାଗ ପ୍ରସଙ୍ଗରେ ମୂଳ ମହାଭାରତରୁ ଜଣାଯାଏ ଧୃତରାଷ୍ଟ୍ରଙ୍କର ଆଦେଶ ଅନୁସାରେ ସେ ହିମାଳୟକୁ ଯାଇଛନ୍ତି । କିନ୍ତୁ ସାରଳାଦାସ କହନ୍ତି ଯେ ଧୃତରାଷ୍ଟ୍ର ଆପଣାର ଶରୀର ଦୁର୍ବଳ ହୋଇଥିବା ଯୋଗୁଁ ବାହାରକୁ ଯିବା ପାଇଁ ସମର୍ଥ ହେଉନଥିବାରୁ ସଞ୍ଜୟଙ୍କୁ ସେଠାରୁ ଯିବା ପାଇଁ ଆଦେଶ ଦେଇଛନ୍ତି (୩୭) । ବ୍ୟାସଙ୍କ ମତରେ ଅଗ୍ନି ଦେବତା ଲୁଦୁବୁଦୁ ବ୍ୟାଧିରେ ପଡ଼ିଥିଲା ବେଳେ ଅର୍ଜ୍ଜୁନ ଦ୍ୱାରା ଖାଣ୍ଡବ ବନ ଦହନ କରା ହୋଇଥିଲା । କିନ୍ତୁ ଅଗ୍ନିଦେବ କୃତଜ୍ଞ ନହୋଇ ଅର୍ଜ୍ଜୁନର ମା'କୁନ୍ତୀ ଦେବୀଙ୍କୁ ଦଗ୍‌ଧ କଲେ । ମାତ୍ର ସାରଳାଦାସ କହନ୍ତି ଭୃଗୁ ଋଷିଙ୍କ ଅଭିଶାପ ଅନୁସାରେ ଅଗ୍ନି ସର୍ବଭକ୍ଷ୍ୟ ହୋଇଥିବାରୁ ତାଙ୍କ ଦ୍ୱାରା ଦହନ ସତ୍ତ୍ୱେ କେହିତାଙ୍କୁ ଦୋଷ ଦେବେନାହିଁ (୩୮) । ଧୃତରାଷ୍ଟ୍ରଙ୍କ ମୃତ୍ୟୁପରେ ତାହାଙ୍କର ସତ୍କାର ଓ ଅସ୍ଥି ବିସର୍ଜନ ପାଇଁ ଯୁଧିଷ୍ଠିର

---

(୩୭) ତାପସାନାଂ ପ୍ରଣଷ୍ୟନ୍ତେ ଗଚ୍ଛ ସଞ୍ଜୟ ମା ଚିରମ
ଇତ୍ୟୁକ୍ତ୍ୱା ସଞ୍ଜୟଂ ରାଜା ସମାଧାୟ ମନସ୍ତଥା ।୨୮ ।''
(ସପ୍ତତ୍ରିଂଶ ଅଧ୍ୟାୟ ପୃ ୪୨୭)

× × +

''ଶରୀର ଅଶକତ ନୁଆରଇ ଚରଣ କାଢ଼ି
ଯାଅ ଯା ସଞ୍ଜୟ ତୁ ଆମ୍ଭକୁ ସ୍ନେହେଂ ଛାଡ଼ି ।'' ।୧୩।
(ସା,ମ,ଆ,ପ, ପୃ ୫୩)

(୩୮) ବୃଥା ସଂତର୍ପିତୋ ବହ୍ନିଃ ଖାଣ୍ଡବେ ସବ୍ୟସାଚିନା
ଉପକାରମ୍ ଜାନନ୍ ସ କୃତଘ୍ନ ଇତି ମେ ମତିଃ ।୯।
(ସା, ମ, ଅଷ୍ଟତ୍ରିଂଶ ଅଧ୍ୟାୟ ପୃ ୪୨୭)

× × ×

ବେନି ଅଗ୍ନି ଯୋଗେ ମଲ ପଣ୍ଡୁରାଣୀ
ବସୁଗଣ ଶାପ ଦେବୁ ତୁ ନୃପମଣି ।୨୭
ଅଗ୍ନିଙ୍କ ଭୃଗୁ ମହର୍ଷି ଅଛନ୍ତି ଶାପ ଦେଇ
ସର୍ବ ଭକ୍ଷଣେ ତାହାଙ୍କର କେହିହିଁ ଦୋଷ ହାଦେ ନାହିଁ'' ।୨୮।
(ସା, ମ, ଆ, ପ, ପୃ ୫୫)

ଝଷ୍ଟିଙ୍କ ପବିତ୍ର ମନୁଷ୍ୟମାନଙ୍କୁ ଗଙ୍ଗା ଦ୍ୱାରକୁ ପ୍ରେରଣ କରିଥିଲେ ବୋଲି ମୂଳ ମହାଭାରତରେ ଉଲ୍ଲେଖ ଅଛି । ମାତ୍ର ସାରଳା ଦାସ ଏହାର ପରିବର୍ତ୍ତନ କରି ଧୌମ୍ୟ ପୁରୋହିତ ତଥା ପାଣ୍ଡବ ମାନଙ୍କ ଦ୍ୱାରା ପିତୃକାର୍ଯ୍ୟ ସମାପନ ବିଷୟ ଉଲ୍ଲେଖ କରିଛନ୍ତି (୩୯) ଏବଂ ପିତୃକାର୍ଯ୍ୟ ସଫଳ କମନେ ଯୁଧିଷ୍ଠିର ଶ୍ରାଦ୍ଧଦାନ ସ୍ୱରୂପ ସୁବର୍ଣ୍ଣ, ରୁପା, ଗୋରୁ, ମହାମୂଲ୍ୟ ଶଯ୍ୟା ପ୍ରଭୃତି ଦାନ କରିଥିବା ବିଷୟ ଉଭୟ ମହାଭାରତରେ ଉଲ୍ଲେଖ ଅଛି (୪୦) ।

ରାଜା ଯୁଧିଷ୍ଠିରଙ୍କ ଆଦେଶକ୍ରମେ କେତେକ ବ୍ୟକ୍ତି ଯାଇ ଧୃତରାଷ୍ଟ୍ର ଆଦିଙ୍କ ଶବ ସତ୍କାର ଓ ସେମାନଙ୍କ ଅସ୍ଥି ସଞ୍ଚୟ କରି ଫେରିଲେ (୪୧) । ମାତ୍ର ସାରଳାଦାସଙ୍କ

---

(୩୯) ପ୍ରେଷୟାମାସ ସ ନରାନ୍ ବିଧିଜ୍ଞାନାପ୍ତକାରିଣଃ
ଗଙ୍ଗାଦ୍ୱାରଂ ନରଶ୍ରେଷ୍ଠୋ ଯତ୍ର ଦଗ୍ଧୋଽଭବନ୍ନୃପଃ ।୧୪।
(ବ୍ୟା, ମ, ଊନ୍ନତ୍ରିଂଶ ଅଧ୍ୟାୟ, ପୃ ୪୨୮)

× + +

ଧୌମ୍ୟ ପ୍ରୋହିତଂକୁ ଯୁଧିଷ୍ଠି ପଠିଆଇଲେ ବହନେ ।୩୦।
ଧୋଇକା ବସ୍ତ୍ରକେ ଯେ ଗଲେ ପାଣ୍ଡବମାନେ
ଦଶ ଦିବସେ ପ୍ରବେଶ ଧୃତରାଷ୍ଟ୍ର ମୁରୁଆନେ ।୩୨।
(ସା, ମ, ଆ,ପ, ପୃ [illegible])

(୪୦) ଧୃତରାଷ୍ଟ୍ରଂ ସମୁଦ୍ଦିଶ୍ୟ ଦଦୌସ ପୃଥିବୀ ପତିଃ
ସୁବର୍ଣ୍ଣ ରଜତଂ ଗାଶ୍ଚ ଶଯ୍ୟାଶ୍ଚ ସୁ ମହାଧନାଃ ।୧୭।
(ବ୍ୟା. ମ, ଊନତ୍ରିଂଶ ଅଧ୍ୟାୟ, ପୃ.୪୨୮)

+ × ×

ଗଜ ତୁରଙ୍ଗମ ଗୋଧନ ପୃଥ୍ୱୀ ଦାନ
ଭୋଜନ ସମ୍ପୂର୍ଣ୍ଣେ ଯେ ଦଅନ୍ତି ଅବଶେଷେ ଅନ୍ନଦାନ ।୩୪।
(ସା. ମ, ଆ. ପ, ପୃ [illegible])

(୪୧) ତେ ତ୍ୱପି ରାଜବଚନାତ୍ ପୁରୁଷାସ୍ତେ ଗତାଭବନ୍
ସଙ୍କଲ୍ୟ ତେଷାଂ କୁଲ୍ୟାନ ପୁନଃ ପ୍ରତ୍ୟାଗମଂସ୍ତତଃ ।୨୨।
(ବ୍ୟା. ମ, ଊନତ୍ରିଂଶ ଅଧ୍ୟାୟ, ପୃ.୪୨୮)

ମତାନୁସାରେ ଦାହ ସ୍ଥାନରେ ଅସ୍ଥି ନ ମିଳିବାରୁ (୪୨) ଗଙ୍ଗା କୂଳରେ ଶ୍ରାଦ୍ଧ ଓ ଦାନ ଆଦି କରି ହସ୍ତିନାକୁ ଫେରି ଆସିଲାପରେ (୪୩) ଆଶ୍ରମ ବାସ ଶେଷ ହେଲା ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ ବ୍ୟାସଙ୍କ ମହାଭାରତ ସହିତ ସାରଳାଙ୍କ ମହାଭାରତରେ କେତେକ ସ୍ଥାନରେ ସାମ୍ୟ ଓ ସ୍ଥଳ ବିଶେଷରେ ବୈଷମ୍ୟ ରହିଅଛି । ଅନୁମିତ ହୁଏ, ସାରଳା ବ୍ୟାସଦେବଙ୍କ ମହାଭାରତ ପାଠ କରିଛନ୍ତି କିମ୍ବା ଅବଗତ ହୋଇଛନ୍ତି ଏବଂ ଅନ୍ୟ କେତେକ ସ୍ଥଳରେ ମୌଳିକ ଚିନ୍ତାଧାରାର ପ୍ରକାଶ ପୂର୍ବକ ସ୍ୱୀୟ କଳ୍ପନା ସ୍ତରୁଶୀର ଚମତ୍କାରିତା ପ୍ରଦର୍ଶନ କରିଛନ୍ତି । ତେଣୁ ଆପଣାର ବିନୟ ପ୍ରକାଶ ନିମନ୍ତେ ନିଜକୁ ମୂର୍ଖ, ଅପଣ୍ଡିତ, କ୍ଷୁଦ୍ରବୁଦ୍ଧି, ଶିଶୁ ଆଦି କହିଥିଲେ ହେଁ ବାସ୍ତବରେ ସେ ତାହା ନଥିଲେ । ଅଧିକନ୍ତୁ ସେହି ବିଦ୍ୱାନପ୍ରବର ଶୂଦ୍ରମୁନି ଆପଣାର ସୁଚିନ୍ତିତ ମତ ପ୍ରଦାନ କରିବା ଦ୍ୱାରା ଏକ ମୌଳିକ ସୃଷ୍ଟି ସର୍ଜନା କରିବାରେ ସମର୍ଥ ହୋଇଛନ୍ତି ।



ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ,
ପାରଳାଖେମୁଣ୍ଡି, ଗଞ୍ଜାମ
୨୭।୨।୦୦

(୪୨) ଦେଖିଲେ ଦହନ ସ୍ଥାନେ ନାହିଁ ଚର୍ମ ଅସ୍ଥି
ଗଙ୍ଗାକୂଳେ ରହି ପିତୃକାର୍ଯ୍ୟ ସେ କରନ୍ତି ।୩୩।
(ସା. ମ, ଆ. ପ, ୫୫)

(୪୩) ପ୍ରବିବେଶ ପୁରଂ ରାଜା ନଗରଂ ବାରଣାହ୍ୱୟମ୍ ।୨୧।
(ବ୍ୟା. ମ, ଊନତ୍ରିଂଶ ଅଧ୍ୟାୟ, ପୃ.୪୨୮)

× × ×

ଗଙ୍ଗାକୂଳରେ ଯେ ସମସ୍ତ କାର୍ଯ୍ୟ ସାରି ।୩୫।
ଅନୁଦିନେ ହସ୍ତିନା ପୁରେ ପରବେଶ
ସେଥୁ ଅନନ୍ତରେ ହୋଇଲା ଆଶ୍ରମବାସ ଶେଷ ।୩୬।
(ସା, ମ, ଆ, ପ, ପୃ ୫୫)

# ଅଶ୍ୱମେଧ ପର୍ବ

ଅଧ୍ୟାପକ ବିଜୟକୁମାର ଶତପଥୀ

କାଳ ସହିତ ପ୍ରତିଭାର ଯେଉଁ ମହାମିଳନ ଘଟେ ତାରି ମଧ୍ୟରୁ ଜନ୍ମ ନିଏ କାଳଜୟୀ ସୃଷ୍ଟି । ସାରଳା ଦାସଙ୍କ ମହାଭାରତ ଏକ ଅମଳିନ କୃତି । ପଞ୍ଚଦଶ ଶତାବ୍ଦୀରେ ପରିଲକ୍ଷିତ ଉତ୍କଳର ରାଜନୈତିକ, ସାଂସ୍କୃତିକ, ସାମାଜିକ ଏବଂ ଧାର୍ମିକ ଅଭ୍ୟୁତ୍ଥାନର ଛବି ଏଥିରେ ମହାପ୍ରାଜ୍ଞ ସାରଳା ଦାସଙ୍କ ସହଜାତ ଅନ୍ତର୍ଦୃଷ୍ଟି ନେଇ ନିଖୁଣ ଭାବେ ପ୍ରତିଫଳିତ । ସେ ମୂଳ ସଂସ୍କୃତ ମହାଭାରତର ଅନୁବାଦ କରି ନାହାନ୍ତି କିମ୍ବା ତାର ଠିକ୍ ଅନୁକରଣ କରିନାହାନ୍ତି ବରଂ ଏହାର ପ୍ରଗାଢ ଶୁଶ୍ରୂଷାରେ ଅନୁରକ୍ତ ରହି ନିଜର ଅସାମାନ୍ୟ ଏବଂ ଅଲୌକିକ ପ୍ରତିଭା ବଳରେ ବିରାଟକାୟ ମହାଭାରତ ଗ୍ରନ୍ଥ ରଚନା କରିଛନ୍ତି । ଫଳରେ ଏହା ହୋଇଛି ଏକ ଅଭିନବ ଗ୍ରନ୍ଥ-ଉତ୍କଳୀୟ ଜାତୀୟ ଜୀବନର ମହାକାବ୍ୟ ବା ଏପିକ୍ । ଏଥିରେ ଇତିହାସ, ବିଭିନ୍ନ ଧର୍ମଧାରା, କୌଶଳବିଜ୍ଞାନ, ତତ୍ତ୍ୱ ଓ ଦର୍ଶନ, ଚିକିତ୍ସା ପଦ୍ଧତି, ଯୁଦ୍ଧବିଦ୍ୟା, ସାମାଜିକ ପରମ୍ପରା ଓ ଆଚାର-ବିଚାର ପ୍ରଭୃତି ଅସାମାନ୍ୟ କବିତ୍ୱର ସ୍ପର୍ଶ ନେଇ ପ୍ରକାଶ ପାଇଛି । ମୋଟ ଉପରେ ମହାଭାରତରେ ସାରଳାଙ୍କ କବିତ୍ୱ ଜ୍ଞାନ ରାଜ୍ୟର ବିଭିନ୍ନ ସୀମା ମଧ୍ୟରେ ପ୍ରବେଶ କରି ସେଥିରୁ ରତ୍ନ ସଂଗ୍ରହ କରିଛି ଏବଂ ସଂଗୃହୀତ ସେ ରତ୍ନ ସମୂହକୁ ଗୋଟିଏ ଭଣ୍ଡାରରେ ସାଇତି ରଖିଛି । ବହୁଳାୟତନ ବିଶିଷ୍ଟ ସାରଳା ଦାସଙ୍କ ମହାଭାରତକୁ ସେଥିପାଇଁ ଉତ୍କଳୀୟ ମାନଙ୍କ ଜ୍ଞାନରାଜ୍ୟର ଏକ ରତ୍ନଭଣ୍ଡାର କହିଲେ ସତ୍ୟର ଅପଲାପ ହେବନାହିଁ ।

ସାରଳା ଦାସଙ୍କ ଅଶ୍ୱମେଧ ପର୍ବ ସହିତ ସଂସ୍କୃତ ମହାଭାରତରେ ଆଶ୍ୱମେଧିକ ପର୍ବର ଏକ ତୁଳନାତ୍ମକ ସମୀକ୍ଷା କରି ବିଷୟବୈଷମ୍ୟ ପ୍ରଦର୍ଶନ କରିବା ହେଉଛି ଏହି ପ୍ରବନ୍ଧର ଉଦ୍ଦେଶ୍ୟ । ସାରଳା ଦାସ ପ୍ରଥମେ ଅଶ୍ୱମେଧ ପର୍ବରେ ଶ୍ରୀକୃଷ୍ଣଙ୍କ କୃତ ଅଶ୍ୱମେଧ ଯାଗର ବର୍ଣ୍ଣନା କରିଛନ୍ତି । ସାରଳା ଦାସ ଲେଖିଛନ୍ତି ଯେ ମହାଭାରତ ଯୁଦ୍ଧରେ ହତ୍ୟା ପାତକ ଦୋଷ ଦୂର କରିବା ଉଦ୍ଦେଶ୍ୟରେ ବଳରାମ ଶ୍ରୀକୃଷ୍ଣଙ୍କୁ ଅଶ୍ୱମେଧ ଯାଗ କରିବାପାଇଁ ପରାମର୍ଶ ଦେଇଛନ୍ତି । ଶ୍ରୀକୃଷ୍ଣଙ୍କ ଆଜ୍ଞାରେ ଅକ୍ରୂର ଇନ୍ଦ୍ରପ୍ରସ୍ଥ ଯାଇ ଯଜ୍ଞପାଇଁ ପଞ୍ଚପାଣ୍ଡବ, ସୁଭଦ୍ରା ଦ୍ରୌପଦୀ ପ୍ରଭୃତିଙ୍କୁ ନିମନ୍ତ୍ରଣ କରି ଆଣିଛନ୍ତି । ଯଜ୍ଞ ପାଇଁ ମଧ୍ୟ ବିଶିଷ୍ଟ ଋଷି ରାଜା ମହାରାଜାମାନେ ନିମନ୍ତ୍ରିତ ହୋଇ ଆସିଛନ୍ତି । ଯଜ୍ଞଶାଳାର ଦ୍ୱାର ରକ୍ଷା ଦାୟିତ୍ୱ ପଡ଼ିଛି ଅର୍ଜୁନଙ୍କ ଉପରେ ।

ଏହିପରି ଯଜ୍ଞ ଉତ୍ସବ ଆନନ୍ଦରେ ପାଳୁଥିଛି । ଏହି ସମୟରେ ଏକ ଦୁର୍ଘଟଣା ଆସି ଉପଗତ ହେଲା । ବସୁକଲ୍ପ ନାମକ ଏକ ବ୍ରାହ୍ମଣର ସଦ୍ୟ ପ୍ରସୂତ ଛଅଗୋଟି ପୁତ୍ର ସନ୍ତାନଙ୍କୁ କେହି ସୂତିକାଳୟରୁ ଗୋଟିକପରେ ଗୋଟିଏ ଅପହରଣ କରି ନେଇଛନ୍ତି । ପୁନଶ୍ଚ ପତ୍ନୀ ଶ୍ରୀସ୍ତ୍ରୀର ପ୍ରସବ ସମୟ ହୁଅନ୍ତେ ବସୁକଲ୍ପ ଯଜ୍ଞଶାଳାର ଦ୍ୱାର ଦେଶରେ ପହଞ୍ଚି ସନ୍ତାନରକ୍ଷା ପାଇଁ ଆକୁଳ ପ୍ରାର୍ଥନା କରିଛି । ଦ୍ୱାରରକ୍ଷକ ଅର୍ଜୁନ ତାକୁ ସାନ୍ତ୍ୱନା ଦେଇ କହିଛନ୍ତି ଯେ ବର୍ତ୍ତମାନ ଶ୍ରୀକୃଷ୍ଣ ଯଜ୍ଞାନୁଷ୍ଠାନରେ ବସିଛନ୍ତି ତେଣୁ ତାଙ୍କସହ ସାକ୍ଷାତ ହେବା ସମ୍ଭବ ନୁହେଁ । ଏହାଦ୍ୱାରା ଯଜ୍ଞାନୁଷ୍ଠାନରେ ବ୍ୟତିକ୍ରମ ଘଟିବାର ଆଶଙ୍କା ରହିଛି । ତେଣୁ ବ୍ରାହ୍ମଣ ନିକଟରେ ଅର୍ଜୁନ କୃତପ୍ରତିଜ୍ଞ ହୋଇଛନ୍ତି ତାର ପ୍ରାର୍ଥନା ପୂରଣ ପାଇଁ । ଏହାପରେ ବସୁକଲ୍ପ ଅର୍ଜୁନଙ୍କୁ ବ୍ରାହ୍ମଣୀର ଏତୁଡ଼ିଶାଳକୁ ନେଇ ଯାଇଛି । ସେଠାରେ ବୀର ପାର୍ଥ ଧନୁ ଧରି ଜଗି ବସିଛନ୍ତି । ପୁତ୍ରଟିଏ ଜନ୍ମ ହୋଇଛି ଏବଂ ତାର ପ୍ରମାଣସ୍ୱରୂପ ନବଜାତ ଶିଶୁର ନାଭି କାଟିଆଣି ବସୁକଲ୍ପ ଅର୍ଜୁନଙ୍କୁ ଦେଖାଇଛି । ମାତ୍ର ଶିଶୁଟିକୁ ସ୍ନାନସାରି ଶୁଆଇଲାକ୍ଷଣି ପୁତ୍ର ହଠାତ୍ କେଉଁଆଡ଼େ ଉଭାନ ହୋଇ ଯାଇଛି । ସମସ୍ତଙ୍କ ସତର୍କ ଦୃଷ୍ଟି ଏଡ଼ାଇ ପୁଣି ପାର୍ଥ ଭଳି ଶକ୍ତିଶାଳୀ ବୀର ଦ୍ୱାର ଜଗି ଥାଉ ଥାଉ ଏପରି ଏକ ଅଦ୍ଭୁତ ଘଟଣାରେ ବ୍ରାହ୍ମଣ ବ୍ରାହ୍ମଣୀ ଅତିଶୟ ବ୍ୟଥିତ ହୋଇ ପଡ଼ିଛନ୍ତି । ପ୍ରତିଜ୍ଞା ପାଳନରେ ଅସମର୍ଥ ହେବାରୁ ଅଗ୍ନିରେ ଝାସ ଦେବାପାଇଁ ବୀରପାର୍ଥ ପ୍ରସ୍ତୁତ ହେଲାବେଳେ ଶ୍ରୀକୃଷ୍ଣ ସେଠାରେ ଉପସ୍ଥିତ ହୋଇଛନ୍ତି ଏବଂ ମୃତପୁତ୍ର ଆଣିଦେବାପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଛନ୍ତି । ତା ପର ଘଟଣା ହେଲା କୃଷ୍ଣ ଏବଂ ଅର୍ଜୁନଙ୍କର ପାତାଳବୈକୁଣ୍ଠ ଗମନ । ସେଠାରେ ବିଷ୍ଣୁ ଶ୍ରୀକୃଷ୍ଣଙ୍କୁ ଖୁବ୍ ଶୀଘ୍ର ମର୍ତ୍ତ୍ୟଭୂମି ତ୍ୟାଗ କରି ଆସିବାପାଇଁ ନିର୍ଦ୍ଦେଶ ଦେଇଛନ୍ତି ଏବଂ ନିଜେ ଅପହରଣ କରିଥିବା ବ୍ରାହ୍ମଣର ସାତଗୋଟି ପୁତ୍ରଙ୍କୁ ପ୍ରଦାନ କରିଛନ୍ତି ।

"ତୁମ୍ଭରେ ଥାଆନ୍ତେ ନାହିଁ କଳିଯୁଗ ହେବ ଯୋଗ
ଯମକୁ ଦେଇ ତୁମ୍ଭେ ଦୁହେଁ ଆସ ହୋଇ ବେଗ

ହରି ତୋହର ବଂଶ ଅକଳିତ ପୃଥ୍ୱୀକି ହୋଇଅଛି ଭାର
ତାହାଙ୍କର ପାଦ ଭାର ନ ସହଇ ବସୁନ୍ଧରା" ।

ବସୁକଲ୍ପ ବ୍ରାହ୍ମଣର ମୃତ ପୁତ୍ର ଆନୟନ ଉପାଖ୍ୟାନଟି ମୂଳ ମହାଭାରତରେ ନାହିଁ । ସାରଳା ଏହାକୁ ଶ୍ରୀମଦ୍ଭାଗବତର ଦଶମସ୍କନ୍ଧର ପଞ୍ଚାନବେ ଅଧ୍ୟାୟରୁ ସଂଗ୍ରହ କରି ଅଶ୍ୱମେଧ ପର୍ବରେ ସନ୍ନିବେଶିତ କରିଛନ୍ତି । ସେହିପରି ଯୁବନାଶ୍ୱ ଏବଂ କଦମ୍ବାସୁର ବଧ ପ୍ରସଙ୍ଗ ମୂଳ ମହାଭାରତରେ ନାହିଁ । ଏ ପ୍ରସଙ୍ଗଟି ସାରଳାଙ୍କ ନିଜସ୍ୱ କଳ୍ପନା ପ୍ରସୂତ । କୃଷ୍ଣ ଓ ଅର୍ଜୁନ ପାତାଳ ବୈକୁଣ୍ଠରେ ଥିଲାବେଳେ ନାରଦଙ୍କ ପ୍ରରୋଚନାରେ ଶୋଣପୁରର କଦମ୍ବାସୁର ଯଜ୍ଞଶାଳାରେ ପ୍ରବେଶ କରି ଘୋର ଅନିଷ୍ଟ ଘଟାଇଛି ଏବଂ

ବଳରାମଙ୍କୁ ବନ୍ଦୀକରି ନେଇଯାଇଛି । ପାତାଳ ବୈକୁଣ୍ଠରୁ ପ୍ରତ୍ୟାଗମନ କାଳରେ କୃଷ୍ଣ ଓ ଅର୍ଜୁନ ତା ସହ ଘୋର ଯୁଦ୍ଧ କଲେ ମଧ୍ୟ ପରାସ୍ତ ହୋଇଛନ୍ତି । ପରିଶେଷରେ ବଳରାମଙ୍କ ଦ୍ୱାରା ଅସୁରର ନିଧନ ଘଟିଛି ଏବଂ ଶ୍ରୀକୃଷ୍ଣ ଯାଗକର୍ମ ସମ୍ପାଦନ କରିଛନ୍ତି । ସେହିପରି ଅଶ୍ୱମେଧ ପର୍ବର ଶେଷରେ ସ୍ଥାନ ପାଇଥିବା ମୋହାସୁର ବଧ ପ୍ରସଙ୍ଗ ସାରଳା ଦାସଙ୍କ ସମ୍ପୂର୍ଣ୍ଣ କଳ୍ପନାପ୍ରସୂତ ।

ଯୁଧିଷ୍ଠିରଙ୍କ ଅଶ୍ୱମେଧ ଯଜ୍ଞ ପ୍ରସଙ୍ଗରେ ସାରଳା ଦାସ ସ୍ଥଳ ବିଶେଷରେ ମୂଳ ମହାଭାରତରେ ବର୍ଣ୍ଣିତ ଘଟଣାଠାରୁ ଦୂରେଇ ଯାଇଛନ୍ତି ଏବଂ ନିଜର ମୌଳିକତା ସମ୍ପାଦନ କରିଛନ୍ତି । ମୂଳ ଗ୍ରନ୍ଥରେ ଯୁଧିଷ୍ଠିରଙ୍କୁ ବ୍ୟାସ ଅଶ୍ୱମେଧ ଯଜ୍ଞାନୁଷ୍ଠାନ ପାଇଁ ପରାମର୍ଶ ଦେଇଛନ୍ତି । ଅଶ୍ୱମେଧ ଯଜ୍ଞରେ ବିପୁଳ ଅର୍ଥ ବ୍ୟୟ ହେବ ଏବଂ ଏଣେ ରାଜକୋଷ ସମ୍ପୂର୍ଣ୍ଣ ବିଶୀର୍ଣ୍ଣ ହୋଇ ପଡ଼ିଛି ଏକଥା ଯେତେବେଳେ ଯୁଧିଷ୍ଠିର ପ୍ରକାଶ କରିଛନ୍ତି ସେତେବେଳେ ବ୍ୟାସ ଯୁଧିଷ୍ଠିରଙ୍କ ନିକଟରେ ମହାତ୍ମା ରାଜା ମରୁତ୍ତଙ୍କ ଉପାଖ୍ୟାନ ବର୍ଣ୍ଣନା କରିଛନ୍ତି । ମରୁତ୍ତଙ୍କ ଯଜ୍ଞରେ ବ୍ରାହ୍ମଣ ମାନଙ୍କର ଉଚ୍ଛିଷ୍ଟ ଯେଉଁ ଧନ ହିମାଳୟ ପର୍ବତରେ ରହିଛି, ସେହି ପର୍ଯ୍ୟାପ୍ତ ଧନକୁ ଆହରଣ କରି ଯଜ୍ଞ ସମ୍ପାଦନ ପାଇଁ ସେ ଯୁଧିଷ୍ଠିରଙ୍କୁ ପରାମର୍ଶ ଦେଇଛନ୍ତି ।

ଆଶ୍ୱମେଧିକ ପର୍ବରେ କୁହାଯାଇଛି ଯେ ରାଜା ମରୁତ୍ତ ଶତ ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ କର୍ତ୍ତା ଶକ୍ତିଶାଳୀ କାରନ୍ଧମଙ୍କ ପୁତ୍ର । ସେ ଥିଲେ ଦ୍ୱିତୀୟ ବିଷ୍ଣୁ ସଦୃଶ । ଯଜ୍ଞାନୁଷ୍ଠାନ କରିବା ପାଇଁ ସେ ସୁବର୍ଣ୍ଣମୟ ସହସ୍ର ସଂଖ୍ୟକ ପାତ୍ର ପ୍ରସ୍ତୁତ କରିଥିଲେ ଏବଂ ହିମାଳୟର ଉତ୍ତର ପାର୍ଶ୍ୱରେ ମେରୁ ପର୍ବତରେ ରହି ସ୍ୱର୍ଣ୍ଣମୟ ପ୍ରତ୍ୟନ୍ତ ପର୍ବତରେ କର୍ମ କରିଥିଲେ । ସେଠାରେ ସ୍ୱର୍ଣ୍ଣକାର ମାନେ ତାଙ୍କ ନିର୍ଦ୍ଦେଶରେ ଅନେକ ସୁବର୍ଣ୍ଣ କୁଣ୍ଡ, ପିଟିର, ଆସନାଦି ନିର୍ମାଣ କରିଥିଲେ । ରାଜା ମରୁତ୍ତ ହେଉଛନ୍ତି ବୃହସ୍ପତିଙ୍କର ଯଜମାନ । ମାତ୍ର ମର୍ତ୍ତ୍ୟବାସୀ ଜଣେ ରାଜାର ଏପରି ଏକ ଯଜ୍ଞାନୁଷ୍ଠାନରେ ଈର୍ଷ୍ୟାପରାୟଣ ହୋଇ ଦେବରାଜ ଇନ୍ଦ୍ର ବୃହସ୍ପତିଙ୍କୁ ଯଜ୍ଞରେ ପୁରୋହିତ ନହେବା ପାଇଁ ନିର୍ଦ୍ଦେଶ ଦେଲେ । ଫଳରେ ରାଜା ମରୁତ୍ତ ଅନ୍ୟ ଉପାୟ ନପାଇ ମହର୍ଷି ନାରଦଙ୍କ କଥାନୁସାରେ ଅଙ୍ଗିରାଙ୍କ ପୁତ୍ର ସମ୍ବର୍ତ୍ତଙ୍କୁ ବରଣ କଲେ । ସମ୍ବର୍ତ୍ତଙ୍କ ନିର୍ଦ୍ଦେଶରେ ମରୁତ୍ତ ହିମାଳୟ ପର୍ବତ ପୃଷ୍ଠରେ ଥିବା ମୁଞ୍ଜବାନ୍ ନାମକ ପର୍ବତକୁ ଯାଇ ସେଠାରେ ଉମାପତିଙ୍କୁ ସନ୍ତୁଷ୍ଟକରି ତାଙ୍କର ଶରଣାଗତ ହୋଇ ମନୁଷ୍ୟର ଅସାଧ୍ୟ ଯଜ୍ଞୀୟ ସମ୍ବିଧାନ ସମୂହ ସଞ୍ଚୟ କରିଥିଲେ । ସମ୍ବର୍ତ୍ତଙ୍କ ପୌରହିତ୍ୟରେ ଯଜ୍ଞ ଆରମ୍ଭ ହୋଇ ସମ୍ପନ୍ନ ହେଲା ଏବଂ ବୃହସ୍ପତି ଇନ୍ଦ୍ରଙ୍କ ସମେତ ଦେବଗଣ ସନ୍ତୁଷ୍ଟ ହୋଇ ସୋମପାନକରି ଆପ୍ୟାୟିତ ହୋଇଥିଲେ । ସେ ଏତେ ଗୁଣଶାଳୀ ଥିଲେ ଯେ ତାଙ୍କ ଯଜ୍ଞରେ ପ୍ରଭୂତ ଅର୍ଥ ସଞ୍ଚିତ ହୋଇଥିଲା ।

କିନ୍ତୁ ସାରଳା ମହାଭାରତରେ ବର୍ଣ୍ଣିତ ଯୁଧିଷ୍ଠିରଙ୍କର ଅଶ୍ୱମେଧ ଯଜ୍ଞର ବର୍ଣ୍ଣନା ଏହାଠାରୁ ପୃଥକ୍ । ସାରଳା କହିଛନ୍ତି ଯେ ଯୁଧିଷ୍ଠିର ଧୌମ୍ୟ ପୁରୋହିତଙ୍କୁ ତାଙ୍କ ଅଶ୍ୱମେଧଯାଗ ସମ୍ପର୍କରେ ପଚାରି ବୁଝିଛନ୍ତି ।

"ଧଉମ୍ୟ ପ୍ରୋହିତେ କହିଲେ ଯଥାବିଧି
ହତ୍ୟା ବିମୋଚନ ନିମନ୍ତେ ଯେ ମହାଯାଗର ପ୍ରସିଦ୍ଧି ।
ସେ ମହାଯାଗ କଲେ ମନୁଷ୍ୟ ଜନ୍ମ ନାହିଁ
ବ୍ରହ୍ମଲୋକ ଅବଶ୍ୟ ଲଭନ୍ତି ଜାଣ ସେହି ।
ଧଉମ୍ୟ ପୁରୋହିତ କହନ୍ତି ସାନନ୍ଦ ଧର୍ମରାଏ
ଆମ୍ଭେ ଅଶ୍ୱମେଧ ଯାଗ କରିବା ଧନୁର୍ଦ୍ଧରାଏ ।"

ଧର୍ମରାଜ ଯୁଧିଷ୍ଠିର ଏହାପରେ ବଶିଷ୍ଠଙ୍କୁ ସ୍ମରଣ କରିଛନ୍ତି ଏବଂ ବଶିଷ୍ଠ ଆସି ଅଶ୍ୱମେଧ ଯଜ୍ଞର ମହିମା ସଂପର୍କରେ ଯୁଧିଷ୍ଠିରଙ୍କୁ ବୁଝାଇଛନ୍ତି । ଏ ପ୍ରସଙ୍ଗରେ ହୈହୟ ବଂଶର ରାଜା ଶ୍ୱେତଙ୍କର ଯେଉଁ ଉଦାହରଣ ବଶିଷ୍ଠ ଦେଇଛନ୍ତି ତାହା ମୂଳ ଗ୍ରନ୍ଥରେ ନାହିଁ । ଶ୍ୱେତ ନୃପତି ଘୃତ ସମୁଦ୍ରକୁ ପଞ୍ଚବିଂଶ ବର୍ଷଧରି ମହାଯାଗର ଅନୁଷ୍ଠାନ କରିଥିଲେ । ସ୍ଥିର ମେଘ ମୂଷଳ ଧାରରେ ଘୃତ ବର୍ଷା କଲେ ଏବଂ ଅଗ୍ନି ଦେବତା କୋଉରେ ଘୃତ ଆହାର କରିବାରୁ ତାଙ୍କୁ ଲୁଦବୁଦ ବ୍ୟାଧି ହୋଇଥିଲା । ଅର୍ଜ୍ଜୁନ ଖାଣ୍ଡବଦହନ କରିବାରୁ ଅଗ୍ନିଙ୍କର ଏହି ବ୍ୟାଧି ଉପଶମ ହୋଇଥିଲା ।

ମୂଳ ଗ୍ରନ୍ଥରେ ଯେପରି ଯୁଧିଷ୍ଠିର ତାଙ୍କର ସୀମିତ ରାଜକୋଷ ସଂପର୍କରେ ବ୍ୟାସଙ୍କୁ କହିଛନ୍ତି ସେହିପରି ସାରଳା ମହାଭାରତରେ ମଧ୍ୟ ବଶିଷ୍ଠଙ୍କୁ ଯୁଧିଷ୍ଠିର ରାଜକୋଷର ସ୍ୱଳ୍ପତା ସମ୍ପର୍କରେ ସୂଚନା ଦେଇ ଏତେ ବଡ଼ ବିରାଟ ଯଜ୍ଞପାଇଁ ଅର୍ଥ କେଉଁଠୁ ଆସିବ ସେ ବିଷୟରେ ମଧ୍ୟ ପ୍ରଶ୍ନ କରିଛନ୍ତି ।

ଏହାପରେ ବଶିଷ୍ଠ ଭୃଙ୍ଗଭଦ୍ରା ନଦୀ କୂଳରେ ଥିବା ବଡ଼ର୍ଯ୍ୟ ପର୍ବତରେ ସଞ୍ଚିତ ମରୁତ ସେନଙ୍କର ସ୍ୱର୍ଣ୍ଣ ସମ୍ପର୍କରେ ସୂଚନା ଦେଇଛନ୍ତି । ମୂଳଗ୍ରନ୍ଥର ମରୁତ୍ତଙ୍କୁ ସାରଳା ମରୁତ ସେନରେ ପରିଣତ କରିଛନ୍ତି ଏବଂ କାଞ୍ଚନଗିରି ଭୃଙ୍ଗଭଦ୍ରା ପ୍ରଭୃତିର ନାମୋଲ୍ଲେଖ କରି ନିଜର ଐତିହାସିକତାର ପରିଚୟ ଦେଇଛନ୍ତି । ମରୁତସେନ ବୃହସ୍ପତିଙ୍କୁ ଯାଗଜନିତ ସ୍ଥବରେ ନିମନ୍ତ୍ରଣ କରିବା ଏବଂ ବୃହସ୍ପତି ପ୍ରତ୍ୟାଖ୍ୟାନ କରିବା ଇତ୍ୟାଦି ଘଟଣା ମୂଳ ଗ୍ରନ୍ଥ ଅନୁଯାୟୀ ବର୍ଣ୍ଣିତ । କିନ୍ତୁ ମୂଳ ଗ୍ରନ୍ଥରେ ନାରଦଙ୍କ ପରାମର୍ଶରେ ସମ୍ବର୍ତ୍ତଙ୍କୁ ଆଣି ଯଜ୍ଞରେ ମରୁତ ପୁରୋଧା କଲାବେଳେ ସାରଳା ବୃହସ୍ପତିଙ୍କ ପୁତ୍ର କଚଙ୍କୁ ଆଣି ମରୁତ-ସେନ ଯଜ୍ଞ କରିବା କଥା ବର୍ଣ୍ଣନା କରିଛନ୍ତି । ସାରଳା ଦାସ କଚଙ୍କର ଚରିତ୍ରକୁ ଏଠାରେ ବେଶ କୌତୁହଳଦୀପକ ଢଙ୍ଗରେ ପ୍ରକାଶ କରିଛନ୍ତି ଏବଂ କଚଙ୍କ ଚରିତ୍ର

ଚରଣ ସଙ୍ଗେ ସେ ନଜ କଲ୍ପନାରୁ ମଣିଭଦ୍ର ରାକ୍ଷସ ଉପାଖ୍ୟାନ ଏଠାରେ ବର୍ଣ୍ଣନା କରିଛନ୍ତି ।

ବିଶ୍ୱାମିତ୍ରଙ୍କ ଅଭିଶାପ ଯୋଗୁ କଲ୍ମାଷପାଦ ରାଜା ରାକ୍ଷସ ହୋଇ ବଶିଷ୍ଠଙ୍କର ସନ୍ତାନମାନଙ୍କୁ ଭକ୍ଷଣ କରିଛି । ତାର ଭୟରେ ମେରୁକୋଟରେ କତ ଆତ୍ମଗୋପନ କରିଛନ୍ତି । ସାରଳାଙ୍କ ଲେଖାରେ କତ ଏଠାରେ ଏକ ଭୟାତୁର ଅଦ୍ଭୁତ ଚରିତ୍ର ରୂପେ ଚିତ୍ରିତ । କେହି ଯଦି ତାଙ୍କ ନିକଟକୁ ବିନୟ ସହକାରେ ଯାଇ ନିଜର ଅଭିପ୍ରାୟ ଜଣାଏ ତାହେଲେ ସେ କ୍ରୋଧରେ ଶାପ ଦିଅନ୍ତି, କିନ୍ତୁ ଉଦ୍ଧତ ଅହଂ ଭାବନେଇ ଯାଇଥିବା ଲୋକର ଗୁହାରି ରକ୍ଷା କରନ୍ତି ।

ନାରଦଙ୍କ କଥନାନୁଯାୟୀ ମରୁତ୍ତସେନ ସେହିପରି ଆଚରଣ ପ୍ରଦର୍ଶନ କରିବାରୁ କତ ଯାଗକଳ ହେବାପାଇଁ ସ୍ୱୀକୃତ ଦେଇଛନ୍ତି । ଯଜ୍ଞପାଇଁ ମରୁତ୍ତସେନଙ୍କ ଅଯୋଗ୍ୟ ସମ୍ପଦକୁ ଦେଖି ସେ ଉପହାସ କରିଛନ୍ତି ଏବଂ ନିଜେ ମଣିଭଦ୍ର ରାକ୍ଷସ ନିକଟକୁ ଯାଇ ଅର୍ଥ ଭିକ୍ଷା କରିଛନ୍ତି । ରାକ୍ଷସ କତଙ୍କୁ ଦେଖି ଭକ୍ଷଣ ପାଇଁ ଉଦ୍ୟତ ହୁଅନ୍ତେ କତ ମରୁତ୍ତସେନଙ୍କୁ ଅର୍ଥ ପ୍ରଦାନକରି ପୁଣି ଥରେ ଫେରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି ଏବଂ ପରେ ତା ନିକଟକୁ ଫେରିଛନ୍ତି ମଧ୍ୟ । ରାକ୍ଷସ କତଙ୍କର ସତ୍ୟନିଷ୍ଠା ଦେଖି ତାଙ୍କୁ ଭକ୍ଷଣ ନକରି ଛାଡ଼ିଦେଇଛନ୍ତି । ଏଣେ ଆଉ ଗୋଟିଏ ଅଘଟନ ଘଟିଛି । ନାରଦ ବୃହସ୍ପତିଙ୍କୁ କହିଛନ୍ତି ଯେ ମରୁତ୍ତସେନର ଯାଗ ଯୋଗୁ କତଙ୍କୁ ମଣିଭଦ୍ର ରାକ୍ଷସ ଭକ୍ଷଣ କରିବାକୁ ଯାଉଛି । ଏକଥା ଶୁଣି କ୍ରୋଧାନ୍ଧ ବୃହସ୍ପତି ଜବତ ଧରି ମରୁତ୍ତସେନଙ୍କ ଯାଗଶାଳା ଭାଙ୍ଗି ଦେଇଛନ୍ତି । ଯଜ୍ଞ ହୋଇପାରି ନାହିଁ ଏବଂ ମରୁତ୍ତସେନ ମନ୍ଦର କନ୍ଦରରେ ଆତ୍ମଗୋପନ କରିଛନ୍ତି । ମୂଳ ଗ୍ରନ୍ଥରେ ମରୁତ୍ତଙ୍କର ଯଜ୍ଞ ସଫଳ ହେବାର ବୃତ୍ତାନ୍ତ ବର୍ଣ୍ଣନା କରାଯାଇଛି, ମାତ୍ର ସାରଳା ମରୁତ୍ତସେନଙ୍କର ଅସଫଳ ଯାଗର କାହାଣୀ କହିଛନ୍ତି ।

ଯଜ୍ଞ ଅଶ୍ୱଧରି ଅର୍ଜ୍ଜୁନଙ୍କର ଦିଗ୍‌ବିଜୟ କ୍ରମକୁ ସାରଳା ମୂଳ ଅପେକ୍ଷା ସଂକ୍ଷିପ୍ତ ଓ ଭିନ୍ନ କରିଛନ୍ତି । ବ୍ୟାସଙ୍କ ଆଦେଶରେ ଏହି ଅଶ୍ୱ ଅଶ୍ୱିନୀକୁମାରଙ୍କଠାରୁ ମିଳିଥିଲା ବୋଲି ସାରଳା ଲେଖିଛନ୍ତି । ମାତ୍ର ବଙ୍ଗଳା ମହାଭାରତର ଲେଖକ କାଶୀରାମ ଦାସ ଏ ସ୍ଥଳରେ ଯୁବନାଶ୍ୱ ରାଜାଙ୍କ ଅଶ୍ୱ ଆଣିଥିବା କଥା କହିଛନ୍ତି । ମୂଳ ଗ୍ରନ୍ଥରେ ବର୍ଣ୍ଣିତ ଯେ ବ୍ୟାସଦେବ ଯୁଧିଷ୍ଠିରଙ୍କୁ ଚୈତ୍ରପୂର୍ଣ୍ଣିମା ଦିନ ଅଶ୍ୱମେଧ ଯଜ୍ଞରେ ଦୀକ୍ଷିତ କରାଇଲେ ।

ଚୈତ୍ର୍ୟାଂତୁ ପୌର୍ଣ୍ଣମାସ୍ୟାଂ ତୁ ତବ ଦୀକ୍ଷା ଭବିଷ୍ୟତି
ସମ୍ଭାରାଃ ସମ୍ଭ୍ରିୟନ୍ତାଂ ଯଜ୍ଞାର୍ଥଂ ପୁରୁଷର୍ଷଭ ।

(ଆ. ପ. ୭୧ ଅଧ୍ୟାୟ)

କିନ୍ତୁ ସାରଳା ଦାସ ଚୈତ୍ରମାସ ପରିବର୍ତ୍ତେ ମକର ମାସରେ ଅଶ୍ୱମେଧ ଯାଗ ହୋଇଥିଲା ବୋଲି ଲେଖିଛନ୍ତି ।

ମୂଳ ଗ୍ରନ୍ଥରେ ଯଜ୍ଞ ଅଶ୍ୱ ସହିତ ଅର୍ଜୁନଙ୍କର ଦିଗ୍‌ବିଜୟ ଘଟଣା ପଞ୍ଚଦଶ ଅଧ୍ୟାୟ ବ୍ୟାପି ବହୁ ଘଟଣା ସମନ୍ୱିତ ହୋଇ ପ୍ରକାଶ ପାଇଛି । ବ୍ୟାସ ଏହି କାଳରେ ତ୍ରିଗର୍ତ୍ତ, ବଜ୍ରଦତ୍ତ, ଗାନ୍ଧାରରାଜ, ଶକୁନିପୁତ୍ର, ମଗଧରାଜ ପ୍ରଭୃତିଙ୍କର ଅର୍ଜୁନଙ୍କ ସହ ଯୁଦ୍ଧ ଓ ପରାଜୟର ବିବରଣୀ ଉପସ୍ଥାପନା କରିଛନ୍ତି । ତେବେ ଏହା ମଧ୍ୟରେ ନାଗକନ୍ୟା ଉଲୂପୀଙ୍କ ମୋହିନୀ ମାୟା ବଳରେ ଚିତ୍ରାଙ୍ଗଦା ପୁତ୍ର ବଭ୍ରୁବାହାନଙ୍କର ଅର୍ଜୁନ ନିଧନ ଘଟଣାଟି ଖୁବ୍ ବିସ୍ମୟଜନକ ଏବଂ କୌତୁକ ପ୍ରଦ । ବ୍ୟାସ ବଭ୍ରୁବାହାନଙ୍କୁ ମଣିପୁରର ରାଜା ଭାବରେ ଉଲ୍ଲେଖ କଲାବେଳେ ସାରଳା ତାଙ୍କୁ ଚେନାବଳୀ ନଗର ଅଧିପତି ଭାବରେ ଚିତ୍ରଣ କରିଛନ୍ତି । ଆହୁରି ମଧ୍ୟ ସେ ଉଲୂପୀଙ୍କୁ ନାଗକନ୍ୟା ଏବଂ ଚିତ୍ରାଗଂଦାଙ୍କୁ ମଣିପୁରର ରାଜକନ୍ୟା ଭାବରେ ଗ୍ରହଣ ନକରି ଉଭୟଙ୍କୁ ମହ୍ଲାର ଦେଶର ରାଜା ଚିତ୍ରାଙ୍କୁରର କନ୍ୟା ଭାବରେ ଗ୍ରହଣ କରିଛନ୍ତି । ସେ କହିଛନ୍ତି ଯେ ପାଣ୍ଡବମାନଙ୍କ ବନବାସ କାଳରେ ଯେତେବେଳେ ମରହଟ୍ଟା ରାଜା ମହ୍ଲାର ଦେଶ ଉପରେ ଆକ୍ରମଣ କଲା ସେତେବେଳେ ଚିତ୍ରାଙ୍କୁର ଅର୍ଜୁନଙ୍କ ଶରଣ ପଶିଲେ । ଅର୍ଜୁନ ମରହଟ୍ଟ ରାଜାଙ୍କୁ ପରାସ୍ତ କରିବାରୁ ଚିତ୍ରାଙ୍କୁର କନ୍ୟା ଉଲପୀଙ୍କୁ ତାଙ୍କୁ ପ୍ରଦାନ କରିବ ସଙ୍ଗେ ସଙ୍ଗେ ଚିତ୍ରାଗଂଦାଙ୍କୁ ଯୌତୁକ ରୂପେ ପ୍ରଦାନ କରିଛି । ବ୍ୟାସଙ୍କର ବଭ୍ରୁବାହନ ଅର୍ଜୁନଙ୍କୁ ପିତାବୋଲି ଜାଣି ଯୁଦ୍ଧ କଲାବେଳେ ସାରଳାଙ୍କର ବଭ୍ରୁବାହନ ଅର୍ଜୁନଙ୍କୁ ପ୍ରଥମରୁ ପିତା ବୋଲି ଜାଣିନାହିଁ । ସେ ଯଜ୍ଞ ଅଶ୍ୱ ଜବରଦସ୍ତ ବାନ୍ଧିଛି ଏବଂ ଘୋର ସମର କରିଛି । ଉଭୟ ଉଭୟଙ୍କ ଶରରେ ନିହତ ହେଲାପରେ ବ୍ୟାସଙ୍କ ଦ୍ୱାରା ଜୀବନ ଫେରିପାଇ ପରସ୍ପରକୁ ଚହ୍ନି ପାରିଛନ୍ତି ।

ମୂଳ ଗ୍ରନ୍ଥରେ ବର୍ଣ୍ଣିତ ହୋଇଥିବା ଗ୍ରାମ୍ଯଙ୍କ ପାଇଁ ଯୁଧିଷ୍ଠିରଙ୍କ ବ୍ୟାକୁଳତା ଓ ପାର୍ଥିବ ସୁଖରେ ନିର୍ବେଦବିଶ୍ରିର ଧର୍ମ, ଅନଲ୍ପ ଇତିହାସ ସମ୍ବଳିତ ଅନୁଗୀତା ପ୍ରଭୃତି ପାଠମାନ, ଉତ୍ତଙ୍କ ଉପାଖ୍ୟାନ ପ୍ରଭୃତିଙ୍କୁ ସାରଳା ଦାସ ବର୍ଜ୍ଜନ କରିଛନ୍ତି । ସେହିପରି ମୂଳଗ୍ରନ୍ଥରେ ବର୍ଣ୍ଣିତ ଅଦ୍ଭୁତ ନକୁଳ ଉପାଖ୍ୟାନ ସାରଳା ମହାଭାରତରେ ନାହିଁ । ବଙ୍ଗ ଭାରତକର୍ତ୍ତା କାଶୀରାମ ମଧ୍ୟ ଏହି ଉପାଖ୍ୟାନକୁ ତାଙ୍କ ଗ୍ରନ୍ଥରେ ଦେଇନାହାନ୍ତି । ବ୍ୟାସଙ୍କ ବର୍ଣ୍ଣିତ ଉତ୍ତଙ୍କ ଉପଖ୍ୟାନ ଏକ ଚିତ୍ତାକର୍ଷକ ଉପାଖ୍ୟାନ । ତାଙ୍କ ବିଷୟରେ କୁହାଯାଇଛି ଯେ ସେ ଗୌତମଙ୍କର ଅତି ପ୍ରିୟ ଶିଷ୍ୟ ଥିଲେ । ତାଙ୍କର ଏକାଗ୍ରତା ଓ ଗୁରୁଭକ୍ତି ଏତେ ଅଧିକ ଥିଲା ଯେ ତାଙ୍କର ବାର୍ଦ୍ଧକ୍ୟ କାଳ ବିଷୟରେ ସେ ସଚେତନ ହୋଇପାରି ନଥିଲେ । ପରେ ସେ ଗୁରୁଙ୍କ ପ୍ରସାଦରୁ ନବଯୌବନ ଲାଭ କରି ଗୁରୁ କନ୍ୟାଙ୍କୁ ବିବାହ କରିଥିଲେ । ଗୁରୁଦକ୍ଷିଣା ପାଇଁ ସେ ବହୁ କଷ୍ଟ ସ୍ୱୀକାର କରି ରାଜା ସୌଦାସଙ୍କ ପତ୍ନୀଙ୍କଠାରୁ ମଣିମୟ କୁଣ୍ଡଳ ଆଣି ଗୌତମଙ୍କ ପତ୍ନୀ ଅହଲ୍ୟାଙ୍କୁ ପ୍ରଦାନ

କରିଥିଲେ । ଏହି ଉତ୍ତଙ୍କଙ୍କୁ କୃଷ୍ଣ ବିଶ୍ୱମୂର୍ତ୍ତି ସନ୍ଦର୍ଶନ କରାଇଥିଲେ ଏବଂ ମରୁଭୂମି ମଧ୍ୟରେ ଦୁର୍ଲଭ ଜଳ ଯେତେବେଳେ ସେ ଅଭିଳାଷ କରିବେ ସେହି ସ୍ଥାନରେ ତାଙ୍କର ଅଭିଳାଷ ପୂର୍ଣ୍ଣ ହୋଇପାରିବ ବୋଲି ତାଙ୍କୁ ବର ପ୍ରଦାନ କରିଥିଲେ । ଏକଦା ତୃଷାର୍ତ୍ତ ଉତ୍ତଙ୍କ ଜଳ ଆକାଂକ୍ଷାରେ କୃଷ୍ଣଙ୍କୁ ସ୍ମରଣ କରିବାରୁ ସେ କକ୍କୁର ଯୂଥ ସହିତ ଶରକାର୍ମୁକ-ଧାରୀ ଓ ନଗ୍ନର ପରିସ୍ରା ତ୍ୟାଗ କରୁଥିବା ଚଣ୍ଡାଳକୁ ଦେଖିଲେ । ଚଣ୍ଡାଳ ସେହି ପରିସ୍ରା ପାନ ପାଇଁ ତାଙ୍କୁ ଆହ୍ୱାନ କରିବାରୁ ସେ କ୍ରୋଧାନ୍ୱିତ ହୋଇ ନାସ୍ତି କଲେ । ପରେ ଶଙ୍ଖଚକ୍ରଧାରୀ କୃଷ୍ଣ ସେଠାରେ ଆବିର୍ଭୂତ ହୋଇ ଉତ୍ତଙ୍କୁ କହିଲେ ଯେ ତାଙ୍କୁ ଯେପରି ସ୍ଥାନରେ ଯାହା ଦିଆହେବାର କଥା ତାହା ଦିଆହୋଇଥିଲା ମାତ୍ର ସେ ବୁଝି ପାରିଲେ ନାହିଁ । ସ୍ୱୟଂ ଇନ୍ଦ୍ର ତାଙ୍କ ନିର୍ଦ୍ଦେଶରେ ଚଣ୍ଡାଳ ବେଶରେ ଉତ୍ତଙ୍କଙ୍କୁ ଅମୃତ ଦାନ ପାଇଁ ଆସିଥିଲେ, ମାତ୍ର ସେ ତାହା ନ ବୁଝିପାରି ପ୍ରତ୍ୟାଖ୍ୟାନ କଲେ । ଉତ୍ତଙ୍କ ନିଜର ଭୁଲ ବୁଝିପାରିଲେ ଏବଂ କୃଷ୍ଣ ତାଙ୍କୁ କହିଲେ ଯେ ଯେଉଁଦିନ ତାଙ୍କର ଜଳପାନ ପାଇଁ ସ୍ପୃହା ହେବ ସେହିଦିନ ସେହି ମରୁଭୂମିରେ ଜଳଧରଗଣ ବୃଷ୍ଟି କରିବେ ଏବଂ ତାହା ଉତ୍ତଙ୍କ ମେଘ ବୋଲି ଖ୍ୟାତିଲାଭ କରିବ ।

ଉଭୟ ମହାକବି ବ୍ୟାସ ଏବଂ ଶୂଦ୍ରମୁନି ସାରଳା ଦାସ ଯଜ୍ଞ ଅଶ୍ୱ ଯେଉଁ ସବୁ ଭିନ୍ନ ଭିନ୍ନ ରାଜ୍ୟ ପ୍ରଦକ୍ଷିଣ କରିଛି ସେଗୁଡ଼ିକର ଚିତ୍ର ପ୍ରଦାନ କରି ନିଜ ନିଜର ଐତିହାସିକ ଜ୍ଞାନର ପରିଚୟ ଦେଇଛନ୍ତି । ବ୍ୟାସ ମଣିପୁର, ପ୍ରାଗଜ୍ୟୋତିଷ, ମଗଧ ସିନ୍ଧୁଦେଶ ପ୍ରଭୃତିର ନାମୋଲ୍ଲେଖ କରିଛନ୍ତି । ଏହା ବ୍ୟତୀତ ବଙ୍ଗ, ପୁଣ୍ଡ୍ର, କଳିଙ୍ଗ, ଗାନ୍ଧାର, ଗୋକର୍ଣ୍ଣ ପ୍ରଭୃତି ରାଜ୍ୟ ସମ୍ପର୍କରେ ସୂଚନା ମଧ୍ୟ ମୂଳ ଗ୍ରନ୍ଥର ଆଶ୍ୱମେଧିକ ପର୍ବରେ ଦେଖିବାକୁ ମିଳେ । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ଏଇ ସବୁ ରାଜ୍ୟ ଗୁଡ଼ିକର ଭୌଗଳିକ ଅବସ୍ଥିତି ସମ୍ପର୍କରେ ଆମ୍ଭେ ଏଥିରୁ ସୂଚନା ପାଉ । ସାରଳା ଦାସ ସେହିପରି ସମକାଳୀନ ଐତିହାସିକ ଓ ଭୌଗଳିକ ଚିତ୍ର ପ୍ରଦାନ କରନ୍ତି । ସେ ତାଙ୍କ ସମୟରେ ଭୌଗଳିକ ନାମ ଗୁଡ଼ିକରୁ ଯେପରି ଶୁଣିଥିଲେ ସେହିପରି ଲେଖି ଯାଇଥିଲେ । ସେ ପ୍ରାଚୀନ, ଅର୍ବାଚୀନ ପୁଣି ଗୁରୁ ଚଣ୍ଡାଳ ଦୋଷପ୍ରତି ସଚେତନ ନଥିଲେ । ସେଥିପାଇଁ ସେ ତାଙ୍କର ସମକାଳୀନ ରାଜ୍ୟ ମାନଙ୍କର ନାମକୁ ବିକୃତ ଭାବରେ କେତେବେଳେ ଲେଖିଛନ୍ତିତ ପୁଣି କେତେବେଳେ ସମ୍ପୂର୍ଣ୍ଣ କେତେକ କାଳ୍ପନିକ ରାଜ୍ୟର ନାମୋଲ୍ଲେଖ କରିଛନ୍ତି । ଅଶ୍ୱମେଧ ପର୍ବରେ ବର୍ଣ୍ଣିତ କେତୋଟି ରାଜ୍ୟର ନାମକୁ ବିବେଚନା କରି ସାରଳା ଦାସଙ୍କ ପ୍ରଭୂତ ଭୌଗଳିକ ଜ୍ଞାନର ନମୁନା ଦିଆଯାଇ ପାରେ ।

ଉଜାଣି କାନ୍ତି — ଉଜ୍ଜୟିନୀ ବା ମାଳବଦେଶ

ଉତଙ୍ଗଦେଶ — ଉରଗ ପଲ୍ଲୀ ବା ତ୍ରିଚନ୍ନାପଲ୍ଲୀ ଅଞ୍ଚଳ

ମହେନ୍ଦ୍ର ନଗର — ରାଜ ମହେନ୍ଦ୍ରୀ

ଶୋଣପୁର — ଅଧୁନିକ ସୋନପୁର ।

ସାରଳାଙ୍କ ଐତିହାସିକ ଓ ଭୌଗଳିକ ଜ୍ଞାନସମ୍ପର୍କରେ ଏଠାରେ ବିଶିଷ୍ଟ ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମନ୍ତବ୍ୟ ଉଲ୍ଲେଖ କରିବା ଯଥାର୍ଥ ହେବ । ସେ କହନ୍ତି—"ସଂସ୍କୃତ ଓ ଅନ୍ୟାନ୍ୟ ଭାରତୀୟ ଭାଷାରେ ଲିଖିତ ମହାଭାରତ ମାନଙ୍କରେ କିମ୍ବଦନ୍ତୀ ମୂଳକ ଐତିହାସିକ ଓ ଭୌଗଳିକ ଚିତ୍ର ସତ୍ୟଯୁଗରୁ ଆରମ୍ଭ ହୋଇ ଦ୍ୱାପର ଯୁଗରେ ଶେଷ ହୋଇଛି ମାତ୍ର ସାରଳା ମହାଭାରତରେ ଏହି ଚିତ୍ର ଲମ୍ବି ଆସି କଳିଯୁଗର ମୁସଲମାନ ରାଜତ୍ୱର ପ୍ରାୟ ମଧ୍ୟ ଭାଗରେ ଶେଷ ହୋଇଛି । ଏହାହିଁ ସାରଳା ମହାଭାରତର ପ୍ରଧାନ ବୈଶିଷ୍ଟ୍ୟ ଓ ବିଭିନ୍ନତା । ଏହି ବିଭିନ୍ନତା କବିଙ୍କ ଅଜ୍ଞତା, ଅପାରଗତା ବା ସଂସ୍କୃତ ଜ୍ଞାନହୀନତା ଦୋଷରୁ ଘଟିଛି ବୋଲି ଯେଉଁ ମତ ପ୍ରକାଶିତ ହୋଇଛି ତାହା ସତ୍ୟାଶ୍ରିତ ନୁହେଁ । ସାରଳା ଦାସ ତାଙ୍କ ସମୟର ଜଣେ ସର୍ବଜ୍ଞାନସମ୍ପନ୍ନ ଅସୀମ ଧୀ ସମ୍ପନ୍ନ ଓ ଅସାଧାରଣ ସ୍ମୃତିଧର ବ୍ୟକ୍ତି ଥିଲେ । ସେ ସ୍ୱେଚ୍ଛାକୃତ ଭାବରେ ଅନ୍ୟାନ ମହାଭାରତ ଠାରୁ ତାଙ୍କ ମହାଭାରତକୁ ଭିନ୍ନ ରୂପ ଦେଇଛନ୍ତି । ସଂସ୍କୃତ ମହାଭାରତକୁ ଅନୁବାଦ ଓ ଅନୁସରଣ କରି ତାଙ୍କ ଗ୍ରନ୍ଥ ଲେଖିଛନ୍ତି ବୋଲି କୁହାପି କହି ନାହାନ୍ତି । × × × × ଏଣୁ ତାଙ୍କ ମହାଭାରତରେ ଯାହା ଅଛି ତାହା କେବଳ ଦ୍ୱାପର ଯୁଗରେ ଘଟିଥିବା ଘଟନାମାନ ନୁହେଁ । ଏପରି ସ୍ପଷ୍ଟଭାବରେ ବ୍ୟକ୍ତ ମତ ଉପରେ ପ୍ରତିଷ୍ଠିତ ସାରଳା ମହାଭାରତ ସଂସ୍କୃତ ମହାଭାରତ ସହିତ ମେଳ ଖାଇବ କିପରି ? ମେଳ ନଖାଇଲେ ତାହା ସାରଳା ଦାସଙ୍କ ଅଜ୍ଞତା ଦୋଷରୁ ଘଟିଛି ବୋଲି ବା କୁହାଯିବ କିପରି ?(୧)

ସାରଳା ଅଶ୍ୱମେଧ ପର୍ବରେ ଯେପରି ଅନ୍ୟାନ୍ୟ ପୌରାଣିକ ଓ ଐତିହାସିକ କଥାବସ୍ତୁ ସଂଯୋଗ କରିଛନ୍ତି ଠିକ୍ ସେହିପରି ବଙ୍ଗଳା ମହାଭାରତର ଲେଖକ କାଶୀରାମ ପୁରାଣେତର କଥା ଗୁଡ଼ିଏ ଆଣି ସଙ୍ଗତ ସନ୍ଦର୍ଭ ଲଗାଇ ଯୋଗ କରି ଦେଇଛନ୍ତି ।

ବଙ୍ଗଳା ମହାଭାରତରେ ପ୍ରସଙ୍ଗକ୍ରମେ ସ୍ଥାନେ ସ୍ଥାନେ ଏହା ପ୍ରକ୍ଷିପ୍ତ ହେଲାବେଳେ ସାରଳା ମହାଭାରତରେ ଅନାବନ୍ତ କଥା ଗୁଡ଼ିକ ଧାରାବାହିକ ଭାବରେ ସନ୍ନିବେଶିତ ହୋଇ ରହିଛି । ଏ ସମ୍ପର୍କରେ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ତାଙ୍କର ଭାରତ ଦର୍ପଣ ପୁସ୍ତକରେ କହନ୍ତି—"ଏପରି ଅନେକ ଗୁଡ଼ିଏ ପ୍ରକ୍ଷିପ୍ତ ହେବାର କାରଣ, ବୋଧହୁଏ କେବଳ ପର୍ବର ସୁବିସ୍ତୃତ ବଢ଼ାଇବାପାଇଁ ମୌଳିକ କଥାଗୁଡ଼ିକୁ ଯଥାଯଥ ପ୍ରସରଣରେ ସୁବିସ୍ତୃତ କରିନପାରି କମ୍ବା ମୂଳର ଅନେକ ଗୁଡ଼ିଏ ଉପାଖ୍ୟାନଭୁକ୍ତ କଥା

---

(୧) ସାରଳା ମହାଭାରତର ଐତିହାସିକ ଉପାଦାନ – ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କୋର '' ବର୍ଷ ୭ମ ସଂଖ୍ୟା

ତ୍ୟାଗ କରିଦେଇ ଲେଖିଗଲେ ପାଠ ବିସ୍ତୃତ ଚର୍ଚ୍ଚାରେ ଅବାନ୍ତର ଚରିତ ମାନଙ୍କର ଆଶ୍ରୟ ନେବାକୁ ହୁଏ ।" (୧)

ସାରଳା ଦାସ ଥିଲେ ତାଙ୍କର ସମକାଳୀନ ରାଜନୀତି ଇତିହାସ ଓ ସାଂସ୍କୃତିକ ଚେତନାର ଜଣେ ସଚେତନ ରୂପକାର । ଅଶ୍ୱମେଧ ପର୍ବରେ ଆମ୍ଭେ ତାଙ୍କର ସେହି ସଚେତନ ଦୃଷ୍ଟିଭଙ୍ଗୀ ଲକ୍ଷ୍ୟ କରୁ । ଅନ୍ୟାନ୍ୟ ପର୍ବଗୁଡ଼ିକ ପରି ସେ ଏଥିରେ ମୂଳ କଥାବସ୍ତୁ ବର୍ଜନ, ନୂତନ କଥାବସ୍ତୁ ନିର୍ମାଣ ଏବଂ କଳ୍ପନାର ଅନୁରଞ୍ଜନରେ ମୂଳ କଥାବସ୍ତୁର ବିସ୍ତୃତୀକରଣ କରି ନିଜ କବିତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ।



(୧) ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା — ଭାରତ ଦର୍ପଣ ପୃ- ୧୦୭

# ମୂଷଳୀ ପର୍ବ

## ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)

ମହାକବି ବ୍ୟାସଦେବଙ୍କ ରଚିତ ମହାଭାରତର ଷୋଡ଼ଶ ପର୍ବଟି ମୌଷଳ ପର୍ବ ନାମରେ ନାମିତ । ଏହାର କଥାବସ୍ତୁ ଯେପରି ସଂକ୍ଷିପ୍ତ ସେହିପରି ଏହାର ସ୍ୱର କରୁଣ ଓ ବିସ୍ମୟୋଦ୍ଦୀପକ । ମାତ୍ର ଆଠଗୋଟି ଅଧ୍ୟାୟରେ ପରିସମାପ୍ତ । ଏହି ପର୍ବକୁ ମହାପ୍ରାସ୍ଥାନିକ ଓ ସ୍ୱର୍ଗାରୋହଣ ପର୍ବର ଭୂମିକା କୁହାଯାଇପାରେ । ଏଥିରେ ଯଥାକ୍ରମେ ମୂଷଳର ଉତ୍ପତ୍ତି, ଦ୍ୱାରକାରେ ଉତ୍ପାତ ସୃଷ୍ଟି କୃତବର୍ମା ଆଦିଙ୍କର ପାରସ୍ପରିକ ହତ୍ୟା, କୃଷ୍ଣଙ୍କର ସ୍ୱର୍ଲୋକ ଗମନ, ଅର୍ଜୁନଙ୍କର ଦ୍ୱାରକା ଆଗମନ, ଅର୍ଜୁନ-ବସୁଦେବ ସମ୍ବାଦ, ବୃଷ୍ଣି କଳତ୍ରଙ୍କୁ ଅର୍ଜୁନଙ୍କର ହସ୍ତିନା ଆନୟନ, ବ୍ୟାସ ଓ ଅର୍ଜୁନ ସମ୍ବାଦ ବର୍ଣ୍ଣିତ ହୋଇ ଅଛି । ବସ୍ତୁତଃ ଏହି ପର୍ବରେ ଆମେ ରାଜସିକ ବିଳାସ, ଯୁଦ୍ଧର ଘନଘଟା, ପୌରୁଷର ପରିପ୍ରକାଶ ଅଥବା ଆଧ୍ୟାତ୍ମିକ ତତ୍ତ୍ୱ ଉପସ୍ଥାପନାର ପ୍ରଶାନ୍ତ ଦେଖିବାକୁ ପାଉନାହିଁ । ପରନ୍ତୁ ଏଥିରେ ପ୍ରତିଫଳିତ ହୋଇଛି ସାଭଙ୍ଗ ତାମସିକତା, ପ୍ରଚଣ୍ଡ ବ୍ୟର୍ଥତା ଓ ମର୍ମାନ୍ତକ କରୁଣତା । ଏକାଧାରରେ ଏଥିରେ ସମ୍ପାଦିତ ହୋଇଛି ବର୍ଷଣମୁଖର ରାତ୍ରୀର ବିଭୀଷିକା ଓ ବର୍ଷଣୋତ୍ତର ନିସ୍ତବ୍ଧ ଗହନତା । ମୋଟ ଉପରେ ଏହା ଯଦୁକୁଳ ଧ୍ୱଂସ, କୃଷ୍ଣ ବଳରାମଙ୍କ ଦେହତ୍ୟାଗ ଓ ମହାବୀର ଅର୍ଜୁନଙ୍କର ଶକ୍ତିହୀନ ହେବାର ଏକ ଶୋଚନୀୟ, କରୁଣ ବିବରଣୀ ।

ଏହି ପର୍ବର କଥାବସ୍ତୁ ସଂକ୍ଷେପରେ ଏହିପରି—ଯୁଧିଷ୍ଠିରଙ୍କ ରାଜ୍ୟ ପ୍ରାପ୍ତିର ଷଡ଼ତ୍ରିଂଶ ବର୍ଷରେ ରାଜ୍ୟରେ ବହୁ ଅଶୁଭ ଲକ୍ଷଣ ଦେଖାଦେଇ ଥିଲା । ଏତାଦୃଶ ବର୍ଣ୍ଣନାରୁ ଏହି ପର୍ବର କଥାବସ୍ତୁ ଆରମ୍ଭ ହୋଇଅଛି । ସେତେବେଳେ ଯଦୁବଂଶୀୟ ବ୍ୟକ୍ତିମାନଙ୍କର ନୈତିକ ଜୀବନ ଅତୀବ କଳୁଷିତ ହୋଇ ପଡ଼ିଥିଲା । ବାସୁଦେବଙ୍କ ବର୍ଣ୍ଣନାନୁଯାୟୀ "ସେତେବେଳେ ବାର୍ଷ୍ଣେୟଗଣ ପାପକାର୍ଯ୍ୟ କରି ଲଜ୍ଜାବୋଧ କଲେ ନାହିଁ; ଦେବତା, ବ୍ରାହ୍ମଣ ଓ ପିତୃଗଣଙ୍କୁ ଦ୍ୱେଷ କଲେ । ରାମ ଓ କୃଷ୍ଣଙ୍କ ବ୍ୟତିରେକେ ପ୍ରାୟ ସମସ୍ତ ଯାଦବ ଗୁରୁଜନ ମାନଙ୍କୁ ଅବମାନନା କଲେ ଏବଂ ପତ୍ନୀଗଣ ପତିମାନଙ୍କୁ ଏବଂ ପତିଗଣ ପତ୍ନୀମାନଙ୍କୁ ବଞ୍ଚନା କଲେ" (୨ୟ-୧୦।୧୧)॥

ଆତ୍ମୀୟ-ସ୍ୱଜନଙ୍କୁ ସୁରାପାନରୁ ନିବୃତ୍ତ ହେବାଲାଗି କୃଷ୍ଣ ବଳରାମ ଏହିପରି କଠୋର ଆଦେଶ ପ୍ରଚାର କରିଥିଲେ—"ଆଦ୍ୟାବଧି ବୃଷ୍ଣି ଓ ଅନ୍ଧକ

ବଂଶୀୟ ଜନଗଣଙ୍କ ମଧ୍ୟରେ କେହ ଯେପରି ସୁରା ପ୍ରସ୍ତୁତ ପାନଦ୍ୱାରା ମତ୍ତ ହେବେ ନାହିଁ । କୌଣସି ବ୍ୟକ୍ତି ମଦ୍ୟପାନ କରୁଅଛୁ ବୋଲି ଯଦି ଆମ୍ଭେମାନେ ଶୁଣି ପାରୁ; ତେବେ ସେ ବ୍ୟକ୍ତି ଏକାକୀ ପାନ କରିଥିଲେହେଁ ସବାନ୍ଧବ ଜୀବିତାବସ୍ଥାରେ ଶୂଳରେ ଆରୋହଣ କରିବେ (୧) । ମନେ ଏହି ଆଦେଶ କାର୍ଯ୍ୟକାରୀ ହୋଇ ପାରିନଥିବା ଅନୁମେୟ । କାରଣ ଯଦୁବଂଶୀୟ ମାନଙ୍କର ଅତ୍ୟଧିକ ଅଧଃପତନ ଦେଖି କୃଷ୍ଣ ସେମାନଙ୍କୁ ଆଶୁ ଧ୍ୱଂସମୁଖରୁ ରକ୍ଷା କରିବାଲାଗି ପ୍ରଭାସ ତୀର୍ଥକୁ ଯାତ୍ରା କରିବା ଲାଗି ଜନେ ଘୋଷଣା ପ୍ରଚାର କରିଥିଲେ । ତଦନୁଯାୟୀ ଦ୍ୱାରକା ଅଧିବାସୀଗଣ ସେମାନଙ୍କ ସହ ପ୍ରଚୁର ଖାଦ୍ୟପେୟ ଓ ବହୁ ପରିମିତ ମଦ୍ୟମାଂସ ନେଇ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ବହିର୍ଗତ ହେଲେ (୨) ।

ପ୍ରଭାସ ତୀର୍ଥରେ ପହଞ୍ଚିବାପରେ ସେଠି "ହରିଶାର୍ଯ୍ୟ ଯାଦବ ଗଣଙ୍କର ଶତ ଶତ ତୂର୍ଯ୍ୟରବ ଓ ନଟ ନର୍ତ୍ତକ ଗଣଙ୍କର ନୃତ୍ୟଗୀତାଦି ସମନ୍ୱିତ ମହାପାନ ଆରମ୍ଭ ହେଲା" (୩) । କୃଷ୍ଣ ସେଠାରେ ତାହାଙ୍କ ସମ୍ମୁଖରେ ପ୍ରମତ୍ତ ଅସ୍ମୀହୃମ ନଙ୍କ ଦ୍ୱାରା ଆପଣାର ପୁତ୍ର ଅନ୍ୟମାନଙ୍କର ନିଧନ ଦେଖି କ୍ରୋଧାନ୍ୱିତ ହୋଇଗଲେ । ଏହାପରେ ସେ ଯେଉଁ ଏକ ମୁଷ୍ଟି ଏରକା ଗୁଚ୍ଛ ଗ୍ରହଣ କରିଥିଲେ ତାହା ଏକ ଭୟଙ୍କର ଲୌହ ମୂଷଳରେ ପରିଣତ ହୋଇଥିଲା (୪) । ମୂଷଳୀଭୂତ ଏରକାଗୁଚ୍ଛ ଦ୍ୱାରା ଯାଦବମାନେ ପାରସ୍ପରିକ ସଂଘର୍ଷରେ ଲିପ୍ତ ହେଲେ ଓ ଅବଶେଷରେ ସମସ୍ତେ ବିନଷ୍ଟ ହୋଇଥିଲେ । ଜତ ଏହି ବିଷୟକୁ ତୃତୀୟ ଅଧ୍ୟାୟର ଛଅଗୋଟି ପଦ (୩୭ ରୁ ୪୨ ପଦ) ମଧ୍ୟରେ ବର୍ଣ୍ଣନା କରିଅଛନ୍ତି ।

ଏହିପରି ଯଦୁ ବଂଶ ଧ୍ୱଂସହେଲା । ଏହାପରେ ଶ୍ରୀକୃଷ୍ଣ ବଳରାମଙ୍କୁ ଏକ ନିର୍ଜନ ସ୍ଥାନରେ ବୃକ୍ଷ ଉପରେ ଚିନ୍ତିତ ହୋଇ ବସିଥିବା ଦେଖିବାକୁ ପାଇଲେ । ତହୁଁ ସେ ଆପଣାର ସାରଥୀ ଦାରୁକକୁ କହିଲେ—"ତୁମେ ଶୀଘ୍ର ହସ୍ତିନାକୁ ଯାଇ

---

(୧) ଯଶ୍ଚ ନୋଽବିଦିତଂ କୁର୍ଯ୍ୟାଦ୍‌ପେୟଂ କଶ୍ଚିନ୍ନରଃ କ୍ୱଚିତ୍
ଜୀବନ୍ ସ ଶୂଳ ମାରୋହେତ ସ୍ୱୟଂ କୃତ୍ୱା ସବାନ୍ଧବଃ ।

(୧୨-୩୦)

(୨) ତତୋ ଭୋଜ୍ୟଂ ଚ ଭକ୍ଷଂ ଚ ପେୟଂ ଚାନ୍ଧକ ବୃଷ୍ଣୟଃ
ବହୁ ନାନାବିଧଂ ଚକ୍ରୁର୍ମଦ୍ୟଂ ମାଂସମନେକଶଃ । (୩୬-୮)

(୩) ତତସ୍ତୂର୍ଯ୍ୟ ଶତାକୀର୍ଣ୍ଣଂ ନଟ ନର୍ତ୍ତକ ସଙ୍କୁଲମ୍
ଅବର୍ତ୍ତତ ମହାପାନଂ ପ୍ରଭାସେ ତିଗ୍ମତେଜସାମ (୩୬-୧୫)

(୪) ତଦ୍‌ଭୂନ୍ମୁଷଳଂ ଘୋରଂ ବଜ୍ରକଳ୍ପମୟୋମୟମ୍

(୩୬।-୩୭)

ପାଣ୍ଡବମାନଙ୍କୁ ଏହି ମହାଭୂଣ ସମ୍ବାଦ ଜଣାଅ ଏବଂ ବ୍ରହ୍ମ ଶାପଜନିତ ଯାଦବ ମାନଙ୍କର ମୃତ୍ୟୁ ସମ୍ବାଦ ଶୁଣି ଅର୍ଜୁନ ଯେପରି ଶୀଘ୍ର ଏଠାକୁ ଆସନ୍ତି ସେ ବିଷୟରେ ଯତ୍ନବାନ ହୁଅ" (୧) ଦ୍ୱାରକା ପୁରରେ ରହୁଥିବା ରମଣୀ ମାନଙ୍କୁ ଦସ୍ୟୁମାନଙ୍କ କବଳରୁ ରକ୍ଷାକରିବାଲାଗି କୃଷ୍ଣ ବଭ୍ରୁଙ୍କୁ ଦ୍ୱାରକା ଯାତ୍ରା କରିବାକୁ ଆଦେଶ ଦେଇଥିଲେ । ମାତ୍ର ବଭ୍ରୁ ହଠାତ୍ ମୂଷଳାଘାତରେ କୃଷ୍ଣଙ୍କ ସମ୍ମୁଖରେ ମୃତ୍ୟୁବରଣ କଲେ । ଏଣୁ କୃଷ୍ଣଙ୍କର ଏହି ଆଦେଶ କାର୍ଯ୍ୟକାରୀ ହୋଇ ପାରି ନଥିଲା । ସେ ନିଜେ ଦ୍ୱାରକାକୁ ଯାଇଥିଲେ ଓ ବସୁଦେବଙ୍କୁ ଆବଶ୍ୟକ ପରାମର୍ଶ ଦେଇ ପୁନଶ୍ଚ ବଳରାମଙ୍କ ନିକଟକୁ ଫେରିଆସିଲେ । ସେଠାରେ ଉପସ୍ଥିତ ହୋଇ ଦେଖିଲେ, ବଳରାମ ଏକାକୀ ଯୋଗଯୁକ୍ତ ହୋଇ ବସିଛନ୍ତି । ସ୍ୱହୁଁ ସ୍ୱହୁଁ ତାହାଙ୍କ ମୁଖରୁ ଏକ ଶ୍ୱେତନାଗ ବାହାରି ହୋଇ ସମୁଦ୍ରରେ ପ୍ରବିଷ୍ଟ ହେଲା ଓ ବଳରାମ ଦେହତ୍ୟାଗ କଲେ (୨) ।

ଏହାପରେ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ବିଷୟକୁ ଏହି ୪ର୍ଥ ଅଧ୍ୟାୟର ଶେଷରେ ସଂକ୍ଷେପରେ ମାତ୍ର ସାତଗୋଟି ପଦରେ ବର୍ଣ୍ଣନା କରିଅଛନ୍ତି । କୃଷ୍ଣ ଦେହତ୍ୟାଗ କରିବାକୁ ଅଭିଳାଷୀ ହୋଇ ଭୂତଳରେ ଉପବିଷ୍ଟ ହେଲେ ଓ ବାକ୍, ମନ, ଇନ୍ଦ୍ରିୟ ମାନଙ୍କ ସନ୍ନିରୋଧରୂପକ ମହାଯୋଗ ଅବଲମ୍ବନ ପୂର୍ବକ ଶୟନ କଲେ । ଏହି ଅବସରରେ ଜରା ନାମକ କୌଣସି ଉଗ୍ରମୂର୍ତ୍ତି ଲୁବ୍ଧକ ମୃଗୟାଭିଳାଷୀ ହୋଇ ସେହି ସ୍ଥାନକୁ ଆଗମନକରି ଶୟାନ, ଯୋଗଯୁକ୍ତ ଶ୍ରୀକୃଷ୍ଣଙ୍କୁ ମୃଗ ବୋଲି ଜାଣି ଶାୟକ ଦ୍ୱାରା ସତ୍ୱର ବିଦ୍ଧ କରି ଗ୍ରହଣାଭିଳାଷରେ ତାହାଙ୍କ ନିକଟକୁ ଗମନ କଲା । ନିକଟସ୍ଥ ହୋଇ ସେ ସେହି ଯୋଗଯୁକ୍ତ ପୀତାମ୍ବରଧାରୀ ଚତୁର୍ଭୁଜ ପୁରୁଷଙ୍କୁ ଦର୍ଶନ କରି ଆପଣାକୁ କୃତାପରାଧ ଜାଣି ଶଙ୍କିତ ମନରେ ତାହାଙ୍କ ଚରଣ ଯୁଗଳ ଧାରଣ କଲା (୪ର୍ଥ-୨୨ରୁ ୨୩ଶ) ।

ଅର୍ଜ୍ଜୁନ କୃଷ୍ଣ ନିଧନ ବାର୍ତ୍ତାପାଇ ଦ୍ୱାରକା ଯାଇଥିଲେ ଓ ଏରକା-ସମୁଦ୍‌ଭୂତ ମୂଷଳ ନିହତ ବ୍ୟକ୍ତିମାନଙ୍କର ଅନ୍ତ୍ୟେଷ୍ଟିକ୍ରିୟା ନିର୍ବାହ କରିଥିଲେ ଓ ବଳରାମ,

---

(୧) ତତୋର୍ଜ୍ଜୁନ କ୍ଷିପ୍ରମିହୋ ପଯାତୁ
ଶ୍ରୁତ୍ୱା ମୃତାନ ଯାଦବାନ ବ୍ରହ୍ମଶାପାତ
ଇତ୍ୟେବ ମୁକ୍ତଃ ସ ଯଯୌ ରଥେନ
କୁରୂଂସ୍ତଦା ଦାରୁକୋ ନଷ୍ଟ ଚେତାଃ । (୪ର୍ଥ-୭)

(୨) ଅଥା ପଶ୍ୟଦ୍ ଯୋଗଯୁକ୍ତସ୍ୟ ତସ୍ୟ
ନାଗଂ ମୁଖାନ୍ନିଶ୍ଚରନ୍ତଂ ମହାନ୍ତମ୍
ଶ୍ୱେତଂ ଯଯୌ ସତତଃ ପ୍ରେକ୍ଷମାଣେ
ମହାର୍ଣ୍ଣବୋ ଯେନ ମହାନୁଭବଃ । (୪ର୍ଥ-୧୩)

କୃଷ୍ଣଙ୍କ ଶରୀର ଅନୁସନ୍ଧାନ କରି ତାହାଙ୍କୁ ଦାହ କରାଇଥିଲେ (୭-୩୨) । ଏହାପରେ ସେ ଦ୍ୱାରକାରୁ ଅନ୍ଧକ ଓ ବୃଷ୍ଣି ବଂଶୀୟ ରମଣୀ ଓ ଶ୍ରୀକୃଷ୍ଣଙ୍କ ପୌତ୍ର ବଜ୍ରଙ୍କ ସହ ହସ୍ତିନାକୁ ଫେରିଥିଲେ । ଅର୍ଜୁନଙ୍କ ବ୍ୟାସଦେବଙ୍କ ପରାମର୍ଶ ବର୍ଣ୍ଣନାରେହିଁ ସଂସ୍କୃତ ମହାଭାରତର ଏହି ପର୍ବ ପରିସମାପ୍ତ ହୋଇଅଛି । ଶତ୍ରୁଘ୍ନ ଅର୍ଜୁନଙ୍କୁ ବ୍ୟାସ କହିଛନ୍ତି— "ହେ କୁରୁ ପୁଙ୍ଗବ ଭାରତ । ତୁମ୍ଭେମାନେ ଯେଉଁ ନିମିତ୍ତ ଏହି ପୃଥିବୀକୁ ଆଗମନ କରିଥିଲ, ତଦ୍ ବିଷୟରେ କୃତକୃତ୍ୟ ହୋଇଅଛ ବୋଲି ଆମ୍ଭେ ଜାଣିଅଛୁ' (୮-୩୧) । ସମ୍ପ୍ରତି ତୁମ୍ଭମାନଙ୍କର କାଳ ଉପସ୍ଥିତ ହୋଇଅଛି । ଅତଏବ ଆମ୍ଭ ବିବେଚନାରେ ଅଧୁନା ଏହି ସ୍ଥାନରୁ ଗମନ କରିବାର ଶ୍ରେୟସ୍କର ବୋଲି ବୋଧ ହେଉଅଛି । କାରଣ, ସମ୍ପତ୍ତି ସମୟରେ ବୁଦ୍ଧିର ଯେଉଁ ତେଜ ଓ ପ୍ରତିପତ୍ତି ଥାଏ, ଆପତ୍ତି ସମୟରେ ତାହା ସବୁ ବିନଷ୍ଟ ହୁଏ । ହେ ଧନଞ୍ଜୟ । କାଳ ସମସ୍ତଙ୍କର ମୂଳ । ସେ ବୀଜ ସ୍ୱରୂପ ହୋଇ ଏହି ଜଗତ ସୃଷ୍ଟି କରି ଅଛନ୍ତି ଏବଂ ସେ ଇଚ୍ଛାନୁସାରେ ପୁନଶ୍ଚ ଏହା ସବୁ ହରଣ କରିବେ । ମନୁଷ୍ୟ ବଳବାନ ହେଲେ ସୁଦ୍ଧା କାଳବଶତଃ ପୁନଶ୍ଚ ଦୁର୍ବଳ ହୁଅନ୍ତି ଏବଂ ସମସ୍ତଙ୍କର ଈଶ୍ୱର ହୋଇସୁଦ୍ଧା ପୁନଶ୍ଚ ପର ଆଜ୍ଞାର ବଶୀଭୂତ ହୁଅନ୍ତି । ଅତଏବ ତନ୍ନିମିତ୍ତ ଶୋକ କରିବାର ଉଚିତ ନୁହେଁ ।" (୮ମ : ୩୧-୩୪) ।

ପକ୍ଷାନ୍ତରରେ ସାରଳା ଦାସଙ୍କ ମୂଷଳୀ ପର୍ବଟି ସ୍ୱର୍ଗାରୋହଣ ପର୍ବର ପୂର୍ବବର୍ତ୍ତୀ ସପ୍ତଦଶ ପର୍ବ ଓ ଏହାର ଅନ୍ୟନାମ ହରିବଂଶ ପର୍ବ (୧) । ସଂସ୍କୃତ ମୌଷଳପର୍ବର ମୋଟାମୋଟି ବିଷୟବସ୍ତୁକୁ କବି ସାରଳା ଦାସ ଗ୍ରନ୍ଥାରମ୍ଭରେ ମାତ୍ର ସାତଗୋଟି ଅଧ୍ୟାୟରେ ବର୍ଣ୍ଣନା କରି ଅଛନ୍ତି । ପରବର୍ତ୍ତୀ (ଅଷ୍ଟମରୁ ସପ୍ତୋଦଶ ଅଧ୍ୟାୟ ପର୍ଯ୍ୟନ୍ତ) ବର୍ଣ୍ଣିତ ବିଷୟ ଗୁଡ଼ିକ ତାହାଙ୍କ ମୌଳିକ ପରିକଳ୍ପନା ପ୍ରସୂତ । ଏପରିକି ପ୍ରଥମ ଓ ଷଷ୍ଠ ଅଧ୍ୟାୟ ବର୍ଣ୍ଣିତ ପ୍ରସଙ୍ଗ ମଧ୍ୟ ତାଙ୍କର ମୌଳିକ ସଂଯୋଜନା । ଶ୍ରୀକୃଷ୍ଣଙ୍କ ଦୁଷ୍ଟନିଦ୍ରାମୂଳକ ସ୍ୱପ୍ନକାରୁ ସାରଳାଙ୍କ ମୂଷଳୀ ପର୍ବର କଥାବସ୍ତୁ ଆରମ୍ଭ ହୋଇଅଛି । ନିରାକାର ବିଷ୍ଣୁଙ୍କ

---

(୧) ପୁରାଣ ପ୍ରକାଶକ ମାନଙ୍କ ଦ୍ୱାରା ସଂଶୋଧିତ ଓ କଟକ ପ୍ରିଣ୍ଟିଂ କମ୍ପାନି ପକ୍ଷରୁ ଖ୍ରୀ ୧୯୧୦ରେ ପ୍ରକାଶିତ ('ସ୍ତ ସଂସ୍କରଣ) ପୁସ୍ତକରେ ଏହାର ନାମ ମୂଷଳୀ ବା ହରିବଂଶ ପର୍ବ ଉଲ୍ଲିଖିତ । ୰ ଗୋପୀନାଥ ନନ୍ଦ ଶର୍ମା ତାହାଙ୍କ ଶ୍ରୀ ଭାରତ ଦର୍ପଣରେ ଏହାର ଏହି ନାମକରଣ ବିଷୟ ଉଲ୍ଲେଖ କରିଛନ୍ତି । ତୁଳନାତ୍ମକ ଭାବେ ସେ ମହାଭାରତ ପୋଥିର ମଧ୍ୟ ସାହାଯ୍ୟ ନେଇଥିଲେ । ମାତ୍ର ୧୯୬୦ରେ ସାହିତ୍ୟ ଏକାଡେମୀ ପକ୍ଷରୁ ପ୍ରକାଶିତ ସାରଳା ମହାଭାରତର ଏହି ପର୍ବରେ ଏହି ନାମୋଲ୍ଲେଖ ଦେଖିବାକୁ ମିଳେ ନାହିଁ । ଏହି ସଂସ୍କରଣରେ କେତେକ ନୂତନ ବିଷୟ ଯେପରି ସଂଯୋଜିତ ହୋଇଛି ସେହିପରି କେତେକ ପ୍ରସଙ୍ଗ ପରିବର୍ଜିତ ହୋଇଅଛି । ସଂଯୋଜିତ ବିଷୟରେ ସ୍ଥାନେ ସ୍ଥାନେ ଅସଙ୍ଗତି ମଧ୍ୟ ପରିଲକ୍ଷିତ ହୁଏ ।

ଆଦେଶ—ଶ୍ରୀକୃଷ୍ଣଙ୍କୁ ସଂସାରରୁ ବିଦାୟ ନେବାକୁ ହେବ । ମାତ୍ର ସାଂସାରିକ ମାୟାରେ ସେ ଏକାନ୍ତ ଆସକ୍ତ । ଦ୍ୱାରକାରେ ଅନୁଷ୍ଠିତ କୁମାରଉତ୍ସବର (୧) ବିପୁଳ ଆଡ଼ମ୍ବର ମଧ୍ୟରେ ଆପଣା ବଂଶର ସୁନିଶ୍ଚିତ ଧ୍ୱଂସ ବିଳୟକୁ ସ୍ମରଣକରି ତାହାଙ୍କ ଚକ୍ଷୁ ଲୋତକପୂର୍ଣ୍ଣ ହୋଇ ଯାଇଛି । ଏହା ସ୍ୱମର ସେବାରତ ଅକ୍ରୂରଙ୍କ ଦୃଷ୍ଟି ଏଡ଼ାଇ ପାରିନାହିଁ । ସେ ଏହାର କାରଣ ବିଷୟରେ ଶ୍ରୀକୃଷ୍ଣଙ୍କୁ ପଚାରିଛନ୍ତି । କୃଷ୍ଣ ଆପଣାର ଆସନ୍ନ ବୈକୁଣ୍ଠ ପ୍ରତ୍ୟାବର୍ତ୍ତନ ବିଷୟ ଅକ୍ରୂରଙ୍କୁ ଜଣାଇବାରୁ ସେ ତାହାଙ୍କର ଅନୁଗାମୀ ହେବାକୁ ଇଚ୍ଛା ପ୍ରକାଶ କରିଛନ୍ତି । ମାତ୍ର କୃଷ୍ଣ ଏହା ଯୋଗାଭ୍ୟାସହୀନ ଅକ୍ରୂରଙ୍କ ପକ୍ଷେ ସମ୍ଭବ ନୁହେଁ, ଏଣୁ ସେ ଏକାମ୍ର କ୍ଷେତ୍ରକୁ ଯାଇ ଯୋଗାଭ୍ୟାସ କରନ୍ତୁ ଓ ପରେ ସେ ତାହାଙ୍କୁ ନୀଳଗିରିରେ ଦାରୁବ୍ରହ୍ମ ରୂପେ ପୂଜିତ ହେବା ଦେଖି ଆପଣା ଜୀବନକୁ ସାର୍ଥକ କରି ପାରିବେ ବୋଲି କହିଛନ୍ତି । ଅକ୍ରୂର ମଧ୍ୟ ତାହା ପ୍ରତିପାଳନ କରିଛନ୍ତି ।

ଏହାପରେ କୃଷ୍ଣଙ୍କ ମାୟାରେ ଦ୍ୱାରକାରେ କୋଳୁଆ ଉତ୍ପତ୍ତି ସୃଷ୍ଟି ହୋଇଛି । ଦିନେ ରାତିରେ କୋଳୁଆର କାଲ୍ପନିକ ତଥା ଆକସ୍ମିକ ଆବିର୍ଭାବ ସମ୍ବାଦ ପ୍ରଚାରିତ ହୋଇଗଲା । ଦ୍ୱାରକାର ଅଧିବାସୀଗଣ ତାହାକୁ ମାରିବା ଲାଗି ଲଉଡ଼ିଧରି ଯମୁନା କୂଳ ପର୍ଯ୍ୟନ୍ତ ଧାଇଁଗଲେ । ସେଠାରେ କଦମ୍ବ ବୃକ୍ଷରେ ଲଉଡ଼ି ଆଘାତ କରିବାରୁ ସେଥିରୁ ମଧୁର କାଦମ୍ବରୀ ରସ ନିସୃତ ହେଲା । ଏହା ପାନକରି ସମସ୍ତେ ଉନ୍ମତ୍ତ ହେଲେ ଓ ଅବଶେଷରେ ଅନ୍ଧକାରରେ ସମ୍ମୋହିତ ମଧ୍ୟରେ ପରସ୍ପର ସଂଘର୍ଷରେ ଲିପ୍ତ ହୋଇ ବିନାଶପ୍ରାପ୍ତ ହେଲେ ।

କୃଷ୍ଣ ଦୁଃଖରେ ଦ୍ୱାରକାକୁ ଯାଇ ବସୁଦେବଙ୍କୁ ଏହି ଦୁଃସମ୍ବାଦ ଜଣାଇ ଯମୁନା କୂଳକୁ ପୁନଶ୍ଚ ଫେରି ଆସିଲେ । ସ୍ୱୟଂ ବଳଭଦ୍ର ତାହାଙ୍କ ସମ୍ମୁଖରେ ସର୍ପରୂପ ଧାରଣ କରି ବଳରାମ ସମୁଦ୍ରରେ ଲୀନ ହୋଇ ପ୍ରାଣତ୍ୟାଗ କଲେ । କୃଷ୍ଣ ଅଗାଧ ଦୁଃଖ ଓ ଅବସାଦରେ ଏକ ଶିଆଳିଲତା ତଳେ ଶୟନ କଲେ । ଏହି ସମୟରେ ଜାରା ନାମକ ଏକ ଶବର ମୃଗ କର୍ଣ୍ଣ ଭ୍ରମରେ ତାହାଙ୍କ ପାଦକୁ ଶରାଘାତ କରିଥିଲା ।

---

(୧) ସାହିତ୍ୟ ଭଣ୍ଡାର ବ୍ୟାପାର ବିଭାଗ ପକ୍ଷରୁ ପ୍ରକାଶିତ ପୁସ୍ତକରେ ଏହାର ଉଲ୍ଲେଖ ନାହିଁ । ମାତ୍ର ପ୍ରିଣ୍ଟିଂ କମ୍ପାନୀ ପକ୍ଷରୁ ପ୍ରକାଶିତ ପୁସ୍ତକରେ ଏହି କୁମାର ଉତ୍ସବ ପ୍ରସଙ୍ଗ ଏହିପରି ବର୍ଣ୍ଣିତ—

'ଆଶ୍ୱିନ ଶୁକ୍ଳ ପୂର୍ଣ୍ଣିମୀ ରବିବାର ଦିନ
କୁମାରୋତ୍ସବ ହୋଇଛି ଦ୍ୱାରକା ଭୁବନ ।
ଆସ୍ଥାନେ ବିଜୟ କରି ଦେବ ଚକ୍ରଧାରୀ
ଦିଅନ୍ତି ଅନେକ ରତ୍ନ ଜଉରୁକ କରି ।'

(ମୂଷଳୀ ପର୍ବ ପୃ–୨)

ମାତ୍ର ପରେ ସେ ଆପଣାର ଭ୍ରମ ବୁଝିପାରି ନିଜର ପତ୍ନୀସହ କୃଷ୍ଣଙ୍କର ପରିଚର୍ଯ୍ୟା କରିଛନ୍ତି । କୃଷ୍ଣ ଆପଣାର ଅନ୍ତିମ ସମୟ ସନ୍ନିକଟ ଜାଣି ଅର୍ଜୁନଙ୍କୁ ଆଣିବା ଲାଗି ଦାରୁକୁ ହସ୍ତିନା ପଠାଇଲେ । ଅର୍ଜୁନ ଆସିବାପରେ ସେ ତାହାଙ୍କୁ ଅନୁରୋଧ କରି କହିଲେ—"ମୋର ମୃତ୍ୟୁପରେ ମୋର ସ୍ତ୍ରୀ ମାନଙ୍କୁ ଆଣି ବାଲୁଙ୍କା ନଦୀ କୂଳରେ ରଖିବ ।" ଏହାପରେ କୃଷ୍ଣଙ୍କ ଅନୁରୋଧରେ ଅର୍ଜୁନ ତାହାଙ୍କୁ ଗାଣ୍ଡିବ ଧନୁରେ ସ୍ପର୍ଶ କରିଛନ୍ତି । ସଙ୍ଗେ ସଙ୍ଗେ ଅର୍ଜୁନଙ୍କ ସମସ୍ତ ଶକ୍ତି ବିନଷ୍ଟ ହେଲା ଓ କୃଷ୍ଣ ପ୍ରାଣ ତ୍ୟାଗ କଲେ । ଜାରାକୁ କୃଷ୍ଣଙ୍କ ମୃତ୍ୟୁର କାରଣ ଜାଣି ଅର୍ଜୁନ ତାହା ସହ ଯୁଦ୍ଧରେ ପ୍ରବୃତ୍ତ ହେଲେ । ମାତ୍ର ଦୈବୀବାଣୀ ଯୋଗୁଁ ସେମାନେ ତହିଁରୁ ନିବୃତ୍ତ ହୋଇ କୃଷ୍ଣଙ୍କ ମରଣଶରୀରକୁ ଦାହ କରିବାକୁ ଆୟୋଜନ କଲେ । କୃଷ୍ଣଙ୍କ ସମଗ୍ର ଶରୀର ଦାହ ହୋଇ ପାରିଲା ନାହିଁ । ତେଣୁ ତାଙ୍କର ଅର୍ଦ୍ଧଦଗ୍ଧ ଶରୀରକୁ ସାଗରରେ ଭସାଇ ଦିଆଗଲା । ମାତ୍ର ଜାରା ଶବର ସେହି ଦଗ୍ଧ ପିଣ୍ଡକୁ ପୂଜା କରିବାକୁ ସ୍ୱପ୍ନାଦିଷ୍ଟ ହୋଇଛି । ସେହି ଦଗ୍ଧ ବିଶେଷ ଶଙ୍ଖ ଚକ୍ରଧାରୀ ମାଧବ ରୂପ ଧାରଣ କଲାପରେ ଜାରା ତାହାଙ୍କୁ ନେଇ ଏକାମ୍ର ତୀର୍ଥ ନିକଟସ୍ଥ ଧଉଳୀ ପର୍ବତ (ଧଉଳୀ) ଉପରିସ୍ଥ ଏକ ଚନ୍ଦନ ବୃକ୍ଷ ମୂଳରେ ସ୍ଥାପନ କରି ପୂଜା କରିଛି ।

ଏଣେ କୃଷ୍ଣଙ୍କ ଅନୁରୋଧ କ୍ରମେ ଅର୍ଜୁନ ଦ୍ୱାରକାକୁ ଆସିଛନ୍ତି । ବ୍ୟାସଙ୍କ ସହ ସେ ନନ୍ଦ ଓ ବସୁଦେବଙ୍କୁ କୃଷ୍ଣ-ବଳରାମଙ୍କ ଦେହ ତ୍ୟାଗ ପ୍ରସଙ୍ଗ ଶୁଣାଇ ଅଛନ୍ତି । ଏହା ଶୁଣି ସେ ଦୁହେଁ ପ୍ରାଣ ତ୍ୟାଗକଲେ ଓ ଅଷ୍ଟପାଟବଂଶୀ ଅଗ୍ନି ପ୍ରବେଶ କରି ମୃତ୍ୟୁ ବରଣ କଲେ । ଅର୍ଜୁନ ଗୋପକନ୍ୟା ମାନଙ୍କୁ ନେଇ ଇନ୍ଦ୍ରପ୍ରସ୍ଥକୁ ଯାତ୍ରାକରିବା ସଙ୍ଗେ ସଙ୍ଗେ ଦ୍ୱାରକା ଜଳମଗ୍ନ ହୋଇଗଲା । ଅର୍ଜୁନ ବାଲୁଙ୍କା ନଦୀ ପାର ହେବାପରେ ଆଭୀରିକ ମାନେ ଗୋପାଳମାନେ ଗୋପ ସ୍ତ୍ରୀମାନଙ୍କୁ ଆକ୍ରମଣ କଲେ । ମାତ୍ର ଶକ୍ତିହୀନ ହୋଇପଡ଼ିଥିବା ଅର୍ଜୁନ ଗୋପାଳ ମାନଙ୍କ କବଳରୁ ଗୋପ ସ୍ତ୍ରୀମାନଙ୍କୁ ରକ୍ଷା କରି ପାରିଲେ ନାହିଁ । ଅର୍ଜୁନ ଇନ୍ଦ୍ରପ୍ରସ୍ଥକୁ ଆସି ପାଣ୍ଡବ ମାନଙ୍କୁ ଏହି ସମ୍ବାଦ ଜଣାଇଛନ୍ତି । ଏହି ସମୟରେ ଶୋକାବିଷ୍ଟ ପାଣ୍ଡବମାନଙ୍କୁ ବ୍ୟାସ ପରାମର୍ଶ ଦେଇ କହିଛନ୍ତି "ତୁମ୍ଭେମାନେ ପରୀକ୍ଷିତଙ୍କୁ ରାଜ୍ୟଭାର ଦେଇ ତୀର୍ଥାଟନ କର ଏବଂ ସ୍ୱର୍ଗଗାମୀ ହୁଅ ।"

ଏହାପରେ କବି ନୀଳ ଗିରିରେ ନୀଳମାଧବ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା କପିଳ ଶ୍ରୀମନ୍ଦିର ନିର୍ମିତ ହୋଇଥିଲା ତାହା ସୁବିସ୍ତୃତ ବର୍ଣ୍ଣନା କରି ଅଛନ୍ତି । ଏହି ପ୍ରସଙ୍ଗଟି ସାରଳା ଦାସଙ୍କ ଏହି ପର୍ବର ଅତିରିକ୍ତ ଓ ମୌଳିକ ସଂଯୋଜନା । ହୈହୟ ବଂଶର ବିଷ୍ଣୁଭକ୍ତ ରାଜା ନୀଳମାଧବ ମାଧବ ମୂର୍ତ୍ତିଙ୍କର ଅନୁସନ୍ଧାନଲାଗି ବାସୁଦେବ ନାମକ ବ୍ରାହ୍ମଣଙ୍କୁ ନିୟୋଜିତ କରିଥିଲେ । ସେ ଯୋଗକୁ ଆସି ଜାରା ଶବର (ଏହାର ଅନ୍ୟନାମ ବସୁଦେବ) ରହୁଥିବା ପଲ୍ଲୀରେ ଉପସ୍ଥିତ ହୋଇଛନ୍ତି ଓ ତାହା ସହ ମିତ୍ରତା

ସ୍ଥାପନ କରିଛନ୍ତି । ବ୍ରାହ୍ମଣ ବସୁଦେବଙ୍କ ଅନୁରୋଧ କ୍ରମେ ଜାରା ତାହାଙ୍କ ଆଖିରେ ଅନ୍ଧପଟଳ ବାନ୍ଧି ତାହାଙ୍କୁ ନେଇ ଗହନ ଅରଣ୍ୟ ମଧ୍ୟରେ ଯେ ଗୋପନରେ ପୂଜୁଥିବା ନୀଳମାଧବଙ୍କୁ ଦର୍ଶନ କରାଇଛି । କେତେଦିନ ପରେ ବସୁ ବ୍ରାହ୍ମଣ ଫେରିଯାଇ ରାଜାଙ୍କୁ ନୀଳମାଧବଙ୍କ ବିଷୟ କହିଛି । ରାଜା ଅନତିବିଳମ୍ବେ ସେହି ଶବର ପଲ୍ଲୀରେ ସସୈନ୍ୟ ଉପସ୍ଥିତ ହେଲେ । ମାତ୍ର ମାଧବ ପ୍ରତିମା ସେଠାରୁ ଅନ୍ତର୍ହିତ ହୋଇଯିବାରୁ ରାଜା ତାଙ୍କର ସନ୍ଧାନ ପାଇ ପାରିଲେ ନାହିଁ ।

ରାଜା ଅନ୍ୟ ଶବର ମାନଙ୍କୁ ପ୍ରତିମା ସମ୍ପର୍କରେ ପଚାରିଲେ । ମାତ୍ର ସେମାନଙ୍କ ଠାରୁ ରାଜା କୌଣସି ସମ୍ବାଦ ନପାଇବାରୁ ସେମାନଙ୍କୁ ହତ୍ୟା କଲେ । ଏଥିରେ ଜାରା କ୍ରୋଧାନ୍ୱିତ ହୋଇ ରାଜାଙ୍କ ସହ ଯୁଦ୍ଧ କରିଛି ଓ ତାହାଙ୍କର ବହୁ ସୈନ୍ୟଙ୍କୁ ନିହତ କରିଛି । ରାଜା ନିରୁପାୟ ହୋଇ ମାଧବଙ୍କୁ ଧ୍ୟାନ କରିଛନ୍ତି । ରାତିରେ ମାଧବ ତାଙ୍କୁ ଦେଖାଦେଇ କହିଛନ୍ତି—ତୁ ମୋର ଭକ୍ତ ଶବର ବଂଶ ନାଶ କରିଥିବାରୁ ତୋ ବଂଶରେ କେହି ରହିବେ ନାହିଁ । ଏହି ଜାରା ବଂଶୀୟ ଲୋକେହିଁ ମୋର ପୂଜା କରିବେ । ତୁ ଏବେ ଯମନିକ ତୀର୍ଥକୁ ଯାଇ ଯମେଶ୍ୱରଙ୍କ ନିକଟରେ ମୋ ନିମିତ୍ତ ଏକ ପ୍ରାସାଦ ନିର୍ମାଣ କର ଓ ସେଠାରେ ମୋର ପାଷାଣ ପ୍ରତିମା ସ୍ଥାପନ କରି ପୂଜାର ବ୍ୟବସ୍ଥା କର । ରାଜା ଏହି ଆଦେଶ ପାଳନ କରି ମାଧବଙ୍କ ମୂର୍ତ୍ତି ପ୍ରତିଷ୍ଠା କଲେ । ମାତ୍ର ତାଙ୍କର ବଂଶ ଲୋପ ହୋଇଗଲା ।

ଏହାପରେ ଅନ୍ୟ ଏକ ଦେଶର ବିଷ୍ଣୁଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ ତପସ୍ୟା କରିବାକୁ ଆସି ସେହି ଯମନିକ ତୀର୍ଥ ନୀଳଗିରି ନିକଟରେ ପହଞ୍ଚିଲେ । ନୀଳମାଧବଙ୍କ ଚରିତ ଶୁଣିବାକୁ ପାଇ ସେ ସେଠାରେ ଏକ ମନ୍ଦିର ନିର୍ମାଣ କରିବାକୁ ମନସ୍ଥ କଲେ । ଏକାମ୍ର କ୍ଷେତ୍ରରୁ ପାଷାଣ ଅଣାଇ ସେଠାରେ ମନ୍ଦିର ନିର୍ମିତ ହେଲା । ରାଜା କେଉଁ ଦେବତା ମାନଙ୍କୁ ସେଠାରେ ପ୍ରତିଷ୍ଠା କରିବେ ତାହା ଜାଣିବା ପାଇଁ ଯମେଶ୍ୱର ଓ ମାର୍କଣ୍ଡଙ୍କର ଶରଣାପନ୍ନ ହେଲେ । ମାର୍କଣ୍ଡ କହିଲେ –"ତୁମେ ଏହାର ନିର୍ଦ୍ଦେଶ ଜାରା ଶବରଠାରୁ ପାଇବ ।' ଇନ୍ଦ୍ରଦ୍ୟୁମ୍ନ ଖୋଜି ଖୋଜି ଜାରା ଶବରର ସାକ୍ଷାତ ପାଇଲେ । ସେତେବେଳେ ସେ ଗୋସାଗର ତୀର୍ଥରେ ବିଷ୍ଣୁଙ୍କ ପ୍ରତିମା (ଗୋମୁଖୀ କେଶବ)ଙ୍କ ପୂଜା କରୁଥାଏ । ରାଜା ଶବରକୁ ସ୍ୱଅଭିପ୍ରାୟ ଜଣାଇବାରୁ ସେ କହିଲା— ଆପଣ ଆଜି ଯାଇ କୋଣାର୍କରେ ଅବସ୍ଥାନ କରନ୍ତୁ । ମୁଁ ରାତିରେ ବିଷ୍ଣୁଙ୍କୁ ଧ୍ୟାନକରି ତାଙ୍କର ମତାମତ ଆପଣଙ୍କୁ କାଲି ଜଣାଇବି ।"

ଏ ମୃତ୍ୟୁମଣ୍ଡଳେ ଯେବେ ତୋର ପୂଜାକୁ ଅଛି ଇଚ୍ଛା
ଆଜ ଲକ୍ଷ୍ୟେ କରି ମୁଁ ମାଗଇ କନା ଭିକ୍ଷା (ସା. ମ ପୃ–୧୦୮)

ରାତରେ କୃଷ୍ଣ ଶବରଙ୍କୁ କହିଲେ—"ନୀଳଗିରିରେ ଆମ୍ଭେ ବୌଦ୍ଧ ଅବତାରରେ ନିଷ୍ଟୟ ପୂଜିତ ହେବୁ । ତୁମ୍ଭେ ରୋହିଣୀ କୁଣ୍ଡରେ ମୋର ଦାରୁ ଶରୀର ଦେଖିବାକୁ ପାଇବ ।

'ରୋହିଣୀ କୁଣ୍ଡେ ଆମ୍ଭେ କାଷ୍ଠ ଯେ ବସ୍ତାରୁ
ଏ ପିଣ୍ଡ ଗୋଟିକ ଜାଲେ ହୋଇବାକ ଦାରୁ ।'

ସା. ମ (ପୃ ୧୦୯)

ରାଜା ଜାଗ୍ର ସହ ନୀଳଗିରିକୁ ଆସିଲେ ଓ ସେଠାରେ ରୋହିଣୀ କୁଣ୍ଡରେ ଅଷ୍ଟାଦଶ ହାତ ଉଚ୍ଚର୍ଗ ରକ୍ତ ଚନ୍ଦନ ବୃକ୍ଷ ସଦୃଶ ବିଷ୍ଣୁଙ୍କୁ ଦର୍ଶନ କଲେ । ଦୁହେଁ କୁଣ୍ଡ ମଧ୍ୟରୁ ସେହି ଦିବ୍ୟ କାଷ୍ଠ ଖଣ୍ଡକୁ ନେଇ ମନ୍ଦିରରେ ରଖିଲେ । ସେହି କାଷ୍ଠ ଖଣ୍ଡ ଦ୍ୱାରା ଜାଗ୍ର ପ୍ରତିମା ନିର୍ମାଣ କରିବ ବୋଲି ରାଜାଙ୍କୁ ସ୍ୱପ୍ନାଦେଶ ହେଲା । ମନ୍ଦିରରେ ଜାଗ୍ର ପ୍ରବେଶ କଲା ପରେ ତାର ଦ୍ୱାରକୁ ରୁଦ୍ଧ କରି ଦିଆଗଲା । ଆକସ୍ମିକ ଭାବେ ସେହି ମନ୍ଦିରରେ ବିଶ୍ୱକର୍ମା ବ୍ରହ୍ମା ବ୍ରାହ୍ମଣ ବେଶରେ ଉପସ୍ଥିତ ହେଲେ ଓ ତାହାଙ୍କ ନିର୍ଦ୍ଦେଶରେ ସେହି ଦାରୁ ତିନି ଖଣ୍ଡ କରି ସେଥିରେ ତିନିଗୋଟି ମୂର୍ତ୍ତି ନିର୍ମାଣ କରାଗଲା । ଦଶଦିନ ପରେ ରାଜା ଅସ୍ଥିର ହୋଇ ମନ୍ଦିରର ଦ୍ୱାର ଉନ୍ମୁକ୍ତ କରିଦେଲେ । ସିଂହାସନ ଉପରେ ତିନିଗୋଟି ମୂର୍ତ୍ତି ଦେଖିବାକୁ ମିଳିଲା । ଶ୍ରୀକୃଷ୍ଣ ପିଣ୍ଡ ଗୋଟିଏ ପ୍ରତିମାରେ ଗୁପ୍ତ ଭାବରେ ରହିଲା । ବ୍ରାହ୍ମଣ ରୂପୀ ବ୍ରହ୍ମା ଅନ୍ୟ ଏକ ପ୍ରତିମାରେ ଲୀନ ହୋଇଗଲେ । ଏଇ ତିନି ମୂର୍ତ୍ତି ହେଉଛନ୍ତି ଶିବ ବ୍ରହ୍ମା ଓ ବିଷ୍ଣୁ । ଶାଳବୃକ୍ଷର ରସ ଓ ଅନ୍ୟାନ୍ୟ ଉପକରଣ ସେହି ପ୍ରତିମା ଦେହରେ ଲେପନ କରାଗଲା । ଇନ୍ଦ୍ରଦ୍ୟୁମ୍ନଙ୍କ ନିର୍ଦ୍ଧାରଣ ଅନୁଯାୟୀ ଆଷାଢ଼ ମାସରେ ପ୍ରତିମା ନିର୍ମାଣ ଦାୟିତ୍ୱ ଜାଗ୍ର ବଂଶୀୟ ଦଇତା ମାନଙ୍କୁ ଓ ବିଗ୍ରହ ପୂଜାର ଦାୟିତ୍ୱ ବସୁ ବଂଶୀୟ ବ୍ରାହ୍ମଣ ମାନଙ୍କୁ ଅର୍ପିତ ହେଲା । ଏହି ସ୍ଥାନରେ ଇନ୍ଦ୍ର, ଯମ, କୁବେର ପ୍ରଭୃତି ଦିଗପାଳ, ଧର୍ମଦେବତା ଓ ପୁଷ୍କର ତୀର୍ଥ ଛତ୍ରିଶମାନ ହେଲେ । ଏହି ପରମ ପବିତ୍ର କ୍ଷେତ୍ରରେ ଯମର ପ୍ରବେଶ ନିଷିଦ୍ଧ ହେଲା ।

ଏହାପରି ଭାବରେ ସଂସ୍କୃତ ମହାଭାରତର ମୌଷଳ ପର୍ବର କଥାବସ୍ତୁଠାରୁ ସାରଳାଙ୍କ ମୂଷଳ ପର୍ବର କଥାବସ୍ତୁ ବହୁ ପରିମାଣରେ ଭିନ୍ନ । ଏଥିରେ ଯେ ବହୁ ନୂତନ ବିଷୟ ସଂଯୋଜିତ ହୋଇଛି ଏହା କହିବା ଅନାବଶ୍ୟକ। ସଂସ୍କୃତ ମୌଷଳ ପର୍ବର ଯଦୁଙ୍କର କାଳ ପୁରୁଷଙ୍କୁ ସାରଳା ଏକ ବିଚିତ୍ର କାଳ୍ପନିକ କୋଲ୍ହୁଆ ନାମରେ ନାମିତ କରିଅଛନ୍ତି । ମୂଳ ମହାଭାରତରେ ଉଦ୍ଧବ ଶ୍ରୀକୃଷ୍ଣଙ୍କ ଠାରୁ ବିଦାୟ ନେଇଥିବା ବର୍ଣ୍ଣିତ । ମାତ୍ର ସାରଳା ଦାସ ଉଦ୍ଧବ ପରିବର୍ତ୍ତେ ଅକ୍ରୂରର ପରିକଳ୍ପନା କରିଅଛନ୍ତି । ଯଦୁ ବଂଶୀୟଙ୍କ ପ୍ରଭାସ ତୀର୍ଥ ଯାତ୍ରା ପରିବର୍ତ୍ତେ ସାରଳା ଦାସ ସେମାନଙ୍କର ଯମୁନା ତୀରରେ

କାଦମ୍ବରୀ ମଦ୍ୟପାନ ପ୍ରସଙ୍ଗ ପରିକଳ୍ପନା କରିଅଛନ୍ତି । ମୂଳ ସଂସ୍କୃତ ମହାଭାରତରେ ବର୍ଣ୍ଣିତ ଏରକା ବନକୁ ସାରଳା ସନ୍ତ୍ରାବଣ ରୂପେ ଚିତ୍ରଣ କରିଅଛନ୍ତି । ବଳରାମଙ୍କ ପ୍ରାଣ ପ୍ରୟାଣ ପ୍ରସଙ୍ଗରେ ମୂଳ ସଂସ୍କୃତ ଓ ସାରଳାଙ୍କ ବର୍ଣ୍ଣନାରେ ଭିନ୍ନତା ପରିଲକ୍ଷିତ ହୁଏ । ମୂଳ ସଂସ୍କୃତରେ କୃଷ୍ଣ ତାହାଙ୍କ ସାରଥୀ ଦାରୁକ ମାଧ୍ୟମରେ ଅର୍ଜୁନଙ୍କ ନିକଟକୁ ସମ୍ବାଦ ପ୍ରେରଣ କରିଛନ୍ତି । ମାତ୍ର ସାରଳା ଦାସ ଜାରା ଶବରକୁ ଅର୍ଜୁନଙ୍କୁ ଆନୟନ ନିମନ୍ତେ ପ୍ରେରଣ କରିଥିବା ବର୍ଣ୍ଣନା କରିଅଛନ୍ତି । ଶ୍ରୀକୃଷ୍ଣଙ୍କୁ ସ୍ପର୍ଶ ନକରିବାକୁ ସହଦେବଙ୍କର ଅର୍ଜୁନଙ୍କୁ ନିର୍ଦ୍ଦେଶ ଓ ଅର୍ଜୁନଙ୍କୁ ସ୍ପର୍ଶ କରିବାକୁ ଶ୍ରୀକୃଷ୍ଣଙ୍କ ଅନୁରୋଧ, ଜାରା ଓ ଅର୍ଜୁନଙ୍କ ସଂଘର୍ଷ, କୃଷ୍ଣଙ୍କ ମର ଶରୀରର ସତ୍କାର ଲାଗି କାଷ୍ଠ ଆନୟନ; ଶବର ପୂଜିତ ଶବରୀ ନାରାୟଣ ପ୍ରସଙ୍ଗ, ସାଗରରେ ଶ୍ରୀକୃଷ୍ଣଙ୍କ ଅର୍ଦ୍ଧଦଗ୍ଧ ପିଣ୍ଡ ନିକ୍ଷେପ ପ୍ରଭୃତି ସାରଳାଙ୍କ ମୌଳିକ କଳ୍ପନା ।

ମୂଳ ସଂସ୍କୃତ ମୌଷଳ ପର୍ବରେ ବର୍ଣ୍ଣିତ ହୋଇଛି ଯେ କୃଷ୍ଣଙ୍କ ଦେହତ୍ୟାଗ ପରେ ଅର୍ଜୁନ ଦ୍ୱାରକାରୁ ନାରୀମାନଙ୍କୁ ଓ ଯଦୁବଂଶୀୟ ଏକମାତ୍ର କୁଳାଙ୍କୁର ବଜ୍ରକୁ ହସ୍ତିନାକୁ ନେଇ ଥିଲେ ଓ ତାହାଙ୍କୁ ଇନ୍ଦ୍ରପ୍ରସ୍ଥର ରାଜା ରୂପେ ବରଣ କରିଥିଲେ । ମାତ୍ର ଏ ସମ୍ପର୍କରେ ସାରଳାଙ୍କ ବର୍ଣ୍ଣନାନୁଯାୟୀ କୃଷ୍ଣଙ୍କର ଅଷ୍ଟ ପାଟବଂଶୀ ଅଗ୍ନିରେ ପ୍ରବିଷ୍ଟ ହୋଇଛନ୍ତି । ଅର୍ଜୁନ ଦ୍ୱାରକାର ନାରୀ ମାନଙ୍କୁ ଆଣୁଥିବା ବେଳେ ମାର୍ଗରେ ବହୁ ଗୋପକନ୍ୟା ଗୋପାଳମାନଙ୍କ ଦ୍ୱାରା ଅପହୃତ ହୋଇଛନ୍ତି । ସେ କେବଳ ତିନିଜଣଙ୍କୁ ଆଣି ତିନି ଗୋଟି ସ୍ଥାନରେ ରଖିଛନ୍ତି । ସାରଳାଙ୍କ ମୂଷଳ ପର୍ବର ଶେଷ ଛଅ ଗୋଟି (୮ମରୁ ୧୩ଶ) ଅଧ୍ୟାୟରେ ବର୍ଣ୍ଣିତ ଜାରାର ମାଧବ ପୂଜା, ଗାଲମାଧବଙ୍କ ମନ୍ଦିର ନିର୍ମାଣ, ଶବର ଓ ଗାଲମାଧବଙ୍କ ବିବାଦର ପରିଣାମ, ଇନ୍ଦ୍ରଦ୍ୟୁମ୍ନଙ୍କ ନୀଳଗିରିରେ ମନ୍ଦିର ନିର୍ମାଣ, ଯମେଶ୍ୱର, ମାର୍କଣ୍ଡ ଓ ଗୋମୁଖୀ ବିଷ୍ଣୁ ଚରିତ, ଇନ୍ଦ୍ରଦ୍ୟୁମ୍ନଙ୍କ ଦାରୁ ବିଗ୍ରହ ପ୍ରତିଷ୍ଠା । ପ୍ରଭୃତି ପ୍ରସଙ୍ଗ ସାରଳାଦାସଙ୍କ ସମ୍ପୂର୍ଣ୍ଣ ମୌଳିକ ପରିକଳ୍ପନା । ଜାରା ଶବରକୁ ଏହି ପର୍ବର ମୁଖ୍ୟ ଚରିତ୍ର କହିଲେ ଅତ୍ୟୁକ୍ତି ହେବନାହିଁ । କବି ତାହାକୁ ମହାନ ଶକ୍ତିଶାଳୀ, ଅପରାଜିତ ବିଷ୍ଣୁଭକ୍ତ ରୂପେ ଚିତ୍ରଣ କରିଅଛନ୍ତି । ଏହି ପର୍ବରେ ଶ୍ରୀକୃଷ୍ଣ, ଗାଲମାଧବ, ଇନ୍ଦ୍ରଦ୍ୟୁମ୍ନ, ବିଶ୍ୱାବସୁ ପ୍ରଭୃତି ଚରିତ୍ର ମାନଙ୍କର ବର୍ଣ୍ଣନା ହୋଇ ଥିଲେହେଁ ଜାରା ଶବରର ଭୂମିକା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଶ୍ରୀ କୃଷ୍ଣଙ୍କ ଦେହ ତ୍ୟାଗର ପରବର୍ତ୍ତୀ ପ୍ରସଙ୍ଗକୁ ସାରଳା ଦାସ ଏହି ପର୍ବରେ ବିସ୍ତୃତ ଭାବରେ ବର୍ଣ୍ଣନା କରିଅଛନ୍ତି ।

ବ୍ୟାସଦେବଙ୍କ ମହାଭାରତର ଗାମ୍ଭୀର୍ଯ୍ୟ, ଉଦାତ୍ତ ଭାବନା ସାରଳାଙ୍କ ମୂଷଳୀ ପର୍ବରେ ପରିଲକ୍ଷିତ ହୁଏ ନାହିଁ । ସାରଳା ଥିଲେ କଳ୍ପନାବିଳାସୀ ଓ ମହାନ କଥାକାର । ସେଥିପାଇଁ ସେ ମୂଳ ମହାଭାରତ ଠାରୁ ଏହି ପର୍ବରେ ଭିନ୍ନ ବିଷୟାବଳୀ ସଂଯୋଜନରେ ବ୍ରତୀ ହୋଇଥିବା ଅନୁମେୟ । ସାରଳାଙ୍କ ଏହି ପର୍ବସ୍ଥ ମନୋରଞ୍ଜକ କାହାଣୀ ଓ

କମ୍ବଦନ୍ତୀର ଚମତ୍କାର ସମାବେଶ ତାହାର ପ୍ରକୃଷ୍ଟ ନିଦର୍ଶନ । ଆର୍ଯ୍ୟେତର ସଂସ୍କୃତ ଓ ଚରିତ୍ରକୁ ସାରଳା ପ୍ରଭୃତ ସମ୍ମାନ ଦର୍ଶାଇଛନ୍ତି । ଏହାହିଁ ସାରଳାଙ୍କ ଏହି ପର୍ବର ବୈଶିଷ୍ଟ୍ୟ । ଉପାଖ୍ୟାନ ମାଧ୍ୟମରେ କବି ମଦ୍ୟପାନ, ଉଚ୍ଛୃଙ୍ଖଳତା ଅସଂଯମ ଓ ବଂଶ ବୃଦ୍ଧିର କୁପରିଣାମକୁ ଏଥିରେ ଦର୍ଶାଇ ଅଛନ୍ତି । ଆପଣାର କୃତକର୍ମ ଲାଗି ଶ୍ରୀକୃଷ୍ଣଙ୍କ ବୈରାଗ୍ୟ ଭାବନା ମଧ୍ୟ ସାରଳା ଦାସଙ୍କର ଏକ ଅପୂର୍ବ ପରିକଳ୍ପନା

"ସେ କାଳେ ମଣ୍ଡ ଗର୍ବେ ବହୁତ ରଣ କଲୁ
କୁଟୁମ୍ବ ବଢ଼ନ୍ତେ ଏବେ ମାୟା ମୋହେଣ ପଡ଼ିଲୁ ।

ଛାଡ଼ ଯିବାକୁ ଯେବେ ନ ବଳଇ ଚିତ୍ତ
ତେଣୁ କରି ଝୋଧେ ଲୋତକ ବହଇ ନେନ ନେତ୍ର ।"

(ସା. ମ ପୃ ୫)

"ହେ ପଣ୍ଡିତ ଜନେ ବଧୁଳ କୁଟୁମ୍ବେ
ବହୁତ ଝୋଧୀ ଯିନା ହୋଇଲେ ଶ୍ରୀ ବାସୁଦେବେ ।

ଯେତେକ କୁଟୁମ୍ବ ଅର୍ଜିଲି ଯିନା ମୁହିଁ
ପୁଣି ମରାଇଲ ଅନ୍ୟୋଅନ୍ୟ କରାଇ ।"

(ସ, ମ ପୃ ୩୩)

(ସାରଳା ଦାସଙ୍କ ମହାଭାରତରେ ଅନେକତ୍ର ଦୁଃଖ ଅର୍ଥରେ ଝୋଧ ଶବ୍ଦ ପ୍ରଯୁକ୍ତ ହୋଇଥିବା ପରିଦୃଷ୍ଟ ହୁଏ)

ମୂଷଳୀ ପର୍ବଟି ସାରଳାଙ୍କର ଅପୂର୍ବ କଳ୍ପନା ବିଳାସ, ଚରିତ୍ରଚିତ୍ରଣ ପଟୁତା ସ୍ୱଦେଶାଭିମାନ ଓ ପାଣ୍ଡିତ୍ୟର ପରିଚାୟକ । ଓଡ଼ିଶାର ତୀର୍ଥ ସ୍ଥାନର ମାହାତ୍ମ୍ୟ ଦର୍ଶାଇବା ଯେ କବିଙ୍କର ଅଭିପ୍ରାୟ ଥିଲା ତାହା ଏହି ପର୍ବରୁ ଜଣାଯାଏ । ସେଥିପାଇଁ କବି ଏକାମ୍ର କ୍ଷେତ୍ର, କୋଣାର୍କ, ଶ୍ରୀକ୍ଷେତ୍ର ନୀଳଗିରି, ପ୍ରାଚୀ ତୀର୍ଥର ମାଧବ ଉପାସନା ଶବରୀ ନାରାୟଣ ଉପାସନା ପ୍ରଭୃତି ପ୍ରସଙ୍ଗକୁ ଏହି ପର୍ବର କଥାବସ୍ତୁ ସହ ସୁକୌଶଳରେ ଗ୍ରଥିତ କରିଅଛନ୍ତି । ଏହା ଯେ କବିଙ୍କ ଗଭୀର ସ୍ୱଦେଶାଭିମାନର ନିଦର୍ଶନ ଏହା କହିବା ଅନାବଶ୍ୟକ । ସେ ସର୍ବଭାରତୀୟ କୃଷ୍ଣ ଉପାସନା ଓ ସଂସ୍କୃତ ସହ ଓଡ଼ିଶାର ଶବରୀନାରାୟଣ ଓ ମାଧବ ଉପସନାକୁ ସଂଯୁକ୍ତ କରାଇଛନ୍ତି ସାରଳାଙ୍କ ସମୟକୁ ଓଡ଼ିଶାରେ ଶୈବ ଉପାସନା ପରେ ବିଷ୍ଣୁ ଉପାସନା ପ୍ରବର୍ତ୍ତିତ ହୋଇ ସୁପ୍ରତିଷ୍ଠିତ ହୋଇଯାଇଥିଲା । ସମ୍ଭବତଃ କବି ସେଥିପାଇଁ ଏଥିରେ ହରି ବଂଶର ବିଲୋପ ସଙ୍ଗେ ସଙ୍ଗେ ହରିହର ଓ ବ୍ରହ୍ମାଙ୍କ ସମନ୍ୱିତ ଉପାସନାର ମହତ୍ତ୍ୱ ଦର୍ଶାଇ ଅଛନ୍ତି । ଶ୍ରୀଜଗନ୍ନାଥଙ୍କ

ମନ୍ଦିର ନିର୍ମାଣ ଓ ଚତୁର୍ଦ୍ଧା ମୂର୍ତ୍ତି ପ୍ରତିଷ୍ଠା ପ୍ରସଙ୍ଗକୁ ବିଶଦ ଭାବରେ ବର୍ଣ୍ଣନା କରି ଶ୍ରୀଜଗନ୍ନାଥଙ୍କ ମହତ୍ତ୍ୱ ପ୍ରତିଷ୍ଠା କରାଇବାରେ ସେ ହେଉଛନ୍ତି ଓଡ଼ିଶାର ଆଦିକବି । ଏହି ଦୃଷ୍ଟିରୁ ମହାକବି ସାରଳାଙ୍କ ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ ।



**ସହାୟକ ଗ୍ରନ୍ଥ—**


୧/ମହାଭାରତ-ଅନୁ: ଗୋବିନ୍ଦଚନ୍ଦ୍ର ମହାପାତ୍ର—ଓଡ଼ିଶା ସାହିତ୍ୟ ଏକାଡେମୀ

୨/ ମହାଭାରତ (ସଂସ୍କୃତ)-ଗୀତାପ୍ରେସ, ଗୋରଖପୁର—ବି ୩/୯ମ

୩/ ସାରଳା ମହାଭାରତ- ସଂ ଆର୍ତ୍ତବଲ୍ଲଭ ମହାନ୍ତି—ସାଂସ୍କୃତିକ ବ୍ୟାପାର ବିଭାଗ

୪/ ସାରଳା ମହାଭାରତ—କଟକ ପ୍ରିଣ୍ଟିଙ୍ଗ କୋମ୍ପାନୀ- ୨ୟ ସଂସ୍କରଣ

୫/ ଶ୍ରୀଭାରତ ଦର୍ପଣ—ଗୋପୀନାଥ ନନ୍ଦ ଶର୍ମା

# ସ୍ୱର୍ଗାରୋହଣ ପର୍ବ

ଅଧ୍ୟାପକ ଉଦୟନାଥ ସାହୁ

---

ଓଡ଼ିଆ ଭାଷା-ସାହିତ୍ୟର ପ୍ରାଣ-ପ୍ରତିଷ୍ଠାତା, ମାଟିର ମହାକବି ସାରଳାଦାସ ମଧ୍ୟ ବ୍ୟାସଦେବଙ୍କର ମହାନ୍ ଏହି ଗ୍ରନ୍ଥ ମହାଭାରତର ଅନୁସରଣରେ ରଚନା କରିଯାଇଛନ୍ତି ଅଷ୍ଟାଦଶ ପର୍ବ ବିଶିଷ୍ଟ ଓଡ଼ିଆ ମହାଭାରତ ଗ୍ରନ୍ଥ । ମୂଳ ମହାଭାରତର କଥାବସ୍ତୁ ଓ ଚରିତ୍ରମାନଙ୍କୁ ମୋଟାମୋଟି ଭାବରେ ନିଜ ସୃଷ୍ଟିର ଉପାଦାନ ହିସାବରେ ଗ୍ରହଣ କରି, ସାରଳାଦାସ, ତାହାଙ୍କର ସୃଷ୍ଟି-ପରିକଳ୍ପନାରେ ଯେଉଁ ଅନନ୍ୟ-ସୁନ୍ଦର ମୌଳିକତା ପ୍ରକାଶ କରିଯାଇଛନ୍ତି, ତାହା ଯଥାର୍ଥରେ ଅସାଧାରଣ । ଗୋଟାଏ ଜାତିର ଆତ୍ମ-ଅଭିବ୍ୟକ୍ତିର ଆବେଗକୁ ସାରଳା ଦାସ ତାଙ୍କ ମହାଭାରତରେ ସାର୍ଥକ ବାଙ୍ମୟ ରୂପଦାନ କରି, ତାହାଙ୍କର ସମୁଦାୟ କୃତିକୁ ପରିଣତ କରିଦେଇଛନ୍ତି ଏକ ଅଭିନବ ସୃଷ୍ଟି-ସଂପଦରେ । ସାରଳାଦାସଙ୍କ ମହାଭାରତ ତେଣୁ ଯଥାର୍ଥରେ ହୋଇଉଠିଛି ଓଡ଼ିଆ ଜାତିର ସାମାଜିକ ଓ ସଂସ୍କୃତିକ ଜୀବନର ଅନବଦ୍ୟ ଭାଷ୍ୟ ।

ମହାଭାରତର ସର୍ବ ପରିକଳ୍ପନାରେ . ସାରଳାଦାସ ଯେଉଁ · ଅଭିନବ ମୌଳିକତାର ସ୍ୱାକ୍ଷର ରଖିଯାଇଛନ୍ତି, ସାହିତ୍ୟର ତୁଳନାତ୍ମକ ଅଧ୍ୟୟନରେ ତାର ପରିସର ଅତ୍ୟନ୍ତ ବ୍ୟାପକ । ଆମେ ଏହି ନିବନ୍ଧର ପରବର୍ତ୍ତୀ ପୃଷ୍ଠା ମାନଙ୍କରେ କେବଳ 'ସ୍ୱର୍ଗାରୋହଣ ପର୍ବ'ରେ ପ୍ରକାଶିତ ସେଇ ଅଭିନବ ମୌଳିକତାର ଯଥାର୍ଥ ପରିଚୟ ଲାଭ କରିପାରିବା ।

ବ୍ୟାସ-ମହାଭାରତ ଏବଂ ସାରଳା-ମହାଭାରତର ସ୍ଥୂଳ କଥାବସ୍ତୁ ଓ ପର୍ବସଂଖ୍ୟା ସମାନ ହେଲେ ମଧ୍ୟ ପର୍ବ ଗୁଡ଼ିକର ବିଷୟବସ୍ତୁ ଓ ନାମକରଣରେ ଅନେକ ପାର୍ଥକ୍ୟ ପରିଦୃଷ୍ଟ ହୁଏ । ନାମକରଣ ଦୃଷ୍ଟିରୁ 'ସ୍ୱର୍ଗାରୋହଣ ପର୍ବ' ଉଭୟ ମହାଭାରତର ଶେଷ ପର୍ବ । କିନ୍ତୁ ସାରଳାଦାସଙ୍କ ସ୍ୱର୍ଗାରୋହଣ ପର୍ବ ସଂସ୍କୃତ ମହାଭାରତର ମହାପ୍ରସ୍ଥାନିକ ଓ ସ୍ୱର୍ଗାରୋହଣ ପର୍ବର ଏକ ଚମତ୍କାର ସମନ୍ୱୟ । ସଂସ୍କୃତ ମହାଭାରତରେ ମହାପ୍ରସ୍ଥାନିକ ପର୍ବ ଓ ସ୍ୱର୍ଗାରୋହଣ ପର୍ବ ଯଥାକ୍ରମେ ତିନୋଟି ଏବଂ ଛଅଟି ଅଧ୍ୟାୟରେ ବର୍ଣ୍ଣିତ ହୋଇ କଥାବସ୍ତୁ ପ୍ରକାଶ କରିଥିବା ସ୍ଥଳେ ସାରଳାଦାସ ସ୍ୱାଧୀନ ଓ ସ୍ୱଚ୍ଛନ୍ଦଭାବରେ 'ମହାଭାରତ'ର ଚରିତ ସବୁକୁ କେବଳ 'ସ୍ୱର୍ଗାରୋହଣ ପର୍ବରେ ହିଁ ସ୍ଥାନିତ କରିଛନ୍ତି । କଥାବସ୍ତୁର ସମତା ରକ୍ଷାକରିବା ପାଇଁ ସଂସ୍କୃତ ମହାପ୍ରାସ୍ଥାନିକ ପର୍ବର ସାଂଗଣକୁ

ସ୍ୱର୍ଗାରୋହଣ ପର୍ବରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସାରଳାଦାସ ଅନେକ ନୂତନ କଥାବସ୍ତୁ ସଂଯୋଜନା କରି ଉଭୟ ଚରିତ୍ର ଚିତ୍ରଣ ଓ ବିଷୟ ବିନ୍ୟାସର ଅପୂର୍ବ କଳାପାରଦର୍ଶିତା ପ୍ରଦର୍ଶନ କରିଅଛନ୍ତି । ସାରଳାଦାସଙ୍କ ସୃଷ୍ଟିବୈଷମ୍ୟ କେବଳ କଥାବସ୍ତୁରେ ସୀମିତ ନୁହେଁ, ବରଂ ମୂଳମହାଭାରତର ମହାଭାରତୀୟ ଚରିତ୍ରଗୁଡ଼ିକୁ ସାରଳାଦାସ ଯେପରି ମନୋଜ୍ଞ, ବାସ୍ତବ ତଥା ଜୀବନ୍ତ ଭାବରେ ପ୍ରକାଶ କରିଅଛନ୍ତି, ତାହା ପ୍ରାଣକୁ ଗଭୀର ଭାବରେ ସ୍ପର୍ଶ କରିଥାଏ ।

ବ୍ୟାସକୃତ ମହାଭାରତ ଓ ସାରଳା ମହାଭାରତର 'ସ୍ୱର୍ଗାରୋହଣ' ପର୍ବର ତୁଳନାତ୍ମକ ବିଚାର ନିମିତ୍ତ ପ୍ରଥମତଃ ବିଷୟବସ୍ତୁର ସଂକ୍ଷିପ୍ତ ଆଲୋଚନା ଅପରିହାର୍ଯ୍ୟ । ସଂସ୍କୃତ ମହାପ୍ରାସ୍ଥାନିକ ପର୍ବରେ ଲେଖାଯାଇଛି—ଯୁଧିଷ୍ଠିର ବୃଷ୍ଣିବଂଶୀୟଗଣଙ୍କର ମହାବିନାଶ ଶ୍ରବଣ କରି ସ୍ୱର୍ଗକୁ ଗମନ କରିବା ନିମିତ୍ତ ସମସ୍ତ ଭାଇମାନଙ୍କଠାରୁ ସମ୍ମତି ଗ୍ରହଣ କଲେ । ବୈଶ୍ୟାପୁତ୍ର ଯୁଯୁତ୍ସୁଙ୍କ ତତ୍ତ୍ୱାବଧାନରେ ପରୀକ୍ଷିତଙ୍କୁ ରାଜ୍ୟରେ ଅଭିଷିକ୍ତ କଲେ । ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ ଯଶସ୍ୱିନୀ ଦ୍ରୁପଦ ଦୁହିତା ଭୂଷଣମାଳା ପରିତ୍ୟାଗ ପୂର୍ବକ ବଲ୍କଳ ପରିଧାନ କରି ହସ୍ତିନାପୁରରୁ ବିଦାୟ ନେଲେ । ସେତେବେଳେ ଗୋଟିଏ ଶ୍ୱାନ ସେମାନଙ୍କର ଅନୁଗାମୀ ହୋଇଥିଲେ । ମହାପ୍ରସ୍ଥାନ ସମୟରେ ଧନଞ୍ଜୟ ରତ୍ନଲୋଭବଶତଃ ଗାଣ୍ଡୀବଧନୁ ଓ ଅକ୍ଷୟ ତୂଣଯୁଗଳ ପରିତ୍ୟାଗ କରିପାରିଲେ ନାହିଁ । କିନ୍ତୁ ଅଗ୍ନିଙ୍କ ଅନୁରୋଧରେ ଅର୍ଜ୍ଜୁନ ଧନୁ ଓ ଅକ୍ଷୟ ତୂଣୀରକୁ ଜଳ ମଧ୍ୟରେ ନିକ୍ଷେପ କଲେ । ତାପରେ ସେମାନେ ଶିଖରିଶ୍ରେଷ୍ଠ ମହାଶୈଳ ସୁମେରୁ ପର୍ବତରେ ଗମନ କରୁଥିବାବେଳେ ଦ୍ରୌପଦୀ, ସହଦେବ, ନକୁଳ, ଅର୍ଜ୍ଜୁନ ଓ ଭୀମସେନଙ୍କର କ୍ରମାନ୍ୱୟରେ ପତନ ହେଲା ଏବଂ କେବଳ ଯୁଧିଷ୍ଠିର ହିଁ ଉଠିବାପାଇଁ ସମର୍ଥ ହେଲେ । ସେହି ଶ୍ୱାନଟି ତାଙ୍କର ଅନୁଗାମୀ ଥିଲେ । ତାପରେ ଦେବରାଜ ଇନ୍ଦ୍ର ଯୁଧିଷ୍ଠିରଙ୍କୁ ସ୍ୱର୍ଗକୁ ଯିବାପାଇଁ ଆହ୍ୱାନ କଲେ । କିନ୍ତୁ ଯୁଧିଷ୍ଠିର ଭାଇମାନଙ୍କର ପତନ ଦେଖି ଶୋକସଂତପ୍ତ ହୋଇ ପ୍ରକାଶ କଲେ ଯେ ତାଙ୍କ ସହ ଭାଇମାନେ ଦ୍ରୌପଦୀ ଏବଂ ଶ୍ୱାନ ମଧ୍ୟ ସ୍ୱର୍ଗ ଗମନ କରିବେ । ଇନ୍ଦ୍ର କହିଲେ ଯେ— ସେମାନେ ତୁମ୍ଭପୂର୍ବରୁ ସ୍ୱର୍ଗକୁ ଗମନ କରିଅଛନ୍ତି, ତୁମ୍ଭେ ସ୍ୱର୍ଗକୁ ଯାଇ କୃଷ୍ଣାଙ୍କ ସହିତ ସମସ୍ତ ଭ୍ରାତୃଗଣଙ୍କୁ ଦେଖିବ । ଶ୍ୱାନଟିର ଯିବା ସଂପର୍କରେ ଇନ୍ଦ୍ର ତାହାକୁ ପରିତ୍ୟାଗ କରିବା ପାଇଁ କହିଥିଲେ । କିନ୍ତୁ ପରେ ସେହି ଶ୍ୱାନ ଯେ ଧର୍ମଦେବତାଙ୍କର ଛଦ୍ମବେଶ, ତାହା ପ୍ରକାଶ ପାଇଥିଲା । ସଂସ୍କୃତ 'ସ୍ୱର୍ଗାରୋହଣ ପର୍ବରେ ବର୍ଣ୍ଣନା କରାଯାଇଛି ଯେ ଯୁଧିଷ୍ଠିର ସ୍ୱର୍ଗରେ ଶ୍ରୀସମ୍ପନ୍ନ ଦୁର୍ଯ୍ୟୋଧନଙ୍କୁ ଦିବାକରଙ୍କ ସଦୃଶ ଆସନରେ ସମାସୀନ ହୋଇଥିବାରୁ ଦର୍ଶନ କରି ତାଙ୍କ ସହିତ ସ୍ୱର୍ଗଲୋକରେ ବାସ କରିବାକୁ ଅନିଚ୍ଛା ପ୍ରକାଶ କରିଥିଲେ । ଦେବଦୂତ ସହ ଯୁଧିଷ୍ଠିର ପଥ ମଧ୍ୟରେ ନର୍କ ଦର୍ଶନ କରିଥିଲେ । କାରଣ

ଯୁଧିଷ୍ଠିର ଛଳପୂର୍ବକ ଦ୍ରୋଣଙ୍କୁ ସନ୍ତାନ ନିମିତ୍ତ ପ୍ରତାରଣା କରିଥିବାରୁ ସେ କପଟ ନର୍କ ଦର୍ଶନ କଲେ ଏବଂ ଭୀମ, ଅର୍ଜୁନ, ସହଦେବ ଓ ଦ୍ରୁପଦ ରାଜନନ୍ଦିନୀ କୃଷ୍ଣା ଛଳକ୍ରମରେ ନର୍କ ଗମନ କରିଥିଲେ । ପରେ ଯୁଧିଷ୍ଠିର ଶରୀର ତ୍ୟାଗ ଏବଂ ଦ୍ରୌପଦୀ, ଭୀମ, ଅର୍ଜୁନ, ନକୁଳ, ସହଦେବ, ଅଭିମନ୍ୟୁ, ପାଣ୍ଡୁ, କୁନ୍ତୀ, ମାଦ୍ରୀ, ଭୀଷ୍ମ, ଦ୍ରୋଣ, ପ୍ରଭୃତିଙ୍କ ସ୍ୱସ୍ଥାନ ଗମନ ବର୍ଣ୍ଣନା କରାଯାଇଛି । ବ୍ୟାସଦେବ ସେହି ପର୍ବରେ ବିଷୟବସ୍ତୁର ପୂର୍ଣ୍ଣଚ୍ଛେଦ ଟାଣିବା ସଙ୍ଗେ ସଙ୍ଗେ ମହାଭାରତର, ଉପସଂହାର ତାର ମାହାତ୍ମ୍ୟ ଓ ଫଳଶ୍ରୁତି ସଂପର୍କରେ ଆଲୋକପାତ କରିଛନ୍ତି ।

କିନ୍ତୁ ସାରଳା ମହାଭାରତରେ 'ସ୍ୱର୍ଗାରୋହଣ' ପର୍ବ' ଏକ ଅନନ୍ୟ-ସାଧାରଣରେ ସାରସ୍ୱତ ସୃଷ୍ଟି । ପ୍ରଜାଙ୍କ ଠାରୁ ଯୁଧିଷ୍ଠିରଙ୍କର ବିଦାୟ, ପରୀକ୍ଷିତଙ୍କୁ ରାଜନୀତି ଶିକ୍ଷାଦେଇ ରାଜଗାଦୀରେ ଅଭିଷିକ୍ତ କରିବାଠାରୁ ଆରମ୍ଭ କରି ସ୍ୱଶରୀରରେ ସ୍ୱର୍ଗଗମନ ପର୍ଯ୍ୟନ୍ତ ବର୍ଣ୍ଣନା କରାଯାଇଥିଲେହେଁ ସାରଳା ଦାସ ଏଥିରେ କିନ୍ତୁ ଅନେକ ନୂତନ କଥାବସ୍ତୁର ସଂଯୋଜନା କରିଛନ୍ତି । ସୁବର୍ଣ୍ଣଚୂଡ଼ ଓ କଳିଯୁଗ ବିବରଣ, ହରିସାହୁର କନ୍ୟା ସୁହାଣୀକୁ ଯୁଧିଷ୍ଠିରଙ୍କର ବିବାହ, ବିବାହ ଉତ୍ସବ ବେଳେ ଅର୍ଜୁନ ଯମକୁ ବନ୍ଧନଯୁକ୍ତ କରିବା କଥା କୁହାଯାଇଛି । ସୁହାଣୀ କନ୍ୟା ପରେ ଶିଖରେଶ୍ୱର ଶିବ ସେବାରେ ନିଯୁକ୍ତା ହେଲେ । ତତ୍ପରେ ଯୁଧିଷ୍ଠିର ହଉର ଦଗରେ ଅବନ୍ତି ତୀର୍ଥ ଗମନ କଲେ । ଦୁର୍ବାସା ଋଷିଙ୍କୁ ପାଣ୍ଡବମାନେ ବୃଶଧନୁ ଅଷ୍ଟକୋଣ ଦେଲେ ମଧ୍ୟ ଅର୍ଜୁନ ଗାଣ୍ଡୀବ ଧନୁ ତ୍ୟାଗ କରିବା ପାଇଁ ଅନିଚ୍ଛା ପ୍ରକାଶ କରିବା'ରୁ ଅଗ୍ନିଦେବଙ୍କର ରୂପ ପ୍ରକାଶ ପାଇଛି ଏବଂ ସେଠାରେ ଅର୍ଜୁନ ଅଗ୍ନି ମଧ୍ୟରେ ଗାଣ୍ଡୀବ ନିକ୍ଷେପ କରିଛନ୍ତି । ହିମବନ୍ତ ପର୍ବତରେ ଦ୍ରୌପଦୀ, ସହଦେବ, ନକୁଳ, ଅର୍ଜୁନ ଓ ଭୀମଙ୍କର ତନୁ ତ୍ୟାଗ ହୋଇଛି । ଯୁଧିଷ୍ଠିରଙ୍କର ଦେବଦୂତ ଦ୍ୱାରା ନର୍କ ଦର୍ଶନ, ଛୟାନବେ ସହସ୍ର ରାଜାଙ୍କର ମୁକ୍ତ ପ୍ରସଙ୍ଗ ବର୍ଣ୍ଣନା, ଶ୍ୱାନରୂପରେ ଧର୍ମଙ୍କର ପ୍ରବେଶ, ଯୁଧିଷ୍ଠିରଙ୍କର ଇନ୍ଦ୍ରଙ୍କୁ ସ୍ତବ, ବ୍ୟାଘ୍ର ଦର୍ଶନ ଓ କଳିଯୁଗର ନିର୍ଯାତନା ପରେ ଯୁଧିଷ୍ଠିରଙ୍କର ଧର୍ମ ପରୀକ୍ଷା ଏବଂ ସ୍ୱଶରୀରରେ ସ୍ୱର୍ଗଗମନ ପ୍ରସଙ୍ଗ କ୍ରମାନ୍ୱୟରେ ବର୍ଣ୍ଣନା କରାଯାଇଅଛି । ଉଭୟ ମହାଭାରତର କଥାବସ୍ତୁରେ ନିଃସନ୍ଦେହରେ ଅଳ୍ପ ସାମ୍ୟ ଓ ଅନେକ ବୈଷମ୍ୟ ପରିଲକ୍ଷିତ ହୁଏ ।

ସାରଳା ମହାଭାରତ 'ସ୍ୱର୍ଗାରୋହଣ ପର୍ବର କଥାବସ୍ତୁ ସଂସ୍କୃତ 'ମହାପ୍ରସ୍ଥାନିକ ଓ ସ୍ୱର୍ଗାରୋହଣ' ଉଭୟ ପର୍ବରୁ ଆହରଣ କରାଯାଇ ଥିବାରୁ ସଂସ୍କୃତ ମହାଭାରତର ଉକ୍ତ ଦୁଇଟି ପର୍ବ ଆଲୋଚନାର ପରିସର ଭିତରକୁ ଅଣାଯାଇଛି ।

**ସାମ୍ୟ ଓ ବୈଷମ୍ୟ :—**

ସଂସ୍କୃତ ମହାଭାରତ ଅନୁସାରେ— ଯୁଧିଷ୍ଠିର ଯୁଯୁତ୍ସୁଙ୍କ ନିକଟରେ ମହା-ପ୍ରସ୍ଥାନର ଅଭିପ୍ରାୟ ପ୍ରକାଶ କରି ତାଙ୍କର ତତ୍ତ୍ୱାବଧାନରେ ପରୀକ୍ଷିତଙ୍କୁ ରାଜ୍ୟରେ

ଅଭିଷିକ୍ତ କଲେ । (୧) ଧୃତରାଷ୍ଟ୍ରଙ୍କ କନିଷ୍ଠ ପୁତ୍ର ଯୁଯୁତ୍ସୁ ପାଣ୍ଡବ ମାନଙ୍କ ପ୍ରତି ଥିଲେ ଚିର ଅନୁଗତ । ସେଥିପାଇଁ ତାଙ୍କର ଜୀବନକାଳଟି ବେଶ୍ ସୁଖ-ଶାନ୍ତିରେ ଅତିବାହିତ ହୋଇଛି । କିନ୍ତୁ ସା. ମ. ଭା. ରେ ଦୁର୍ଦ୍ଧର୍ଷ (ଯୁଯୁତ୍ସୁ)ଙ୍କୁ କୃଷ୍ଣଙ୍କର କୂଟ ଚକ୍ରାନ୍ତ ଯୋଗୁଁ ଗାନ୍ଧାରୀଙ୍କର ବନ୍ଧନମୁକ୍ତ ନୟନାନଳରେ ପୋଡ଼ି ପାଉଁଶ ହୋଇ ଯାଇଛନ୍ତି । କୁରୁକ୍ଷେତ୍ରର ଯୁଦ୍ଧ-ବିଧ୍ୱସ୍ତ ପୃଷ୍ଠଭୂମିରେ, ସେଦିନ ଦୁର୍ଦ୍ଧର୍ଷ-ଜୀବନର, ଏଇ ଶୋଚନୀୟ ପରିଣତି ଓ କୁରୁବଂଶର ଶେଷ ଦୀପଶିଖାଟିର ଆକସ୍ମିକ ନିର୍ବାଣ, ସାରଳାଙ୍କ ଲେଖନୀରେ ଅତ୍ୟନ୍ତ କରୁଣ ରସାତ୍ମକ ହୋଇ ଉଠିଛି । ମହାପ୍ରସ୍ଥାନ ବେଳେ ଯୁଧିଷ୍ଠିର ପରୀକ୍ଷିତଙ୍କୁ ରାଜନୀତି ସମ୍ପର୍କରେ ସଚେତନ କରି ଦେଇଅଛନ୍ତି । (୨) ସ. ମ. ଭା. ରେ କୁହାଯାଇଛି ଯେ ରାଜା ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ ଏବଂ ଦ୍ରୌପଦୀ ଆଭରଣ ପରିତ୍ୟାଗ କରି କେବଳ ବଳ୍କଳ ପରିଧାନ କଲେ । କିନ୍ତୁ ସା. ମ. ଭା. ରେ ଏ ପ୍ରସଙ୍ଗର କୌଣସି ଉଲ୍ଲେଖ ମିଳେ ନାହିଁ ।

ସ. ମ. ଭା. ରେ କୁହାଯାଇଛି ଯେ—ପାଣ୍ଡବମାନେ ଅସ୍ତ୍ର ତ୍ୟାଗକରି ଦକ୍ଷିଣ ଦିଗକୁ ଯାତ୍ରା କଲେ । ତାପରେ ସେମାନେ ଲବଣ ସମୁଦ୍ରର ଉତ୍ତର ତୀର ଧରି ଦକ୍ଷିଣ ପଶ୍ଚିମକୁ ଯାତ୍ରା କଲେ । ସେଠାରୁ ପ୍ରତ୍ୟାବୃତ୍ତ ହୋଇ ପଶ୍ଚିମାଭିମୁଖରେ ଯାତ୍ରାକରି ସେମାନେ ଦେଖିଲେ ଯେ ଦ୍ୱାରକା ନଗରୀରେ ମହାସାଗରର ପ୍ଲାବନ ।(୩) ସେମାନେ ପୃଥିବୀ ପ୍ରଦକ୍ଷିଣ କରିବା ନିମିତ୍ତ ପୁନର୍ବାର ଉତ୍ତରାଭିମୁଖରେ ପ୍ରସ୍ଥାନ କରି ମହାଗିରି ହିମାଳୟ ଦର୍ଶନ କଲେ, ତାହାକୁ ଅତିକ୍ରମ କରି ବାଲୁକାର୍ଣ୍ଣବ ଓ ପରେ ଶିଖରୀ ଶ୍ରେଷ୍ଠ ମହାଶୈଳ ସୁମେରୁ ପର୍ବତ ଅବଲୋକନ କଲେ । (୪) କିନ୍ତୁ ସା. ମ. ଭା. ର ନାୟକ ନାୟିକା ଓ ମୁଖ୍ୟ ଚରିତ୍ରମାନଙ୍କର ଜନ୍ମସ୍ଥାନ ହସ୍ତିନାପୁର ହେଲେହେଁ ସେମାନଙ୍କର ଲୀଳା ଓ ବିହାରସ୍ଥଳୀ କିନ୍ତୁ କବିଙ୍କର ପ୍ରିୟ ଜନ୍ମଭୂମି ଉତ୍କଳ । ତେଣୁ ତାଙ୍କ ମହାଭାରତର ପାଣ୍ଡବମାନେ ଚିତ୍ରୋତ୍ପଳା ନଦୀ ପାର ହୋଇଛନ୍ତି । (୫) ସେମାନେ ଚିତ୍ରୋତ୍ପଳା ତୀରରେ ଭଗ୍ନେଶ୍ୱର ପୂଜାକରି ଏକାମ୍ର ତୀର୍ଥରେ ବିନ୍ଦୁସାଗର ସରୋବରରେ ସ୍ନାନପୂର୍ବକ ବିଶ୍ୱନାଥ ଦର୍ଶନ କରିଛନ୍ତି । (୬) ସେମାନେ ପୁଣି ପାଞ୍ଚଟି

---

୧ । ସ. ମ. ଭା.—ମହାପ୍ରସ୍ଥାନିକ ପର୍ବ—ଅ୧/୭

୨ । ସା. ମ. ଭା.—ସ୍ୱର୍ଗାରୋହଣ ପର୍ବ—୨୫-୩୭ ପଦ/୩-୪ ପୃଷ୍ଠା

୩ । ସ. ମ. ଭା—ମହାପ୍ରସ୍ଥାନିକ ପର୍ବ-ଅ୧/୨୫

୪ । ତତ୍ରୈବ—ଅ୨/୧୨

୫ । ସା. ମ. ଭା.—ସ୍ୱର୍ଗାରୋହଣ ପର୍ବ-୩୩ପୃ.

୬ । ତତ୍ରୈବ—୪୨-୪୭ପଦ-୩୪ପୃ.

ସ୍ନାନ କରାଇଛନ୍ତି ବୈତରଣୀ ଜଳରେ । (୭) ଜ. ମ. ଖ. ରେ ଏସବୁର କଳ୍ପନା କରାଯାଇନାହିଁ । ସାରଳାଦାସ ଅମରାବତୀ କଟକ, ଧର୍ମପୁର, କପିଳାସ, ବନ୍ଦ୍ୟସାଗର, ଚଟେଶ୍ୱର, ପ୍ରାଚୀନଦୀ ପ୍ରଭୃତି ନାମକରଣର ସାର୍ଥକତା ପ୍ରତିପାଦନ ନିମିତ୍ତ ପାଣ୍ଡବମାନଙ୍କୁ ସେସବୁ ସ୍ଥାନକୁ ଆଣି ବହୁ କଳ୍ପିତ ଆଖ୍ୟାୟିକାର ଅବତାରଣା କରିଛନ୍ତି ।

ଜ. ମ. ଖ. ର ବସ୍ତୁବିନ୍ୟାସ କ୍ରମ ସା. ମ. ଖ. ରେ ଠିକ୍ ଭାବରେ ଅନୁସୃତ ହୋଇନାହିଁ । ଉଭୟ ସୃଷ୍ଟି ମଧ୍ୟରେ ସ୍ଥାନ ଓ କାଳଗତ ବ୍ୟତିକ୍ରମ ପରିଲକ୍ଷିତ ହୁଏ । ଜ. ମ. ଖ. ରେ ଉଲ୍ଲେଖ ଅଛି ଯେ – ପାଣ୍ଡବମାନଙ୍କର ମହାପ୍ରସ୍ଥାନ ସମୟରେ ଅର୍ଜ୍ଜୁନଙ୍କ ବ୍ୟତୀତ ସମସ୍ତେ ସେମାନଙ୍କର ଅସ୍ତ୍ରତ୍ୟାଗ କରିଥିଲେ । କିନ୍ତୁ ଧନଞ୍ଜୟ ରତ୍ନଲୋଭ-ବଶତଃ ସୁମନ୍ତ୍ର ଗାଣ୍ଡୀବ ଧନୁ ଓ ଅକ୍ଷୟ ତୂଣୀରକୁ ପରିତ୍ୟାଗ କରିପାରି ନଥିଲେ । ସେମାନେ ଲୋହିତ ସମୁଦ୍ର ତୀରରେ ଅଗ୍ନିଙ୍କୁ ଦର୍ଶନ କଲେ । ସେହି ପରମାସ୍ତ୍ର ଗାଣ୍ଡୀବକୁ ପରିତ୍ୟାଗ କରିବା ନିମିତ୍ତ ଅର୍ଜ୍ଜୁନଙ୍କୁ ଅଗ୍ନି ଅନୁରୋଧ କଲେ । ତେଣୁ ସେହି ଧନୁ ଓ ଅକ୍ଷୟ ତୂଣ ଯୁଗଳକୁ ଅର୍ଜ୍ଜୁନ ଜଳ ମଧ୍ୟରେ ନିକ୍ଷେପ କଲେ । (୮) କିନ୍ତୁ ସାରଳାଦାସଙ୍କ ବର୍ଣ୍ଣନାରେ କେତେକ ବ୍ୟତିକ୍ରମ ପରିଲକ୍ଷିତ ହୁଏ । ମାର୍କଣ୍ଡ ଋଷି, ବାନପ୍ରସ୍ଥ ବେଳେ ସେ ସମସ୍ତ ଅସ୍ତ୍ର ନିଷ୍ପ୍ରୟୋଜନ ବୋଲି କହି ସୂଚାଇ ଥିଲେ ଯେ ପଞ୍ଚଧନୁ ଦଶକୋଣ ଦେବତାଙ୍କ ଭଣ୍ଡାର । ଅସୁରମାନେ ତାହାକୁ ହରଣ କରି ନେବେ । କାରଣ ତୀର୍ଥ ବାସବେଳେ ତାହା ଶକ୍ତିହୀନ ହୋଇଯିବ । ତେଣୁ ବ୍ରହ୍ମା ଦୁର୍ବାସା ଋଷିଙ୍କୁ ଶସ୍ତ୍ରମାନ କପିଳାସକୁ ନେବାପାଇଁ ପଠାଇଲେ । ଅର୍ଜ୍ଜୁନଙ୍କ ବ୍ୟତୀତ ସମସ୍ତେ ସ୍ୱଧନୁ ଅଷ୍ଟକୋଣ ଦୁର୍ବାସାଙ୍କ ହସ୍ତରେ ସମର୍ପଣ କଲେ । ତାହାକୁ ଦୁର୍ବାସା ଋଷି କୁବେର ଭଣ୍ଡାରରେ ନେଇ ଥୋଇଲେ । ତାପରେ ଅଗ୍ନି ବ୍ରାହ୍ମଣ ବେଶ ଧାରଣ କରି ଅର୍ଜ୍ଜୁନଙ୍କୁ ଗାଣ୍ଡୀବ ମାଗିଲେ ଓ ଚେତାବନୀ ଶୁଣାଇ କହିଲେ ଯେ ନୋହିଲେ ଧର୍ମନାଶ ହିବ । ତାପରେ ଅଗ୍ନି ଅର୍ଜ୍ଜୁନଙ୍କ ସମ୍ମୁଖରେ ସ୍ୱରୂପ ପ୍ରକାଶ କଲେ । ଏହାପରେ ଯାଇ ଅର୍ଜ୍ଜୁନ ଗାଣ୍ଡୀବ ଧନୁକୋଣ ଅନଳରେ ନିକ୍ଷେପ କଲେ । (୯) ଜ. ମ. ଖ. ରେ ଅଗ୍ନିଙ୍କ ପରାମର୍ଶରେ ଅର୍ଜ୍ଜୁନ ଗାଣ୍ଡୀବ ଧନୁକୁ ଜଳରେ ନିକ୍ଷେପ କରିବା କଥା କୁହାଯାଇଥିଲା ବେଳେ ସା. ମ. ଖ. ରେ ଏହା ଅଗ୍ନିରେ ନିକ୍ଷେପ ହୋଇଥିବା ବର୍ଣ୍ଣନା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

---

୭ । ତତ୍ରୈବ—୪୨ ପଦ-୪୨ ପୃଷ୍ଠା

୮ । ଜ. ମ. ଖ.—ମହାପ୍ରସ୍ଥାନିକ ପର୍ବ-ଅ୧/୪୨

୯ । ଗାଣ୍ଡୀବ ଧନୁ କୋଣ ପକାଇଲେ ଅନଳେ
ଘେନିଣ ଗଗନ ପଥ ଗଲେ ବଶ୍ୟାନରେ ।
୭୭ପଦ/୪୯ପୃ-ସ୍ୱର୍ଗା. ପର୍ବ

ପାଣ୍ଡବମାନେ ପୃଥିବୀ ପ୍ରଦକ୍ଷିଣ କରି ହିମାଳୟ ଆରୋହଣ ମାଧ୍ୟମରେ ସ୍ୱର୍ଗରେ ସ୍ୱଦେହରେ ଉପସ୍ଥିତ ହେବେ, ଏହି ଅଭିଳାଷ ପୋଷଣ କରିଥିଲେ । ଯାତ୍ରାକାଳରେ ଦ୍ରୌପଦୀ, ସହଦେବ, ନକୁଳ, ଅର୍ଜୁନ, ଓ ଭୀମସେନ ପର୍ଯ୍ୟାୟ କ୍ରମେ ଧରାଶାୟୀ ହେଲେ । କିନ୍ତୁ ଏକମାତ୍ର ଯୁଧିଷ୍ଠିର ସ୍ୱଦେହରେ ସ୍ୱର୍ଗକୁ ଗମନ କରିବାରେ ସମର୍ଥ ହେଲେ । ସାରଳାଦାସ ମୂଳତଃ ଉକ୍ତ କଥାବସ୍ତୁକୁ ତାଙ୍କ ସ୍ୱର୍ଗାରୋହଣ ପର୍ବରେ ସ୍ଥାନ ଦେଇଛନ୍ତି । କିନ୍ତୁ ସଂ. ମ. ଭା.ରେ ସେମାନଙ୍କର ଭୂପତନର କାରଣ ଯେପରି ନିର୍ଦ୍ଦେଶ କରାଯାଇଛି ସା. ମ. ଭା.ରେ ସ୍ୱରଚିତ ବୈଶିଷ୍ଟ୍ୟ ପ୍ରଦର୍ଶନ ଉଦ୍ଦେଶ୍ୟରେ ତହିଁର ବ୍ୟତିକ୍ରମ କରାଯାଇଛି । ସଂ. ମ. ଭା.ରେ ଉଲ୍ଲେଖ ଅଛି ଯେ—ଦ୍ରୁପଦ ନନ୍ଦିନୀଙ୍କୁ ଭୂଇଁରେ ପଡ଼ିଯିବାର ଦେଖି ଭୀମସେନ ଯୁଧିଷ୍ଠିରଙ୍କୁ କହିଲେ ଏହି ରାଜନନ୍ଦିନୀ କୃଷ୍ଣା କଦାପି କୌଣସି ଅଧର୍ମ ଆଚରଣ କରିନାହାଁନ୍ତି, ତଥାପି ଧରଣୀତଳରେ ପଡ଼ିଲେ କାହିଁକି ? ଯୁଧିଷ୍ଠିର ତାର ଉତ୍ତର ପ୍ରଦାନ କରି କହିଛନ୍ତି ଯେ—ଆମ୍ଭେମାନେ ସମସ୍ତେ ସମାନ ହେଲେ ମଧ୍ୟ ଏହାଙ୍କର ଧନଞ୍ଜୟଙ୍କ ପ୍ରତି ବିଶେଷ ରୂପେ ସୁମହାନ୍ ପକ୍ଷପାତ ଥିଲା । ତେଣୁ ସେ ତାହାର ଫଳ ଅବଶ୍ୟ ଭୋଗ କରିବେ । (୧୦) ସା. ମ. ଭା.ରେ ବର୍ଣ୍ଣିତ ଅଛି ଯେ—ହିମାଳୟର ଶିଳାବନ୍ଧୁର ପଥରେ ଦ୍ରୌପଦୀଙ୍କର ପଦସ୍ଖଳିତ ହୋଇ ସେ ଭୂପତିତା ହେବାରୁ ଏ ଶୋଚନୀୟ ଅବସ୍ଥା ଦେଖି ଭୀମଙ୍କର ପାଷାଣ ହୃଦୟ ତରଳିଗଲା । ସେ ଦ୍ରୌପଦୀଙ୍କୁ ସ୍ନେହାଳିଙ୍ଗନ କରି ଯୁଧିଷ୍ଠିରଙ୍କୁ ବାହୁଡ଼ି ଆସିବା ପାଇଁ ଅନୁରୋଧ କଲେ । କିନ୍ତୁ ଜୀବନ-ବିରାଗୀ ଯୁଧିଷ୍ଠିର ଉତ୍ତର ଦେଲେ—

ଆସ ଆସ ଭୀମ ଛାଡ଼ ତାକୁ କୋଳ
ମାୟା ମୋହ ବନ୍ଧନ ଯେ କୋହିଇ ସ୍ନେହେତେବେଳ ।
କେ କାହାର ସୋଦର କେ କାହାର ଘରଣୀ
କେ କାହାର ପୁତ୍ର ବନ୍ଧୁ କେ କାହାର ଆତ୍ମଜା । (୧୧)

ମୂଳ ମହାଭାରତର ବୃକୋଦର ସାରଳାଙ୍କ ଲେଖନୀରେ ହୋଇ ଉଠିଛି ମାନବିକତାରେ ମହିମାନ୍ୱିତ ପ୍ରକାଶ । ତେଣୁ ଦୁଃଖ-ଜର୍ଜରିତ ଚିତ୍ତରେ ଯୁଧିଷ୍ଠିରଙ୍କୁ ଭର୍ତ୍ସନା କରି କହିଛନ୍ତି—

ସ୍ନେହକା ଚିତ୍ତିଶାସ୍ତ୍ରେ ହୋଇ ସହିଲ ପାଞ୍ଚ କରି ଆଧୋଳି
ସ୍ନେହାକୁ ଛାଡ଼ିଯିବାକୁ ତୁମ୍ଭର ସତ କେହେନେକ ବଳି ।
(ସ୍ୱର୍ଗା. ପର୍ବ-୭୮ପଦ-୪୮ପୃ.)

---

(୧୦) ସଂ. ମ. ଭା.—ମହା. ପ୍ରସ୍ଥା. ପର୍ବ-ଅ୨/୬
(୧୧) ସା. ମ. ଭା.—ସ୍ୱର୍ଗା. ପର୍ବ—୭୭ପଦ-୪୮ପୃଷ୍ଠା

ଜୀବନ-ମରଣର ସେଇ ସନ୍ଧିସନ୍ଧ ମୁହୂର୍ତ୍ତରେ ସୁଦ୍ଧା ଭୀମ ଦ୍ରୌପଦୀଙ୍କର ରୂପ ବର୍ଣ୍ଣନାରେ ମୁଖର ହୋଇ ଉଠିଛନ୍ତି (୯୨)। କିନ୍ତୁ ଏହାର ଉତ୍ତରରେ ଯୁଧିଷ୍ଠିର ଦ୍ରୌପଦୀଙ୍କର ଦୋଷ ନିର୍ଦ୍ଦେଶ କରି କହିଛନ୍ତି—

ଯୁଧିଷ୍ଠି ବୋଇଲେ ସେ ଦ୍ରୌପଦୀ ବଡ଼ ଦୋଷୀ
ସୋଦର ଧଣରେ କଉରବନ୍ତ ଅମରଷି ।
ପଞ୍ଚଦଶ ବରଷ କେଶ ବନ୍ଧନ ନ କଲା
ଅନେକ୍ଷତ ସ୍ତ୍ରୀଇକୁ ବଧ କରି କେଶ ତ ବାନ୍ଧିଲା ।

(ସ୍ୱର୍ଗା-୭୯ପୃଷ୍ଠା)

ଭୂପତିତା ଦ୍ରୌପଦୀଙ୍କ ଦୋଷ ପ୍ରଦର୍ଶନର ଏଇ ମାନବୀୟ ଅନୁଶୀଳନ ସାରଳା ଦାସଙ୍କ ଅନନ୍ୟ-ସୁନ୍ଦର ମୌଳିକତା । ଏଠାରେ ମହାକବି ସାରଳା ଦାସ ନାରୀର ନାରୀତ୍ୱକୁ ପ୍ରକାଶ କରିଛନ୍ତି ତାର, ମୋହିନୀତ୍ୱରେ, ତାର ହ୍ଲାଦିନୀ ଶକ୍ତିରେ । ସଂ. ମ. ଭା. ପରି ଧନଞ୍ଜୟଙ୍କ ପ୍ରତି ସ୍ୱମହତ୍ତ୍ୱ ପକ୍ଷପାତ ନିର୍ଦ୍ଦେଶ କରାଯାଇ ନାହିଁ । ଅବଶ୍ୟ ଏ ପ୍ରସଙ୍ଗଟିକୁ ସାରଳାଦାସ 'ସତ୍ୟ ଆମ୍ବ ଉପାଖ୍ୟାନ'ରେ ବର୍ଣ୍ଣନା କରି ଦ୍ରୌପଦୀଙ୍କ ମୁଖରେ କୁହାଇଛନ୍ତି—

ଯୁଗତେ ଏ ମୋହର ଅଟନ୍ତି ପଞ୍ଚପତି
ଏକା ମାତ୍ର ଅର୍ଜ୍ଜୁନରେ ମୋହର ଅଧିକ ପୀରତି ।

ଏ ଦୋଷ ପାଇଁ ସାରଳାଙ୍କ ଦ୍ରୌପଦୀ ଭୂପତିତା ହୋଇ ନାହାନ୍ତି । ତାଙ୍କର ଦୋଷ ଗର୍ବିତ ଓ ତାହା ହେଲେ ସୋଦର ନିଧନ । ତେଣୁ ସ୍ୱର୍ଗାରୋହଣ ପର୍ବରେ ସାରଳାଙ୍କ ଦ୍ରୌପଦୀ ହୋଇ ଉଠିଛି ଏକ ସାଧାରଣ ମାନବୀ । ସେ ଯାଜ୍ଞସେନୀ ହେଲେ ମଧ୍ୟ ସେ ନାରୀ । ସେଥିପାଇଁ ତାଙ୍କ ମନରେ ସାଧାରଣ ନାରୀର ଆଶା-ନିରାଶା ଈର୍ଷା-ଦ୍ୱେଷର ସ୍ୱାଭାବିକ ପ୍ରକାଶ ଘଟି ପାରିଛି ।

ତାପରେ ଭୂପତିତ ହେଲେ ଭବିଷ୍ୟତ ଦ୍ରଷ୍ଟା ବିଦ୍ୱାନ ସହଦେବ । ଭୀମସେନ ତାହା ଦର୍ଶନ କରି ଯୁଧିଷ୍ଠିରଙ୍କୁ ଅନୁରୋଧ କରନ୍ତେ—ସଂ. ମ. ଭା. ର ଯୁଧିଷ୍ଠିର କହିଲେ ଯେ – ସେ କୌଣସି ବ୍ୟକ୍ତିଙ୍କୁ ଆପଣା ସଦୃଶ ପ୍ରାଜ୍ଞ ବୋଲି ମନେ କରନ୍ତି ନାହିଁ । ସେହି ଦୋଷରୁ ହିଁ ସେ ଭୂପତିତ ହେଲେ । (୯୩) ସାରଳାଦାସ

---

(୯୨) ସା. ମ.-ସ୍ୱର୍ଗାରୋହଣ ପର୍ବ—୬୮-୬୯ପୃଷ୍ଠା

(୯୩) ସଂ. ମ. ଭା. – ମହା ପ୍ରସ୍ଥାନ ପର୍ବ—ଅ୨/୯

ଏଠାରେ ସହଦେବଙ୍କ ପତନର କାରଣ ଯୁଧିଷ୍ଠିରଙ୍କ ମୁଖରେ ଏହିପରି ବର୍ଣ୍ଣନା କରିଛନ୍ତି—

ଜାଣିକରି ନ କହଇ ପଚ୍ଛିଲେ ଜଣାଇ
ପ୍ରାଣ ଅନ୍ତକାଳେ ନକହଇ ସଂଦେଶଇ ।
ସେହିଁ ଯେବେ କହିଥାନ୍ତା ପଶାଖେଳର ବେଳେ
ରାଜ୍ୟସ୍ୱର ଭ୍ରଷ୍ଟ କର୍ମେ ଯାନ୍ତୁ ବନସ୍ତରେ ।

(ସ୍ୱର୍ଗା· — ୭୩ପୃଷ୍ଠା)

ଏଠାରେ ସାରଳାଦାସ ସହଦେବଙ୍କୁ ସର୍ବଜ୍ଞ ତ୍ରିକାଳ ଭୂତ, ଭବିଷ୍ୟର ଜ୍ଞାତା ସ୍ୱରୂପରେ ଚିତ୍ରଣ କରିଛନ୍ତି । ସଂ ମ. ଭା.ର ସହଦେବ ଅହଂକାରର ମୂର୍ତ୍ତିମନ୍ତ ପ୍ରକାଶ । କିନ୍ତୁ ସା· ମ. ଭା. ର ସହଦେବ ଏକାଧାରରେ ବାସ୍ତବ ଓ ଜୀବନ୍ତ ।

ପୁଣି କିଛି ସମୟ ପରେ ଭୂପତିତ ହେଲେ ନକୁଳ । ତାଙ୍କର ଦୋଷ ଦର୍ଶାଇ ସଂ. ମ. ଭା.ରେ ଯୁଧିଷ୍ଠିର କହିଛନ୍ତି ଯେ—ନକୁଳ ସର୍ବଦା ନିଜକୁ ତ୍ରିଲୋକ ମଧ୍ୟରେ ସର୍ବାପେକ୍ଷା ଅଧିକ ରୂପବାନ ବୋଲି ମନେ କରନ୍ତି । ତାଙ୍କର ଏ ପତନ ସେହି ଗର୍ବର ହିଁ ପରିଣତି । (୧୪) ସାରଳା ଦାସ ତଦନୁରୂପ ଦୋଷ ଦର୍ଶାଇ ଲେଖିଛନ୍ତି—

ଆପଣା ସୁନ୍ଦର ପଣ ଆପଣେ ଦେଖାଇ
ସେତେକ ପାତକୀ କର୍ମେ ରହିଥିବ ସେ ମର୍ତ୍ତ୍ୟ ।

ପୁଣି—

ମୋତେ ବୋଇଲା ଗର୍ବେ ମୂର୍ଚ୍ଛିତ ରାଜେଶ୍ୱର
ମତ୍ତ ଗର୍ବ ପଣ କରି କହିଲା ଅପାର ।
ସେ ପୃଥିବୀରେ ମତ୍ତ ଗର୍ବ ହିଂସା ଯେ କରଇ
ଯମରାଜା ପାଞ୍ଜିରେ ସେହୁ ଅପହାରଇ । (୧୫)

ଅର୍ଜୁନ, ଦ୍ରୌପଦୀ ଏବଂ ଅନ୍ୟଭାଇମାନଙ୍କୁ ଏପରି ଭୂପତିତ ହେଉଥିବାର ଦେଖି ଶୋକସନ୍ତପ୍ତ ହୋଇ ଭୂଇଁରେ ପଡ଼ିଗଲେ । ସେତେବେଳେ ଭୀମ ତାଙ୍କୁ କୋଳରେ ଧରି ଯୁଧିଷ୍ଠିରଙ୍କୁ କିଛିକ୍ଷଣ ଅପେକ୍ଷା କରିବା ପାଇଁ ଅନୁରୋଧ କଲେ । କିନ୍ତୁ ଯୁଧିଷ୍ଠିର କହିଲେ—ଅର୍ଜୁନ କହିଥିଲେ ଏକ ଦିବସ ମଧ୍ୟରେ ଶତ୍ରୁମାନଙ୍କୁ ଦଗ୍ଧ କରିବେ, କିନ୍ତୁ ତାହା ସେ କଲେ ନାହିଁ । ତେଣୁ ସେହି ଶୂରାଭିମାନୀ ମିଥ୍ୟା

---

(୧୪) ସଂ· ମ· ଭା.—ମହା· ପ୍ରସ୍ଥା. ପର୍ବ-ଅ୨/୧୫-୧୭

(୧୫) ସା. ମ. ଭା.—ସ୍ୱର୍ଗା. ପର୍ବ-୭୭ପୃ.

ପ୍ରତିଜ୍ଞା ବଶତଃ ପତିତ ହେଲେ । ପୁନର୍ବାର ଅନ୍ୟ ଏକ ଦୋଷ ଦର୍ଶାଇ କହିଲେ – ଫାଲଗୁନ ଧନୁର୍ଦ୍ଧାରୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ବୋଲି ଅନ୍ୟ ଧନୁର୍ଦ୍ଧାରୀମାନଙ୍କୁ ଅବଜ୍ଞା କରନ୍ତି । (୧୭) ସାରଳା ଦାସ ସଂ. ମ. ଭା.ରେ ବର୍ଣ୍ଣିତ ପ୍ରଥମ ଦୋଷଟିକୁ ଗ୍ରହଣ କରିନାହାନ୍ତି । ବରଂ ଦ୍ୱିତୀୟ ଦୋଷଟିକୁ ଦର୍ଶାଇ ଉଲ୍ଲେଖ କରିଛନ୍ତି—

ଅହୋ ଭୀମସେନ ସେହୁ ମତ୍ତ ଗର୍ବ ବହଇ
ଆପଣା ପରାକ୍ରମପଣ ଆପଣେ କହୁଥାଇ ।
ବୋଇଲା ସେକଛର କଲିଁ ମୁଁ ମେଦିନୀ
ଆପଣାର ପ୍ରତିଜ୍ଞା ବହଇ ଫାଲ୍‌ଗୁନ ।

× × ×

ସେମନ୍ତ ବୋଲିଣ ସେହୁ କରଇ ଗାରିମା
ସେହୁ ସେ ପାପୀ ରେ ବଡ଼ ଅଛଇ ମୃତ ଆତ୍ମା । (୧୬)

ଏତକ କହିସାରି ଯୁଧିଷ୍ଠିର ସ୍ୱଗନ୍ତବ୍ୟ ପଥରେ ଯାତ୍ରା କରିବାକୁ ଲାଗିଲେ । ଏହି ଅବସରରେ ଭୀମସେନ ପତିତ ହେଲେ ଏବଂ ତାର କାରଣ ଜିଜ୍ଞାସା କଲେ । ଉତ୍ତରରେ ଯୁଧିଷ୍ଠିର କହିଲେ– ଭୀମ ବହୁଭୋଜନ କରନ୍ତି । ଅନ୍ୟର ବଳ ନଦେଖି ଆପଣା ବଳର ଶ୍ଳାଘା କରନ୍ତି । (୧୮) କିନ୍ତୁ ସାରଳା ଦାସ ଏହି ପ୍ରସଙ୍ଗର ଚମତ୍କାର ବର୍ଣ୍ଣନା କରିଛନ୍ତି ।

ଯେତେବେଳେ ଭୀମସେନ ପତିତ ହେଲେ ସେ ଯୁଧିଷ୍ଠିରଙ୍କୁ କିଛି ସମୟ ବିଶ୍ରାମ ନେଇ ତାଙ୍କୁ ସଙ୍ଗରେ ନେବାପାଇଁ ଅନୁରୋଧ କଲେ । କିନ୍ତୁ ସେତେବେଳେ ଯୁଧିଷ୍ଠିର ଉତ୍ତରଦେଲେ—

ଯେ ଯାହାର ପୁଣ୍ୟ ଘେନି ସ୍ୱର୍ଗପୁର ଯାଅ
ଆସି ଯେବେ ନୁଆଁଇଲୁ ଉଦ ହୋଇ ଶୁଅ ।

ଯୁଧିଷ୍ଠିର ହେଉଛନ୍ତି ଧର୍ମାବତାର, ପରଣତର ପ୍ରଧାନ ନାୟକ । ସେ ଯେଉଁ ଉକ୍ତି ଏଠାରେ କହିଛନ୍ତି ତାହାହିଁ ଧର୍ମ ଓ ଦର୍ଶନର ଉକ୍ତି । ଭୀମ ନିକଟରେ ସ୍ୱର୍ଗ, ମୋକ୍ଷ ତୁଚ୍ଛ ହେଲେହେଁ ତାହା ଯୁଧିଷ୍ଠିରଙ୍କ ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ । ମରଦେହରେ ଅମରତ୍ୱ ଲାଭ ହିଁ ତାଙ୍କ ଜୀବନର ସାର୍ଥକତା ଓ ତାହାହିଁ ଥିଲା ତାଙ୍କ ଜୀବନର କାମ୍ୟ ।

---

(୧୬) ସଂ. ମ. ଭା.—ମହା. ପ୍ରସ୍ଥା.-ଅ୨/୨୧–୨୨
(୧୭) ସା. ମ. ଭା.– ସ୍ୱର୍ଗା. ପର୍ବ-ପୃ.୭୧
(୧୮) ସଂ. ମ. ଭା.—ମହା. ପ୍ରସ୍ଥା.-ଅ୨/୨୫

ସା. ମ. ସ୍ୱ. ରେ ଭୀମସେନ ନିଜର ଦୋଷତ୍ରୁଟି ସମ୍ପର୍କରେ ଜାଣିବାପାଇଁ ଯତ୍ନଶୀଳ ନାହାନ୍ତି ବରଂ ସେ ଯୁଧିଷ୍ଠିରଙ୍କ ସହ ଯିବାପାଇଁ ପ୍ରବଳ ଉଦ୍ୟମ କରିଛନ୍ତି । କିନ୍ତୁ ସମର୍ଥ ହୋଇ ପାରିନାହାନ୍ତି । ତେଣୁ ସେହି ହେମଗିରିରେ ଦ୍ରୌପଦୀ ସମେତ ସହଦେବ, ନକୁଳ, ଅର୍ଜୁନ, ଭୀମସେନ ପତିତ ହେଲେ । କେବଳ ଯୁଧିଷ୍ଠିର ମହାଯାତ୍ରାରେ ସ୍ୱଦେହରେ ସ୍ୱର୍ଗାରୋହଣ ପାଇଁ ସମର୍ଥ ହୋଇ ପାରିଲେ । ସାରଳା ଦାସ ସଂ. ମ. ଭା. ର ଅନୁସରଣରେ ଦ୍ରୌପଦୀ ପ୍ରଭୃତିଙ୍କ ପତନ କ୍ରମେ ଠିକ୍ ସେହିପରି ଲେଖିଅଛନ୍ତି ସତ କିନ୍ତୁ ପତନ-ଜନିତ ଦୋଷର କାରଣ ଦର୍ଶାଇବା ପାଇଁ ଭିନ୍ନ ମତ ପୋଷଣ କରିଅଛନ୍ତି ।

ସା. ମ. ଭା ରେ ବର୍ଣ୍ଣନା କରାଯାଇଛି ଯେ ଯୁଧିଷ୍ଠିର ଏକାକୀ ହିମବନ୍ତ ଗିରି ଉର୍ଦ୍ଧ୍ୱରେ ପହଞ୍ଚି ଏକ ଜୀର୍ଣ୍ଣକୂପ ମଧ୍ୟରେ ଛୟାନବେ ସହସ୍ର ନୃପ ନର୍କଗତି କରିଥିବାର ଦର୍ଶନ କଲେ । ସେ ନୃପମାନେ ଯୁଧିଷ୍ଠିର ଦେବଙ୍କ ଦର୍ଶନ ଲାଭ କରି ନରକରୁ ମୁକ୍ତି ପାଇଲେ । ଯୁଧିଷ୍ଠିରଙ୍କର ଏକ ନର୍କ ଦର୍ଶନର କାରଣ ଦର୍ଶାଇ ସାରଳା ଦାସ ଉଲ୍ଲେଖ କରିଅଛନ୍ତି ଯେ—

ଅଶ୍ୱତ୍ଥମା ହତ ବୋଲି ବୋଇଲେ ଯୁଧିଷ୍ଠି
ନର କିବା କୁଞ୍ଜର ବୋଲି ନଜାଣଇ ତଥି ।

(ସ୍ୱର୍ଗା-ପୃ ୭୬)

ଏହି ମିଥ୍ୟା ଭାଷଣ-ଜନିତ ଦୋଷରୁ ସେ ନର୍କ ଦର୍ଶନ କରିଥିଲେ । କିନ୍ତୁ ସଂ ମ ଭା ସ୍ୱର୍ଗାରୋହଣ ପର୍ବରେ ଏହାର ବର୍ଣ୍ଣନା ଭିନ୍ନ ପ୍ରକାର । ଯୁଧିଷ୍ଠିର ସ୍ୱର୍ଗରେ ପହଞ୍ଚିବା ପରେ ଦେବଦୂତଙ୍କ ସହ ଏକ ଅନ୍ଧକାରାବୃତ, ଶୈବଳ, ଶାଦ୍ୱଳ ସମନ୍ୱିତ, ପାପକାରୀଗଣଙ୍କ ଗନ୍ଧଯୁକ୍ତ, ମାଂସ-ଶୋଣିତ-କର୍ଦ୍ଦମ ବିଶିଷ୍ଟ, ମୃତ ଶରୀର ଦ୍ୱାରା ପରିବ୍ୟାପ୍ତ ପଥରେ କିଛିବାଟ ଗଲେ । ସେଠାରେ ଦୁଃଖ-ଶୋକ-ଚିତ୍କାରକାରୀ ନରଗଣଙ୍କର କଷ୍ଟଦେଖି ଅତ୍ୟନ୍ତ ଦୁଃଖିତ ହେଲେ । ସେମାନେ କିଏ ବୋଲି ଯୁଧିଷ୍ଠିର ପ୍ରଶ୍ନ କରନ୍ତେ—ଆମ୍ଭେ କର୍ଣ୍ଣ, ଭୀମସେନ, ଅର୍ଜୁନ, ନକୁଳ, ସହଦେବ, ଦ୍ରୌପଦୀ ବୋଲି ଚିତ୍କାର ଶୁଣିବାକୁ ପାଇଲେ । କିନ୍ତୁ ଏହା ଶ୍ରବଣ ଓ ଦର୍ଶନ କରି ଯୁଧିଷ୍ଠିର ନିଜର ଚିତ୍ତବିଭ୍ରମ ବୋଲି ମନେ କଲେ । କାରଣ ସେମାନେ ସତ୍ୟ ପରାୟଣ କ୍ଷତ୍ରିୟ ବିକ୍ରମରତ ଓ ଯାଜ୍ଞିକ ହୋଇ ନରକଗାମୀ ହୋଇଥିବାରୁ ଯୁଧିଷ୍ଠିର ନିଜକୁ ବିଶ୍ୱାସ କରିପାରିଲେ ନାହିଁ । (୧୯) କିନ୍ତୁ ଏପରି ବର୍ଣ୍ଣନା ସା ମ ଭା ରେ ନାହିଁ । ସେହି ନର୍କଦର୍ଶନର କାରଣ ସଂ ମ ଭା ରେ ମଧ୍ୟ ନିର୍ଦ୍ଦେଶ କରାଯାଇଛି । ଡହିଁରେ ଉଲ୍ଲେଖ ଅଛି ଯେ ଯୁଧିଷ୍ଠିର ଦ୍ରୋଣଙ୍କୁ ସନ୍ତାନ ନିମିତ୍ତ ପ୍ରତାରଣ କରିଥିଲେ । ସେ ଯେଉଁପରି କପଟ ନରକ

୧୯—ସଂ ମ ଭା—ସ୍ୱର୍ଗାରୋହଣ ପର୍ବ—ଅ ୨

ଦର୍ଶନ କଲେ, ସେପରି ଭୀମ, ଅର୍ଜୁନ, ସହଦେବ ଓ ଦ୍ରୁପଦ ନନ୍ଦିନୀ କୃଷ୍ଣା ଛଳନାମରେ ନରକ ଭ୍ରମନ ମଧ୍ୟ କରିଥିଲେ । (୨୦) ସ ମ ଗ୍ର ରେ ଉଲ୍ଲେଖ ଅଛି ଯେ—ଦେବରାଜ ମହେନ୍ଦ୍ରଙ୍କ ଦ୍ଵାରା ଏହି ମାୟା ନର୍କ ପ୍ରସ୍ତୋଜିତ ହୋଇଥିଲା । (୨୧) କିନ୍ତୁ ସା ମ ଗ୍ର ରେ ତାହା କୁହାଯାଇ ନାହିଁ ।

ଯୁଧିଷ୍ଠିର ସାଥୀମାନଙ୍କୁ ପତିତ ହେବାର ଦେଖି ଶୋକସନ୍ତପ୍ତ ଥିବାବେଳେ ଇନ୍ଦ୍ର ରଥାରୂଢ଼ ହୋଇ ତାଙ୍କୁ ସ୍ୱର୍ଗପୁରକୁ ନେବାପାଇଁ ଆସି ପହଞ୍ଚିଲେ । ଯୁଧିଷ୍ଠିରଙ୍କର ଅନୁଗାମୀ ଥିବା ଶ୍ୱାନଟିକୁ ପରିତ୍ୟାଗ କରିବାପାଇଁ ଇନ୍ଦ୍ର ପରାମର୍ଶ ଦେଲେ । କିନ୍ତୁ ଯୁଧିଷ୍ଠିର କହିଲେ ଯେ ଶ୍ୱାନଟି ତାଙ୍କର ଚିର ଭକ୍ତ । ତେଣୁ ଭକ୍ତଜନକୁ ସେ ପରିତ୍ୟାଗ କରି ପାରିବେ ନାହିଁ । କାରଣ ଭକ୍ତକୁ ତ୍ୟାଗ କରିବା ବ୍ରହ୍ମହତ୍ୟା ପାତକ ସହ ସମାନ । ଇନ୍ଦ୍ର ପୁଣି ପ୍ରଶ୍ନ କଲେ-ଯଦି ଭ୍ରାତା ଓ ଦୟିତା କୃଷ୍ଣାଙ୍କୁ ପରିତ୍ୟାଗ କରି ସ୍ୱୀୟ କର୍ମଦ୍ୱାରା ସ୍ୱର୍ଗଲାଭ ହୋଇ ପାରେ କୁକୁରକୁ ପରିତ୍ୟାଗ ନ କରିବାରେ କି କାରଣ ନିହିତ ? ଯୁଧିଷ୍ଠିର ଉତ୍ତରରେ କହିଥିଲେ ଯେ—ଭକ୍ତ ତ୍ୟାଗ ମହାପାପ । ଏ ସ୍ଥଳ ଯୁଧିଷ୍ଠିରଙ୍କ ପାଇଁ ଯେପରି ଏକ ବିରାଟ ପରୀକ୍ଷା । ସେହି ଶ୍ୱାନ ସ୍ଥଳେ ସ୍ୱୟଂ ଧର୍ମ । (୨୨) ପୁଣି ତହିଁରେ କୁହାଯାଇଛି ଯେ ସେ ଶ୍ୱାନଟି ଯୁଧିଷ୍ଠିରଙ୍କୁ ମହାପ୍ରସ୍ଥାନ ନିମିତ୍ତ ହସ୍ତିନା ପୁରରୁ ନିର୍ଗତ ହେବାବେଳେ ଅନୁଧାବନ କରିଥିଲେ । (୨୩)

ସା ମ ଗ୍ର ରେ ଶ୍ୱାନଟି ଧର୍ମଦେବତାଙ୍କ ପ୍ରଚ୍ଛନ୍ନ ରୂପ ବୋଲି କୁହାଯାଇଥିଲେ ହେଁ ଶ୍ୱାନ ଓ ଯୁଧିଷ୍ଠିରଙ୍କର ମିଳନର ସମସ୍ତ ଭିନ୍ନ ପ୍ରକାର । ଯୁଧିଷ୍ଠିର ହିମବନ୍ତଗିରିର ଉର୍ଦ୍ଧ୍ୱରେ ପହଞ୍ଚି ନିଃସଙ୍ଗ ମନେକରିବା ବେଳେ ଏକ ଶ୍ୱାନକୁ ଦେଖିଲେ । ତେଣୁ ସେ ଶ୍ୱାନଟି ତାଙ୍କର ସଖା ବୋଲି ସନ୍ତୋଷ ପ୍ରକାଶ କଲେ । ଏହି ସମୟରେ ସାରଳାଦାସ ଏକ କଳ୍ପିତ କାହାଣୀ ମାଧ୍ୟମରେ ଶ୍ୱାନପ୍ରତି ଯୁଧିଷ୍ଠିରଙ୍କ ଦୟାଭାବ ପ୍ରକାଶ କରିଅଛନ୍ତି । ଶ୍ୱାନକୁ ଦେଖି ଏକ ବ୍ୟାଘ୍ର ଖାଇବା ଅଭିଳାଷରେ ଧାଇଁଲା । ତେଣୁ ଯୁଧିଷ୍ଠିର ଶ୍ୱାନକୁ ଜଗି ରହିଲେ । କାରଣ ସାରଳା ଦାସ ଦର୍ଶାଇଛନ୍ତି ଯେ—

ଯେତେହାକଇଁ ଗ୍ରହିଲେ ଯେତେ ହୋଇବ ନରେଶ
ଯେହିକ୍ଷଣି ଯେହାକୁ କରିବ ବ୍ୟାଘ ଭକ୍ଷ ।
ଯେହାକୁ ବିନାଶ କଲେ ମୋହୋର ଧର୍ମ ନାଶ
ଖାଇବାରୁ ମରଣ ମୋର ହୋଇବ ପରିଶେଷ ।

(ସ୍ୱର୍ଗାଃ—୭୮ପୃ)

---

୨୦ —ଉଦ୍ଧୃତ—ଅ୩

୨୧—ତଦେବ—ଅ୩/୩୨

୨୨—ସ ମ ଗ୍ର—ମହାପ୍ରସ୍ଥାନିକ ପର୍ବ—ଅ୩/୭—୧୨

୨୩—ଉଦ୍ଧୃତ—ଅ୧

ଏପରି ଉଦ୍ଭଟ କଳ୍ପନା ସଂ ମ ଭା ରେ ନାହିଁ । ତାପରେ ଇନ୍ଦ୍ରଦେବ ପୁଷ୍ପକ ବିମାନ ଆଣି ଯୁଧିଷ୍ଠିରଙ୍କୁ ସ୍ୱର୍ଗପୁରକୁ ନେବା ପାଇଁ ଉପସ୍ଥିତ ହେଲେ । ସେତେବେଳେ ଯୁଧିଷ୍ଠିର ଶ୍ୱାନକୁ କୋଳରେ ଧରି ଯିବାପାଇଁ ଉଦ୍ୟତ ହେଲେ । ତେଣୁ ଶ୍ୱାନ ନିମିତ୍ତ ଇନ୍ଦ୍ରଦେବତା ଓ ଯୁଧିଷ୍ଠିରଙ୍କ ମଧ୍ୟରେ ଯେଉଁ ଉକ୍ତି ପ୍ରତ୍ୟୁକ୍ତି ହୋଇଛି ତାହା ମୂଳମହାଭାରତର ଅନୁରୂପ । ଯୁଧିଷ୍ଠିର ମଧ୍ୟ ଶ୍ୱାନ ପାଇଁ ଦେବରଥକୁ ପରିତ୍ୟାଗ କରିବା ନିମିତ୍ତ ଉଦ୍ୟତ ହୋଇଅଛନ୍ତି । (୧୪) ତତ୍ପରେ ଧର୍ମ ଦେବତା ଶ୍ୱାନରୂପ ତ୍ୟାଗ କରି ସ୍ୱରୂପ ଧାରଣ କରିଛନ୍ତି । (୧୫)

ସଂ ମ ଭା ରେ ବର୍ଣ୍ଣନା କରାଯାଇଛି ଯେ—ଯୁଧିଷ୍ଠିର ପ୍ରଥମେ ସ୍ୱର୍ଗଲୋକରେ ପରମ ଶ୍ରୀସମ୍ପନ୍ନ ଦୁର୍ଯ୍ୟୋଧନଙ୍କୁ ଦିବାକରଙ୍କ ସଦୃଶ ଆସନରେ ସମାସୀନ ହୋଇଥିବାର ଦର୍ଶନ କଲେ । ସେ ସେତେବେଳେ ବୀରଶ୍ରୀ ଦ୍ୱାରା ସମାବୃତ ଏବଂ ଦେବଗଣ ଓ ପୁଣ୍ୟଶୀଳ ପୁରୁଷଗଣଙ୍କ ସହିତ ଉପବିଷ୍ଟ ଥିଲେ । ତେଣୁ ଯୁଧିଷ୍ଠିର ଏହା ଦର୍ଶନକରି ଅସୂୟା ପରାୟଣ ହୋଇ ଦୁର୍ଯ୍ୟୋଧନଙ୍କ ସହିତ ସ୍ୱର୍ଗ ଲୋକରେ ବାସ କରିବା ପାଇଁ ଅନାଗ୍ରହ ପ୍ରକାଶ କଲେ । (୧୬) ଏପରିକି ସେ ଦୁର୍ଯ୍ୟୋଧନଙ୍କ ପ୍ରତି ଦୃଷ୍ଟି ନିକ୍ଷେପ ସୁଦ୍ଧା କରିବାକୁ ଇଚ୍ଛା କଲେ ନାହିଁ । ଭ୍ରାତାଗଣ ଯେଉଁ ସ୍ଥାନରେ ଅଛନ୍ତି ସେହି ସ୍ଥାନକୁ ଯିବା ନିମିତ୍ତ ବ୍ୟସ୍ତ ହୋଇ ଉଠିଲେ । (୧୭) ତେଣୁ ନାରଦ ସେଠାରେ କହିଥିଲେ ଯେ—ସେ ସ୍ୱର୍ଗଲୋକ । ସେ ସ୍ଥାନରେ କୌଣସି ଶତ୍ରୁତା ହୁଏ ନାହିଁ । (୧୮)

---

୧୪ – (କ) ସେହୁ ଶ୍ୱାନ ଗୋଟି ମୋର ରକ୍ଷା କଲା ଧର୍ମ
ମୋହୋରେ ସଦୟା ଥିଲେ ବିମାନେ ସେହାକଇଁ ନେମ !

(ସା ମ ଭା—ସ୍ୱର୍ଗ—୧୯ପଦ - ୮୯ପୃ)

(ଖ) ସଂ ମ ଭା—ମହାପ୍ରସ୍ଥା:—ଅ୩/୧୧

୧୫—(କ) ସଞ୍ଚପି କରି ଯତ୍ନଂ କହିଲେ ଦେବରାୟେ
ଶ୍ୱାନରୂପ ତେଜି ସେ ହୋଇଲେ ଅନ୍ତର୍ଧାୟେ ।

(ସା ମ ଭା—ସ୍ୱର୍ଗ—୩୪ପଦ-୯୦ପୃ)

(ଖ) ସଂ ମ ଭା - ମହାପ୍ରସ୍ଥା—ଅ୩/୧୭

୧୬—ସଂ ମ ଭା—ସ୍ୱର୍ଗାରୋହଣ ପର୍ବ—ଅ୧/୬
୧୭—ତତ୍ରୈବ—ଅ୧/୧୦
୧୮—ତତ୍ରୈବ—ଅ୧/୧୮

ଇନ୍ଦ୍ର ନିର୍ଦ୍ଦେଶ ଦେଇଛନ୍ତି ଯେ—ତ୍ରୈଲୋକ ପାବନୀ ପବିତ୍ରା ଦେବନଦୀ ଆକାଶ ଗଙ୍ଗାରେ ଅବଗାହନ କଲେ ମାନୁଷୀଭାବ ବିଗତ ହେବ । ତେଣୁ ଯୁଧିଷ୍ଠିର ତହିଁରେ ଅବଗାହନ କରି ମାନୁଷୀ ମୂର୍ତ୍ତି ପରିତ୍ୟାଗ କଲେ (୨୯) ଏବଂ ଯେଉଁ ସ୍ଥାନରେ ପାଣ୍ଡବଗଣ ଓ ଧାର୍ତ୍ତରାଷ୍ଟ୍ରମାନେ ସ୍ୱ ସ୍ୱ ସ୍ଥାନ ଲାଭ କରି ରହିଥିଲେ ସେହି ସ୍ଥାନକୁ ଗମନ କଲେ ।

ସା. ମଃ ଭା. ରେ କିନ୍ତୁ ଏପରି ବର୍ଣ୍ଣନା ଦୁର୍ଲଭ । ସ୍ୱର୍ଗପୁରରେ ପହଞ୍ଚି ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବଙ୍କୁ ଦେଖି ଆନନ୍ଦିତ ହେଲେ । ପୁଣି ମନ୍ଦମତି ନାରାୟଣ ଦୁର୍ଯ୍ୟୋଧନଙ୍କୁ ଶତଭ୍ରାତାଙ୍କ ସହ ବସିଥିବାର ଦେଖିଲେ । କିନ୍ତୁ ଯୁଧିଷ୍ଠିରଙ୍କ ମନରେ ସଂ, ମ, ଭା, ରେ ବର୍ଣ୍ଣିତ ଅଶାନ୍ତ ସଞ୍ଚାର ପରି କୌଣସି ଭାବାନ୍ତର ଜାତ ହୋଇନାହିଁ । ସେଠାରେ ପୁଣି ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ, ଶକୁନି, ଅଭିମନ୍ୟୁ, ଲକ୍ଷ୍ମଣକୁମାର, ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ପ୍ରଭୃତିଙ୍କୁ ଦେଖିଲେ । କିନ୍ତୁ ଧୃତରାଷ୍ଟ୍ରଙ୍କୁ ପ୍ରତ୍ୟକ୍ଷରେ ଦେଖିଲେ ନାହିଁ ବୋଲି କୁହାଯାଇଛି । (୩୦) ସଂ: ମ: ଭା, ରେ ଯୁଧିଷ୍ଠିର ଧୃତରାଷ୍ଟ୍ରଙ୍କୁ ଦର୍ଶନ କରିଥିବାର ଉଲ୍ଲେଖ ଅଛି । (୩୧)

ସ୍ୱର୍ଗାରୋହଣ ପର୍ବରେ ସଂ. ମ. ଭା. ଅପେକ୍ଷା ସ. ମ· ଭା.ର ଯୁଧିଷ୍ଠିରଙ୍କ ଚରିତ୍ର ଅଧିକ ମହିମାମୟ । ସାରଳା ଦାସଙ୍କ ଯୁଧିଷ୍ଠିର ଦୁର୍ବଳ ନୁହନ୍ତି । ତାଙ୍କର ଧୈର୍ଯ୍ୟ ମାତ୍ରମାତ୍ରି ଓ ବିଚକ୍ଷଣତ । ଅଧିକା କି ଶତ୍ରୁ କି ମିତ୍ର ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ତାଙ୍କ ହୃଦୟରୁ ଅପାର କରୁଣା, ସ୍ନେହର ଅସରନ୍ତି ଉତ୍ସ ଝରି ପଡ଼ୁଛି । ତେଣୁ ସ୍ୱର୍ଗପୁରରେ ମୂଳ ମହାଭାରତର ଯୁଧିଷ୍ଠିରଙ୍କ ମନରେ ଦୁର୍ଯ୍ୟୋଧନଙ୍କୁ ଅବଲୋକନ କରି ବୈରଭାବ ସୃଷ୍ଟି ହେବାବେଳେ ସାରଳା ମହାଭାରତରେ ଯୁଧିଷ୍ଠିରଙ୍କ ମନରେ କୌଣସି ପ୍ରତିକ୍ରିୟା ପ୍ରକାଶ ପାଇନାହିଁ । ପୁଣି ସାରଳାଙ୍କ ଯୁଧିଷ୍ଠିର ବ୍ୟାସଙ୍କ ଯୁଧିଷ୍ଠିର ପରି ମାନୁଷ୍ୟ ଭାବ ତ୍ୟାଗ ନିମିତ୍ତ ତ୍ରୈଲୋକ୍ୟପାବନୀ ଆକାଶ ଗଙ୍ଗାରେ ଅବଗାହନ କରିନାହାନ୍ତି । ପୃଥିବୀର କଳଙ୍କ କାଳିମା ତାଙ୍କ ଅନ୍ତରକୁ ସ୍ପର୍ଶ କରିନାହିଁ । ତାଙ୍କର ମହାନ୍ ବ୍ୟକ୍ତିତ୍ୱ ନିକଟରେ ଦେବ, ଦାନବ, ଗନ୍ଧର୍ବ, ଯକ୍ଷ, କିନ୍ନର ସମସ୍ତ

---

୨୯-ସଂ; ମ; ଭା—ସ୍ୱର୍ଗାରୋହଣ ପର୍ବ—ଅ ୩/୪୧

୩୦-ସମସ୍ତ ବୀର ଦେଖିଲେ ଧର୍ମବନ୍ତେ
ଏକା ମାତ୍ର ଧୃତରାଷ୍ଟ୍ରକହିଁ ନଦେଖିଲେ ପ୍ରତକ୍ଷେ ।
(ସା-ମ-ପ-ସ୍ୱର୍ଗା-୭୧ପଦ/୧୩ ପୃ

୩୧-ସଂ; ମ; ଭା—ସ୍ୱର୍ଗା-ପର୍ବ—ଅ୪/୧୫

ମୁଣ୍ଡ ନୁଆଁଇ ଅଛନ୍ତି । ତାଙ୍କର ସ୍ୱର୍ଗପୁର ପ୍ରବେଶରେ ଦେବତାମାନେ ପୁଷ୍ପବୃଷ୍ଟି କରୁଛନ୍ତି । ଇନ୍ଦ୍ର ଦେବତା ଆକାଶରେ ମହୋତ୍ସବର ଆୟୋଜନ କରାଇଛନ୍ତି ।

ସଂ. ମ. ଭା. ର ସ୍ୱର୍ଗାରୋହଣ ପର୍ବରେ ଦ୍ରୌପଦୀ ପ୍ରଭୃତିଙ୍କ ସ୍ୱସ୍ଥାନ ଗମନ ବର୍ଣ୍ଣନା କରାଯାଇଛି । କର୍ଣ୍ଣ ସ୍ୱର୍ଗକୁ ଯାଇ ସୂର୍ଯ୍ୟଦେବଙ୍କ ସହ ମିଳିଲେ, କୁନ୍ତୀ ଓ ମାଦ୍ରୀ ଦୁଇପତ୍ନୀସହ ପାଣ୍ଡୁ ମହେନ୍ଦ୍ରଭବନକୁ ଗଲେ । ଗାନ୍ଧାରୀ ଧୃତରାଷ୍ଟ୍ରଙ୍କ ସହ କୁବେର ଦୁର୍ଲ୍ଲଭ ଲୋକ ପ୍ରାପ୍ତି ହେଲେ । ଘଟୋତ୍କଚ ଯକ୍ଷ ଓ ଦେବତାଙ୍କ ସହ, ଦ୍ରୁପଦ ବିଶ୍ୱଦେବଙ୍କ ସହ, ଦ୍ରୋଣ ବୃହସ୍ପତିଙ୍କ ଅଂଶରେ, ପାଣ୍ଡବମାନେ ନିଜ ମୂଳ ସ୍ୱରୂପରେ, ଭୀଷ୍ମ ବସୁଙ୍କ ସ୍ୱରୂପରେ ମିଶିଲେ । (୩୨) ଅର୍ଜ୍ଜୁନଙ୍କ ଦ୍ୱାରା ଶ୍ରୀକୃଷ୍ଣଙ୍କ ଶରୀର ଦାହ ସଂସ୍କାର କରାଗଲା । (୩୩) ତେଣୁ ଦେବଧାମରେ ଶ୍ରୀକୃଷ୍ଣ ନାରାୟଣ ରୂପରେ ପ୍ରବିଷ୍ଟ ହେଲେ । (୩୪) ବାସୁଦେବଙ୍କର ଯେଉଁ ଷୋଳସହସ୍ର ପତ୍ନୀ ଥିଲେ, ସେମାନେ କାଳକ୍ରମରେ ସରସ୍ୱତୀ ଜଳରେ ନିମଗ୍ନା ହେଲେ । ସେମାନେ ତହିଁରେ ଶରୀର ପରିହାର ପୂର୍ବକ ସ୍ୱର୍ଗାରୋହଣ କଲେ । (୩୫) ଏ ସବୁର ବର୍ଣ୍ଣନା ସା; ମ; ଭା; ରେ ପରିଲକ୍ଷିତ ହୁଏ ନାହିଁ । ବ୍ୟାସଦେବ ଯେପରି ମହାଭାରତର ମାହାତ୍ମ୍ୟ ଏବଂ ଫଳଶ୍ରୁତି ବର୍ଣ୍ଣନା କରିଅଛନ୍ତି । (୩୬) ସାରଳା ଦାସ ତାହାକୁ ଗ୍ରହଣ କରିନାହାନ୍ତି ।

ସାମ୍ୟ-ବୈଷମ୍ୟର ଏଇ ଛାଇ-ଆଲୁଅ ମଧ୍ୟରେ ମହାଭାରତର ସ୍ୱର୍ଗାରୋହଣ ପର୍ବଟି ହୋଇ ଉଠିଛି ବର୍ଣ୍ଣିଳ ଓ ବର୍ଣ୍ଣାଢ୍ୟ । ସାରଳା ଦାସ ମୂଳ ରଚନାଟିକୁ ଅନୁସରଣ କରିଥିଲେ ମଧ୍ୟ ନିଜସ୍ୱ-ମୌଳିକ ମୂଲ୍ୟବୋଧରେ ତାର ଯେଉଁ ପ୍ରକାଶ କରିଅଛନ୍ତି, ତାହା ଜୀବନର ଅଧିକ ନିକଟତର ମନେହୁଏ । ସାରଳା ଦାସ ଯଥାର୍ଥରେ ଓଡ଼ିଆ ମାଟିର ଚିର ନମସ୍ୟ ମହାକବି ।

## ସାରଳାଙ୍କ ନିଜସ୍ୱ ପୃଥିବୀ—

ସଂ. ମ. ଭା. ରେ ନଥିବା ବହୁ ନୂତନ ଉପାଖ୍ୟାନ ଓ ବିଷୟବସ୍ତୁ ସାରଳା ଦାସ ନିଜ ମହାଭାରତରେ ସଂଯୋଜିତ କରି ତାଙ୍କର ସମୁଦାୟ କୃତିଟିକୁ କରିଛନ୍ତି ଅଭିନବ ଅନନ୍ୟ । ଏହାଦ୍ୱାରା ମୂଳ ମହାଭାରତ ବର୍ଣ୍ଣିତ ଚରିତ ସମୂହର ଆଦର୍ଶ ଓ

---

୩୨-ସଂ; ମ, ଭା,—ସ୍ୱର୍ଗାରୋହଣ ପର୍ବ—ଅ/ ୫

୩୩-ସଂ, ମ; ଭା;—ମୌଷଲ ପର୍ବ—ଅ୭/୩୧

୩୪-ସଂ; ମ; ଭା;—ସ୍ୱର୍ଗା ପର୍ବ—ଅ୫/୨୪

୩୫-ତଦୈବ—ଅ ୫/୨୫-୨୭

୩୬-ତଦୈବ—ଅ ୫ ଓ ଅ ୭

ଭିତ ନୈତିକ ମୂଲ୍ୟବୋଧ ସ୍ଥଳବିଶେଷରେ କଳ୍ପିତ ବ୍ୟାହତ ହୋଇଥିଲେ ମଧ୍ୟ ସେ ସବୁ ଚରିତ୍ର ଅଧିକ ବାସ୍ତବ ଓ ଜୀବନଧର୍ମୀ ହୋଇପାରିଛନ୍ତି । ମହାକାବ୍ୟର ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାତାବରଣ ଭିତରେ ସୁଦ୍ଧା ସେମାନେ ଯେ ମାଟିର ରୂପ, ରସ ଓ ଗନ୍ଧରେ ଆମୋଦିତ ହୋଇଛନ୍ତି, ତାହା ସାରଳାଙ୍କ ରଚନାର ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ।

## (କ) ସୁବର୍ଣ୍ଣ ଚୂଡ଼ ଓ କଳିଯୁଗ ବିବରଣୀ—

ସ୍ୱର୍ଗାରୋହଣ ବେଳେ, ବିଚାର ପାଇଁ ଯୁଧିଷ୍ଠିରଙ୍କ ନିକଟରେ ଏକ ମୋକଦ୍ଦମା ଆସି ପହଞ୍ଚିଲା । ବୈତରଣୀ ନଦୀ କୂଳରେ ବେଦପୁର ନଗରରେ ସୁରେଶ୍ୱର ବ୍ରାହ୍ମଣ ଭୂମିକର୍ଷଣ କରାଇବା ଲାଗି ତାଙ୍କର ଭୃତ୍ୟକୁ ପଠାଇଥିଲେ । ପରେ ସେ ଭୃତ୍ୟ କୋଦାଳଦ୍ୱାରା ଜମି ଖୋଳିବାବେଳେ ରତ୍ନଜାଲି ବାହାରିଲା । ତାହାକୁ ସେ ନେଇ ମୁନିବ ଆଗରେ ଥୋଇ କହିଲା—"ତୁମ୍ଭର ଉପର ବଂଶେ କେବଣ ସାଧବୋ ଗୁପତେ ଥୋଇଲା ଆନ କେ ହରିବା" ବ୍ରାହ୍ମଣ କହିଲେ ତୁ' ପାଇଲୁ ତୁ ନେ । ମୁଁ କାହିଁକି ନେବି । ଭୃତ୍ୟ ଉତ୍ତର ଦେଲା ଏ 'ଆପଣଙ୍କର ପ୍ରାପ୍ୟ । କିନ୍ତୁ ବ୍ରାହ୍ମଣ କହିଲେ—ମାଟି ଉପରେ ଯେଉଁ ଶସ୍ୟ ଉତ୍ପନ୍ନ ହୁଏ, ତାହାହିଁ ମୋର ପ୍ରାପ୍ୟ । ତୁ ନିଜେ ଶ୍ରମ କରି ଏହାକୁ ପାଇଥିବାରୁ ଏହା ତୋହର ହିଁ ପ୍ରାପ୍ୟ । ଏପରି ଯୁକ୍ତିତର୍କ ସ୍ଥଳ ମୀମାଂସା ନହୋଇ ପାରିବାରୁ ନ୍ୟାୟ ପାଇବାପାଇଁ ସେ ଦୁହେଁ ଯୁଧିଷ୍ଠିରଙ୍କ ନିକଟକୁ ଗଲେ । ଯୁଧିଷ୍ଠିର ଏହା ଦେଖି ଆଶ୍ଚର୍ଯ୍ୟ ହୋଇ ମନ୍ତ୍ରୀ ସହଦେବର ପରାମର୍ଶ ଲୋଡ଼ିଲେ । ସହଦେବ କହିଲେ—'ଏହାର ମୀମାଂସା ବର୍ତ୍ତମାନ ହୋଇପିବ । ଏପର୍ଯ୍ୟନ୍ତ ଦ୍ୱାପରଯୁଗ ରହିଛି ବୋଲି ଏହା ସମ୍ଭବ ହୋଇଛି । କଳିଯୁଗ ଆରମ୍ଭ ହୋଇଗଲେ ହେଁ ଶ୍ରୀକୃଷ୍ଣଙ୍କ ଆଦେଶରେ ମୁଁ କଳିକି ବାନ୍ଧି ରଖିଛି । ଯେଉଁଦିନ ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନ ନିକଟକୁ ଦୂତପଣେ ଯାଇଥିଲେ ସେହିଦିନ କଳି ପୃଥିବୀକୁ ଆଗମନ କଲା ।' ତେଣୁ ସେ କଳିକୁ ମୁକ୍ତ କରିଦେଇ ରାଜା ପରୀକ୍ଷିତଙ୍କ ଉପରେ ମୋକଦ୍ଦମାର ବିଚାର ନ୍ୟସ୍ତ କଲେ । ସଙ୍ଗେ ସଙ୍ଗେ ବ୍ରାହ୍ମଣ ଓ ଭୃତ୍ୟ ମଧ୍ୟରେ ଯୁକ୍ତିତର୍କ ବିପରୀତ ରୂପ ଧାରଣ କଲା । ଉଭୟେ ସେହି ଧନ ଉପରେ ନିଜର ଅଧିକାର ଦାବୀ କଲେ । ଅବଶେଷରେ ରାଜା ପରୀକ୍ଷିତ ଭଣ୍ଡାରରେ ସାମିଲ କରିଦେବା ପାଇଁ ଆଦେଶ ଦେଲେ । ଡଃ ମାୟାଧର ମାନସିଂହ ଏ ସମ୍ପର୍କରେ ଉଲ୍ଲେଖ କରିଛନ୍ତି—"ତନେ ଭାରତୀୟ-ସମାଜ ନୈର୍ଭ ପରାର୍ଥପରତା ଉପରେ ପ୍ରତିଷ୍ଠିତ ଥିଲା । ଗ୍ରୀକ୍ ରାଜଦୂତ ମେଗାସ୍ଥିନିସ୍‌ଙ୍କ ବର୍ଣ୍ଣନା ଏହା ସ୍ପଷ୍ଟ ସମର୍ଥନ କରୁଛି । ସେଦିନ ସମାଜରେ ସତ୍ୟ ପ୍ରତି ମର୍ଯ୍ୟାଦା ଓତପ୍ରୋତଃ ହୋଇ ରହିଥିଲା । ଅର୍ଥ ବା ପଦ ଜୀବନକୁ ନିୟନ୍ତ୍ରଣ କରୁ ନଥିଲା, କରୁଥିଲା ଧର୍ମ ଓ ନ୍ୟାୟ । ଏଇ ଉଦାର ଜୀବନ-ଦର୍ଶନ, ଉଭୟ ଶାସ୍ତ୍ରଜ୍ଞ ବ୍ରାହ୍ମଣଠାରେ ଓ ମୂର୍ଖଶୂଦ୍ର ଠାରେ ଦୈନନ୍ଦିନ ପ୍ରତ୍ୟେକ କର୍ମରେ ଫୁଟି ଉଠୁଥିଲା । ପାରସ୍ପରିକ ସହଯୋଗହିଁ ଥିଲା

ସମାଜ ଜୀବନର ଏକ ଓ ପ୍ରଧାନ ମୌଳିକ ମାତ୍ର । ଏହି ଉପାଖ୍ୟାନର ପ୍ରଥମ ଭାଗରେ କୃଷକ କବି ସେହି ସ୍ୱର୍ଣ୍ଣଯୁଗର ଏକ ମନୋରମ ଚିତ୍ର ଦେଇ ଯାଇଛନ୍ତି ।

ତାପରେ ଇତିହାସର କେଉଁ ଅଶୁଭ-ମୂହୂର୍ତ୍ତିରେ ଲୋକ ଚରିତ୍ର ହୋଇ ଉଠିଲା ସ୍ୱାର୍ଥ-କୈନ୍ଦ୍ରିକ, ସଙ୍କୀର୍ଣ୍ଣ, ବିକୃତ ଓ ସଙ୍କୁଚିତ । ଲୋକେ ନିଜକୁ ମନେ କଲେ ଅନ୍ୟଠାରୁ ଭିନ୍ନ ଓ ସ୍ୱତନ୍ତ୍ର । ଜନ୍ମ ହେଲା ସମାଜରେ ଲୋଭର ସଂଘର୍ଷ । ଭୟ, ଅବିଶ୍ୱାସ, ପ୍ରତାରଣା, ଷଡ଼ଯନ୍ତ୍ର, କୂଟଚକ୍ର ପ୍ରଭୃତି ହେଲା ଆମ ପ୍ରତିଦିନର ଧର୍ମ, ନ୍ୟାୟ ସମବେଦନା, ସହାନୁଭୂତି ଓ ଉଦାର ମାନବିକତାର ଖୋଲା ଆକାଶ, ନିର୍ମଳ ବାୟୁ ଓ ରୋଗଘ୍ନ ସୌରରଶ୍ମି, ଚିରକାଳ ଲାଗି ଆମ ବାତାବରଣରୁ ବିଦାୟ ନେଲେ । (୩୭) ପୁଣି ସାରଳା ଦାସ କଳିଯୁଗ ବିବରଣ (୩୮) ପ୍ରସଙ୍ଗରେ ମଧ୍ୟ ନିଜର ମୌଳିକତା ପ୍ରଦର୍ଶନ କରିଅଛନ୍ତି । ସାମାଜିକ ଜୀବନରେ ସାରଳା ଦାସ ଥିଲେ ଜଣେ ବିପ୍ଳବୀ । ତେଣୁ ସେ 'କଳି' ଅବତାରଣା କରି ତାଦ୍ୱାରା ସମାଜରେ ଘଟୁଥିବା ନାନା ଅଘଟନର ଚିତ୍ର ମଧ୍ୟ ଉପସ୍ଥାପିତ କରିଅଛନ୍ତି ।

ଏହି "ସୁବର୍ଣ୍ଣଚୂଡ଼ ଓ କଳିଯୁଗର ବିବରଣ' ପ୍ରସଙ୍ଗ ସହିତ ଓଡ଼ିଶାର ବିଶିଷ୍ଟ ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏକ ଐତିହାସିକ ଘଟଣା ଜଡ଼ିତ କରି ଲେଖିଅଛନ୍ତି ଯେ— "ସାରଳା ଦାସ ବାହ୍ମନୀ ରାଜ୍ୟ ସହିତ ସଂଘର୍ଷରେ ଲିପ୍ତଥିବା ଗଜପତି ବାହିନୀରେ ଯେତେବେଳେ ସୈନିକ ରୂପେ କାର୍ଯ୍ୟ କରୁଥିଲେ, ସେତେବେଳେ ସେ ବାହ୍ମନୀ ରାଜ୍ୟରେ ସ୍ଥାପୟିତା ହୁସେନ ଗଙ୍ଗୁଙ୍କ ଆଦ୍ୟଜୀବନ ସମ୍ବନ୍ଧରେ ଏହି କିମ୍ବଦନ୍ତୀମୂଳକ ଇତିହାସ ହୁଏତ ଶୁଣିଥିଲେ । ତାହା ହିଁ ସେ ପରିବର୍ତ୍ତିତ ଆକାରରେ ସ୍ୱର୍ଗାରୋହଣ ପର୍ବରେ ଲେଖିଯାଇଛନ୍ତି । ସ୍ୱର୍ଗାରୋହଣ ପର୍ବର ଏପରି ଆଖ୍ୟାୟିକାଟି ଐତିହାସିକ ପଣ୍ଡିତ ମାନଙ୍କ ମଧ୍ୟରେ ଥିବା ବିବାଦକୁ ମେଣ୍ଟାଇବାରେ ମଧ୍ୟ ସାହାଯ୍ୟ କରୁଛି ।" (୩୯)

## ସ୍ୱର୍ଗାରୋହଣ ପଥରେ ଯୁଧିଷ୍ଠିରଙ୍କ ସତ୍ୟ ପରୀକ୍ଷା—

ଏହି ଉପାଖ୍ୟାନଟି ନିଃସନ୍ଦେହରେ ସାରଳା ଦାସଙ୍କର ଏକ ଉତ୍କୃଷ୍ଟ ପରିକଳ୍ପନା । ମହାପ୍ରସ୍ଥାନ ଯାତ୍ରୀ ପାଣ୍ଡବ ପଞ୍ଚଭ୍ରାତା ଏବଂ ଦ୍ରୌପଦୀ ପରୀକ୍ଷିତଙ୍କୁ

---

୩୭-ଡଃ ମାୟାଧର ମାନସିଂହ – ମାଟିର ମହାକବି ସାରଳାଦାସ-୧୯-ପୃ ୮୦-୮୧

୩୮-ସା; ମ; ଭା;— ସ୍ୱର୍ଗାରୋହଣ ପର୍ବ-ପୃ-୧୦-୧୧

୩୯-ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ —ସାରଳା ସାହିତ୍ୟର ଐତିହାସିକ ଚିତ୍ର ପୃ—୧୪୯ – ୨୫୧ — ୧୯୬୭

ରାଜପଦରେ ଅଭିଷିକ୍ତ କରି ବୈତରଣୀ ନଦୀକୂଳେ ଥିବା ଯାଜପୁର ବା ଧର୍ମପୁରରେ ରହିଲେ । ତାହାର ନିକଟବର୍ତ୍ତୀ ଅମରାବତୀ ନଗରରେ ହରିସାହୁ ବୈଶ୍ୟର ଏକ ସୁନ୍ଦରୀ ପଞ୍ଚଦଶ ବୟସ୍କା ସୁହାଣୀ ନାମ୍ନୀ କନ୍ୟାଥିଲା । ଏହି କନ୍ୟାଟି ସଂପର୍କରେ ଗଣକ ଭବିଷ୍ୟତ ବାଣୀ ଶୁଣାଇଥିଲେ ଯେ—ସେ କନ୍ୟା ଭାଗ୍ୟବନ୍ତୀ; କିନ୍ତୁ ବିବାହ କାଳରେ ତାହାର ମୃତ୍ୟୁ ହେବ । ତେଣୁ ହରିସାହୁ ତାହାକୁ ବିଭା ନଦେଇ ରଖିଥିଲା । ପାଣ୍ଡବମାନେ ଯେତେବେଳେ ଭିକେ କଲେ, ହରିସାହୁ ଯୁଧିଷ୍ଠିରଙ୍କୁ କନ୍ୟା ସମର୍ପଣ କରିବ ବୋଲି ପ୍ରସ୍ତାବ ଦିଅନ୍ତେ ସେ ପ୍ରଶ୍ନ ଆଖିରେ ସହଦେବଙ୍କୁ ଚାହିଁଲେ । ତାପରେ ଗ୍ରହରାଜ ସମ୍ମତ ପ୍ରକାଶ କରି ଯୁଧିଷ୍ଠିରଙ୍କୁ କହିଲେ—

ଉଠିଣ ପ୍ରଲମ୍ଭିତ ହୋଇଲେ ସ୍ୱରଗଇ
ଯେ କଥାକୁ ଦେବ ନକର ତୁମ୍ଭେ ନାହିଁ ।

(ସ୍ୱର୍ଗା ପର୍ବ--ପୃ-୧୪)

କିନ୍ତୁ ବୃଦ୍ଧାବସ୍ଥା ଏବଂ ରାଜ୍ୟ ଭୋଗ ତ୍ୟାଗ କରି ତୀର୍ଥପଥର ଯାତ୍ରୀ ଯୁଧିଷ୍ଠିର ଏଥିପାଇଁ ଅନିଚ୍ଛା ପ୍ରକାଶ କରିବାରୁ ସହଦେବ କହିଲେ—

ଯାଚନ୍ତି କନ୍ୟା ଯେ ଅଚ୍ଛିନ୍ତି ଭୋଜନ
ଯେହା ଉପେକ୍ଷିଲେ ଦେବ କୁଳକଇଂ ଦୂଷଣ ।

(ସ୍ୱର୍ଗା ପର୍ବ—ପୃ—୧୪)

ତେଣୁ ଯୁଧିଷ୍ଠିର ସୁହାଣୀର ପାଣିଗ୍ରହଣ କଲେ । ଏ ସମୟରେ ପୂର୍ବ କଥିତାନୁଯାୟୀ ଯମରାଜ ସୁହାଣୀର ପ୍ରାଣ ନେବାକୁ ସେଠାରେ ଉପସ୍ଥିତ ହେଲେ । ସଙ୍ଗେ ସଙ୍ଗେ ଅର୍ଜୁନ ଯମଙ୍କୁ ବନ୍ଦୀ କଲେ । ବିବାହ ଉତ୍ସବ ସମାରୋହରେ ସମାପନ ହେଲା । ସେଠାରେ ଧର୍ମ ରଖିଥିବାରୁ ସେ ପୁରକୁ ଧର୍ମପୁର ନାମରେ ନାମିତ କଲେ । ହରିସାହୁର ଅନୁରୋଧରେ ଯମ ମୁକ୍ତ ପାଇଲେ । ସେ ପୁରକୁ ଯମ 'ଅମରାବତୀ' ବୋଲି ନାମିତ କଲେ । ଏ ଉପାଖ୍ୟାନ ସମ୍ପର୍କରେ ମତ ପ୍ରଦାନ କରି ପ୍ରଫେସର ସର୍ବେଶ୍ୱର ଦାଶ ଲେଖିଅଛନ୍ତି—'ଅମରାବତୀ କଟକ ଓ ଧର୍ମପୁର ନାମକରଣର ସାର୍ଥକତା ପ୍ରତିପାଦନ; ଯୁଧିଷ୍ଠିର ସୁହାଣୀ କନ୍ୟା ଉପାଖ୍ୟାନର ମୂଳ ଉଦ୍ଦେଶ୍ୟ ବୋଲି ମନେହୁଏ । (୪୦)

ସେଠାରେ ପାଣ୍ଡବମାନେ ପଞ୍ଚତିରିଶ ବର୍ଷ ଅତିବାହିତ କରିବା ପରେ ପଞ୍ଚଭ୍ରାତା, ଦ୍ରୌପଦୀ ଓ ସୁହାଣୀ ମିଶି କପିଳାସ ପର୍ବତକୁ ଯିବାପାଇଁ ଉଦ୍ୟତ ହେଲେ ।

(୪୦) ମହାକବି ସାରଳା ଦାସ - ଚନ୍ଦ୍ର ମନ୍ଦିର, କଟକ—୧୯୭୧—ପୃ - ୭୨

## (ଗ) କପିଳାସରେ ଶିବ ପୂଜା:--

ଯୁଧିଷ୍ଠିରଙ୍କ ନିର୍ଦ୍ଦେଶରେ ଭୀମ ଧର୍ମପୁରରୁ ଏକଗ୍ରାର ଧାନଗୋଛା ଆଣିଲେ। ବନସ୍ତ ଭିତରୁ ସାତ ଗୋଟି ବ୍ୟାଘ୍ର ଆଣି ତାଙ୍କ ଦ୍ୱାରା ଧାନ ମଳିଲେ । ମୁଠମାଣ ସହସ୍ରେ ମାଣ ଚାଉଳ ଧାନରୁ ବାହାର କରି ସେଇ ଅନ୍ନ ଗଙ୍ଗା ଶିଖରେଶ୍ୱରଙ୍କୁ ପରଷିଲେ ସେହି କପିଳାସ ଶିଖରେଶ୍ୱରଙ୍କ ଠାରେ ସୁହାଣୀ କନ୍ୟାକୁ ଶିବସେବାରେ ନିଯୁକ୍ତ କରି ଦ୍ରୌପଦୀ ଓ ପଞ୍ଚଭ୍ରାତାଙ୍କ ସହିତ ପୁଣି ସ୍ୱର୍ଗାରୋହଣ ପଥରେ ଅଗ୍ରସର ହେଲେ । ସାରଳାଦାସଙ୍କ ମହାଭାରତ ଅନୁଯାୟୀ ପାଣ୍ଡବମାନଙ୍କର ମହାଯାତ୍ରା ଆରମ୍ଭ ହୋଇଥିଲା ଓଡ଼ିଶାର ଢେଙ୍କାନାଳ ସ୍ଥିତ କପିଳାସରୁ । ତେଣୁ କପିଳାସ ପର୍ବତର ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଯାଇ ସାରଳା ଦାସ ଲେଖିଅଛନ୍ତି—

ଚତୁର୍ଦ୍ଦଶୀ ଶିବରାତ୍ରୀରେ ଯେ କପିଳାସେ ଜାଗନ୍ତି
ସେ ଲୋକ ଅନେକ ଦୋଷ କଲେ ତାକୁ ନଦେବୁ ତ ଶାସ୍ତି ।

(ସ୍ୱର୍ଗା. ପର୍ବ-୪୪ପଦ-୬୬ପୃ.)

ଏଥିରୁ ମହାକବିଙ୍କର ସ୍ୱଦେଶପ୍ରୀତିର ପରିଚୟ ମିଳେ ।

## (ଘ) କୃତ୍ତିବାସ ଓ କୀର୍ତ୍ତିବାସ ଦୈତ୍ୟ ସଂହାର

ଅନୁବନ୍ତ ଦୈତ୍ୟର ତିନିପୁତ୍ର---କୀର୍ତ୍ତିନ, କୀର୍ତ୍ତିବାସ ଓ ଆରତ୍ତେକ ଦୈତ୍ୟ । ଏକାମ୍ର କାନନରେ କୀର୍ତ୍ତିନ ଓ କୀର୍ତ୍ତିବାସ ରହୁଥିଲେ । କିନ୍ତୁ ଆରତ୍ତେକ ଦୈତ୍ୟ ପ୍ରାଚୀନଦୀ କୂଳରେ ରହିଲେ । କୀର୍ତ୍ତିନ ଓ କୀର୍ତ୍ତିବାସଙ୍କ ଉପଦ୍ରବରେ ଏକାମ୍ରତୀର୍ଥକୁ କେହି ପଶିବା ପାଇଁ ସାହସ କରୁନଥିଲେ । ସେମାନଙ୍କୁ ବିନାଶ କରିବା ଉଦ୍ଦେଶ୍ୟରେ ଦିଗମ୍ବରଙ୍କ ଠାରୁ ଅନୁମତି ପାଇ ଦେବୀ ପାର୍ବତୀ ଗୋପାଳୁଣୀ ବେଶରେ ଦଧିଦୁଗ୍ଧ ବହନ କରି ଏକାମ୍ର କାନନରେ ପ୍ରବେଶ କଲେ । ଅସୁର ଦୁହେଁ ଦହି ଖାଇବା ପାଇଁ ଜଗତ ମୋହିନୀ ପାର୍ବତୀଙ୍କ ସହ ହାସ୍ୟ ପରିହାସ୍ୟ କରି ବସିଲେ । ଦଧି ପ୍ରଦାନ କରି ମାହେଶ୍ୱରୀ କପିଳାସକୁ ପ୍ରତ୍ୟାବର୍ତ୍ତନ କଲେ । ଫଳରେ କାମ ଖେଳରେ ବେଳସାଇ ଉତ୍କଣ୍ଠାର ସହିତ ପରଦିନ ପାର୍ବତୀଙ୍କୁ ଅପେକ୍ଷା କଲେ । ପରଦିନ ପାର୍ବତୀ ସର୍ବଅଳଙ୍କାର ଭୂଷିତା ହୋଇ ଅତି ଲାବଣ୍ୟମୟୀ କମନୀୟ ରୂପଧାରଣ କରି ଦୁଇ ଦୈତ୍ୟଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ଦୁଇଭାଇ ପାର୍ବତୀଙ୍କୁ ଲୋଭନେତ୍ରେ ସେ

ଗୋଟିଏ ଓଷା ଅଛୁ ବୋଲି କହିଲେ । ତେଣୁ ଦୁଇଭାଇ ତାଙ୍କର ସମସ୍ତ ମନୋବାଞ୍ଛା ପୂରଣ କରିବା ପାଇଁ ପ୍ରତିଶ୍ରୁତି ଦେବାରୁ—

ପାଙ୍ଗତା କହିଲେ ଦୁହିଁଙ୍କର କାନ୍ଧେ ମୁଁ ପାଦ ଦେଇଥିବ
ହାଥେ ହାଥେ ଦେଇ ତୁମ୍ଭର ମୁଣ୍ଡ ମୁଁ ଧରିଥିବ ।
ବୁଲାଇବ ମୋତେ ଚଉକୋଣ ପରିଯନ୍ତେ
ସ୍ୱେଚ୍ଛେକ କଲେ ମୁଁ ତୁମ୍ଭ ଖଣ୍ଡଯା ସୁଗତେ ।

(ସ୍ୱର୍ଗା· ପର୍ବ- ୩୭ ପୃ.)

ଏହାପରେ ଦୁଇ ଭାଇ ପାଙ୍ଗତାକୁ କାନ୍ଧରେ ବସାଇଲେ । ଦେବୀ ତେଣୁ ଦୁଇଭାଇଙ୍କୁ ଭୂମିରେ ସ୍ଥାପିଦେଇ କହିଲେ ଯେ କାର୍ତ୍ତିକ କାର୍ତ୍ତିବାସ କ୍ଷେତ୍ରକୁ ଯେଉଁ ଲୋକ ଆସିବ ତାହାଙ୍କର ଅଧେ ଧର୍ମ ଏମାନେ ଗ୍ରହଣ କରିବେ ।

ଆଜି ପର୍ଯ୍ୟନ୍ତ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ବେଢ଼ା ଭିତରେ ଥିବା ଭୁବନେଶ୍ୱରୀଦେବୀଙ୍କ ସମ୍ମୁଖରେ ଦୁଇଟି ଶିଳାଖଣ୍ଡ କାର୍ତ୍ତିକ ଓ କାର୍ତ୍ତିବାସ ନାମଧାରଣ କରି ପଡ଼ିରହିଛି ଓ ଲୋକମାନଙ୍କର ବିଶ୍ୱାସ ଯେ ତାହା ମଧ୍ୟ ଦେଇ ଗଲେ ସେଠାରେ ଅଧେ ଧର୍ମ ନଷ୍ଟ ହୁଏ । ଏହି କଥାକୁ କବି ସାରଳା ଦାସ ପୂର୍ବରୁ 'ବନପର୍ବ'ରେ ମଧ୍ୟ ବର୍ଣ୍ଣନା କରିଥିଲେ ।

## (ଚ) ଆରତେକ ଦୈତ୍ୟ ବଧ :—

ପ୍ରାଚୀନଦୀ କୂଳରେ ଆରତେକ ଦୈତ୍ୟ ରହିଥିଲା । ପାଣ୍ଡବମାନେ ପ୍ରାଚୀନଦୀ ତୀର୍ଥରେ ପ୍ରବେଶ କରି କୃଷ୍ଣବର୍ଣ୍ଣ ମାଧବ ପ୍ରତିମା ଦର୍ଶନ କଲେ । ସେ ସମୟରେ ଆରତେକ ଦୈତ୍ୟ ହରିସ୍ୱରରେ ଚକ୍ର କରି ଧାଇଁଲା । ତେଣୁ ଭୀମସେନ ସହ ଅସୁରର ଯୁଦ୍ଧ ହେଲା । ଭୀମସେନ ଦୈତ୍ୟକୁ ଧରି ବୁଲାଇ ବୁଲାଇ ପର୍ବତରେ ପିଟିଲେ ମଧ୍ୟ ତାର ମୃତ୍ୟୁ ହେଲାନାହିଁ । ତେଣୁ ଶୂନ୍ୟବାଣୀ ହେବାରୁ ଯୁଧିଷ୍ଠିର ମାଧବ ମୂର୍ତ୍ତି ଆଣି ଭୀମସେନ ଦୈତ୍ୟକୁ ମାଡ଼ିବସିଥିବାବେଳେ ତାହାର ଶିରରେ ବସାଇବାରୁ ଅସୁର ମୃତ୍ୟୁ ବରଣ କଲା ।

ଏସବୁ ବ୍ୟତୀତ, ସାରଳା ଦାସଙ୍କ ମହାଭାରତର ବିଜୟ ପୃଷ୍ଠାରେ ବହୁ ନୂତନ ସ୍ୱର ଶୁଣିବାକୁ ମିଳେ । ତାଙ୍କର ବାଣିଜ୍ୟର ବର୍ଣ୍ଣନ (୪୧), ଜାତିଶିକ୍ଷା (୪୨);

---

୪୧ ସା. ମ. ଭା.—ସ୍ୱର୍ଗାରୋହଣ ପର୍ବ-ପୃ-୨୭ ପଦ-୨୮୩-୨୮୫.
୪୨—ତଦୈବ—ପୃ-୨୯

ହେଙ୍ଗୁଳାଙ୍କ ପ୍ରସଙ୍ଗ ବର୍ଣ୍ଣନା (୪୩), ଗଙ୍ଗାଙ୍କର ସୃଷ୍ଟି ରହସ୍ୟ (୪୪), କଳି ଭିତରେ ଧର୍ମଙ୍କର ବୃକ୍ଷରୂପ ଧାରଣ (୪୫), ଜଗନ୍ନାଥଙ୍କୁ ବୃକ୍ଷ ରୂପରେ କଳ୍ପନା (୪୬) ପ୍ରଭୃତି ଉପାଖ୍ୟାନ ସାରଳାଙ୍କ ଅନନ୍ୟସୁନ୍ଦର ମୌଳିକତାର ଏକ ଏକ ଚମତ୍କାର ଦର୍ଶନ ।

ସାରଳାଙ୍କ ମହାଭାରତ ସମ୍ପୃକ୍ତ ଜ୍ଞାନଭକ୍ତି ସାଧାରଣ ନରନାରୀଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଏହି ପୁରାଣ ଥିଲା ତତ୍କାଳୀନ ଲୋକଶିକ୍ଷାର ଏକମାତ୍ର ମାଧ୍ୟମ । ତେଣୁ ସେଥିରେ ପରିଦୃଷ୍ଟ ସାମ୍ୟ ଓ ବୈଷମ୍ୟ କବିଙ୍କର ସ୍ୱେଚ୍ଛାକୃତ ଓ ସୁପରିକଳ୍ପିତ । ମହାଭାରତ ଯେ ଅଷ୍ଟାଦଶ ପୁରାଣର ସମାହାର ସେହି କଥା ଦର୍ଶାଇ ସ୍ୱର୍ଗାରୋହଣ ପର୍ବର ଶେଷରେ କବି ଲେଖିଛନ୍ତି—

ଅଷ୍ଟାଦଶ ପୁରାଣ ଯେ ହୋଇଲା ସମ୍ପୂର୍ଣ୍ଣ
ପଢ଼ିଲେ ଶୁଣିଲେ ଯେ ହୁଅଇ ବହୁତ ପୁଣ୍ୟ । (ପୃ-୯୭)

ସାରଳା ଦାସ ସାଧାରଣ ଲୋକଙ୍କ ଜନଜୀବନକୁ ଲକ୍ଷ୍ୟରଖି ତାଙ୍କ ମହାଭାରତକୁ ତଥ୍ୟ-ପ୍ରଧାନ ଅପେକ୍ଷା କଥା-ପ୍ରଧାନ ଭାବରେ ସୃଷ୍ଟି କରିଛନ୍ତି । ଏହାର ବସ୍ତୁବିନ୍ୟାସ ଖୁବ୍ ସୁପରିକଳ୍ପିତ ଓ ସୁବିନ୍ୟସ୍ତ । ସ୍ୱର୍ଗାରୋହଣ ପର୍ବରେ ଶାନ୍ତରସର ଉନ୍ମିଳନ ପରିସ୍ଫୁଟ ହୋଇଛି ।

ସାରଳା ଦାସଙ୍କ 'ମହାଭାରତ' ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନର ଏକ ଉଜ୍ଜ୍ୱଳ ଦର୍ପଣ । ସାଧାରଣ ଜନତାର ଜୀବନକୁ ଧାର୍ମିକ ତଥା ଆଧ୍ୟାତ୍ମିକ ଶୃଙ୍ଖଳାରେ ପରିଚାଳିତ କରିବା ଥିଲା ସାରଳା ଦାସଙ୍କର ମୂଳ ଲକ୍ଷ୍ୟ । ସେଥିପାଇଁ ତାଙ୍କର ମହାଭାରତଟି ମୂଳ ରଚନାର ଏକ ବ୍ୟତିକ୍ରମ ହୋଇ ଉଠିଛି । 'ସ୍ୱର୍ଗାରୋହଣ ପର୍ବରେ ମଧ୍ୟ ଅନୁରଞ୍ଜିତ ହୋଇଉଠିଛି ମୌଳିକତାର ସେଇ ଝଙ୍କାର-ବାଣୀ । ସାରଳାଙ୍କ ବିଶେଷ କରି ସ୍ୱର୍ଗାରୋହଣ ପର୍ବରେ ଓଡ଼ିଆ ଜୀବନ ପ୍ରବାହର ଅନନ୍ୟ ଆବେଗ, ଆଜି

---

୪୩-ତନ୍ନୈବ—ପୃ-୫୩

୪୪-ତନ୍ନୈବ—ପୃ-୫୫

୪୫-ତନ୍ନୈବ—ପୃ-୮୨-୮୩

୪୬-ତନ୍ନୈବ—ପୃ-୯୫

ମଧ୍ୟ ଅପ୍ରତିହତ । ସାରଳା ଦାସ ଯଥାର୍ଥରେ ଓଡ଼ିଶାର ବ୍ୟାସଦେବ-ମାଟିର ମହାକବି !!



ସଂକ୍ଷିପ୍ତ ସୂଚନା :—

ସଂ. ମ. ଭା :—ସଂସ୍କୃତ ମହାଭାରତ

ସା. ମ. ଭା :—ସାରଳା ମହାଭାରତ—ଓଡ଼ିଶା ସରକାରଙ୍କର ସାଂସ୍କୃତିକ ବ୍ୟାପାର ବିଭାଗ ଦ୍ୱାରା ପ୍ରକାଶିତ ।

## ସାରଳା ସାହିତ୍ୟ ସଂସଦ କାର୍ଯ୍ୟକାରୀ କମିଟି ।

ଉପଦେଷ୍ଟା :—ଜଷ୍ଟିସ୍ ଶ୍ରୀ ରାଧାଚରଣ ପଟ୍ଟନାୟକ
ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ, ଆଇ. ପି. ଏସ୍.

ସଭାପତି :—ଡକ୍ଟର କାଳନ୍ଦୀଚରଣ ପାଣିଗ୍ରାହୀ

କାର୍ଯ୍ୟକାରୀ ସଭାପତି :—ଶ୍ରୀ ଅଭୟାନନ୍ଦ ରଥ, ଆଇ. ଏ. ଏସ୍.
ଶ୍ରୀ ଅଶୋକ କୁମାର ମହାପାତ୍ର, ଆଇ. ଏ. ଏସ୍.

ସଂପାଦକ :—ଇଞ୍ଜିନିୟର ଶ୍ରୀ ପ୍ରଭାକର ସ୍ୱାଇଁ

ଯୁଗ୍ମସଂପାଦକ :—ଶ୍ରୀ ରମେଶଚନ୍ଦ୍ର ଜେନା

ଗ୍ରନ୍ଥ ସଂପାଦକ :—ଅଧ୍ୟାପକ ଶ୍ରୀ ପଠାଣି ପଟ୍ଟନାୟକ
ଡକ୍ଟର ସଚ୍ଚିଦାନନ୍ଦ ମହାନ୍ତି

ଯୁଗ୍ମ ଗ୍ରନ୍ଥ ସଂପାଦକ :—ଡକ୍ଟର ହେମନ୍ତକୁମାର ଦାସ

କୋଷାଧ୍ୟକ୍ଷ :—ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି, ଓ. ଏ. ଏସ୍.

### ସଭ୍ୟବୃନ୍ଦ :—

ଡକ୍ଟର ପ୍ରଫୁଲ୍ଲକୁମାର ପତି
ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ ଆଇ. ପି. ଏସ୍.
ଶ୍ରୀ ଗିରୀଶଚନ୍ଦ୍ର ପାତ୍ର, ଆଇ. ଏ. ଏସ୍.
ଶ୍ରୀ ଅନାଦି ସାହୁ, ଆଇ. ପି. ଏସ୍.
ଡକ୍ଟର ଉମାକାନ୍ତ ନନ୍ଦ
ଶ୍ରୀ ଦୁର୍ଗାପ୍ରସାଦ ସିଂହ ଓ. ଏଚ. ଏସ୍.
ଡକ୍ଟର ନିରଞ୍ଜନ ତ୍ରିପାଠୀ
ଡକ୍ଟର ଶରତକୁମାର ଗନ୍ତାୟତ
ଡକ୍ଟର ନିମାଇଁଚରଣ ପଣ୍ଡା
ଶ୍ରୀ ଆଦିତ୍ୟ ପ୍ରତାପ ଧଳ

ସାରଳା ସାହିତ୍ୟ ସଂସଦର ସଭ୍ୟବୃନ୍ଦ —

ଡକ୍ଟର କାଳନ୍ଦୀଚରଣ ପାଣିଗ୍ରାହୀ

ଜଷ୍ଟିସ୍ ଶ୍ରୀ ରାଧାଚରଣ ପଟ୍ଟନାୟକ

ଡକ୍ଟର ପ୍ରଫୁଲ୍ଲକୁମାର ପଣ୍ଡା

ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀ, ଆଇ. ପି, ଏସ୍.

ଶ୍ରୀ ଅଭୟାନନ୍ଦ ରଥ, ଆଇ. ଏ. ଏସ୍.

ଶ୍ରୀ ଅଶୋକ କୁମାର ମହାପାତ୍ର, ଆଇ. ଏ. ଏସ୍

ଶ୍ରୀ ରାଜେନ୍ଦ୍ର ନାରାୟଣ ଦାସ, ଆଇ. ପି. ଏସ୍.

ଶ୍ରୀ ଗିରୀଶଚନ୍ଦ୍ର ପାତ୍ର, ଆଇ. ଏ. ଏସ୍.

ଡାକ୍ତର ରାଧାଶ୍ୟାମ ଜେନା

ଶ୍ରୀ ବ୍ରହ୍ମାନନ୍ଦ ସ୍ୱାଇଁ

ଡାକ୍ତର ପ୍ରହ୍ଲାଦ ଚରଣ ସ୍ୱାଇଁ

ଇଞ୍ଜିନିୟର ମଧୁସୂଦନ ସାମନ୍ତରାୟ

ଶ୍ରୀମତୀ ଶଶୀପ୍ରଭା ସାମନ୍ତରାୟ

ଶ୍ରୀ ଇନ୍ଦୁଭୂଷଣ କର, ଓ. ଏ. ଏସ୍.

ଡକ୍ଟର ଜ୍ଞାନଚନ୍ଦ୍ର କର

ଶ୍ରୀ ସୁରେଶାନନ୍ଦ ମିଶ୍ର

ଶ୍ରୀ ଦୁଃଖିଶ୍ୟାମ ପାଣିଗ୍ରାହୀ

ଶ୍ରୀ ତପନକୁମାର ବେହେରା

ଅଧ୍ୟାପକ ଶ୍ରୀ ମହେଶ୍ୱର ମହାନ୍ତି

ଶ୍ରୀ ନିତ୍ୟାନନ୍ଦ ଜେନା

ଶ୍ରୀ ପ୍ରଫୁଲ୍ଲକୁମାର ତ୍ରିପାଠୀ

ଶ୍ରୀ ରବୀନ୍ଦ୍ରନାଥ ସାହୁ

ଶ୍ରୀ ରଘୁନାଥ ବେହେରା

ଶ୍ରୀ ପ୍ରଶାନ୍ତକୁମାର ପଟ୍ଟନାୟକ

ଶ୍ରୀ ଅଲେଖଚନ୍ଦ୍ର ମଲ୍ଲିକ

ଶ୍ରୀ କଶୋରଚନ୍ଦ୍ର ମହାପାତ୍ର

ଶ୍ରୀ ଶରତଚନ୍ଦ୍ର ମହାପାତ୍ର

ଶ୍ରୀ ମୁକୁନ୍ଦପ୍ରସାଦ ମହାପାତ୍ର

ଶ୍ରୀ ରମେଶଚନ୍ଦ୍ର ଜେନା

ଶ୍ରୀ ଅନାଦି ସାହୁ, ଆଇ. ପି. ଏସ୍.

ଅଧ୍ୟାପକ ଶ୍ରୀ ପଠାଣି ପଟ୍ଟନାୟକ
ଇଞ୍ଜିନିୟର ଶ୍ରୀ ପ୍ରଭାକର ସ୍ୱାଇଁ
ଡକ୍ଟର ହେମନ୍ତକୁମାର ଦାସ
ଡକ୍ଟର ବଟକୃଷ୍ଣାନନ୍ଦ ମହାନ୍ତି
ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି, ଓ. ଏ. ଏସ୍.
ଶ୍ରୀ ଦୁର୍ଗାପ୍ରସାଦ ସିଂହ, ଓ. ଏଫ୍. ଏସ୍.
ଡାକ୍ତର ରମାକାନ୍ତ ନନ୍ଦ
ଡାକ୍ତର ନିରଞ୍ଜନ ତ୍ରିପାଠୀ
ଡାକ୍ତର ଶରଦକୁମାର ଗଞ୍ଜାୟତ
ଡାକ୍ତର ନିମାଇଁ ଚରଣ ପଣ୍ଡା
ଶ୍ରୀ ଆଶୁତୋଷ ଦାସ ଓ. ପି. ଏସ୍. ସ୍.
ଶ୍ରୀ ଯଦୁନାଥ ଷଡ଼ଙ୍ଗୀ, ଆଇ. ଏଫ୍. ଏସ୍.
ଶ୍ରୀ ଜୟନ୍ତକୁମାର ଦାସ
ଡକ୍ଟର ଶ୍ରୀମତୀ ପ୍ରଭାତୀ ରାୟ
ଡକ୍ଟର ଶ୍ରୀମତୀ ରେଖା ମହାନ୍ତି
ଶ୍ରୀ ଆଦିତ୍ୟପ୍ରତାପ ଧଳ
ଚୌଧୁରୀ ଗୌରହରି ମିଶ୍ର, ଆଇ. ଏଫ୍. ଏସ୍.
ଡକ୍ଟର ଦେବେନ୍ଦ୍ରନାଥ ମହାନ୍ତି
ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର
ଶ୍ରୀ ସତ୍ୟ ରାୟ
ଅଧ୍ୟାପକ ଡକ୍ଟର ନିତ୍ୟାନନ୍ଦ ଶତପଥୀ
ଅଧ୍ୟାପକ ଶ୍ରୀ ବିଜୟକୁମାର ଶତପଥୀ
ଶ୍ରୀ ବୈଷ୍ଣବଚରଣ ମହାନ୍ତି
ଶ୍ରୀ ଶାରଦା ପ୍ରସନ୍ନ ନାୟକ
ଶ୍ରୀ ଭଗୀରଥି ଜେନା
ଅଧ୍ୟାପକ ଖଗେନ୍ଦ୍ରନାଥ ମଲ୍ଲିକ
ଇଞ୍ଜିନିୟର ନିତ୍ୟାନନ୍ଦ ରାଉତ
ଶ୍ରୀ ରମେଶଚନ୍ଦ୍ର ମହାନ୍ତି, ଆଇ. ପି. ଏସ୍.

